

ଡକ୍ଟର ଅଭୟ ବାରିକ୍
(ଜନ୍ମ ୫ ମାର୍ଚ୍ଚ, ୧୯୬୧)

ସାଂପ୍ରତିକ କବିତା ସମାଲୋଚନା ତଥା କଥା ସାହିତ୍ୟ କ୍ଷେତ୍ରରେ ଡକ୍ଟର ବାରିକ୍ ଏକ ପରିଚିତ ସ୍ୱର । ଗତ ପ୍ରାୟ ପନ୍ଦର ବର୍ଷ ଭିତରେ ସେ ତିନୋଟି ଗଳ୍ପ ସଂକଳନ ତଥା ତିନୋଟି ସମାଲୋଚନା ଗ୍ରନ୍ଥ ରଚନା କରିଛନ୍ତି ।

ସଂପ୍ରତି ସେ ଜଳେଶ୍ୱର ମହାବିଦ୍ୟାଳୟରେ ଓଡ଼ିଆ ଅଧ୍ୟାପକ ରୂପେ କର୍ମରତ ।

# ଆମର ବିମର୍ଷ ଭାଗ୍ୟ

ଡ଼କ୍ଟର ଅଭୟ ବାରିକ

ପ୍ରକାଶକ
ଲାର୍କ ବୁକ୍ସ
ଭୁବନେଶ୍ୱର-୭୫୧୦୦୧

ପ୍ରଥମ ପ୍ରକାଶ
୧୯୯୭

ମୁଦ୍ରଣ
ଓଁକାର
ଆଚାର୍ଯ୍ୟବିହାର, ଭୁବନେଶ୍ୱର

ମୂଲ୍ୟ-ଏକଶହ ପଚିଶ ଟଙ୍କା ମାତ୍ର

**AMARA BIMARSHA BHAGYA**

By
Dr. Abhaya Barik

Published by
**LARK BOOKS**
Bhubaneswar - 751 001

First Edition-1997

Printed at
**Omkar**
Acharya Vihar, Bhubaneswar

Rupees One hundred twenty five Only

**ISBN - 81 - 7375 - 030 - 0**




ମୋ ଗବେଷଣା ଜୀବନର
ପୃଷ୍ଟପୋଷକ ତଥା ସାରସ୍ୱତ ମାର୍ଗର ଦିଗ୍‌ଦ୍ରଷ୍ଟା
ଆଧୁନିକ ସାହିତ୍ୟର ସୁସମାଲୋଚକ ପୂଜ୍ୟଗୁରୁ
ପ୍ରଫେସର୍ ଡ଼କ୍ଟର ନିତ୍ୟାନନ୍ଦ ଶତପଥୀଙ୍କୁ
ଭକ୍ତି ଓ ସମ୍ମାନର ସ'.

ଆଜ୍ଞାନୁବଦ୍ଧ
ଅଭୟ




# ମୁଁ ଯେଉଁଠି ଋଣୀ

ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଓଡ଼ିଆ ବିଭାଗର ଏହି ସନ୍ଦର୍ଭ ପ୍ରସ୍ତୁତିର ଅନ୍ତରାଳରେ ମୁଖ୍ୟ ପ୍ରଫେସର ଡ଼ଃ. ନିତ୍ୟାନନ୍ଦ ଶତପଥୀଙ୍କର ଯେଉଁ ସଶ୍ରଦ୍ଧ ଆଗ୍ରହ, ପ୍ରେରଣା ଓ ଦିଗ୍‌ଦର୍ଶନ ତାହା ଭୁଲିବାର ନୁହେଁ । ମୋର ବିଳମ୍ବ, ତ୍ରୁଟି ଓ ଦୀର୍ଘସୂତ୍ରୀ ନୀତି ପାଇଁ କେତେ ମୃଦୁ ଭର୍ତ୍ସନା ଓ କେତେ ଉତ୍ସାହ । ଉକ୍ତ ନିବନ୍ଧର ପାଣ୍ଡୁଲିପିକୁ ସେ ଯେପରି ଛାତ୍ର ସୁଲଭ ନିଷ୍ଠା ଓ ଆଗ୍ରହ ନେଇ ଦେଖିଛନ୍ତି, ତାହା ମୋତେ ଆଶ୍ଚର୍ଯ୍ୟ ବିମୁଗ୍ଧ କରିଥାଏ । ଏଇ ଅବସରରେ ପ୍ରଥମେ ସେହି ପୂଜ୍ୟାସ୍ପଦ ଗୁରୁଙ୍କୁ ମୋର ପ୍ରଣତି ଓ ଆତ୍ମିକ କୃତଜ୍ଞତା ।

ଏଇ ଅବସରରେ ପ୍ରତିଷ୍ଠିତ କବି ଡ଼କ୍ଟର ପ୍ରତିଭା ଶତପଥୀଙ୍କୁ ମୋର ଗଭୀର ଭକ୍ତି ଓ ସମ୍ମାନ ଜଣାଉଛି ଯାହାଙ୍କର ଉତ୍ସାହ ଓ ପ୍ରେରଣା ମୋ' ସାରସ୍ୱତ ଜୀବନର ଅନ୍ୟତମ ବଳିଷ୍ଠ ପାଥେୟ ଭାବରେ କ୍ରିୟାଶୀଳ । ମୋର ଭଲ ଗପଟିଏ ବାହାରିଲେ ଯିଏ ଗପଠୁ ସୁନ୍ଦର ଚିଠିଟିଏ ପଠାନ୍ତି; ମୋର ତେଲ ଲୁଣର ଘଷରା ଜୀବନରେ ଯିଏ ମନ୍ତ୍ର ଫୁଙ୍କି ମୋତେ ଜୀବନକୁ ଓ ସାହିତ୍ୟକୁ ଆପଣେଇ ନେବାରେ ତାଗିଦା କରୁଥାନ୍ତି, ତାଙ୍କୁ ବା କି ଧନ୍ୟବାଦ ଦେବି !!

ମୁଁ ଏ କାମରେ ଲାଗି ରହିଥିଲାବେଳେ ମୋଠୁ ଦୂରରେ ରହି, ପିଲାକବିଲାଙ୍କର ଜଞ୍ଜାଳକୁ ବିନା ପ୍ରତିବାଦରେ ଯିଏ ସମ୍ଭାଳିନେଇ ଅଧିକାଂଶ ପ୍ରତିକୂଳ ବେଳରେ ମୋତେ ଯଥେଷ୍ଟ ସମୟ ଓ ମାନସିକ ସାହସ ଦେଇଛନ୍ତି, ସେ ମୋର ସହଧର୍ମିଣୀ ପୂଷ୍ପା । ତାଙ୍କୁ ମନେ ପକାଉଛି ।

ପୁନଶ୍ଚ ଉତ୍କଳ ବିଶ୍ୱବିଦ୍ୟାଳୟର 'ପରିଜା ପାଠାଗାର', ରେଭେନ୍ସା କଲେଜର 'କନିକା ପାଠାଗାର', ପୂଜ୍ୟପୂଜା ସଂସଦ (କଟକ)ର 'ଗୋପବନ୍ଧୁ ପାଠାଗାର', ବାପୁଜୀ ବିଦ୍ୟାପୀଠ (ବାଲିଆ, କୁଜଙ୍ଗ), ପାରାଦୀପ କଲେଜ, କନ୍ଦରପୁର କଲେଜ(କଟକ), ଡ଼ାଲ୍‌ମିଆଁ କଲେଜ (ରାଜଗାଙ୍ଗପୁର, ସୁନ୍ଦରଗଡ଼)ର ପାଠାଗାରଗୁଡ଼ିକ ମୋତେ ସହାୟକ ଗ୍ରନ୍ଥ ଯୋଗାଇ ଦେଇଥିବାରୁ ସମ୍ପୃକ୍ତ କର୍ତ୍ତୃପକ୍ଷଙ୍କ ନିକଟରେ ମୁଁ ଋଣୀ ରହିବି ।

ଅବଶେଷରେ ମୋର ଗଭୀର କୃତଜ୍ଞତା ଓ ସମ୍ମାନ ସେହି ପୂଜ୍ୟ କବିଙ୍କୁ ଯାହାଙ୍କର ମାନସ ସନ୍ତାନଗୁଡ଼ିକୁ ନେଇ ମୁଁ ଖାଲି ବିପଣୀ ସଜେଇଛି ସିନା । ଭାରତ ସରକାରଙ୍କ ପ୍ରଶାସନିକ ସେବାରେ ବହୁ ଗୁରୁତ୍ୱପୂର୍ଣ୍ଣ ପଦପଦବୀରେ ଥାଇ, ବେଳେବେଳେ ମୋ' ପାଖକୁ ଯେଉଁ ଭାବପୂର୍ଣ୍ଣ ଚିଠି ଖଣ୍ଡେ ଲେଖାଏଁ ଦେଇ ମୋର ଦୁଷର ଜୀବନଧାରାକୁ ଆୟାସସାଧ କରିଥାନ୍ତି ସେହି ପରମ ପ୍ରିୟ କବି ରମାକାନ୍ତ ରଥଙ୍କୁ ମୋର ନମସ୍କାର ।

ପୂଜ୍ୟ ପ୍ରକାଶକ ବନ୍ଧୁ ଶ୍ରୀଯୁକ୍ତ ମହେନ୍ଦ୍ର ମିଶ୍ର ଯେଉଁ ଆଗ୍ରହରେ ଏ ଗ୍ରନ୍ଥଟିକୁ ଆଲୋକକୁ ଆଣିବାକୁ ଯତ୍ନଶୀଳ ହୋଇଛନ୍ତି ସେଥିପାଇଁ ସେ ଧନ୍ୟବାଦାର୍ହ ।

ସ୍ୱାଧୀନତା ଦିବସ, ୧୯୯୭ — ଅଭୟ ବାରିକ୍

# ମୁଖଶାଳା

୧୯୭୭ ମସିହାରେ ଆଇ.ଏ. ପଢୁଥିଲାବେଳେ ପ୍ରାୟ ଗୋଟିଏ କବିତା ସଙ୍କଳନ ମଧ୍ୟରେ ରମାକାନ୍ତ ରଥଙ୍କ 'ଧର୍ମପଦର ଆତ୍ମହତ୍ୟା' କବିତାଟିକୁ ପ୍ରଥମେ ପଢ଼ିଥିଲି । ଯେତେଥର ପଢୁଥିଲେ ମଧ୍ୟ କିଛି ଅବୁଝା ରହିଯାଉଥିଲା । ତଥାପି କବିତାଟିର ସାଙ୍ଗୀତିକତା ଓ ରୋମାଣ୍ଟିକ୍ ଶବ୍ଦ ସଂଯୋଜନା ମୋତେ କବିତା ପଠନର ଚରମ ତୃପ୍ତି ଆଣି ଦେଇଥିଲା । ଆଦ୍ୟ ଯୌବନରେ ତାହା ମୋତେ ଆହ୍ଲାଦିତ କରିଥିଲା । ଏଇ କବିତାଟିରୁ ଶ୍ରୀଯୁକ୍ତ ରଥଙ୍କୁ କବି ଭାବରେ ମୋର ପ୍ରଥମ ଜାଣିବା । ତା'ପରେ ସାହିତ୍ୟର ଛାତ୍ର ହେଲାପରେ ତାଙ୍କୁ ପଢ଼ିଛି । ଉତ୍କଳ ବିଶ୍ୱବିଦ୍ୟାଳୟରେ ଏମ୍.ଏ. ଶ୍ରେଣୀରେ ''ଆଧୁନିକ ସ୍ୱତନ୍ତ୍ର ପତ୍ର'' ନେଇ ଅଧ୍ୟୟନ କଲାବେଳେ ଆଧୁନିକ କବିତା ବୁଝିବା ପାଇଁ ଓ ବିବିଧ ପ୍ରଶ୍ନବାଚୀକୁ ସମାଧାନ କରିବା ପାଇଁ ମୋର ଗୁରୁ ଡ଼କ୍ଟର ନିତ୍ୟାନନ୍ଦ ଶତପଥୀ, ଡକ୍ଟର ବୈଷ୍ଣବ ଚରଣ ସାମଲ ଓ ସ୍ୱର୍ଗତ ଡକ୍ଟର କ୍ଷେତ୍ରବାସୀ ନାୟକଙ୍କ ପ୍ରଗାଢ଼ ସାହାଯ୍ୟ ଲୋଡ଼ିଛି । ଏଇ ସମୟରେ ଆଧୁନିକ କବିତା ବୁଝି ବୁଝାଇବାକୁ ଯାଇ ବିବିଧ ପତ୍ର ପତ୍ରିକାରେ ସମୀକ୍ଷାତ୍ମକ ପ୍ରବନ୍ଧ କେତୋଟି ଲେଖିଛି । ସେଗୁଡ଼ିକର ଏକତ୍ର ସମବାୟ ଘଟିଛି ମୋର ପ୍ରଥମ ସମାଲୋଚନା ଗ୍ରନ୍ଥ ''ଭିନ୍ନ ଇଲାକା ଭିନ୍ନ କଥା'' (୧୯୯୧)ରେ ।

୧୯୮୫ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ଏମ୍.ଫିଲ୍ ପରୀକ୍ଷା ନିମିତ୍ତ ପ୍ରସ୍ତୁତ ନିବନ୍ଧ (Dissertation) ରମାକାନ୍ତ ରଥଙ୍କ କାବ୍ୟ ସାହିତ୍ୟର ଆଂଶିକ ଆତ୍ମିକ ଧାରା ଉପରେ ପର୍ଯ୍ୟବସିତ ହୋଇଥିଲା । ଉକ୍ତ ପି.ଏଚ୍.ଡି. ଥିସିସ୍‌ଟି(୧୯୯୨) ଶ୍ରୀଯୁକ୍ତ ରଥଙ୍କ ସାମଗ୍ରିକ କାବ୍ୟଧାରା ଉପରେ ପ୍ରତିଷ୍ଠିତ ।

ହଁ, ପ୍ରଥମ ପଢ଼ାରେ ତାଙ୍କ କବିତା ଭିତରେ ମୁଁ ଆତଙ୍କଗ୍ରସ୍ତ ହୋଇ ପଡ଼ିଛି । କିଛି ନ ବୁଝି ପାରିବାର ଯନ୍ତ୍ରଣା ଭିତରେ ଛଟପଟ ହୋଇଛି ତଥା ଏକ ସାରସ୍ୱତ ଆନନ୍ଦବୋଧ ଭିତରେ ଦିନ କାଟିଛି । ଅତଃପର ତାଙ୍କ ଅପାର କାବ୍ୟ ସଂସାରର ରୁଦ୍ଧ ଦ୍ୱାର ମୋ ପାଇଁ ସାଧମତେ ମୁକୁଳି ଯାଇଛି ଏବଂ ଏପରି ଏକ ନିର୍ଦ୍ଦିଷ୍ଟ ମୁହୂର୍ତ୍ତ ଆସିଛି ଯେତେବେଳେ ତାଙ୍କ କବିତାର ପ୍ରେମରେ ମୁଁ ପଡ଼ିଯାଇଛି । ଏବେ ଏମିତି ଏକ ଅନୁଭବ ଆସିଚି, ବୁଝୁଛି, କବିତାର ପ୍ରେମରେ ଥରେ ପଡ଼ିଗଲେ ବୋଧହୁଏ ଯାବତ୍ ଚନ୍ଦ୍ରାର୍କ ସେଥିରୁ ତ୍ରାହି ନଥାଏ; ନଥାଉ । ଏଇ ଆତ୍ମିକ ତଥା ସୂକ୍ଷ୍ମାନୁଭୂତି ଭିତରେ ଯେ ପର୍ଯ୍ୟନ୍ତ ରସଗ୍ରାହୀଟିଏ ନିମଜ୍ଜମାନ ଥାଏ, ସେ ପର୍ଯ୍ୟନ୍ତ ସେ ଆପେ ଆପେ କବିତା ପାଲଟି ଯାଉଥାଏ ଓ କବିତାର ନାଭିକେନ୍ଦ୍ର ଭିତରେ ସେ ନିର୍ଯ୍ୟାସପ୍ରାପ୍ତ ହେଉଥାଏ ।

ଏଇ ନିର୍ଯ୍ୟାସପ୍ରାପ୍ତି ସଂପର୍କରେ ମନ ଭିତରେ ସ୍ୱତଃ ଦୁଇଟି ଦିଗ ପ୍ରସରି ଥାଏ । ପ୍ରଥମତଃ କବିତା ପଠନ ଓ ଅନୁଭବ ଏବଂ ଦ୍ୱିତୀୟତଃ କବିତା ସଂପର୍କରେ ଅନ୍ୟପାଇଁ

କିଛି ବୟାନ ।

କବିତା ପଠନ ଓ ଅନୁଭବ ଏକ ବୈଜ୍ଞିକ ଅନ୍ତଃପ୍ରକ୍ରିୟା । ଏହା ଭିତରେ ଏକ ନିଜସ୍ୱ ସାମ୍ରାଜ୍ୟ ଥାଏ । ଦ୍ୱିତୀୟ ପର୍ଯ୍ୟାୟଟି ନିର୍ଭର କରେ ଏକ ନିରପେକ୍ଷ ଚିତ୍ତବୃତ୍ତି ଓ ତୁଳନାତ୍ମକ ପରିବେକ୍ଷନୀ ଉପରେ । ଏଠି ପାଠକଟିଏ ଗୋଟିଏ ଦୋଛକି ମୋଡ଼ରେ ପାଦ ରଖିଥାଏ । ପ୍ରଥମତଃ ସେ ନିଜ ପାଇଁ କବିତା ପଢ଼ିବ, ବୁଝିବ ଓ ଦ୍ୱିତୀୟତଃ ନିଜସ୍ୱ ଅନୁଭବରୁ ଅନ୍ୟକୁ ବୁଝେଇବ । ତେଣୁ ଏଠି ସ୍ୱାଧୀନତାର ପରିସୀମା ଇଚ୍ଛାନୁଗତ ନୁହେଁ । ସାହିତ୍ୟ ସଂପର୍କରେ ନିଜସ୍ୱ ମତାମତ ଦେବାରେ ଅଧିକାର ସମସ୍ତଙ୍କର ଥିଲେ ମଧ ଏହା ରାଜନୀତିର ରଣାଙ୍ଗନ ନୁହେଁ କି କୂଟନୀତିର ରହସ୍ୟଭୂମି ନୁହେଁ । ଏହା ଏକ ପବିତ୍ର ହୃଦୟବତ୍ତା ତଥା ସହନଶୀଳତାର ପଟ୍ଟଭୂମି । ଏକ ମାନସ ରାଜ୍ୟର ସୁକୋମଳ ତଥା ସ୍ପର୍ଶକାତର ଭିତ୍ତିଭୂମି । ସେଇଥିଲାଗି ସ୍ୱାଭିମାନୀ ଦୀନକୃଷ୍ଣ କହିଥିଲେ 'କବିଯା'କରେ ମୂର୍ଖଙ୍କୁ ସ୍ତୁତି, ଏଥିକୁ ବଳି ନାହିଁ ବିପତ୍ତି...... ।'

ଏଇ ପରିପ୍ରେକ୍ଷୀରେ ଅସହନଶୀଳ ଚିତ୍ତବୃତ୍ତିର ନମୁନା ମଝିରେ ମଝିରେ ଦୃଷ୍ଟିଗୋଚର ହୋଇଛି । ସେଗୁଡ଼ିକର ଅନ୍ତଃସାରଶୂନ୍ୟତା ଓ ସେ ଚିତ୍ତବୃତ୍ତିକୁ ଅନୁପ୍ରାଣିତ କରୁଥିବା ସଂକୀର୍ଣ୍ଣତା ଦର୍ଶାଇବା କଷ୍ଟକର ହେବନାହିଁ, କିନ୍ତୁ ରମାକାନ୍ତଙ୍କର କବିତାର ବିଚିତ୍ର ଦିଗ୍‌ବିଦିଗରେ ନ ବୁଲି ଏପରି କେତେଜଣ ଦ୍ୱେଷଜର୍ଜରିତ ବ୍ୟକ୍ତିଙ୍କର ଯୁକ୍ତି ଖଣ୍ଡନ କରି ବସିଲେ ନିବନ୍ଧଟି ଲକ୍ଷ୍ୟଭ୍ରଷ୍ଟ ହୋଇପଡ଼ିବ । 'ଶ୍ରୀରାଧା'ର ଅଂଶବିଶେଷ ବହୁକାଳ ଧରି ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ହେଲା । ସେତେବେଳେ ଓ ପୁସ୍ତକାକାରରେ ପ୍ରକାଶିତ ହେବାପରେ ସେ ଯେଉଁ ପାଠକୀୟ ଆଦର ଲାଭ କଲା ଓଡ଼ିଆ ସାହିତ୍ୟର ଇତିହାସରେ ତାହା ଉଲ୍ଲେଖଯୋଗ୍ୟ ଘଟଣାଟିଏ । ସରସ୍ୱତୀ ସମ୍ମାନ ମିଳିବାର ଅନେକ ଦିନ ପରେ କିନ୍ତୁ ଜଣେ ଦୁଇଜଣ ସ୍ଥିର କଲେ ଯେ ରମାକାନ୍ତ ରଥ ଓ ତାଙ୍କ ପାଠକମାନଙ୍କ ମତ ଯାହା ହେଉନା କାହିଁକି, ଶ୍ରୀରାଧାଙ୍କ ବ୍ୟକ୍ତିତ୍ୱ ପ୍ରତି ଆବର୍ଜନା ନିକ୍ଷେପ କଲେ ହିଁ ସେମାନେ ନିଜନିଜ କଳ୍ପିତ ମୌଳିକତା ଓ ଅସାଧାରଣତା ସାବ୍ୟସ୍ତ କରିପାରିବେ । ତାହା ତ ହେଲା ନାହିଁ, ଶ୍ରୀରାଧାଙ୍କର ବ୍ୟଥା ଓ ଭାଷା ଅନେକଙ୍କର ବ୍ୟଥା ଓ ଭାଷା ହୋଇପଡିଲା; ବହିଟିକୁ ଅସଂଖ୍ୟ ପାଠକ ନିଜର ସମ୍ପଦ କରି ରଖିଲେ । ସେ ଦ୍ୱେଷପ୍ରସୂତ ଚିତ୍କାରର ଉତ୍ତର ଦେବାର ଆଉ କୌଣସି ଆବଶ୍ୟକତା ନାହିଁ ।

ଆଜି ଶ୍ରୀ ରଥଙ୍କ କବିତା କେବଳ ଓଡ଼ିଶାର ଚଉକାଛ ଭିତରେ ସୀମାବଦ୍ଧ ନୁହେଁ । ନିଖିଳ ଭାରତୀୟ ସ୍ତରରେ ସେ ସ୍ୱୀକୃତ । ନିକଟ ଅତୀତରେ 'ସରସ୍ୱତୀ ସମ୍ମାନ' (୧୯୯୨) ତଥା 'କବୀର ସମ୍ମାନ'(୧୯୯୩-୯୪) ପ୍ରାପ୍ତ ହୋଇ ସେ ଓଡ଼ିଆ ସାହିତ୍ୟର ବ୍ୟାପ୍ତି ଓ ବିସ୍ତୃତିକୁ ଅଭିମଣ୍ଡିତ କରିଛନ୍ତି ।

ଅଭୟ ବାରିକ

# ସୂଚୀ

# ପ୍ରଥମ ପରିଚ୍ଛେଦ

## ସାଂପ୍ରତିକ-ଏକ ପ୍ରାକ୍ କଥନୀ

ସାଂପ୍ରତିକତା, ଆଧୁନିକତା ଓ ନୂତନତା- ଏହି ତିନୋଟି ଶବ୍ଦ ସମାର୍ଥବୋଧକ ପ୍ରତୀତ ହେଉଥିଲେ ହେଁ ଏମାନଙ୍କ ମଧ୍ୟରେ କିଛି ସୂକ୍ଷ୍ମ ପାର୍ଥକ୍ୟ ଲକ୍ଷ୍ୟ କରାଯାଇ ପାରେ। ଏଗୁଡ଼ିକ ସବୁ ଉଭୟ କାଳାଶ୍ରିତ ଏବଂ ଭାବାଶ୍ରିତ ମଧ୍ୟ। ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ-ଏଇ ତିନିକାଳ ମଧ୍ୟରେ ଆମେ ସାଧାରଣତଃ ଜଗତର ବିବିଧ ଗତି ଓ ଧାରାକୁ ମାପି ବସିଥାଉ। ଯାହା ଅତୀତରେ ଘଟିସାରିଛି ତାହା ବର୍ତ୍ତମାନ ପାଇଁ ଆମ ନିକଟରେ ଇତିହାସର ବସ୍ତୁ ଏବଂ ବାର୍ତ୍ତମାନିକ ପରିପ୍ରେକ୍ଷୀରେ ଆମେ ଏକ ସୂକ୍ଷ୍ମ ମାନସିକତା, ବିଚାରଶୀଳତା ଓ ଅନୁସନ୍ଧିତ୍ସା ନେଇ ଭବିଷ୍ୟର ରୂପାୟନ ଓ ବାସ୍ତବାୟନ ନିମନ୍ତେ ସଚେଷ୍ଟ ହୋଇଥାଉ। ଏକ ଉଚ୍ଚରିତ ମାନସିକ ସ୍ଥିତି ଓ ବିସ୍ତୃତ ଦିଗ୍‌ବଳୟ ନେଇ ଆମେ ଯଦି ସମୟକୁ ନିରୀକ୍ଷଣ କରୁ, ତେବେ ଆମେ ଆଧୁନିକ କାବ୍ୟଗୁରୁ ଟି.ଏସ୍. ଇଲିଅଟ୍‌ଙ୍କ ସହିତ ଏକମତ ହେବୁ ଯେ-

"Time present and time past
Are both perhaps present in time future,
And time future contained in time - past.
If all time is eternally present
All time is unredeemable."(୧)

ସାମାଜିକ ଦୃଷ୍ଟିକୋଣରୁ ବିଚାର କଲେ ସାଂପ୍ରତିକ କହିଲେ ବୁଝୁ, ଯାହା ବର୍ତ୍ତମାନ ବା ଚଳନ୍ତି ସମୟଭିତ୍ତିକ (Contemporary)। ଆଧୁନିକତା ସାଂପ୍ରତିକ କାଳ ସଚେତନ। ସାଧାରଣତଃ ଆଧୁନିକ କହିଲେ ବୁଝାଯାଏ ଯେ ଯାହା ଅତୀତ ସଂପର୍କ-ରହିତ। ଆମେ ଆଧୁନିକ ହେବାକୁ ଗଲାବେଳେ ଆମର ଅତୀତକୁ ଭୁଲିବସୁ। ତା' ପ୍ରତି ନାସିକା କୁଞ୍ଚନ କରୁ। ପରମ୍ପରା ବିସ୍ମୃତ ହୋଇ ବର୍ତ୍ତମାନ ଭିତରେ ଆଧୁନିକ ସାଜୁ। ଏହି ତଥାକଥିତ ଆଧୁନିକତା ମାନବ ଜୀବନରେ ନୂତନତ୍ତ୍ୱ ଆଣିପାରେ ନାହିଁ। ଏହା ବୋଲି ଆମକୁ ବୁଝିବାକୁ ପଡ଼ିବନି ଯେ ଆମେ ସବୁବେଳେ ପୁରାତନସର୍ବସ୍ୱ ହୋଇ ସାଂପ୍ରତିକତାଠାରୁ ଦୂରେଇଯିବା। ସାଂପ୍ରତିକ ଭାବ-ବିଚ୍ଛିନ୍ନତା ଆସିଗଲେ ନୂତନତ୍ୱକୁ ଧରିହୁଏନା। ଅତୀତକୁ ବି ଚିହ୍ନି ହୁଏନା। ଭବିଷ୍ୟତକୁ ବି ଆଖି ପାଏନା। ଆଧୁନିକତା ହେଉଛି ଯେଉଁଠି ମଣିଷ ବର୍ତ୍ତମାନ ପାଇଁ ସଚେତନ ଏବଂ ଆପଣାର ପ୍ରଜ୍ଞା ଓ ମନନଶୀଳତା ଦେଇ ଅତୀତର

ପୃଷ୍ଠଭୂମିରେ ବର୍ତ୍ତମାନକୁ ନୂତନ ଭାବେ ପରଖ କରିବାରେ ସତତ ଯତ୍ନଶୀଳ। ତେଣୁ ସର୍ବଦା ଆଧୁନିକ ସଚେତନ ମଣିଷ ପୁରାତନ ଓ ବର୍ତ୍ତମାନ ମଧ୍ୟରେ ଥିବା ଭାବ ଦୂରତ୍ୱକୁ ଯୋଡ଼ିଦିଏ। ଜନୈକ ସମାଲୋଚକଙ୍କ ମତରେ- "The modern is acutely conscious of the contemporary scene. x x x To the modern, it seems that a world of unprecedented phenomena has totally off from the life of the past,and in doing so from traditional consciousness. At the same time it is of no use trying to get back into the past by ignoring the present. If we consider ourselves as belonging not just to our own particular moment in time but also to the past, then we must also be fully aware of our predicament which is that of past consciousness living in the present. x x x We find that the modern in his work is occupied with trying to bridge a gulf within his awareness of past from present. With his sensibility he is committed criticising that present by applying to it his realisation of the past." (୨) ଆମର ଚେର ମାଟି ଭିତରେ ନିଖାତ। ଗଣ୍ଡି ରହୁଛି ଦୃଶ୍ୟମାନ ବର୍ତ୍ତମାନ ଭିତରେ ଏବଂ ଫୁଲଫଳର ସମ୍ଭାବନା ରହୁଛି ଆଗାମୀ କାଳରେ। ଅତୀତକୁ ଫାଙ୍କି ବସିଲେ ଆମେ ହୋଇପଡ଼ିବୁ ଛିନ୍ନମୂଳ। ଏଇ ଛିନ୍ନମୂଳ ଜୀବନ ଭିତରେ ସବୁ ଖାଲି ନୈରାଶ୍ୟ, ହତାଶା ଓ ସ୍ତୂପୀକୃତ ଅନ୍ଧକାର।

ଆଧୁନିକ ଲେଖକ ଆଜି ଜୀବନର ସାମଗ୍ରିକ ବିଭାବ ପ୍ରତି ପରାଙ୍ମୁଖ। ଜୀବନ ଓ ଜଗତର ଖଣ୍ଡିତାଂଶକୁ ନେଇ ସେ କଳାରତ। ସେଥିପାଇଁ ଏ କାଳରେ ଆଉ ରାମାୟଣ, ମହାଭାରତ କି ଓଡ଼େସୀ ଓ ଇଲିଆଡ୍ ପରି ମହାକାବ୍ୟ ରଚନା କରାନଯାଇ; ଜୀବନର ମାଙ୍ଗଳିକ ଓ ବୃହତ୍ତମ ପରିସରକୁ ସାହିତ୍ୟ ମଧ୍ୟରେ ରୂପ ନ ଦେଇ ଧ୍ୱଂସାଭିମୁଖୀ ରୁଗ୍ଣ ସମାଜର ଚିତ୍ର ଆଙ୍କୁଛି 'The Waste Land' ବା 'କାଳପୁରୁଷ' ଭିତରେ। ଏ ଚିନ୍ତାକୁ ପୂର୍ଣ୍ଣମାତ୍ରାରେ ଅଯୌକ୍ତିକ ବୋଲି ସ୍ୱୀକାର କରାଯାଇ ନ ପାରେ। କେଉଁ ପରିସ୍ଥିତିରେ ଆଜିର ସାହିତ୍ୟ ଏପରି ଭାବନାକୁ ନିଜର କରି ବସିଛି ତାହା ପରେ ଆଲୋଚନା କରାଯାଉଛି।

ଅତୀତ ଓ ବର୍ତ୍ତମାନର ସଂଘର୍ଷରୁ ହିଁ ନୂତନତାର ପ୍ରସୂତୀ ପର୍ବ। ତେଣୁ ନୂତନତା ହିଁ ଅତୀତ ଓ ବର୍ତ୍ତମାନର ଯୋଗସୂତ୍ର। "The modern is the realised consciousness of suffering, sensibility and awareness of the past."(୩) ଏହି ସୂତ୍ରରେ ସାହିତ୍ୟ କ୍ଷେତ୍ରରେ ସାଂପ୍ରତିକତାର ମୂଲ୍ୟବୋଧକୁ ନିରୂପଣ କରାଯାଇପାରେ। ସାହିତ୍ୟ ପାଇଁ ଅତୀତର ପୃଷ୍ଠଭୂମି ବା ପୂର୍ବସୂରିମାନଙ୍କର ପ୍ରଭାବ ଅଲଘନୀୟ। ପାରମ୍ପରିକତାର ପୃଷ୍ଠଭୂମି ଉପରେ ସାହିତ୍ୟର ନୂତନ କଳେବର ସୃଷ୍ଟିହୁଏ। ଅନୁଭୂତି ହୋଇଉଠେ କ୍ଷିପ୍ର ଓ ଶାଣିତ। ମହାଭାରତର ଅସହାୟ ଦୁର୍ଯ୍ୟୋଧନ କୁଳକ୍ଷୟ ଘଟାଇ ସାରିଲା ପରେ ଅଜଣା ଶବକୁ ସବାର ହୋଇ ରକ୍ତନଦୀ ପାରହୁଏ। ସେହି ଶବ ଯେ ତା'ର ଏକମାତ୍ର ପୁତ୍ର ଲକ୍ଷ୍ମଣକୁମାରର। ମାୟା ଓ କ୍ଷମତାନ୍ଧ ଦୁର୍ଯ୍ୟୋଧନ ସେଇଠୁ ଲୋଡ଼ିବସେ-

"ଉରୁଭଗ୍ନ ଲଗ୍ନ ଆଉ ଆଜି କେତେଦୂର
କେତେଦୂର ରଜନୀର ଅନ୍ତିମ ପ୍ରହର?

ତାରା ଆଉ ପୃଥିବୀର ଅଗଣିତ କବର ପଛରେ
ଏଇଠି ମୁଁ ଲୁଚିଅଛି
ମୁହିଁ କାହିଁ, ମୋର ମୁହଁ କାହିଁ ?
ମୋ ଅଜଣା ପ୍ରାର୍ଥନାର ବିକୃତ ପ୍ରତିଧ୍ୱନିରେ
ମୁଇଁ ଭୀତତ୍ରସ୍ତ
ମୋର ଆଉ ଘର ନାଇଁ, ମୋ' ପାଇଁ ଆଶ୍ରୟ ନାଇଁ
ପକ୍ଷୀର ବି ବସା ନାଇଁ, ସୂର୍ଯ୍ୟ ହେଲା ଅସ୍ତ। (୪)

ତା'ପରେ ତା' ମନର ଆକୃତି-

''ମୋତେ ଚୂନା କରିଦିଅ
ଭାଙ୍ଗିରୁଜି ମିଶାଅ ଆକାଶେ
ତୁମରି ଶୂନ୍ୟ ସିଂଫନି
ନେଉ ଆଜି ମତେ ଟାଣି
ମହାଶୂନ୍ୟ ପ୍ରାନ୍ତରକୁ ଉନ୍ମାଦ ରଭସେ।'' (୫)

ଆମେ ଆଜି ଏଇ କବିତାକୁ ଆଧୁନିକ କବିତା ବା ସାଂପ୍ରତିକ କାଳଖଣ୍ଡର କବିତା ବୋଲି ସ୍ୱୀକାର କରିଛୁ। ପୁରାତନର କଙ୍କାଳ ଉପରେ ଏହାର କଥାବସ୍ତୁ ଆଧାରିତ; କିନ୍ତୁ ନୂତନତା ହେଉଛି ଏତିକି ଯେ, ଆଜିର ମଣିଷ ଆପଣା ଭିତରେ ନିଜେ ସନ୍ତପ୍ତ ଓ ଅନୁତପ୍ତ ଏବଂ ସେହି ପ୍ରକାର ଅସ୍ଥିର ମାନସିକତା ଓ ଅସହାୟତା ଭିତରୁ ମୁକ୍ତିପାଇଁ ଚେତନାର ଆଲୋଡ଼ନ। ତେଣୁ ''ଆଧୁନିକତା ଏକ ମୁଖା ନୁହେଁ ଯାହାକୁ ପିନ୍ଧି କେହି ନାଚି ପାରିବ। ଆଧୁନିକତା ଏକ ଅନ୍ତର୍ଦ୍ୱନ୍ଦ। ଏକ ଜଟିଳ ମାନସ। ଏକ ସୁଦୂରପ୍ରସାରୀ ବ୍ୟାପ୍ତି, ଏକ ସଫଳ ଦିଗ୍‌ନିର୍ଣ୍ଣୟ ପାଇଁ ମଣିଷ ମନର ଅଦମ୍ୟ ଆକୂତି, ଏକ ମହାନ୍ ଅନୁଭୂତି ସଂପନ୍ନ ଅନୁଭବୀ ହୃଦୟ ଯାହା ସବୁ ଗ୍ରହଣ କରେ। ସବୁ ହଜମ କରେ। ଆଧୁନିକତା ଗୋଟିଏ ପରିପ୍ରେକ୍ଷୀ ନୁହେଁ, ଗୋଟିଏ ଭିତ୍ତିଭୂମି ନୁହେଁ, ଏହା ଗୋଟିଏ ମୌଳିକ ମାନସିକ ବିପ୍ଳବ। ଏହା ଛଳନା ନୁହେଁ, ଏହା ଗୋଟିଏ ବ୍ୟାକୁଳତା।'' (୬)

ଆମେ ଯେଉଁ ସମୟରେ ବଞ୍ଚୁଛୁ, ଚଳୁଛୁ ଓ ଯାହାକିଛି କରୁଛୁ ତାହା ସାଧାରଣ ଅର୍ଥରେ ସାଂପ୍ରତିକତାକୁ ବୁଝାଇଥାଏ। ସାଂପ୍ରତିକ ପରିପ୍ରେକ୍ଷୀରେ ଯାହା କିଛି ପରଂପରାଚ୍ୟୁତ ଓ ଅତୀତ-ବିମୁକ୍ତ ବୋଧହୁଏ ତାକୁ ଆଧୁନିକତା ବା ନୂତନତା ବୋଲି ଧରି ନେଇଥାଉ। କିନ୍ତୁ ସୂକ୍ଷ୍ମଭାବେ ନିରୀକ୍ଷଣ କଲେ ଆଧୁନିକତା କେବେ କାଳାଶ୍ରିତ ନୁହେଁ। ଏହା ଏକ ଆପେକ୍ଷିକ ଶବ୍ଦ। ସାହିତ୍ୟ କ୍ଷେତ୍ରରେ ଆମେ ଭାବାଶ୍ରିତ ଆଧୁନିକତାକୁ ବେଶୀମାତ୍ରାରେ ଗ୍ରହଣ କରିନେଲେ ଆମର ସାହିତ୍ୟ ବାସ୍ତବିକ ଆଧୁନିକ ଓ ନୂତନ ହୋଇ ପାରିବ। ସାହିତ୍ୟର ଆଙ୍ଗିକରେ ନୂତନତ୍ୱ ଅବଶ୍ୟ ଆସେ ଏବଂ ଯାହା ସ୍ୱାଭାବିକ ମଧ। କାରଣ, ଯୁଗଧର୍ମ ଓ ରୁଚିର ତାଡ଼ନାରେ ଜୀବନର ସବୁକିଛି ବାହ୍ୟିକ ବିଭାବ ବଦଳି ଯାଇଥାଏ। ଏବେ ବିଂଶ ଶତାବ୍ଦୀର ଶେଷ ଦଶନ୍ଧିରେ ଠିଆହୋଇ ଆମେ ଯଦି ଶାରଳା ଦାସ କି ବଳରାମ ଦାସଙ୍କ ଦାଣ୍ଡି ବୃତ୍ତରେ ବା ଜଗନ୍ନାଥ ଦାସଙ୍କ ଗୁଜ୍ଜରୀ ନା ନବାକ୍ଷରୀ ରାଗରେ କବିତା ଲେଖୁ ତେବେ ତାହା ଆଧୁନିକ ଚିନ୍ତାମାନସକୁ ପ୍ରକାଶ କରିବାରେ ସଫଳ ମାଧମ ହେବ ନାହିଁ। ସେହି ମହାଭାରତର ଦୁର୍ଯ୍ୟୋଧନଙ୍କ ରକ୍ତନଦୀ ସନ୍ତରଣ

ଓ ସୀତାକାନ୍ତଙ୍କ କବିତା ଭିତରେ ତଫାତ୍ ବେଶ୍ ବୋଧଗମ୍ୟ। ଜଗନ୍ନାଥ ଦାସଙ୍କ "ଯେସନେ କୀଟ ଉର୍ଣ୍ଣନାଭି। ନିଜ ବଦନୁ ସୂତ୍ର ଖାବି x x x ସୂର୍ଯ୍ୟ ଉଦୟେ ତା ସଂହାରେ", ଭାବ ସହିତ କବି ରମାକାନ୍ତ ରଥଙ୍କ 'ବାଘଶିକାର'ର ବିମର୍ଷ ଭାଗ୍ୟକୁ ସୂକ୍ଷ୍ମ ଦୃଷ୍ଟିରେ ଅଧ୍ୟୟନ କରାଯାଇପାରେ। (୭)

ଖ୍ରୀଷ୍ଟୀୟ ନବମ ଶତାବ୍ଦୀର ଚର୍ଯାପଦାବଳୀର ଜାଙ୍ଗଲିକ ପରିବେଶରେ ଶାବରୀ ଜୀବନର ଯେଉଁ ପ୍ରତୀକିତ ପ୍ରଚ୍ଛନ୍ନ ଭାବ ରହିଛି ତାହା ଏକ ମିଷ୍ଟିକ୍ ଜୀବନଚର୍ଯ୍ୟାର ପୁରାତନ ରୂପ ହେଲେ ହେଁ ସେଥିରେ ସାଂପ୍ରତିକ ମଣିଷର ଅନ୍ୱେଷାବୋଧ ଓ ପାରମାର୍ଥିକ ଜୀବନର ବ୍ୟଞ୍ଜିତ ଚେତନା ବେଶ୍ ସୁସ୍ପଷ୍ଟ। ତେଣୁ ପୁରାତନ ଓ ମଧ୍ୟଯୁଗୀୟ (ମୁଖ୍ୟତଃ ପଞ୍ଚସଖା ଯୁଗ, ୧୬ଶ ଶତାବ୍ଦୀ) ସାହିତ୍ୟକୁ ଆମେ କାଳର ମୋହର ମାରି ଅପାଂକ୍ତେୟ ଭାବି ପ୍ରତ୍ୟାଖ୍ୟାନ କଲେ ତାହା ଆମର ଆଧୁନିକ ମାନସିକତାର ପରିଚୟ ବହନ କରିବ ନାହିଁ। ଊନବିଂଶ ଶତାବ୍ଦୀର ଶେଷପାଦ ଏବଂ ବିଂଶ ଶତାବ୍ଦୀର ପ୍ରଥମ ଦଶନ୍ଧିରୁ ଆମ ସାହିତ୍ୟରେ ପ୍ରାଚ୍ୟ ଓ ପାଶ୍ଚାତ୍ୟର ସଂସର୍ଗ ଜନିତ ସୃଷ୍ଟ ଆଧୁନିକତାକୁ ଆମେ ନୂତନତ୍ୱ ଭାବରେ ଗ୍ରହଣ କରିବାରେ ଅନିଚ୍ଛା ପ୍ରକାଶ କରିନାହୁଁ। ସେହି ସମୟରୁ ଆମ ସାହିତ୍ୟ ଆତ୍ମିକ ଓ ଆଙ୍ଗିକରେ ନୂଆ ଚେତନା, ନୂଆ ରଙ୍ଗ ଓ ଆଭରଣ ନେଇ ଆସିଛି। ତେଣୁ ରାଧାନାଥ, ମଧୁସୂଦନ ଓ ଫକୀରମୋହନ ଆଧୁନିକ ସାହିତ୍ୟର ସଫଳ ରୂପକାର ଭାବରେ ଆମ ସମ୍ମୁଖରେ ପରିଚିତ। ଊନବିଂଶ ଶତାବ୍ଦୀରେ ଯେତେବେଳେ ଆମର ନୂତନ ସାହିତ୍ୟିକ ରୁଚି ବିକାଶ ଲାଭ କରିସାରିଲାଣି ସେତେବେଳେ ଅନ୍ଧକବି ଭୀମଭୋଇ 'ସ୍ତୁତି ଚିନ୍ତାମଣି' ଭିତରେ ଅଲେଖ ଅଣାକାରଙ୍କୁ ସ୍ତୁତି କରିବସନ୍ତି। ଭୀମଭୋଇ ହୁଏତ ସମୟ ସହିତ ତାଳଦେଇ ପାରି ନାହାନ୍ତି ଭାଷା ଓ ଆଙ୍ଗିକରୁ। ଏହା ତାଙ୍କର ଦୋଷ ନୁହେଁ ବରଂ ସେଥିପାଇଁ ତାଙ୍କର ପରିବେଶ ହିଁ ଦାୟୀ। ଏହା ବୋଲି ଭୀମଭୋଇଙ୍କ ସାହିତ୍ୟ ଯେ ଆଧୁନିକତାଠାରୁ ବହୁ ଦୂରରେ ଏହା କହିବା ଧୃଷ୍ଟତା ମାତ୍ର। କବି ଶ୍ରୀ ରମାକାନ୍ତ ରଥଙ୍କ ଉକ୍ତିକୁ ଏଠାରେ ଉଲ୍ଲେଖ କଲେ ପ୍ରାସଙ୍ଗିକ ହେବ ବୋଲି ମନେ କରାଯାଏ- "ତାଙ୍କର ଭଲ ପାଇବା ଖୁବ୍ ପ୍ରଗାଢ଼, ଏତେ ପ୍ରଗାଢ଼ ଯେ ପରମେଶ୍ୱରଙ୍କ ପାଖରେ ପହଞ୍ଚିଗଲେ କାଳେ ତାଙ୍କର ସ୍ୱର ସେ ଭଲ ପାଉଥିବା ଲୋକଙ୍କୁ ଶୁଭିବେ ନାହିଁ - ଏହି ଆଶଙ୍କାରେ ସେ ଅଧାବାଟରେ ରହିଯାଇଛନ୍ତି। ସେ ଯେଉଁମାନଙ୍କୁ ଭଲ ପାଆନ୍ତି, ସେମାନେ ଅଭିଶପ୍ତ, ସେମାନଙ୍କର ପୂର୍ବଜନ୍ମର ସୁକୃତ ନାହିଁ କି ଇହ ଜନ୍ମରେ ଏପରି କିଛି ଆଚରଣ ନାହିଁ ଯାହା ଫଳରେ ସେମାନେ ନିସ୍ତାର ପାଇଯିବେ। ସେମାନେ ସମସ୍ତେ ବିଷୟାସକ୍ତ, ମାୟାମୋହଗ୍ରସ୍ତ, ନର୍କଗାମୀ; କିନ୍ତୁ ସେମାନଙ୍କର ପରିତ୍ରାଣ ନିଶ୍ଚିତ ହୋଇଥିଲେ ସେମାନଙ୍କୁ ଛାଡ଼ି ଚାଲି ଯାଇ ହୋଇଥାନ୍ତା, ସେମାନଙ୍କ ପାଇଁ ବ୍ୟାକୁଳ ହେବାର କିଛି କାରଣ ନ ଥାନ୍ତା। ଭୀମଭୋଇଙ୍କ କବିତାରେ ଅନ୍ୟମାନଙ୍କୁ ଡ଼ାକିବାର ସ୍ୱର ସବୁବେଳେ ଶୁଭେ। ସେ ସ୍ୱର ଖୁବ୍ ଅନ୍ତରଙ୍ଗ, ତାହା ଏକ ଉଚ୍ଚତର ପର୍ଯ୍ୟାୟରେ ଅଧିଷ୍ଠିତ ବୋଲି ଆତ୍ମ ସଚେତନ ବ୍ୟକ୍ତିର ସ୍ୱର ନୁହେଁ। ସେ ସ୍ୱର ନିଜେ ଅନ୍ୟମାନଙ୍କ ସହିତ ସଂଶ୍ଳିଷ୍ଟ ବୋଲି, ଗୋଟିଏ ଦୁର୍ଭାଗ୍ୟର-ସେ ଅନ୍ୟମାନଙ୍କ ସହିତ ଅଂଶୀଦାର ବୋଲି ବୁଝୁଥିବା ବ୍ୟକ୍ତିର ସ୍ୱର। ଯଦି ସର୍ବାନ୍ତଃକରଣରେ ପରିତ୍ରାଣ ପାଇଁ ଏକାଗ୍ର ବ୍ୟାକୁଳତା ଥାଆନ୍ତା, ଯଦି ଜ୍ଞାନ ଚକ୍ଷୁରେ ଯାହା ପରମ ସତ୍ୟ ବୋଲି ଦିଶେ ତା'ର ଉପଲବ୍ଧି ପୂର୍ଣ୍ଣାଙ୍ଗ ହୋଇଥାନ୍ତା, ସେ ସ୍ୱର ଶୁଭି ନ ଥାନ୍ତା। ତା' ହେଲେ ଐକାନ୍ତିକ ଆତ୍ମୋତ୍ସର୍ଗ ବା

ଲକ୍ଷ୍ୟ ସହିତ ଏକାକାର ହୋଇଯିବା ଫଳରେ ସବୁ ଉଚ୍ଚାରଣ ସ୍ତବ୍ଧ ହୋଇ ଯାଇଥାନ୍ତା ବା ଜୀବାତ୍ମାର ପରମାତ୍ମାଙ୍କ ପ୍ରତି ଆଉ କାହାକୁ ନ ଶୁଣୁଥିବା ଉଚ୍ଚାରଣ ହୋଇଥାନ୍ତା। x x x ଉଚ୍ଚାରଣ ସରିଗଲେ ମୋକ୍ଷ ମିଳନ୍ତା, କିନ୍ତୁ ତାହା ଥିବାଯାଏଁ କବିତା ଲେଖା ଚାଲିଥାଏ। କବିତା ସରିଲେ ହିଁ ନିଜର ପରିତ୍ରାଣ ଆରମ୍ଭ ହେବ, କିନ୍ତୁ ନିଜର ଉଚ୍ଚ ପାଇବାକୁ ଅତିକ୍ରମ ନ କରି ପାରିଥିବା ଯୋଗୁଁ ପରିତ୍ରାଣ ପାଇଁ ଦରକାର ଶେଷ ପଦକ୍ଷେପଟି କବି ନେଇପାରେ ନାହିଁ। ସେ ନିର୍ବୋଧ ଭାବେ ଯେ ସେ ଭଲ ପାଉଥିବା ଲୋକର ବାଷ୍ପାକୁଳ କଥା କେତେ ପଦର ତାତ୍ପର୍ଯ୍ୟ ଅଛି ଏବଂ ସେ ତାତ୍ପର୍ଯ୍ୟ ଅନୁଭବ କରିବା ପାଇଁ କିଛି ସମୟ ଦେବା ଦରକାର, ସେତିକି ସମୟ ଭିତରେ ନିଜ ଜୀବନ ଅତିକ୍ରାନ୍ତ ହୋଇଯାଉ ପଛକେ, ପରମେଶ୍ୱର ତାକୁ ଅଭିଶାପ ଦେଇ ଦେଇ ଅଧାବାଟରୁ ଫେରି ଯାଆନ୍ତୁ ପଛକେ।'' (୮)

କବିଙ୍କର ଭୀମଭୋଇଙ୍କୁ ଏକ ନୂତନ ଦୃଷ୍ଟିକୋଣରୁ ହୃଦୟଙ୍ଗମ କରିବା ପରିପ୍ରେକ୍ଷୀରେ ଏହି ସ୍ୱର ତାଙ୍କ ନିଜ କବିତାରେ କିପରି ରୂପାୟିତ ତାହା ଦ୍ରଷ୍ଟବ୍ୟ-

''ତମକୁ ଚାହିଁଲେ ତମେ
ମିଶିଯିବ ମୋ' ରକ୍ତ ଭିତରେ
ଆଉ କ'ଣ ଆଗପରି ବଇଁଶୀ ଖଣ୍ଡିଏ
ଧରି ଚାଲୁଥିବ ପ୍ରତିଦିନ ମୋ ପଛରେ ?
ଆଉ କ'ଣ ଲୁଚି ଲୁଚି ଚାହୁଁଥିବ ଯେବେ
ଓଦାଲୁଗା ପିନ୍ଧିଥିବି ଗାଧୋଇବା ପରେ ?
ନାଁ ମତେ ଭୁଲାଇଦେବ ମୋ' ରକ୍ତ ମାଂସର
ଶେଷ ପରିଣତି ତମ ବାଙ୍କ ଚାହାଣିରେ ?

x x x

ତେବେ କ'ଣ ଏଇ ଭଲ, ତମେ
ମୁଁ ମରିବାଯାଏଁ ମୋ'ର କିଛି ଦୂରେ ଥିବ,
ସବୁବେଳେ କହୁଥିବ ଛୁଅଁ ଛୁଅଁ ବୋଲି,
ଛୁଇଁବି କି ନ ଛୁଇଁବି ଭାବୁଭାବୁ ମୋର
ପ୍ରାଣବାୟୁ ଉଡ଼ିଯାଇଥିବ ?'' (୯)

ଆଧୁନିକ କବି ଟି.ଏସ୍. ଇଲିଅଟ୍ 'ଦି ୱେଷ୍ଟଲାଣ୍ଡ୍', ଦି ହଲୋମେନ', ''ପ୍ରୁଫ୍ରୋକ୍'' ଓ 'ଜେରନ୍‌ସନ୍' ଆଦି କବିତା ଭିତରେ ଜୀବନର ଖଣ୍ଡିତାଂଶକୁ ବ୍ୟଞ୍ଜିତ ଦୃଷ୍ଟିରେ ଦେଖିପାରିଲା ପରେ ୧୯୪୪ ମସିହା ବେଳକୁ ପ୍ରାଚ୍ୟ ଜୀବନଚର୍ଯ୍ୟାର ମନ୍ତ୍ରଧ୍ୱନି ଶୁଣି 'ଫୋର୍‌କ୍ୱାର୍ଟେଟ୍ସ୍'ରେ ଯେଉଁ ଉତ୍ତରିତ ଚେତନାର ଦିଗ୍‌ବଳୟ ଆବିଷ୍କାର କଲେ ତାହାହିଁ ତାଙ୍କୁ ଆଜି ସାଂପ୍ରତିକ ଜୀବନର ବିପୁଳ ଭାଷ୍ୟକାର ଓ ଆଧୁନିକ ସାହିତ୍ୟର କାଣ୍ଡାରୀ ଭାବରେ ପରିଚିତ କରାଇଛି। ଏହି ସ୍ୱର ସହିତ ସନ୍ଥକବି ଭୀମଭୋଇଙ୍କ ରଚିତ କବିତାର କେତୋଟି ପଦକୁ ମିଳାଇ ଦେଖିଲେ ଭୀମଭୋଇଙ୍କ ଚିନ୍ତା ଓ ଚେତନାକୁ ଆମେ କେଉଁ କାଳରେ ଅବସ୍ଥାପିତ କରିପାରିବା ଚିନ୍ତାଶୀଳ ପାଠକେ ତା'ର ବିଚାର କରିପାରିବେ। ଆପାତତଃ ଏ କବିତା ଏକ ଏକ ପ୍ରହେଳିକା (riddle) ପରି ମନେ ହେଉଥିଲେ ବି ଏହାର ମିଷ୍ଟିକ୍ ଆବେଦନ ଯୁଗ

ନିରପେକ୍ଷ ଭାବେ ଓଡ଼ିଆ କବିତାର ଦୈର୍ଘ୍ୟ ଓ ପ୍ରସ୍ଥକୁ କେତେକାଳ ଧରି ଯେ ଆବୋରି ବସିଛି ଏହା କ'ଣ ଅସ୍ୱୀକାର କରିହେବ ?

ଭୀମଭୋଇ:

କ) "ଗୋରା ନ ଦିଶନ୍ତି କାଳିଆ ନୁହନ୍ତି।" (ଭଜନ-୪୫)

ଖ) "କଣ୍ଠ ନାହିଁ ବଚନଟି କୋକିଳ
କର୍ଣ୍ଣ ନାହିଁ ଶୁଣୁଛନ୍ତି ସକଳ।" (ଭଜନ-୪୬)

ଗ) "ପାଦ ପାଣି ନାହିଁ ତାଙ୍କ ପାଦପାଣି ଅଛି
x x x
"ଆଣ୍ଠୁନଳୀ ନାହିଁ ତାଙ୍କ ଅଛି ଆଣ୍ଠୁନଳ
x x x
"ବେନି ଜାନୁ ଅଛି ତାଙ୍କ ନାହିଁ ବେଳି ଜାନୁ
x x x
"ଅଙ୍ଗରୂମ ନାହିଁ ତାଙ୍କ ଅଙ୍ଗରୂମ ଅଛି...."
(ବ୍ରହ୍ମନିରୂପଣ ଗୀତା- ୫ ମ ଅଧାୟ)

ଘ) "ନିଃଶବ୍ଦ ସେ ଭୁବନ ଘୁଘୁ ନାଦ ଗର୍ଜନ
ଅଗାଧ ସାଗର ନାହିଁ ତହିଁ ନୀର।" (ଭଜନ ୫୮)

ଟି.ଏସ.ଇଲିଅଟ:

"At the still point of the turning world.
Neither flesh nor fleshless;
Neither from nor towards; at the still point,
there the dance is,
But neither arrest nor movement, And do not
call it finity,
Where past and future are gathered. Neither
movement from nor towards,
Neither ascent nor decline.Except for the
point, the still point,
There would be no dance, and there is
only the dance...."(୧୦)

ଏହା ସହିତ ଆଜିର କବି ରମାକାନ୍ତଙ୍କ ଏକ ମିଷ୍ଟିକ୍ କବିତାର କେତେ ପଂକ୍ତି ତୁଳନାତ୍ମକ ଭାବେ ବିଚାରକୁ ନିଆଯାଇ ପାରେ।

"x x ମୁଁ ଯାହା ତାହା ନୁହେଁ। ଏହା ବି ସମ୍ଭବ
ଦିକ୍‌ଦାର ହେବାସତ୍ତ୍ୱେ ମୁଁ ଆଦୌ ଦିକ୍‌ଦାର ନୁହେଁ,
ଲକ୍ଷ ଲକ୍ଷ ଦୁଃଖ ମୋର ପିଛା ଧରିଛନ୍ତି, କିନ୍ତୁ ମୋର
ପିଛା କେହି ଧରି ନାହିଁ ଯେହେତୁ ମୋ' ଦୁଃଖ ମୋର ନୁହେଁ।"(୧୧)

ତେଣୁ ଆଙ୍ଗିକ ପରିପାଟୀକୁ ବାଦଦେଲେ ଯାହା ଚିରନ୍ତନ ମୂଲ୍ୟାଶ୍ରିତ ଏବଂ ଯାହା ଜୀବନର ବ୍ୟାପକ ଓ ବିସ୍ତୀର୍ଣ୍ଣ ଦିଗକୁ ଉନ୍ମୋଚିତ କରିଥାଏ ତାହା ପୁରାତନ ନୁହେଁ କି ସାଂପ୍ରତିକ

ନୁହେଁ; ତାହା ନିତ୍ୟ ନୂତନ ଏବଂ ଚିର ପୁରାତନ ବା କାଳୋତ୍ତୀର୍ଣ୍ଣ।

ରାଧାନାଥଙ୍କ ଠାରୁ ସଚ୍ଚି ରାଉତରାୟ ଏବଂ ସୀତାକାନ୍ତ ଓ ରମାକାନ୍ତଙ୍କୁ ଆମେ ଆଧୁନିକ କବି ଭାବରେ ଗ୍ରହଣ କରି ଆସିଛୁ। ଏହା ଭିତରେ ସମୟ ବ୍ୟବଧାନ ଯଥେଷ୍ଟ ରହୁଛି। ତଥାପି ରାଧାନାଥଙ୍କୁ ପ୍ରାଚୀନତାର ପାଖରେ ବାନ୍ଧି ଦିଆଯାଇ ନପାରେ। 'ମହାଯାତ୍ରା' ଭିତରେ ଜୀବନର ଯେଉଁ ନବ ମୂଲ୍ୟାୟନ ତାହା ନିର୍ଦ୍ଦିଷ୍ଟ ସମୟ ପାଇଁ ନୁହେଁ, ଆଗାମୀ ଶତାବ୍ଦୀ ପାଇଁ ମଧ୍ୟ ନୂତନତ୍ତ୍ୱର ପରିଘୋଷକ ଭାବରେ ବିଦିତ ରହିବ। ଏକ ଦୁରାରୋଗ୍ୟ ବ୍ୟାଧିଗ୍ରସ୍ତ ସମାଜ ପାଇଁ ପାରଂପାରିକତାର ପୃଷ୍ଠଭୂମିରେ କଳାକାର ବା ସାହିତ୍ୟକୁ କଳା ଦିଗରୁ ଏକ ନୂତନ ଓ ମହାନ୍ ଦାୟିତ୍ୱ ତୁଲେଇବାକୁ ପଡ଼େ। କବି ସମାଲୋଚକ ଷ୍ଟିଫେନ୍ ସେଣ୍ଡର ସାଂପ୍ରତିକ (Contemporary) ଓ ଆଧୁନିକ (Modern) ସମ୍ପର୍କରେ ଏକ ସୁଚିନ୍ତିତ ମତ ପୋଷଣ କରିଛନ୍ତି- "Shaw, Wells and Benett thought of themselves as prophets of a materialist society. The way in which the kind of life they describe in their works is uptodate, is the way in which Harrods is enterprising. Wells and Benett indeed go out of their way as we have seen to insist that they have described just such a 'living organism' and 'sociological portent' in novels which were by no means social satire. x x x But the 'moderns', Joyce, Lawrence, Eliot, Woolf, would as literary artists, feel an entirely different kind of responsibility. They would feel responsible to a past which had been degraded by commerce, a part of reader values betrayed by advesting. They would feel that their responsibility towards themselves was as artists, and not as money makers producing a consumers' product."(୧୨) ଆଧୁନିକ ସାହିତ୍ୟ ଓ କଳାରେ ଯେତେ ବାଦ (Isms) ସୃଷ୍ଟି ହୋଇଛି ତାହା ଅତୀତ ଓ ବର୍ତ୍ତମାନର ସଂଘର୍ଷ-ସଂଜାତ। ଅତୀତରେ କଳା ଓ ସାହିତ୍ୟ କ'ଣ ଥିଲା ଏବଂ ବର୍ତ୍ତମାନ ସୁଦ୍ଧା ତା'ର ଗତି ଓ ପ୍ରକୃତି କି ଆକାର ଧାରଣ କରିଛି ସେହି ଭାବକୁ ପ୍ରକାଶ କରିବାର ଏହା ହିଁ ହେଉଛି କୌଶଳ। ତେଣୁ କୌଣସି ବାଦକୁ ସାଂପ୍ରତିକତାର ମାନଦଣ୍ଡରେ ମପାଯାଇ ନ ପାରେ।

## ଚେତନାରେ ରୂପାନ୍ତର : କାହିଁକି ?
## ବିଶ୍ୱ ଯୁଦ୍ଧୋତ୍ତର ସମାଜ :
## ରୂପରେଖ ଓ ମାନସିକ ସ୍ଥିତି

ବିଶ୍ୱ ଚିନ୍ତା ଓ ଚେତନା ଜଗତରେ ମୁଖ୍ୟତଃ ଦୁଇଦୁଇଟା ବିଶ୍ୱଯୁଦ୍ଧର ଭୟାବହ ପରିଣତି ରୂପାନ୍ତର ଆଣିଛି। ପ୍ରଥମ ବିଶ୍ୱଯୁଦ୍ଧ (୧୯୧୪-୧୮) ପାଇଁ ଇଉରୋପ ହିଁ ହୋଇ ଉଠିଥିଲା କେନ୍ଦ୍ରବିନ୍ଦୁ। ବିଂଶ ଶତାବ୍ଦୀର ପ୍ରଥମ ପାଦରେ ମଣିଷ ଛିଡ଼ା ହୋଇ ହୁଏତ ଅନେକ ସ୍ୱପ୍ନ ଦେଖୁଥିଲା। ଗଣହତ୍ୟା, ମହାମାରୀ, ଦୁର୍ଭିକ୍ଷ, ଅନାହାର ଜନିତ ଅପମୃତ୍ୟୁର ଆଉ ଏ ମଣିଷ ଶିକାର ହେବ ନାହିଁ। ଏକ ସୁସ୍ଥ ସୁନ୍ଦର ସାମାଜିକ

ଜୀବନ ପାଇଁ ଗଣ ଉଦ୍ୟମ ଓ ଗଣମତ ପ୍ରକାଶ ପାଇଥିଲା। କିନ୍ତୁ ହଠାତ୍ ସେହି ସ୍ୱପ୍ନ ଭାଙ୍ଗିଗଲା ୧୯୧୪ ମସିହା ବେଳକୁ। ଅସ୍ଥିର ରାଜନୈତିକ ପରିବେଶ ଭିତରେ ସମଗ୍ର ବିଶ୍ୱ ଝାମ୍ପ ଦିଏ ଯୁଦ୍ଧକ୍ଷେତ୍ରକୁ। ଏବଂ ଏହି ସମୟ ଭିତରେ ମଣିଷ ଯେତେ ଦୁଃଖ, ନିର୍ଯ୍ୟାତନା, ପୀଡ଼ା ଓ ହତାଶା ଭିତରେ ଗତି କରିଛି; ବୋଧହୁଏ ମାନବ ସମାଜ ପୂର୍ବରୁ କେବେ ଏ ପ୍ରକାର ପରିସ୍ଥିତିର ଅନୁଭୂତି ଲାଭ କରିପାରି ନ ଥିଲା (୧୩)। ଯୁକ୍ତରାଷ୍ଟ୍ର ଆମେରିକାର ଅଗଣିତ ସୈନ୍ୟ ଓ ନାବିକଙ୍କର ଅକାଳ ମୃତ୍ୟୁ ଘଟିଲା। କ୍ରମଶଃ ଅର୍ଥନୈତିକ ଜୀବନରେ ବିରାଟ ପରିବର୍ତ୍ତନ ଆସିଲା। ସାଧାରଣ ଋଣ, ଖର୍ଚ୍ଚ ଓ କରବୋଝ ବଢ଼ିବାକୁ ଲାଗିଲା। ସରକାରୀ କଳର ବୃଦ୍ଧି ସହିତ ପ୍ରଶାସନିକ ଅମଲା ଓ କିରାଣୀମାନଙ୍କ ସଂଖ୍ୟା ମଧ୍ୟ ତଦନୁରୂପ ବୃଦ୍ଧି ହେଲା। ବିଜ୍ଞାନ ଓ ବୈଷୟିକ, ରାଜନୀତି ଓ ଶିଳ୍ପ, କୂଟନୀତି ଓ ବୈଦେଶିକ ନୀତି ଏବଂ ସମାଜ ମଙ୍ଗଳ ଓ ଶିକ୍ଷା ଭିତରେ ଯୁଦ୍ଧୋତ୍ତର ସମାଜ ଓ ଏହା ପୂର୍ବବର୍ତ୍ତୀ ସାମାଜିକ ଜୀବନ ଭିତରେ ବହୁ ବିରୋଧାଭାସ ଦେଖାଦେଲା।

ପ୍ରଥମ ବିଶ୍ୱଯୁଦ୍ଧ ପରେ ପରେ କୃତ୍ରିମ ମୁଦ୍ରାସ୍ଫୀତି (inflation) ସହିତ ଅର୍ଥନୈତିକ ଅସ୍ଥିରତା ଭିତରେ ସାଧାରଣ ଜୀବନଯାତ୍ରା ବ୍ୟାହତ ହେବାକୁ ଲାଗିଲା ଏବଂ ଦ୍ୱିତୀୟ ବିଶ୍ୱଯୁଦ୍ଧର (୧୯୩୯-୪୫) ହୁଙ୍କାର ଭିତରେ ତାହା ଆହୁରି ବିପର୍ଯ୍ୟସ୍ତ ହେଲା। ୧୯୧୮ ରୁ ୧୯୪୫ ଭିତରେ ବିଶ୍ୱମାନବର ଯେଉଁ ଆଶା ଓ ହତାଶା ଭରା ଜୀବନ ଗଢ଼ି ଚାଲିଥିଲା, ତାହାକୁ ଜଣୈକ ପାଶ୍ଚାତ୍ୟ ସମାଲୋଚକଙ୍କ ଭାଷାରେ କହିଲେ ଅପ୍ରାସଙ୍ଗିକ ବୋଧ ହେବ ନାହିଁ। "History reflects the age in which it is written. It should not surprise us therefore that the years from 1918-1945 produced a mixed crop. Hope and despair were both overwhelmingly present. The hope sprang from the triumph of liberal democracy in the Great War and from the building of a new world in Russia as Soviet Communism, heir to the high-flown aspirations aroused by the victory of 'freedom over tyranny' established itself amidst the ruins of the Tsarist empire. But hope was soon betrayed. Out of plenty came the depression, out of Soviet communism came a tyranny atleast as terrible as any which had preceeded it; out of Germany and Italy came another totalitarianism, that of the Right Liberal- democracy, with its values of tolerance and understanding, seemed to be played out. Culture and Civilization themselves were threatened. In such circumstances, history lost confidence in itself."(୧୪)

ଏଇ ପ୍ରକାର ସାମାଜିକ ଝଡ଼ଝଞ୍ଜା ଭିତରେ ବିଂଶ ଶତାବ୍ଦୀର ମଣିଷ କ୍ରମଶଃ ଈଶ୍ୱର ବା ବିଜ୍ଞାନ ଉପରୁ ଆସ୍ଥା ହରାଇ ବସିଲା। ଯେଉଁ ବିଜ୍ଞାନ ଓ ବୈଷୟିକ ବିଦ୍ୟାର ସଫଳତାର ଉତ୍ତୁଙ୍ଗ ଶିଖରରେ ଛିଡ଼ାହୋଇ ସେ ନିଜକୁ ସଭ୍ୟ ଶିକ୍ଷିତ ବୋଲି ମନେକରି ମହାନଗରୀର ଯାନ୍ତ୍ରିକ ଜୀବ ଭାବରେ ଦର୍ପିତ ଦୃଷ୍ଟି ପିନ୍ଧୁଥିଲା, ନିମିଷକ ଭିତରେ ତାହା ଭାଙ୍ଗିରୁଜି ଧୂଳିସାତ୍ ହୋଇଗଲା। ହୀରୋସୀମା ଓ ନାଗାସାକୀର ଭଗ୍ନସ୍ତୁପ ଉପରେ ସେ ଖାଲି ଧୂସର ଆକାଶ ଭିତରେ ନିଃସଙ୍ଗ ମଣିଷର ଦୀର୍ଘ ନିଃଶ୍ୱାସକୁ ବାରିପାରୁଛି। ସେଠି ଟୋପେ ଜଳ ନାହିଁ। ଟିକେ ସ୍ୱଚ୍ଛ ଚନ୍ଦ୍ରିକା ନାହିଁ, ବରଂ ଖାଲି ବିଷାକ୍ତ ଧୂମକୁଣ୍ଡଳୀ।

ତା'ପରେ କବି ଅନୁଭବ କରେ- "London Bridge is falling down, falling down." ତେଣୁ ଶିଳ୍ପ ବିପ୍ଳବର ଯେଉଁ ଶୁଭଙ୍କରୀ ସମ୍ଭାବନା ଥିଲା, ତାହା କ୍ରମଶଃ ବିଷ ବୃକ୍ଷରେ ରୂପାନ୍ତରିତ ହୋଇଗଲା। ଯନ୍ତ୍ର ସଭ୍ୟତାର ଆବହାଓ୍ବା ଭିତରେ ମଣିଷ ତା'ର ସୃଜନଶୀଳତା ଓ ସୂକ୍ଷ୍ମ ଆଧାତ୍ମିକ ଚେତନାକୁ ଚିମ୍‌ନିର ଧୂଆଁ ଭିତରେ ହିଁ ଉଡେଇ ଦେଲା। ସେ ଖାଲି ଯନ୍ତ୍ରପାତି (machinery) ଭିତରେ ଯନ୍ତ୍ରାଂଶଟିଏ ପାଲଟି ଗଲା। (୧୫)

ସିଗ୍‌ମଣ୍ଡ ଫ୍ରଏଡ଼ (Sigmund Freud-1856-1939)ଙ୍କ ମନସ୍ତାତ୍ତ୍ୱିକ ତତ୍ତ୍ୱ ସାଧାରଣ ମଣିଷ ଜୀବନର ଚଳନ୍ତି ପ୍ରବାହ ଭିତରେ ନିଜକୁ ଓ ସମାଜକୁ ବୁଝିବାର ଧାରାରେ ଅନେକ ମାନସିକ ପରିବର୍ତ୍ତନ ଆଣିଲା। ତାଙ୍କର "Civilization and Its Discontents' (1930) ପୁସ୍ତକଟି ମଣିଷ ମନର ଅନ୍ଧାରକୁ ଆଲୋଡ଼ିତ କରିଥିଲା। ତାଙ୍କ ମତରେ, "Man is a biological phenomenon, a prey to instinctual desires....." (୧୬) ମଣିଷର ଏଇ ଜୈବିକ ପ୍ରବୃତ୍ତିଗତ ବାସନାକୁ କୌଣସି ସମାଜ ଓ ସଭ୍ୟତା କେବେହେଲେ ପରିପୂର୍ଣ୍ଣ କରିବାକୁ ସମର୍ଥ ହୋଇ ପାରିବ ନାହିଁ ଏବଂ ତାର ପ୍ରକୃତି ଓ ପ୍ରବୃତ୍ତିକୁ ମଧ ପ୍ରକାଶ କରିବାକୁ ଅକ୍ଷମ ହେବ। କହିବାକୁ ଗଲେ ମାନବ ଏକ ଉଭୟଚର (amphibious) ପ୍ରାଣୀ। ଅର୍ଥାତ୍ ଇଦ୍ (Id) ଓ ସୁପରଇଗୋ (Super-ego) ଭିତରେ ତା'ର କ୍ରିୟା କଳାପ ମାନସିକ ସ୍ତରରେ ହିଁ ଆବଦ୍ଧ। ଇଦ୍ ସ୍ତରରେ ମଣିଷର ପାଶବିକ ପ୍ରବୃତ୍ତି ହିଁ ବଳବତ୍ତର ରହେ। ଅବଚେତନ ସ୍ତରରେ ସଂଗୁପ୍ତ ଯୌନାବେଗ ଅବଦମିତ ହୋଇ ନ ପାରିଲେ ମଣିଷ ପଶୁ ସୁଲଭ ଆଚରଣରେ ଲିପ୍ତ ରହେ। ଆପଣା ସୁଖ ସ୍ୱାଚ୍ଛନ୍ଦ୍ୟ ଓ ଇନ୍ଦ୍ରିୟ ପରଗତ ଭୋଗ ଲାଳସା ଭିତରେ ନିଜକୁ ଆହୁରି ମଜେଇ ଦିଏ। ଏଇ ଅବସ୍ଥାରେ ସେ ଯନ୍ତ୍ରଣାକ୍ତ ଅନୁଭୂତିଠାରୁ ଦୂରେଇ ରହେ। କିନ୍ତୁ ଏ ପ୍ରକାର ସୁଖଦ ଓ ଯନ୍ତ୍ରଣାହୀନ ଜୀବନ ଯାପନ ପ୍ରଣାଳୀକୁ ବ୍ୟକ୍ତି ସମାଜର ଗଣ୍ଡି ଭିତରେ ଥାଇ ଉପଭୋଗ କରିବା ଅସମ୍ଭବ ଯେହେତୁ ସମାଜ ସେହି ମନୋଭାବାପନ୍ନ ବ୍ୟକ୍ତିମାନଙ୍କର ମଧ ଏକ ସମବାୟ। ସେଥିପାଇଁ ସୁପରଇଗୋ ଅବସ୍ଥାରେ ତାକୁ ସାମାଜିକ ପୃଥିବୀକୁ ହିଁ ସମ୍ମୁଖୀନ ହେବାକୁ ପଡ଼ିଥାଏ, ଯାହା ରୂକ୍ଷ ବାସ୍ତବତା। ଇନ୍ଦ୍ରିୟଗତ ସୁଖ ଲାଳସାର ବାସ୍ତବୀକରଣ ସାମାଜିକ ଜୀବନ ପାଇଁ ଅତୀବ କ୍ଷୟକାରୀ। ଏଇ ଇଦ୍ ପ୍ରବୃତ୍ତିର ଉତ୍ତରଣ (sublimation) କିମ୍ବା ଅବଦମନ (repression) ନହେବା ପର୍ଯ୍ୟନ୍ତ ମାନସିକ ପ୍ରକ୍ରିୟାର ଅଭିବୃଦ୍ଧି ଘଟିପାରିବ ନାହିଁ ଏବଂ ଯଦ୍ୱାରା ସଭ୍ୟତା ଓ ସଂସ୍କୃତିର ବିକାଶ ଅସମ୍ଭବ ହୋଇ ପଡ଼ିବ। ଫ୍ରଏଡ୍‌ଙ୍କ ମତରେ ଏହି ବିକୃତ ଯୌନଲାଳସା ଓ ଇନ୍ଦ୍ରିୟ ସୁଖର ଅବଦମନ ମାନସିକ ରୋଗ (Neurosis) ଜାତ କରାଏ। ସଭ୍ୟ ସମାଜ ଭିତରେ ମଣିଷର ଯୌନ ଜୀବନ ମାପଚୁପ ଭିତରେ ଚାଲେ। କେବଳ ସାଧାରଣ ଯୌନାବେଗ (heterosexual genital love) ହିଁ ଅବଦମନରୁ ବଞ୍ଚିତ କାରଣ ଏହା ଏକ ସୁସ୍ଥ ସଭ୍ୟ ନୈତିକ ସମାଜ ଗଠନ ପାଇଁ ସହାୟକ। କେତେକ ସମାଲୋଚକଙ୍କ ମତରେ ଏହା ଏକ ସ୍ଥାନିକ (endemic) ପ୍ରକ୍ରିୟା ଏବଂ ଏଇ କ୍ଷେତ୍ରରେ ଫ୍ରଏଡ୍‌ଙ୍କୁ ଅତୀବ ରକ୍ଷଣଶୀଳ ଭାବରେ ଗ୍ରହଣ କରନ୍ତି। ପ୍ରତି ମୁହୂର୍ତ୍ତରେ ବ୍ୟକ୍ତି ଓ ଗଣ, ଏବଂ ସମାଜ ଓ ବ୍ୟକ୍ତି ଭିତରେ ସଂଘର୍ଷ ଲାଗି ରହିଛି; କାରଣ ସମାଜ ନିଜର ସ୍ଥିତି ପାଇଁ ଅବଦମନ କ୍ରିୟାକୁ ପସନ୍ଦ କରେ। ତେଣୁ ଏହି ଦ୍ୱନ୍ଦ୍ୱାତ୍ମକ ପରିବେଶ ଭିତରୁ ସାମାଜିକ ଅସୁବିଧାକୁ ଏଡ଼େଇବାକୁ ହେଲେ ସମାଜରେ ବିପ୍ଳବର ଆବଶ୍ୟକତା ନାହିଁ, ବରଂ ଏକ ମାନସିକ ଚିକିତ୍ସା (Psycho-therapy)

ମାଧ୍ୟମରେ ବ୍ୟକ୍ତିକୁ ତାର ସାମାଜିକ ବାସ୍ତବତା ସହିତ ଯେ କୌଣସି ଉପାୟରେ ନିଜକୁ ଖାପ ଖୁଆଇ ଚଳେଇ ନେବାକୁ ହେବ। ମୌଳିକଭାବେ ଦେଖିବାକୁ ଗଲେ ମଣିଷ ସମାଜଠାରୁ ଆନ୍ତରୀଣ (alienated) । ତେଣୁ ସବୁରି ଭିତରେ ଏକ ସୁସ୍ଥ ସାମାଜିକ ଜୀବନ ଯାପନ କରିବାକୁ ହେଲେ ବ୍ୟକ୍ତିଗତ ବାସନା ଓ ସାମାଜିକ ପ୍ରତିରୋଧ ଭିତରେ ଭାରସାମ୍ୟ ରକ୍ଷା କରିବାକୁ ପଡ଼ିବ (୧୭)। ଫ୍ରଏଡ଼୍‌ଙ୍କ ଯୌନତତ୍ତ୍ୱ (libido) ସହିତ ପିତା-କନ୍ୟା ଓ ମାତା-ପୁତ୍ରର ଅବଚେତନ ସ୍ତରରେ ଯୌନ ଆକର୍ଷଣ (Electra & Oedipus Complex) ପ୍ରକ୍ରିୟା, ସ୍ୱପ୍ନ ବିଶ୍ଳେଷଣ (Dream-analysis) ଆଦି ମଣିଷର ଚଳନ୍ତି ବିଶ୍ୱାସ ଓ ଚେତନା ଉପରେ ଗଭୀର ରେଖାପାତ କଲା (୧୮)।

ଏହି ସମୟରେ ସମଗ୍ର ଜଗତକୁ ଦୁଇଟି ଚେତନା - ଫ୍ରଏଡ଼୍‌ତତ୍ତ୍ୱ ଓ ମାର୍କସବାଦ ଭାବନା ଭିତରେ ଆଚ୍ଛନ୍ନ କରିଦେଇଥିଲା, ଯାହାକୁ କବି ରାଧାମୋହନ ଗଡ଼ନାୟକ 'ଦୁଇଟି ଡାହାର ଡ଼େଣା' ଭାବରେ ପରିକଳ୍ପନା କରିଛନ୍ତି। କାର୍ଲ ମାର୍କସ୍‌ଙ୍କ (1818-1883) ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦ (Dialectical materialism) ପ୍ରତ୍ୟେକ ଘଟଣାକୁ ବସ୍ତୁକୈନ୍ଦ୍ରିକ ଭାବରେ ଦେଖେ। ଏକ ଶ୍ରେଣୀହୀନ ସମାଜ ଗଠନର ଆଭିମୁଖ୍ୟ ନେଇ ବୁର୍ଜୁଆ ଗୋଷ୍ଠୀ ବିରୁଦ୍ଧରେ ସଂଗ୍ରାମ ଓ ବିଶ୍ୱ ଅର୍ଥନୀତିରେ ପରିବର୍ତ୍ତନର ସ୍ୱର ଶୁଣାଏ ଏହି ମାର୍କସ୍‌ବାଦ। ଉନବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧ ଓ ବିଂଶ ଶତାବ୍ଦୀର ପାରମ୍ଭ କାଳରେ ତିନୋଟି ଚିନ୍ତାନାୟକଙ୍କର ତିନୋଟି ପୁସ୍ତକ, ଯଥା- ଚାର୍ଲସ୍ ରବର୍ଟ ଡ଼ାରଉଇନ୍ (1809-1882)ଙ୍କ 'ବିବର୍ତ୍ତନ ବାଦ' (Theory of Evolution) ବା "The Law of Natural Selections" ସଂବଳିତ "The Origin of Species" (1859), କାର୍ଲ ମାର୍କସ୍‌ଙ୍କ "Das Capital" (1867) ଓ ଫ୍ରଏଡ୍‌ଙ୍କ "Civilization and Its Discontents" (1930) ଆମର ଗଡ଼ଡ଼ାଳିକା ପ୍ରବାହର ବିଶ୍ୱାସ ଓ ଚଳଣିକୁ ବଦଳାଇ ଦେବାରେ ସମର୍ଥ ହୋଇ ପାରିଲା। ଏହା ପରେ ଚାଲିଲା ବିଭିନ୍ନ ବାଦ (Isms)ର ସଂଘର୍ଷ। ନବନବ ବୈଜ୍ଞାନିକ ଉଦ୍ଭାବନ ଓ ଆବିଷ୍କାର ଫଳରେ ବସ୍ତୁ-ତାନ୍ତ୍ରିକ ଜୀବନ ହୋଇ ଉଠିଲା ସ୍ଫୀତ-ପୀନବ-- ବେଶ୍ ଆକର୍ଷଣୀୟ। ବିଶ୍ୱ ଯୁଦ୍ଧ ପରେ ପରେ ଏ ସମସ୍ତ ଦିଗରୁ ମୋହ ତୁଟିଗଲା ଉଭାରେ ପାଶ୍ଚାତ୍ୟ ଦେଶରେ ଆସିଲା ଏକ ଅତୀବ ଦୁରୁହ ଅସହାୟତା। ଏହି ଅସହାୟତା ଭିତରେ ନିଃସଙ୍ଗ ମଣିଷ କ୍ରମଶଃ ଆଉ କିଛି ଚାହିଁଲା। ତଥାକଥିତ ଫମ୍ପା ଆଭିଜାତ୍ୟ ଓ ପରମ୍ପରା ପ୍ରତି ସେ ହୋଇଉଠିଲା ବିମୁଖ। ହିଂସା, ବିଦ୍ୱେଷ, ପରଶ୍ରୀକାତରତା ଓ ଅବିଶ୍ୱାସ ଭିତରେ ଗଣଜୀବନ କ୍ରମଶଃ ବିପର୍ଯ୍ୟସ୍ତ ହେଲା ଏବଂ ବ୍ୟକ୍ତି ଗଣଠାରୁ ଦୂରେଇ ଆସି ଏକକ ବିଶ୍ୱ ସୃଷ୍ଟି କଲା। ବିଶ୍ୱବ୍ୟକ୍ତି ଠାରୁ ଦୂରେଇ ଆସିଲା ପରେ ପରେ ମଣିଷ ବ୍ୟକ୍ତି-ବିଶ୍ୱ ଭିତରେ ମଧ୍ୟ ଆପଣା ପ୍ରତି ଆପେ ଆପେ ଏକ ପ୍ରଶ୍ନବାଚୀ ହୋଇ ଉଠିଲା। ଅସୀମ ଆଧ୍ୟାତ୍ମିକ ନିଃସଙ୍ଗତା (spiritual alienation) ଭିତରେ ବ୍ୟକ୍ତିସତ୍ତାଟି ଖୋଜି ଚାଲିଛି ନିଜର ମୂଳ।

ତେଣୁ ସାରା ଜଗତର ଚିନ୍ତା ଚେତନା ଭିତରେ ଯେତେବେଳେ ଏପରି ଏକ ଓଲଟ ପାଲଟ ଜୀବନଧାରା ଗଡ଼ି ଚାଲିଛି ସେତେବେଳେ ତାହା ସାହିତ୍ୟକୁ ବା କିପରି ସଞ୍ଚରି ନ ଯିବ? ଜୀବନ ଓ ସାହିତ୍ୟ ଭିତରେ ଦୂରତ୍ୱ କେଉଁଠି? ପାଶ୍ଚାତ୍ୟରେ ଏପରି ଏକ ପୋଡ଼ାଭୂଇଁ ସୃଷ୍ଟି ହୋଇଗଲା ପରେ ତାହା କ୍ରମଶଃ ବିଶ୍ୱର ସକଳ ସ୍ତରକୁ ପ୍ରସରି

ଗଲା କାରଣ ସାରା ପୃଥିବୀ ତ ଆଜି ଗୋଟାଏ ପରିବାର। ଏଇ ବିଂଶ ଶତାବ୍ଦୀ ଏପରି ଏକ ଜୀବନ୍ମୃତ ଅବସ୍ଥାରେ ପହଞ୍ଚିଛି ଯେ, ଯେ କୌଣସି ସଚେତନ ଆଧୁନିକ ବ୍ୟକ୍ତି ଏଥିରୁ କ୍ଷାନ୍ତ ପାଇପାରିବ ନାହିଁ। ପ୍ରକୃତି (Nature) ଭିତରକୁ ପ୍ରବେଶ କଲେ ବି ସେ ପ୍ରକୃତିର ମନୋମୁଗ୍ଧକର ପରିବେଶ ଭିତରେ ୱାର୍ଡ୍‌ସ୍‌ୱାର୍ଥଙ୍କ ପରି ବିମୁଗ୍ଧ ହୁଏନା ବରଂ ସେଠି ସେ ଘନ ଅନ୍ଧକାର, ଧ୍ୱଂସ ଓ ପାଶବିକ ପ୍ରବୃତ୍ତିକୁ ଭେଟିପାରେ।

ଆଜିର ପ୍ରତିଦ୍ୱନ୍ଦ୍ୱିତାମୂଳକ ଜୀବନ ଏପରି ଅଥୟ ଓ ଯାନ୍ତ୍ରିକ ହୋଇ ପଡ଼ିଛି ଯେ ତାହା ସାଧାରଣ ଜୀବନ ଯାତ୍ରା ଠାରୁ ବାରି ହୋଇ ପଡ଼େ। ଏଇ ଶତାବ୍ଦୀର ଜୀବନଧାରାକୁ ଆଧୁନିକ ଭାରତୀୟ କଥାକାର ଶ୍ରୀ ଆର୍‌.କେ. ନାରାୟଣଙ୍କ ଭାଷାରେ ଚିହ୍ନେଇ ପାରିଲେ ଅସଂଗତି ବୋଧ ହେବ ନାହିଁ। "All that we are able to gather is that of a man's longevity was twenty seven years, he spent a total of twenty years standing in various queues, at bus stands, railway stations, ration depots, cloth shops, cinema houses, and every kind of public place.....It must be admitted that the queue is a necessity, but a cruel necessity. It is a sign of an abnormal, confused, and congested existence." (୧୯)

ଏଇ ସାଂପ୍ରତିକ ଜୀବନର ବାତାବରଣକୁ ନେଇ ଆଜିର ସାହିତ୍ୟର ଗତି ଓ ପ୍ରକୃତିବିଭାବ ଓ ବିଭବ। ସାଂପ୍ରତିକ ଜୀବନ ଜିଜ୍ଞାସା ଭିତରେ ଛିନ୍ନମୂଳ ମନୁଷ୍ୟ ତା'ର ମୂଳ ଖୋଜୁଛି। ଆତ୍ମ ଅନ୍ୱେଷ ଭିତରେ ବାରମ୍ବାର ଆପଣାକୁ ଓ ଜଗତକୁ ନିରେଖି ବସୁଛି ଏବଂ ସକଳ ପାର୍ଥିବ ପ୍ରାବଲ୍ୟ ଭିତରେ ଅଣନିଃଶ୍ୱାସ ହୋଇ ପଡୁଥିବା ବ୍ୟକ୍ତି ସତ୍ତାଟି କେଉଁ ଏକ ଅଦୃଶ୍ୟ ଭୂମା ସତ୍ତା ପାଇଁ ନିଷ୍ଫଳ ଦୁଇହସ୍ତ ଉତ୍ତୋଳନ କରି ଚାହିଁ ରହୁଛି ଅସୀମ ଶୂନ୍ୟକୁ।

**ପାଦଟୀକା:**

୧. Burnt Norton- Four Quartets- T.S. Eliot, O.U.P- P-13.

୨. "Moderns and Contemporaries"-The Struggle of the modern- Stephen Spender- University paper backs (1965)- P-78.

୩. ତତ୍ରୈବ- P-72

୪. ରକ୍ତନଦୀ ସନ୍ତରଣ ପରେ-ଅଷ୍ଟପଦୀ- ସୀତାକାନ୍ତ ମହାପାତ୍ର- ଗ୍ରନ୍ଥମନ୍ଦିର- (୧୯୬୭)- ପୃଷ୍ଠା-୧୦୧.

୫. ତତ୍ରୈବ- ପୃ-୯୯.

୬. ମୁଖଶାଳା ଲିପି-ଦୀପ୍ତି ଓ ଦ୍ୟୁତି-ସୀତାକାନ୍ତ ମହାପାତ୍ର-ଗ୍ରନ୍ଥମନ୍ଦିର

୭. ପରବର୍ତ୍ତୀ ଅଧ୍ୟାୟରେ ଏହାର ଆଲୋଚନା କରାଯାଇଛି।

୮. ଭୀମଭୋଇଙ୍କ ଦୃଷ୍ଟାନ୍ତ- ଶ୍ରୀ ରମାକାନ୍ତ ରଥ- ଝଙ୍କାର ବିଷୁବ ସଂଖ୍ୟା ୧୯୮୨- ପୃ ୩୦-୩୧

୯. ଶ୍ରୀରାଧା- ରମାକାନ୍ତ ରଥ- ଲାର୍କ ବୁକ୍‌ସ (୧୯୮୫)- ପୃ ୧୪-୧୫

୧୦. Burnt Norton- Four Quartes- T.S. Eliot- PP. 15-16

୧୧. ଚଢ଼ଉପହରା-କେତେଦିନର ରମାକାନ୍ତ ରଥ-ପୃ-୮୫

୧୨. The Obsessive Situation- Moderns and Contemporaries- The Struggle of the Modern- Stephen Spender- P 76

୧୩. "1918 these limits were completely abolished, and, since in Europe, which was the centre of the combatants' operations, the population was for greater than at any previous stage in the world's history, the sum of concentrated human misery was during those years probably greater than human beings had ever experienced before."- 'After the Deluge' (1931) chapter I Leonard Woolf. (The Twentienth Century Mind-Part-II (1918-1945) Ed. C.B. Cox & A.E. Dyson ପୁସ୍ତକର 'Introduction'- p.VIIIରୁ ଉଦ୍ଧୃତ।)

୧୪. Historiography- B.J. Atkinson- The Twentieth Century Mind-Part-II, (1972)P-57

୧୫. "Man could no longer regand himself as part of the great chain of being, but only as a part of a machine designed to increase productivity more and more for no discernible purpose. In circumstances such as these men became mere cogs in a machine."- Social Thought- Raymond Plant- The Twentieth Century Mind-Part-II-P-98.

୧୬. "The Social and Intellectual Background"-G.H. Banteçk- The Modern Age- Part I- Ed. Boris Ford-(.1961)-P-23.

୧୭. " x x x Man is fundamentally alienated from society and all that can be expected is some kind of reasonable balance between individual drives and social claims." Social Thoughts-Raymond Plant- The Twentieth Century Mind-Part-II-P-100.

୧୮. କ) The Interpretation of Dreams (1900)
ଖ) The Psychopathology of Everyday life (1904)
ଗ) The Ego and the Id (1923)
ଏଗୁଡ଼ିକ ଫ୍ରଏଡ଼ଙ୍କ ମନସ୍ତତ୍ତ୍ୱ ସଂପର୍କିତ ଗ୍ରନ୍ଥ

୧୯. 'Behind one Another'- Reluctant Guru- R.K. Narayan- Orient Paperbacks- (1974)-P-30.

# ଦ୍ୱିତୀୟ ପରିଚ୍ଛେଦ

## ରମାକାନ୍ତ ରଥ-ପରିଚୟ, କାବ୍ୟମାନସ: ପ୍ରାରମ୍ଭ, ବିକାଶ ଓ ଉତ୍ତରଣ ପର୍ବ

ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟର ଐତିହାସିକ-ତୁଳନାତ୍ମକ ପର୍ଯ୍ୟାଲୋଚନା କ୍ରମେ ଚଳନ୍ତି ଶତାବ୍ଦୀକୁ ଦୃଷ୍ଟିନିବଦ୍ଧ କଲେ ଯେ କୌଣସି ସଚେତନ ପାଠକ ଷଷ୍ଠ ଦଶକୋତ୍ତର କାବ୍ୟଧାରାକୁ ଉଭୟ ଆଙ୍ଗିକ ଓ ଆତ୍ମିକରେ ନୂତନ ରୂପରେଖ ନେଇଥିବାର ସ୍ପଷ୍ଟ ଲକ୍ଷ୍ୟ କରିପାରିବେ। ଏଇ ଷଷ୍ଠ ଦଶନ୍ଧିରେ ଯେଉଁ ପ୍ରମୁଖ କତିପୟ କବି ସଚେତନ କାଳାଶ୍ରିତ ଭାବଧାରାରେ ନିଜକୁ ସାମିଲ କରି ଯୁଗୀୟ କାବ୍ୟଧର୍ମକୁ ନିର୍ମାଣ କରି ଚାଲିଥିଲେ ସେମାନଙ୍କ ମଧ୍ୟରେ କବି ଶ୍ରୀ ରମାକାନ୍ତ ରଥ ଅନ୍ୟତମ। ୧୯୩୪ ମସିହାରେ ତାଙ୍କର ଜନ୍ମ। ଇଂରାଜି ସାହିତ୍ୟରେ ସ୍ନାତକୋତ୍ତର ଉପାଧି ଲାଭ କଲାପରେ କିଛି କାଳ ଅଧ୍ୟାପନା କାର୍ଯ୍ୟରେ ନିଯୁକ୍ତ ହୁଅନ୍ତି। ପରେ ଭାରତୀୟ ଶାସନ ସେବା (I.A.S.) ପରୀକ୍ଷାରେ ସଫଳତାର ସହିତ ଉତ୍ତୀର୍ଣ୍ଣ ହୋଇ ଭାରତ ସରକାରଙ୍କ ଅଧୀନରେ ବିଭିନ୍ନ ଉଚ୍ଚ ପଦବୀରେ ଅବସ୍ଥାପିତ ହୋଇ ଆସିଛନ୍ତି। ଶାସନ କ୍ଷେତ୍ରକୁ ନିଜର ଜୀବିକାଭୂମି ରୂପେ ବରି ନେଇଥିଲେ ମଧ୍ୟ ସାହିତ୍ୟ ସାଧନା ହିଁ ତାଙ୍କ ଜୀବନର ବ୍ରତ। ୧୯୫୦ରୁ ଏଯାବତ୍ ଦୀର୍ଘ ଚାରି ଦଶନ୍ଧି ଧରି ସେ ନିରଳସ ଭାବେ ବାଗ୍‌ଦେବୀ ଆରାଧନାରେ ନିଜକୁ ଜଣେ ସନ୍ୟାସୀ ପରି ଅନାସକ୍ତ ଭାବରେ ନିୟୋଜିତ କରି ଆସିଛନ୍ତି। ସାଂପ୍ରତିକ ସାହିତ୍ୟ ଜଗତରେ ଯେଉଁ ଶୀତଳ ବାକ୍‌ଯୁଦ୍ଧ, ଆତ୍ମପ୍ରଚାର ଓ ପରଶ୍ରୀକାତରତା ଲେଖକମାନଙ୍କ ମଧ୍ୟରେ, ବିଶେଷତଃ ଆମ ଓଡ଼ିଶାରେ, ଦେଖିବାକୁ ମିଳେ ସେଥିରୁ ସେ ନିଜକୁ ଯଥାସାଧ୍ୟ ଦୂରରେ ରଖିଥିବା ସଚେତନ ନିରପେକ୍ଷ ସାହିତ୍ୟ ରସିକମାନେ ବେଶ୍ ହୃଦୟଙ୍ଗମ କରିପାରିବେ। ୧୯୫୦ରୁ କବିତା ଲେଖି ଆସୁଥିଲେ ମଧ୍ୟ କବି ସର୍ବଭାରତୀୟ ସ୍ତରରେ ୧୯୭୯ ମସିହାରେ ତାଙ୍କର 'ସପ୍ତମ ଋତୁ' (୧୯୭୭) କାବ୍ୟଗ୍ରନ୍ଥ ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ମାନିତ ହୁଅନ୍ତି। ଏହି ଅବସରରେ ତାଙ୍କ ମାନସିକ ପ୍ରତିକ୍ରିୟାକୁ ଏଠି ଉଦ୍ଧାର କରାଯାଇ ପାରେ। "ପୁରସ୍କାର ଦେବା ସାହିତ୍ୟ ଏକାଡ଼େମୀର କାମ, ସେମାନେ ତାଙ୍କ କାମ କରୁଛନ୍ତି। କବିତା ଲେଖିବା ମୋ' କାମ, ମୁଁ ମୋ କାମ କରୁଛି। ଦୈବାତ ଏ ଦୁଇଟି କାମ ଗୋଟିଏ ମୁହୂର୍ତ୍ତରେ ସଂଯୁକ୍ତ ହୋଇଗଲେ, କିନ୍ତୁ ଏହା ପୂରାପୂରି ଆକସ୍ମିକ ଓ ଏହି ମୁହୂର୍ତ୍ତଟି ପରେ କାହାରି କାହା ସହତ କୌଣସି ସମ୍ପର୍କ ରହିବ ନାହିଁ, ଯେମିତି

ଆଗରୁ ନଥିଲା।''(୧) ବାସ୍ତବିକ ୧୯୭୭ ପରେ ପରେ ଆମେ ମଧ୍ୟ ତାଙ୍କ ଠାରୁ ଆଉ ଦୁଇଖଣ୍ଡ ମୂଲ୍ୟବାନ୍ ଭାବୋଦ୍ଦୀପ୍ତ କବିତା ଗ୍ରନ୍ଥ ଲାଭ କରିଛୁ। ୧୯୮୨ ରେ 'ସଚିତ୍ର ଅନ୍ଧାର' ଓ ୧୯୮୫ ରେ 'ଶ୍ରୀରାଧା'। ଏହା ପରେ 'ଶ୍ରୀ ପଳାତକ' ର ଆବିର୍ଭାବ। 'ସଚିତ୍ର ଅନ୍ଧାର' ପୁସ୍ତକଟି ୮୪ ଓଡ଼ିଶାର 'ଶାରଳା ପୁରସ୍କାର' ଲାଭ କରିଛି ଓ 'ଶ୍ରୀରାଧା' ଅଗଣିତ ସଚେତନ ପାଠକଙ୍କର ସଶ୍ରଦ୍ଧ ଆଦର ଲାଭ କରିଛି। ୧୯୯୨ ମସିହାରେ ଏହି କାବ୍ୟଗ୍ରନ୍ଥଟି ଭାରତର ସର୍ବୋତ୍ତମ ପୁରସ୍କାର 'ସରସ୍ୱତୀ ସମ୍ମାନ' ପ୍ରାପ୍ତ ହୋଇଛି।

ପରବର୍ତ୍ତୀ ପରିଚ୍ଛେଦ ମାନଙ୍କରେ ଶ୍ରୀ ରଥଙ୍କ କାବ୍ୟବିଭାଗକୁ ବିଷଦଭାବେ ଆଲୋଚନା କରାଯାଇଥିବାରୁ ଏ ପର୍ଯ୍ୟାୟରେ କେବଳ ତା'ର ପ୍ରାକ୍ ସୂଚନା ମାତ୍ର ଦିଆଯାଉଛି।

କବି ଶ୍ରୀ ରମାକାନ୍ତ ରଥ ୧୯୫୦-୫୧ ମସିହା ବେଳକୁ କବିତା ଲେଖା ଆରମ୍ଭ କରନ୍ତି (୨)। ସବୁ ଲେଖକଙ୍କ ପରି ପ୍ରାରମ୍ଭିକ ପର୍ଯ୍ୟାୟରୁ ସଂପାଦକ ମାନଙ୍କ ଅବହେଳାର ଶିକାର ହୋଇପଡ଼ିଥିଲେ ବି ଆପଣାର ଅଟଳ ବିଶ୍ୱାସ ଓ ଆସ୍ଥା ନେଇ ସେ ତାଙ୍କ ଲେଖନୀ ଅବ୍ୟାହତ ରଖି ଓଡ଼ିଆ ସାହିତ୍ୟର ଜଣେ ନିରବଚ୍ଛିନ୍ନ ଶ୍ରେଷ୍ଠ ସାଧକ ଭାବରେ ପରିଗଣିତ ହୋଇ ପାରିଛନ୍ତି। 'କେତେଦିନର' (୧୯୬୨) ଠାରୁ 'ଶ୍ରୀରାଧା' (୧୯୮୫) ପର୍ଯ୍ୟନ୍ତ ଦୃଷ୍ଟି ନିବଦ୍ଧ କଲେ ରମାକାନ୍ତୀୟ କାବ୍ୟ ସରଣୀର ବିଭିନ୍ନ ଦିଗ ଓ ଦିଗନ୍ତକୁ ମପାଯାଇପାରେ। ପ୍ରାରମ୍ଭିକ ପର୍ବକୁ ମାପି ବସିବା ପୂର୍ବରୁ ଆଧୁନିକ କବିତାର ସମୀକ୍ଷକ ଡ଼କ୍ଟର ନିତ୍ୟାନନ୍ଦ ଶତପଥୀଙ୍କ ମନ୍ତବ୍ୟକୁ ଉଦ୍ଧାର କରାଯାଉ। ''ଉତ୍ତର ପଚାଶରେ ଓଡ଼ିଆ କବିତା କ୍ଷେତ୍ରରେ ଆତ୍ମ ପ୍ରକାଶ କରି ଶ୍ରୀ ରମାକାନ୍ତ ରଥ ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ କାବ୍ୟଧାରାର ଜଣେ ଶକ୍ତିଶାଳୀ କବି ଭାବେ ନିଜକୁ ପ୍ରତିଷ୍ଠିତ କରି ପାରିଛନ୍ତି। ତାଙ୍କ କାବ୍ୟ ଆତ୍ମିକ ଓ ଶୈଳୀରେ ପ୍ରଥମରୁ ପ୍ରକାଶ ପାଇଥିବା ସ୍ୱକୀୟତା ହିଁ ଏହି ସ୍ୱୀକୃତି ପାଇଁ ଦାୟୀ। ତାଙ୍କ ପ୍ରାଥମିକ କବିତା ଗୁଡ଼ିକ ଯୁବ ସୁଲଭ ପ୍ରେମ, ପ୍ରତୀକ୍ଷା, ହତାଶା ଓ ତଦ୍ଦ୍ୱାରା ପ୍ରେମର ଗତାନୁଗତିକ 'ଜ୍ୱଳିଯିବା ଓ ଜ୍ୱାଳିଦେବା' ପରି ଆସକ୍ତ ରୋମାଣ୍ଟିକ ଉଚ୍ଛ୍ୱାସ ଦେଖାଯାଏ ନାହିଁ, ବରଂ ପ୍ରେମ ପ୍ରତି ଅଛି ଗଭୀର ନିରୀକ୍ଷା ଓ ସମୀକ୍ଷାତ୍ମକ ମନୋବୃତ୍ତି।'' (୩)

'କେତେଦିନର' (୧୯୬୨) କବିତା ପୁସ୍ତକଟି ଦୁଇ ଭାଗରେ ବିଭକ୍ତ। ପ୍ରଥମ ଭାଗଟି 'ବହୁଦିନର' ଶୀରୋନାମାରେ ନାମିତ। ଏଥିରେ ମୋଟ ଅଠରଟି କବିତା ଓ ଦ୍ୱିତୀୟ ଭାଗ 'ଅଳ୍ପଦିନର'ରେ କୋଡ଼ିଏଟି କବିତା ସ୍ଥାନିତ ହୋଇଛି। 'ବହୁଦିନର' କବିତା ଗୁଡ଼ିକ ଭିତରେ ମୁଖ୍ୟତଃ କବିଙ୍କର ଅସଫଳ ପ୍ରେମ ଜାନିତ୍ ଚଞ୍ଚଳ ମାନସିକତା ଓ ସେଥିନେଇ ମନ ଭିତରେ ଭୟ, ସଂଶୟ, ଅବିଶ୍ୱାସ ଓ ସନ୍ଦିଗ୍ଧତାର ସୃଷ୍ଟି ହୋଇଛି। ରାତ୍ରିରେ ପ୍ରଣୟିନୀ ପାଖକୁ ଲୁଚି ଲୁଚି ଗଲାବେଳେ ପଛରୁ ସେ କାହାର ଭୟ ପାଆନ୍ତି। ନିରୀହ ମେଷ ଛୁଆଟି ଦ୍ୱାରା ସେ ଆକ୍ରାନ୍ତ (୪)। 'ଘଣ୍ଟା' କବିତାଟିରେ ଆଜିର ଜଡ଼ବାଦୀ ଜୀବନରେ ପ୍ରେମର ମହଳ ରୂପ ଏବଂ ପ୍ରତିଦ୍ୱନ୍ଦ୍ୱୀତା ଭିତରେ ପିତାପୁତ୍ରର ଛୁରୀମରା ଘଟଣାରେ ସେ ମର୍ମାହତ (୫)। ଯେତେବେଳେ ଏ ସମାଜରେ ବିବେକର, ସରଳତାର, ନିରୀହତାର ଓ ସତ୍ୟତାର ମୂଲ୍ୟ ହ୍ରାସ ଘଟିଛି ସେତେବେଳେ ନିଜ ନୈତିକ ଓ ବିବେକୀ ସାଜି ଜୀବନକୁ ଦଳି ଚକଟି ନଷ୍ଟ କରି ଦେବାର କିଛି ମୂଲ୍ୟ ନାହିଁ। ସ୍ୱପ୍ନ ଦେଖି ବିଭୋର ହେବାର ଯୌକ୍ତିକତା ନାହିଁ। ତେଣୁ ସ୍ୱପ୍ନ, ଆଶା, ସମ୍ଭାବନା ଓ ଭାବପ୍ରବଣତାକୁ

ପରିତ୍ୟାଗ କରି ବାସ୍ତବ ଜୀବନରେ ତାକୁ ଚନ୍ଦ୍ରାବେହେରାଣୀର ଭୂମିକା ନେବାକୁ ପଡ଼ିବ। ସେଦିନ ରାତ୍ରିର ଶଂଖା ଓ ସିନ୍ଦୁରକୁ ତାକୁ ପ୍ରତି ରାତ୍ରିରେ ନିଲାମ କରିବାକୁ ପଡ଼ିବ (୬)। ମାଳତୀ ପରି ଜୀବନ ସାରା ପ୍ରତୀକ୍ଷା କରି କରି ଆଦର୍ଶ ଭିତରେ ସେ ବା କେତେଦିନ ବଞ୍ଚିବ ଏମିତି? କେତେ ଦିନ ନାନାବାୟା ଗୀତ ଭିତରେ କୁନାର ମନକୁ ବୁଝାଇବା ଛଳରେ ନିଜକୁ ମିଛ ସାନ୍ତ୍ୱନା ଦେଇଚାଲିଥିବ (୭) ?

ଏ ସମାଜ ପ୍ରତି ସେ ବୀତସ୍ପୃହ। ଏକ କ୍ରୋଧୀ ଦୁର୍ବାସାର ଭୂମିକା ନେଇ ସେ ମଧ ବେଳେବେଳେ ଏ ସମାଜକୁ ଅଭିଶାପ ଦେଇଚାଲେ- ''ପାଦକୁ ତମର ସାପ ଦଂଶୁରେ/ ପାନୀୟେ ଜହର ମିଶୁ/ ମୃତ୍ୟୁ ସହିତ ସଙ୍ଗମ କରି/ଚୁମ୍ବନ ଖାଅ ପଶୁ।(୮)'' ତା' ପାଇଁ ବ୍ୟୋମ୍ପାର ରକ୍ତଛିଟା (୯)। ଏଇ ଏଣ୍ଟିରୋମାଣ୍ଟିକ୍ ଚେତନା 'ଧର୍ମପଦର ଆତ୍ମହତ୍ୟା'ରେ ଆଉରି ଉଦ୍ଦୀପ୍ତ। ପୁନଶ୍ଚ 'ପାରିଷଦର ରାତ୍ରି' ରେ କାବ୍ୟପୁରୁଷ ''ମଲ୍ଲୀର ଶେଯରେ ଶୋଇ ଭୁଲିଯିବି ଥାଏ କିଛି ବିବେକ ନାମରେ/ ମିଛରେ ଚାଇଁବି ପଛେ, ଭ୍ରମ କରି ନ ମରିବି ସତର କାମରେ।''- ଏହି ସିଦ୍ଧାନ୍ତରେ ପହଞ୍ଚିଯାଏ (୧୦)। ଲଣ୍ଡନର ଧାତବ ଦହନ ଭିତରେ ନିରବିତ ମଣିଷଟି ପୁଣି ଜଳି ଉଠେ। ଜୀବନ୍ମୃତ ଅବସ୍ଥାରେ ସେ ସିଝୁଛି। କି ବିକଳ କୃକଳାସୀ ଅବସ୍ଥା ସତରେ।

'ବହୁଦିନର' ଭିତରୁ 'ଅଳ୍ପଦିନର' ଆଡ଼କୁ ଆଖି ପକାଇଲେ କାବ୍ୟପୁରୁଷର ଈଷତ୍ ପରିବର୍ତ୍ତନକୁ ଲକ୍ଷ୍ୟ କରଯାଇପାରେ।

ଏଠି ମୃତ୍ୟୁପ୍ରତି ଏକ ଭୟଭାବ ସହିତ ମୃତ୍ୟୁର ଅନିର୍ବାଯ୍ୟତାକୁ ମଧ ସ୍ଥଳବିଶେଷରେ ସ୍ୱୀକାର କରାଯାଇଛି। ସମୁଦ୍ର କୂଳରେ ବସା ବାନ୍ଧିଥିଲେ ନିରାପଦର ଦୂରତ୍ୱ ବା କେତେଦୂର? ଦିନେ ନା ଦିନେ ସମୁଦ୍ରର ସର୍ବଗ୍ରାସୀ ଜିହ୍ୱା ତାକୁ ଚାଟିଦେବ। ଲୋକଟି ଜାଣି ପାରେନା। ତା' ଅଲକ୍ଷ୍ୟରେ କିନ୍ତୁ, 'ସେ ଢେ଼ଉ ଆସିଲା ସତ।' କାହାର ମୃତ୍ୟୁରେ ପୃଥିବୀର କିଛି ପରିବର୍ତ୍ତନ ଘଟେ ନାହିଁ। ଯାହା ଯେମିତି ସେମିତି ରୀତିରେ ଚାଲେ। 'କିନ୍ତୁ ନେଳୀ ପାଣିର ଉପରେ ସମୁଦ୍ର ଚଢ଼େଇ ସବୁ କାଟୁଥିଲେ ନିର୍ବିଘ୍ନ ଚକ୍କର'। (୧୧) 'ସପ୍ତମ ଋତୁ' କି 'ସଚିତ୍ର ଅନ୍ଧାର' ବେଳକୁ କବିଙ୍କର ଯେଉଁ ମୃତ୍ୟୁ ଓ ସମୟ ସମ୍ପର୍କିତ ଉତ୍ତରିତ ଚେତନା ଦେଖା ଦେଇଛି ତାର ପ୍ରାକ୍ ସୂଚନା ମଧ ତାଙ୍କ ପ୍ରାରମ୍ଭିକ କାବ୍ୟ ସରଣୀରୁ ସ୍ଥଳ ବିଶେଷରେ ମିଳିଥାଏ। ଏଇ ପ୍ରସଙ୍ଗରେ 'ପତଙ୍ଗ' ଓ 'ଚଉପହରା' କବିତା ଦୁଇଟି ବିଚାର୍ଯ୍ୟ। ପତଙ୍ଗ ସମ ସେ ସମୟାଗ୍ନିରେ ଝାସ ଦେବାକୁ ଚାହେଁ। ତାର ଶରୀର ଆତ୍ମା କିଛି ଲୋଡ଼ା ନାହିଁ। ସବୁ କିଛି ପାଉଁଶ ହୋଇଗଲା ପରେ ସେ ପାଉଁଶର ଅନୁପସ୍ଥିତି ହିଁ କାମ୍ୟ, କାରଣ, ''ପାଉଁଶ ବି ଲୋଡ଼ିବସେ, ଲୋଡ଼ିବସେ ସ୍ମୃତିର କ୍ରନ୍ଦନ।''(୧୨) 'ଚଉପହରା'ରେ ଟି.ଏସ୍. ଇଲିଅଟ୍‌ଙ୍କ 'ଫୋର୍ କ୍ୱାର୍ଟେଟ୍ସ୍'ର ଛାୟା ପତିତ। କାବ୍ୟପୁରୁଷ ଏକ ଅଦୃଶ୍ୟ ଶକ୍ତିର ଅନ୍ୱେଷଣରେ ଉଦ୍‌ଗତ। ''ସତେବା ପ୍ରେତାତ୍ମା ମୋର ଘୁରିବୁଲେ ଦିଗ୍‌ବିଦିଗରେ / ଏ ପ୍ରଚଣ୍ଡ ମଧ୍ୟାହ୍ନରେ ଲୋଡ଼ି ତମ ସ୍ଥିତିର ସନ୍ଧାନ।'' (୧୩) ସକଳ ଦୁଃଖ ଓ ହତାଶା ଭିତରେ ଆଉ ଏକ ମୂଲ୍ୟବାନ ଜୀବନ ରହିଛି। ତେଣୁ ସେହି ଜୀବନର ଆଗମନ ଉଦ୍ଦେଶ୍ୟରେ ସେ ପ୍ରାର୍ଥନା ରତ। (୧୪)

କାବ୍ୟପୁରୁଷର ବିକାଶ ପର୍ବକୁ କୌଣସି ନିର୍ଦ୍ଦିଷ୍ଟ ସୂତ୍ର ବା ସମୟରେଖା ଭିତରେ ମପାଯାଇ ନପାରେ। ଯେହେତୁ ଏହା ଏକ ଅନ୍ତର୍ନିହିତ ସୂକ୍ଷ୍ମ ସାରସ୍ୱତ ବ୍ୟାପାର; ଅତଏବ

ଏହା ଏକ କ୍ରମିକ ବିବର୍ତ୍ତନର ଅପେକ୍ଷା ରଖେ। 'କେତେଦିନର' ସଂକଳନ ଭିତରେ କାବ୍ୟପୁରୁଷର କୌଣସି ନିର୍ଦ୍ଦିଷ୍ଟତା ବା ଏକମୁଖୀନତାକୁ ପାଠକେ ଲକ୍ଷ୍ୟ କରିପାରିବେ ନାହିଁ। ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ସାହିତ୍ୟ ଓ ଦର୍ଶନର ପ୍ରଭାବ ତାଙ୍କ କାବ୍ୟକୁ ଆଙ୍ଗିକ ଓ ଆତ୍ମିକ ଦୃଷ୍ଟିରୁ ଆବୋରି ବସିଥିଲେ ମଧ୍ୟ ତାଙ୍କ ଶୈଳୀରେ ପାଶ୍ଚାତ୍ୟ ପ୍ରଭାବ ବେଶୀମାତ୍ରାରେ ଅନୁଭୂତ ହୋଇଥାଏ। ୧୯୬୨ରୁ ୧୯୬୭ରେ 'ଅନେକ କୋଠରୀ' ସଂକଳନର ଅଠରଟି କବିତା ଭିତରେ ଆମେ ରମାକାନ୍ତୀୟ କାବ୍ୟପୁରୁଷକୁ ଏକ ଭିନ୍ନ ମାର୍ଗରେ ପ୍ରକାଶ ପାଇଥିବା ଦେଖୁ। ଅନେକ ଦିନରୁ ଆତ୍ମହତ୍ୟା କରିଥିବା କବି ପୁରୁଷଟି ଏବେ ସେହି ମୃତ୍ୟୁ ସମ୍ପର୍କରେ ଅନୁସନ୍ଧିତ୍ସୁ। ସେ ପ୍ରାଚ୍ୟ ପରମ୍ପରାକୁ ଫେରି ଆସନ୍ତି। (୧୫)

ଭାଗବତର 'ଉର୍ଣ୍ଣନାଭି' ପରି ଏ ସଂସାର ଜଞ୍ଜାଳ ଓ ଆବେଗକୁ ଏବଂ ତା' ସହିତ ମହାକାଳର ରଡ଼ିକୁ ଶୁଣି ପାରନ୍ତି। 'ବାଘଶିକାର'ର ଚରିତ୍ରମାନେ ନିଜ ବାସନା ଜାଲ ଭିତରେ ଆବଦ୍ଧ। ମହାକାଳ ସେଠି ବସିଥାଏ। ସମୟ ଆସିଲେ ଯେ ସେହି ବାଘ ହାତରେ ଦିନେ ତାକୁ ପଡ଼ିବାକୁ ହେବ ଏ କଥା ସେ ଭୁଲିଯାଇ ଥାଏ। ସେହିପରି 'ଅନନ୍ତଶୟନ', 'ବିମାନ ଦୁର୍ଘଟଣାରେ ମୃତ୍ୟୁ', 'ଅନ୍ୟଲୋକର ପାଣି' ଓ 'ବର୍ଷାଋତୁ' ଆଦି କବିତା ଭିତରେ ଆମେ ମିଷ୍ଟିକ୍ କବିପୁରୁଷକୁ ଭେଟୁ। ଲଣ୍ଡନ ଭିତରେ ଜଳୁଥିବା ଲୋକଟି ଦିନେ ପୁଣି ଜହ୍ନରାତିକୁ ନିରେଖି ବସେ। ତା' ଭିତରେ 'ଯେଉଁଠାରେ ଓହ୍ଲାଇଲେ ସେହିଠାରେ ତମ ଆଲିଙ୍ଗନ'ର ଭାବପ୍ରାପ୍ତି ହୁଏ। ଏହି ପ୍ରେମ ଚେତନା ସର୍ବାନ୍ତଃକରଣରେ ଏକ ପାରମାର୍ଥିକ ଦିଗକୁ ପ୍ରସରିତ, ଏବଂ ଏଠି ଏଇ କ୍ଷୁଦ୍ର ସତ୍ତା ସେଇ ଅନନ୍ତ ସତ୍ତାର ପ୍ରାପ୍ତି ପାଇଁ ବ୍ୟାକୁଳିତ ଥିଲେ ମଧ୍ୟ ନିଜର ଅସମର୍ଥତାକୁ ସ୍ୱୀକାର କରି ବସେ। "ମୁଁ ଏଠାରୁ ପାରିବିନି ଘୁଞ୍ଚି କାଳେ/ଜହ୍ନ ବୁଡ଼ିଯିବ। / କାଳେ ମୁଁ ଫେରିବା ବେଳେ ସୂର୍ଯ୍ୟାଲୋକେ/ବାଟ ନ ଦିଶିବ।" (୧୬) ଏହି ଭାବ ସହିତ ବିବିଧ ମିଶ୍ରିତ ଭାବର ମଧ୍ୟ ନମୁନା ମିଳିଥାଏ। କେତେବେଳେ ସେ ନିଜକୁ ଇଲିଅଟ୍ଙ୍କ 'stuffed man' ପରି ମନେକରେ। ଚତୁର୍ଦ୍ଦିଗରେ ସେ ମୃତ୍ୟୁର ଲୋମଶ ନୀଳ ଥଣ୍ଡା ଥଣ୍ଡା ହାତର ସ୍ପର୍ଶ ଅନୁଭବ କରେ। ମୃତ୍ୟୁ ପ୍ରତି ଏକ ଭୟଭାବ ସନ୍ଦିଗ୍ଧରୂପେ ରହି ଆସୁଛି। ନିଜକୁ ଖୁବ୍ ଅସହାୟ ମନେକରେ- "ମୋ ଅରକ୍ଷ ଭବିଷ୍ୟତ ଭାସିଯାଏ ଛଅଖଣ୍ଡ କାଠର ଭେଳାରେ/ଅସଜ ବିମାନ ପରି ସମୁଦ୍ରର ରକ୍ତାକ୍ତ ଆକାଶେ।" (୧୭)

କାବ୍ୟପୁରୁଷ ଯେଉଁ ମିଶ୍ରିତ ଚେତନା ଭିତରେ ୧୯୫୦-୫୫ରୁ ଆକ୍ରାନ୍ତ ହୋଇ ଆସିଛି ୧୯୭୧ରେ ସେ ପୁଣି ସନ୍ଦିଗ୍ଧ। ଏ ଅରଣ୍ୟରେ ସେ ସନ୍ଦିଗ୍ଧ ମୃଗୟାରେ ରତ। ଏଠି ସେଇ ଅଦୃଶ୍ୟ ଭାଗ୍ୟ ହିଁ କାର୍ଯ୍ୟରତ। "x x ଏବଂ ଲାଗୁଅଛି ମୁଁ ଏକ କୁଣ୍ଢେଇ/ଯାହାକୁ ଧରିଛି କାହା ଜୋର୍‌ଦାର ଓ ଖିଆଲି ହାତ।" (୧୮) 'ତ୍ରିଗୁଣ ରଜ୍ଜୁ କରେ ଧରି/ମୃଗୀ ନଚାଏ ନରହରି'ର ସତ୍ୟତା ଉପରେ ପର୍ଯ୍ୟବସିତ। ରାଧାନାଥ ରାୟଙ୍କ 'ପାର୍ବତୀ' କାବ୍ୟର ଉପସଂହାର (୧୯)ର ଭାବକୁ ଆଶ୍ରୟ କରିଛନ୍ତି। ଏକ ଭୀଷଣ ଝଡ଼ ପବନର ସେ ସମ୍ମୁଖୀନ। "ପବନ ବହିଲା କାଲି, ଭୀଷଣ ପବନ, ରାତି ସାରା ମୋର/ ଆକ୍ଷିପତା ପଡ଼ିନାହିଁ, ବାରମ୍ବାର ଝରକା ଦୁଆର/ ପବନରେ ପିଟିହେଲେ/କିଳିଦେବା ପରେ ବି ଅଧୈର୍ଯ୍ୟ ଟେଲିଗ୍ରାମ୍‌ବାଲା ପରି ଧକ୍କା ଦେଲା" (୨୦)। ଏ ଝଡ଼ ଏ ପବନ କାବ୍ୟପୁରୁଷର ସନ୍ଦିଗ୍ଧ ଚେତନାର ଝଡ଼। ଦ୍ୱନ୍ଦ୍ୱ ଭିତରେ ସେ

ଏବେ ସୁଦ୍ଧା ଠିକ ରାହା ପାଇ ପାରିନି। ନିରାସକ୍ତ ସନ୍ୟାସୀଟିଏ ପରି ବା ଯୋଗୀଟିଏ ପରି ସ୍ଥିର ରହି ପାରୁନି। ପକ୍‌କା ଗୃହସ୍ଥଟିଏ ବି ପାଲଟି ପାରୁନି। "ସ୍ୱାମୀ ଏବଂ ପିତା ହେଲେ ସବୁବେଳେ ଘରଛଡ଼ା ହେବା ଅସୁନ୍ଦର"- ଉଚ୍ଚାରଣ କରିଥିବା କବି ପୁରୁଷଟି ପୁଣି 'ଏସବୁକୁ ପରିତ୍ୟାଗ କରି/ ମୁଁ ଯାଆନ୍ତି ଦେଶାନ୍ତର/ ଏ ସବୁତ ମାଂସର ଆରାମ।/ ନରମ ଅନ୍ଧାର ଏବଂ ବିବାହିତ ପ୍ରେମର ଆଳାପେ/ ମୁଁ ପ୍ରାୟ ଗଳିଣି ମରି' (୨୧) ବୋଲି ସ୍ୱଗତୋକ୍ତି କରେ। ଏସବୁର ମାୟା ତୁଟେଇ ଚାଲିଯିବା ଏକ ଦୁରୁହ ବ୍ୟାପାର। କିନ୍ତୁ ନିଷିଦ୍ଧ ଏରୁଣ୍ଡି ବନ୍ଧ ଡେଇଁ ଅଧାବାଟ ଗଲାପରେ, 'ମୃତ୍ୟୁକୁ ଦେଖିଲେ ଖାଲି ହସ ମାଡ଼େ, ମୃତ୍ୟୁ ଏକ ଚପଳ ବାଳକ/ବଙ୍କା ଢଙ୍କା ଅକ୍ଷରରେ ବାଜେ କଥା ଲେଖୁଚି କାନ୍ଥରେ/ ବାର୍ଦ୍ଧକ୍ୟ ଟାପରା ଅବା ଦାସୀଙ୍କର'- ଭାବ ଆସୁଛି (୨୨)। ମୃତ୍ୟୁ ପ୍ରତି ଏଇ ବ୍ୟଙ୍ଗାତ୍ମକ ଦୃଷ୍ଟିଭଙ୍ଗୀ କ୍ରମଶଃ ପରେ ପରେ ଅବଶ୍ୟ ଏକ ଉତ୍ତରିତ ଭାବଚେ୍ତନାଶ୍ରିତ ହୋଇ ପଡ଼ିଛି।

ପାର୍ଥିବ ଜୀବନର ସକଳ ଅସାରତାକୁ ଜାଣୁଥିଲେ ମଧ୍ୟ କାବ୍ୟପୁରୁଷ ଠିକ୍ ଏଇ ଦୁଇ ଚେତନା ଭିତରେ ଗୋଡ଼ ରଖି ତ୍ରିଶଙ୍କୁ ଅବସ୍ଥାରେ ବ୍ୟାଦିତ ମୁଖରେ ବିକଳ ଚିତ୍କାର କରୁଥାଏ। ଇଲିଅଟ୍‌ଙ୍କ 'Unreal City' ପରି 'ଏ ଅସତ୍ୟ ସହରର ଆକାଶରେ ତରାମାନେ ପୁଣି ଠକିଦେବେ' (୨୩)। ଭିତରେ କାବ୍ୟପୁରୁଷର ବିକଳ ସ୍ଥିତି ହିଁ ଅନୁମେୟ।

ଏହି ମିଷ୍ଟିକ୍ ଚେତନା ଭିତରେ ବି ସାମାଜିକ ବୈଷମ୍ୟବୋଧରେ ସେ ସନ୍ତୁଳିତ। 'ହେମଲତାର ମୃତ୍ୟୁ', 'ମାଷ୍ଟ୍ରାଣୀ', ହୃଦୟେଶ୍ୱରୀ', 'ଭିକାରୁଣୀର ବରାନୁଗମନ' ଓ 'ମାଧବୀର ପଞ୍ଚତ୍ରିଂଶତମ ଜନ୍ମୋତ୍ସବ' ଆଦି କବିତାର ଚରିତ୍ରମାନଙ୍କ ମଧ୍ୟରେ ସାମାଜିକ ବୈଷମ୍ୟ ଓ ନାରୀମନର ଅଭୀପ୍ସାକୁ ହିଁ ଚିତ୍ରଣ କରାଯାଇଛି।

୧୯୭୭ ର 'ସପ୍ତମଋତୁ'କୁ ଦୃଷ୍ଟିଦେଲେ କାବ୍ୟପୁରୁଷର ଉତ୍ତରିତ ଭାବଚେତନାକୁ ସ୍ପଷ୍ଟ ଲକ୍ଷ୍ୟ କରି ହେବ। ଏଠି ପାର୍ଥିବତାର ଭୂମିକା ଗୌଣ। ଯେଉଁ ବର୍ଣ୍ଣନା ରହିଛି ତାହା ପାର୍ଥିବ ଦେଇ ଅପାର୍ଥିବର ପରିକଳ୍ପନା। ଦେହ ଦେଇ ଦେହାତୀତର ସନ୍ଧାନ। ସମୟ ଦେଇ ସମୟୋତ୍ତୀର୍ଣ୍ଣତା ଓ ସମୟହୀନତାର ସୂଚନା। ସପ୍ତମ ଋତୁ ହିଁ ଷଷ୍ଠଋତୁର ସମୟସୀମା ଭିତରେ ଆବଦ୍ଧ ପାର୍ଥିବ ଜଗତର ଊର୍ଦ୍ଧ୍ୱରେ। ଏକ ବୃହତ୍ତମ ଶୂନ୍ୟସ୍ଥାନ। ମହାଶୂନ୍ୟତା। ଏକ ଭିନ୍ନ ଋତୁ। ଏଠି ଜୀବନ ଓ ମୃତ୍ୟୁ ମହାକାଳର ସ୍ଥିରବିନ୍ଦୁ (Still point)ରେ ଆସୀନ। ପ୍ରଭେଦ କିଛି ନାହିଁ ଜନ୍ମ ଓ ମୃତ୍ୟୁ ଭିତରେ। 'ବହୁ ଦିନୁ ମରିଥିବା ମଣିଷଙ୍କ ସହିତ ସମ୍ପର୍କ ଏତେ ବେଶି/ ବେଳେବେଳେ ଭ୍ରମ ହୁଏ ନିଜ ଦେହାନ୍ତର' (୨୪)। ଇଲିଅଟ୍‌ଙ୍କ 'Still point' ଓ ଆମ ପ୍ରାଚ୍ୟ ଦର୍ଶନର 'ସ୍ଥିତାବସ୍ଥା'ର କି ଅପୂର୍ବ ସାମ୍ୟ, ଅବଶ୍ୟ 'ଫୋର୍ କ୍ୱାର୍ଟେଟସ୍' ଉପରେ ଶ୍ରୀମଦ୍‌ଭଗବତଗୀତାର ପ୍ରଭାବ ସୁସ୍ପଷ୍ଟ। ଏଠି ମୃତ୍ୟୁ ପ୍ରତି ଆଉ ଭୟଭାବ ନାହିଁ। ପ୍ରୀତିପାଗଳିନୀ ଗୋପାଙ୍ଗନା ଯେମିତି କୃଷ୍ଣଙ୍କ ପାଇଁ ବିଭ୍ରାନ୍ତ। (୨୫) କୃଷ୍ଣଙ୍କ ବଂଶୀସ୍ୱନ ଶୁଣିଲା ପରେ କି ଅଥୟ ଭାବ। ବେଶଭୂଷା ପାଇଁ ଯତ୍ନ ନାହିଁ। ଆଲୁଳିତ କେଶବାସ। କିଏ ବା କୁଙ୍କୁମ ନେଇ ପାଦରେ ଆଉ କିଏ ବା ଅଳତା ନେଇ ମଥାରେ ଲଗାଇ ଉଚ୍ଛନ୍ନ ପ୍ରାଣରେ ଧାଇଁ ଯାଉଛି ସେହି ଦିଗକୁ। ସେହିପରି ଶ୍ରୀ ରଥଙ୍କ କାବ୍ୟପୁରୁଷ ଚାଲିଯାଏ ମୃତ୍ୟୁ ପାଖକୁ ଅସଂଗତ ସମୟ ଓ ପୋଷାକରେ-

"ତମେ ଯାଅ ଯେତେବେଳେ ଟ୍ରାଫିକ୍ ଆଲୁଅ
ଲାଲ ହୋଇ ଜଳୁଥାଏ, ପୁଣି ଯାଅ ପ୍ରାତଃ ଭ୍ରମଣରେ
ଶୀତଦିନେ ରାତିଅଧେ ପିନ୍ଧି ଖଣ୍ଡେ ପାତଳ ଫତେଇ
ଏବଂ ବୁଲିଯିବା ବେଳେ ବାଡ଼ିଧରି ସୁଠାମ ହାତରେ।" (୨୬)

ନିଜକୁ ଅଧାମରା ଗୋଲାପ ଗଛର ଦରଶୁଖିଲା କଢ଼ିଟିଏ ପରି ଭାବୁଥିବା କାବ୍ୟପୁରୁଷ ଏଣିକି ଆଉ ତ ଦୁଃଖକୁ, ହତାଶାକୁ ସେହି ଅର୍ଥରେ ଗ୍ରହଣ କରି ନିଏନା, ବରଂ ସେ ସବୁକୁ ସହ୍ୟ କରିନେଇ ଗୀତ ଶୁଣିବାକୁ ଚାହେଁ, "ଯେଉଁ ଗୀତ ମୂର୍ଚ୍ଛିହସ ବିଛାଏ ବୁଡ଼ାଙ୍କ/ଧୂତୁଧୂତୁ ଚମବେଢ଼ା ଦଦରା ମୁହଁରେ।"(୨୭) 'ସପ୍ତମ ଋତୁ'ର ଅଣଚାଳିଶ ଗୋଟି କବିତା ଭିତରେ ଏ ଜୀବନର ଏହି ଦ୍ୱନ୍ଦ୍ୱାତ୍ମକ ଚେତନାକୁ ଅନୁଭବ କରାଯାଇ ପାରେ।

୧୯୭୭ ପର୍ଯ୍ୟନ୍ତ କବି ମୃତ୍ୟୁକୁ ଭେଟିଛନ୍ତି। ତା' ସହିତ ସାମିଲ ହୋଇଛନ୍ତି ଏବଂ ୧୯୮୨ର 'ସଚିତ୍ର ଅନ୍ଧାର'ରେ ସେଇ କବି ମୃତ୍ୟୁ ପରବର୍ତ୍ତୀ ଜୀବନକୁ ଭେଟିଛନ୍ତି। ସେ ଏକ ଅନ୍ଧାର। ଅଥଚ ଶବଳିତ। ଚିତ୍ରିତ। ଏଇ ଅନ୍ଧାର ଏକ ଚେତନୋତ୍ତର ଅବସ୍ଥା। ଏଠି ମହିଷାସୁର ତାର ଦୁର୍ବଳତାକୁ ଅନୁଭବ କରେ। ଦୋଷକୁ ସ୍ୱୀକାର କରେ। "ମଇଳା କେନାଲ ପରି/ଧମନୀ, ଅଶୁଭ/ରାତିପରି ଭାଗ୍ୟ ଏବଂ ସ୍ୱପ୍ନ ମାନଙ୍କର/ଶୃଙ୍ଖଳା ଉଭିଦ ଦେଲି/ ମୁଁ, ମହିଷାସୁର।"(୨୮) 'ସାତଟି ମାସରେ ପ୍ରେମ ଏବଂ ପ୍ରତ୍ୟାଖ୍ୟାନ ସହିଥିବା' ପ୍ରେମିକ ଆଜି ଆଉ ପରାସ୍ତ ନୁହେଁ, ସେ ଚେତନା ଆଉ ଏକ ବୃହତ୍ତର ସରହଦକୁ ପ୍ରସାରିତ। ପ୍ରକୃତି ଭିତରେ ସେହି ଅମଳିନ ଶାଶ୍ୱତ ପ୍ରେମକୁ ଅନୁଭବ କରିବସେ।(୨୯) ସବୁରି ଭିତରେ କାବ୍ୟପୁରୁଷର ଆତ୍ମଅନ୍ୱେଷା ରହିଛି। ଅନନ୍ତ ସତ୍ତା ଏବଂ ଏଇ ପାର୍ଥିବ ସତ୍ତା ଭିତରେ ସେ ସବୁବେଳେ ଏକ ସଂପର୍କ ସ୍ଥାପନ ପାଇଁ ଆଶାୟୀ, ସେହି ପ୍ରୟାସ ଭିତରୁ ହିଁ ମିଷ୍ଟିକ୍ ଚେତନାର ସ୍ଫୁରଣ। ନିଜକୁ ନିଜେ ବି ସେ ବିରୋଧ କରେ। "ଏହା ହିଁ ଜୀବନ ମୋର, ନିଜ ପ୍ରତି ଶତ୍ରୁତା ନିଜର/ଅଜସ୍ର, ଅଜସ୍ର ବି ପ୍ରେମ ନିଜ ପ୍ରତି। ମୁଁ ଅସଂଖ୍ୟ ରୂପନିଏ ବୃକ୍ଷଲତା, ପଶୁପକ୍ଷୀ ହୁଏ/ ମୁଁ ସମୁଦ୍ର ମୁଁ ଦିନ ମୁଁ ରାତି।"(୩୦) ଏଠି 'ସୋଽହଂ'ର ଭାବସତ୍ତାକୁ ଅନୁଭବ କରାଯାଇ ପାରେ। ପିଣ୍ଡ-ବ୍ରହ୍ମାଣ୍ଡ ତତ୍ତ୍ୱ ଅନୁଯାୟୀ ପିଣ୍ଡ ଭିତରେ ସମଗ୍ର ବ୍ରହ୍ମାଣ୍ଡର ସ୍ଥିତି ରହିଛି। ଏହି ଅହଂ ସତ୍ତା ଏକ ବୃହତ୍ତର ସ୍ତରକୁ ଉତ୍ତୀର୍ଣ୍ଣ ହୋଇଗଲେ ସେଠି ବିଶ୍ୱସତ୍ତାକୁ ହିଁ ଲାଭ କରାଯାଇ ପାରେ।

'ସଚିତ୍ର ଅନ୍ଧାର'ର ପ୍ରାୟ ବାଉନଟି କବିତା ଭିତରେ କବିଙ୍କର ଉତ୍ତରିତ ଜୀବନ-ପ୍ରେମ-ମୃତ୍ୟୁ ଚେତନା ସହିତ ଆତ୍ମ ଅନ୍ୱେଷଣର ଦିଗକୁ ଲକ୍ଷ୍ୟ କରାଯାଇ ପାରିବ।

୧୯୮୨ରୁ ୧୯୮୫ ଭିତରେ ଲିଖିତ ଦୀର୍ଘ କବିତା 'ଶ୍ରୀରାଧା' ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ ଏକ ମାଇଲ୍ ଖୁଣ୍ଟ ଏଥିରେ ଦ୍ୱିରୁକ୍ତିର ପ୍ରଶ୍ନ ନାହିଁ। ପ୍ରାଚୀନ ଓଡ଼ିଆ ବୈଷ୍ଣବ କାବ୍ୟ ସାହିତ୍ୟ ପରମ୍ପରା ଦ୍ୱାରା ସେ ଅନୁପ୍ରେରିତ। ଶ୍ରୀରାଧାର ଭାବ କିନ୍ତୁ ଏଠି ଜଣେ ଆଜିର ଯନ୍ତ୍ରଣାଗ୍ରସ୍ତ ସାଧାରଣୀ ନାରୀର ଭାବ। ପୁଣି ତାର ମାନସିକ ସ୍ଥିତାବସ୍ଥା ଏକ ଉତ୍ତରିତ ସ୍ତରର। ଶ୍ରୀରାଧା ଏଠି ଶ୍ରୀକୃଷ୍ଣଙ୍କ ମୃତ୍ୟୁ ସମ୍ବାଦରେ ବ୍ୟଥିତା ନୁହନ୍ତି। ମୃତ୍ୟୁଭୟ ତାଙ୍କର ଆଦୌ ନାହିଁ। କାରଣ ସେ ଜାଣନ୍ତି ପରମ ପୁରୁଷଙ୍କର ଏହାହିଁ ଏକମାତ୍ର ଲୀଳା-ସୁଆଙ୍ଗ। (୩୧)

ଶ୍ରୀରାଧାର ପ୍ରେମାନୁଭୂତି ଓ ଜୀବନାନୁଭୂତି ରମାକାନ୍ତଙ୍କ ହାତରେ ଚରମ ସିଦ୍ଧିରେ ଉପନୀତ ହୋଇପାରିଛି। 'ଶ୍ରୀପଳାତକ' (୧୯୮୬ ପରେ ପରେ ଲିଖିତ) କିନ୍ତୁ ସେ ଉଚ୍ଚତାକୁ ଛୁଇଁଲା ପରି ବୋଧ ହେଉ ନାହିଁ। ଏହାର ସାମଗ୍ରିକ କଳେବର ପ୍ରକାଶନ ପରେ ଏହାର ମୂଲ୍ୟ ନିର୍ଦ୍ଧାରଣ କରିବା ସହଜ ହୋଇ ପାରେ।

## ପାଦଟୀକା

୧. ସାକ୍ଷାତକାର- କବି ଶ୍ରୀ ରମାକାନ୍ତ ରଥ- ଧରିତ୍ରୀ- ରବିବାର- ତା ୨୫-୨-୭୯ ଶ୍ରୀ ହୃଷୀକେଶ ମଲ୍ଲିକ ଓ ଶ୍ରୀ ଶତ୍ରୁଘ୍ନ ପାଣ୍ଡବ।
୨. ତତ୍ରୈବ
୩. ସବୁଜରୁ ସାଂପ୍ରତିକ- ଡ଼ଃ ନିତ୍ୟାନନ୍ଦ ଶତପଥୀ- ପୃ ୫୯୩
୪. ଭୟ- କେତେଦିନର- ରମାକାନ୍ତ ରଥ- ପୃ ୧
୫. ଘଣ୍ଟା- ତତ୍ରୈବ- ପୃ ୧୩
୬. ଚନ୍ଦ୍ରମାର ବୃଦ୍ଧି- ତତ୍ରୈବ- ପୃ ୨୨
୭. ନବଗୁଞ୍ଜର- ତତ୍ରୈବ- ପୃ ୩୬
୮. ଘଣ୍ଟା- ତତ୍ରୈବ- ପୃ ୧୪
୯. ଘଣ୍ଟା- ତତ୍ରୈବ- ପୃ ୧୩
୧୦. ପାରିଷଦର ରାତ୍ରି- ତତ୍ରୈବ- ପୃ ୧୦
୧୧. ଗୋଟିଏ ଘର ସମ୍ପର୍କରେ- ତତ୍ରୈବ- ପୃ ୫୬
୧୨. ପତଙ୍ଗ- ତତ୍ରୈବ- ପୃ ୬୦
୧୩. ଚଉପହରା- ତତ୍ରୈବ- ପୃ ୮୧
୧୪. ତତ୍ରୈବ- ପୃ ୮୪
୧୫. -"ମୋର କାବ୍ୟ ଜୀବନର ପ୍ରଥମ ପର୍ଯ୍ୟାୟରେ ଇଂରାଜୀ କାବ୍ୟ ସାହିତ୍ୟର ପ୍ରଭାବ ମୁଁ ଅସ୍ୱୀକାର କରିପାରିବି ନାହିଁ। ସେ ପ୍ରଭାବ ମୋର ଶୈଳୀ ଓ କାବ୍ୟ ଚେତନାରେ ଅବଶ୍ୟ ପ୍ରତିଫଳିତ ହୋଇଥିବ। x x x କାଳକ୍ରମେ ଏ ପ୍ରଭାବ ହ୍ରାସ ପାଇଛି ବୋଲି ମୋର ଧାରଣା। ଇଂରାଜୀ କବିତା ଉଦ୍‌ବୁଦ୍ଧ କରିବାର ଶକ୍ତି ଅନେକ ଦିନରୁ ହରେଇ ବସିଲାଣି। ମୋ' ନିଜ ଉପରେ ଟିକେ ଆସ୍ଥା ଆସିବା ପରେ ମୁଁ ଓଡ଼ିଆ କାବ୍ୟ ସାହିତ୍ୟର ପରମ୍ପରା ସହିତ ସମ୍ପୃକ୍ତ ହେବାକୁ ଚେଷ୍ଟା କରିଛି। x x x "- ସାକ୍ଷାତକାର- କବି ଶ୍ରୀ ରମାକାନ୍ତ ରଥ- ଧରିତ୍ରୀ- ତା ୨୫।୨।୭୯-ଶ୍ରୀ ମଲ୍ଲିକ ଓ ଶ୍ରୀ ପାଣ୍ଡବ।
୧୬. ଜହ୍ନରାତି- ଅନେକ କୋଠରୀ- ପୃ ୨୫
୧୭. ବିମାନ ଦୁର୍ଘଟଣାରେ ମୃତ୍ୟୁ-ତତ୍ରୈବ- ପୃ ୫୭
୧୮. ସନ୍ଧ୍ୟା - ସନ୍ଦିଗ୍ଧ ମୃଗୟା- ପୃ ୩
୧୯. "ବହୁକାଳ ବିଦେଶରେ ଭ୍ରମଣ କଲେ, ଆଉ ଆପଣଙ୍କୁ ଗୃହରୁ ବହିର୍ଗତ ହେବାକୁ ହେବ ନାହିଁ। ଆଜିଠାରୁ ଆପଣ ଚିରକାଳ ବିଶ୍ରାମ କରିବେ। ଜଗନ୍ନାଥ ଆପଣଙ୍କର ତପସ୍ୟାର ଫଳ ଆପଣଙ୍କୁ ଅବଶ୍ୟ ଦେବେ।"- ପାର୍ବତୀ କାବ୍ୟର ଉପସଂହାର- ରାଧାନାଥ ରାୟ।

୨୦. ପବନ - ସନ୍ଦିଗ୍ଧ ମୃଗୟା- ପୃ ୧
୨୧. ଗ୍ରୀଷ୍ମଋତୁରେ ରେଳଯାତ୍ରା- ତତ୍ରୈବ- ପୃ ୬
୨୨. ତତ୍ରୈବ- ପୃ ୯
୨୩. ସମୁଦ୍ରକୂଳ - ତତ୍ରୈବ- ପୃ ୪୦
୨୪. ଦ୍ୱିତୀୟ ବିଚାର- ସପ୍ତମ ଋତୁ- ପୃ ୨
୨୫. "ନାଦେ ମୋହିଲେ ବନମାଳୀ। ଷୋଳ ସହସ୍ର ଗୋପବାଳୀ"

x x x

ପତି ତନୟ ଛନ୍ତି କୋଳେ। କେମନ୍ତେ ଯିବୁ ରାତ୍ର କାଳେ॥
ନଗଲେ ନ ରହେ ଜୀବନ। କାଳ ହୋଇଲା ବେଣୁ ସ୍ୱନ॥

x x x

କେ କରୁଥିଲା ଦଧିଯୋଗ। ଶୁଣି ଧାଇଁଲା ବେଗବେଗ॥
କେ ଦୁଧ ଚୁଲିରେ ବସାଇ। ମୁରଲୀ ଶୁଣି ଗଲା ଧାଇଁ॥

x x x

ବାଳକ ପକାଇଲା ତଳେ। x x x
ପତି ଚରଣେ ଥୋଇ ତଳେ। ବେଗେ ଧାଇଁଲା କାମଭୋଳେ॥
କେ ଗୋପୀ ବସ୍ତ୍ର ତଳେ ଥୋଇ। x x x
ପିନ୍ଧିଲା କନ୍ଧରୁ ଅଞ୍ଚଳେ॥ x x x
ଶ୍ରୀମଦ୍ ଭାଗବତ- ଦଶମ ସ୍କନ୍ଧ- ଗୋପଲୀଳା- ଜଗନ୍ନାଥ ଦାସ।

୨୬. ବିଚ୍ଛେଦର ଦୁଇଟି ମଧ୍ୟାନ୍ତର- ସପ୍ତମଋତୁ- ପୃ ୮
୨୭. ବନ୍ଦୀର କାୟାକଳ୍ପ- ତତ୍ରୈବ-ପୃ ୨୬
୨୮. ଦୁର୍ଗା- ସଚ୍ଛିଦ୍ର ଅନ୍ଧାର- ପୃ ୫
୨୯. "ଏବେ ମୁଁ ଖାଲି ପବନ,
ଆଉଁଷି ନପାରି ତମ ଗହଳ ବାଳକୁ
ଆଉଁଷୁଛି ସୂର୍ଯ୍ୟଚନ୍ଦ୍ର ଧାନକେଣ୍ଡା
ସମୁଦ୍ର ଫେଣକୁ।"- କର୍ପୂର୍ୟ- ତତ୍ରୈବ- ପୃ୧୦
୩୦. ଚତୁର୍ଦ୍ଦିଗେ, ସବୁ ସମୟରେ- ତତ୍ରୈବ- ପୃ ୩୯
୩୧. ଶ୍ରୀରାଧା- ରମାକାନ୍ତ ରଥ- ପୃ ୧୧୯

# ରମାକାନ୍ତଙ୍କ ସମକାଳୀନ କାବ୍ୟଧାରା : ଏକ ଦୃକ୍‌ପାତ

ଚଳିତ ଶତାବ୍ଦୀର ପଞ୍ଚମ ଓ ଷଷ୍ଠ ଦଶନ୍ଧିରେ ଓଡ଼ିଆ କବିତା କ୍ଷେତ୍ରରେ ଆଙ୍ଗିକ ଓ ଆତ୍ମିକ- ଏ ଉଭୟରେ ଯେଉଁ ବିବର୍ତ୍ତିତ ବା ପରିବର୍ତ୍ତିତ ଧାରାର ସୂତ୍ରପାତ ହେଲା ତାହାର ଏକ ପ୍ରଲମ୍ବିତ ଓ ଉନ୍ନୀତ ରୂପାନ୍ତର ଉତ୍ତର ଷାଠିଏରେ ହିଁ ପରିଲକ୍ଷିତ ହୁଏ। 'ପଲ୍ଲିଶ୍ରୀ' (୧୯୪୧) ଠାରୁ 'କବିତା ୧୯୬୨' ଏହି କୋଡ଼ିଏ ବାଇଶି ବର୍ଷ ସମୟ

ସୀମା ଭିତରେ ଅନନ୍ତ ପଟ୍ଟନାୟକ, ରାଧା ମୋହନ ଗଡ଼ନାୟକ, କୁଞ୍ଜବିହାରୀ ଦାଶ, ଚିନ୍ତାମଣି ବେହେରା, ବିନୋଦ ନାୟକ, ଗୁରୁ ପ୍ରସାଦ ମହାନ୍ତି ଓ ଭାନୁଜୀ ରାଓ ତଥା ବେଣୁଧର ରାଉତ ଏବଂ ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ) ପ୍ରମୁଖ ଭିନ୍ନାଦର୍ଶୀ କବିମାନେ କବିତାର ଭାବ-ରାଜ୍ୟ ଆଉ ଅଙ୍ଗରାଗରେ ଯେଉଁ ବିବିଧତା ଆଣିଲେ ଏବଂ 'କବିତା-୧୯୬୨'ରେ ପଦ୍ମଶ୍ରୀ ଡ଼ଃ ରାଉତରାୟ ଯେଉଁ ଅଭିନବତାର ପଟ୍ଟଭୂମିରେ ପାଶ୍ଚାତ୍ୟ ସାହିତ୍ୟ (ବିଶେଷତଃ ଇଲିଅଟ୍, ପାଉଣ୍ଡ, ଇଟ୍ସ, ରାଁବୋ, ବୋଦଲେୟାର ପ୍ରମୁଖଙ୍କ)ର ଅନୁକୃତିର ପ୍ରଲେପରେ କବିତା ସୁନ୍ଦରୀକୁ ଗଢ଼ି ଥୋଇଲେ; ତାହାର ପଦଗୁଞ୍ଜନ ଏପରିକି ସପ୍ତମ ଦଶକ ପର୍ଯ୍ୟନ୍ତ ଅନେକ ରଚନାରେ ପ୍ରତିଧ୍ୱନିତ ହୋଇଥିବାର ଚିନ୍ତାଶୀଳ ପାଠକେ ଅନୁଭବ କରିପାରିବେ।

'ପାଣ୍ଡୁଲିପି' (୧୯୪୭) ଠାରୁ 'ଶ୍ରୀରାଧା' (୧୯୮୫) ଏ ଦୁଇ ଦିଗନ୍ତର ସୀମାରେଖା ଭିତରେ ଆସିଛି ଭାବନାରେ, ଚେତନାରେ ଓ ଆଭରଣରେ ବୈଚିତ୍ର୍ୟ ଓ ବିଭିନ୍ନତା। ପାଣ୍ଡୁଲିପି ଭିତରେ · କବିଠାରୁ ଆସ୍ତେ ଆସ୍ତେ ସ୍ୱପ୍ନାଭିସାରର ନିଶା କଟିଯାଇ ବାସ୍ତବ ଜୀବନର ବିଚିତ୍ର ଦିଗ ପ୍ରସରିଛି। ପୁଣି ଏହା ଭିତରେ 'ପଶୁ ନିଶାଚର'ର ଭୂମିକା ଛାଡ଼ି 'ନବଯୁଗ ସଂକ୍ରାନ୍ତି'ର ପାରଣା କରିବାର ଇଙ୍ଗିତ ଦେଇ ପୁଣି ସେ ଭେଟୁଛନ୍ତି 'ପ୍ରତିମା ନାୟକ' ଏବଂ ଅଳକା ସାନ୍ୟାଲକୁ। 'ସ୍ୱଗତ' (୧୯୫୮) ଓ 'କବିତା ୧୯୬୨' ବେଳକୁ ସେ ନିଜକୁ ଜାନୁଭଗ୍ନ ଦୁର୍ଯ୍ୟୋଧନ ବୋଲି ମନେ କରୁଛି। ହାତରୁ ରାଇଫଲ୍ ଖସି ଯାଉଛି। ଦେହ ହାତ ଥରି ଉଠୁଛି। 'ଏସିଆର ସ୍ୱପ୍ନ' (୧୯୭୦) ଭିତରେ ଆଉଥରେ କ୍ରାନ୍ତିକାରୀ ଭୂମିକା ନେଇ ଆସିବାର ସ୍ୱତଃ ପ୍ରଚେଷ୍ଟା ବିଶ୍ୱଶାନ୍ତି ସଂରଚନାରେ ଉଦ୍‌ଗ୍ରୀବ। ତଥାପି କଳାତ୍ମକ ଦିଗରୁ ତାହା ସେତେଟା ସଫଳତା ଲାଭ କରି ପାରିନି। 'ବିପ୍ଳବ' କବିତାର କେତୋଟି ପଂକ୍ତିକୁ ଉଦ୍ଧାର କରାଯାଇପାରେ। "ଯାହା ଚାହିଁ ମୁଁ ସେ ସବୁ।/ମୁଁ ବିପ୍ଳବ। ମୁଁ ମହାକାଳ/ ମୁଁଇ ସେଇ ଅନାଗତ ସ୍ୱପ୍ନର ସକାଳ।/ ମୁଁ ସମଷ୍ଟି, ବିସ୍ମୃତି ସତ୍ତାର।/ (ସତ୍ତାର ବିନାଶ ନୁହେଁ, ତାର ରୂପାନ୍ତର/) ମୁଁ ବିସ୍ତାର, ରାଜ୍ୟର।/ ରାଷ୍ଟ୍ରହୀନ ନୈରାଜ୍ୟିକ/ମଣିଷ ଜାତିର/ ମୁଁଇ ସେଇ ଅଦୃଷ୍ଟ ତାରିଖ ଆଗାମୀ କାଲର।" ତେଣୁ ଓଡ଼ିଆ କବିତା କ୍ଷେତ୍ରରେ ଯେତେବେଳେ ଏକ ପ୍ରଚଣ୍ଡ ପ୍ରତିଭାର ଅବକ୍ଷୟ ଆସିଛି ଏବଂ ପ୍ରତୁଳ ସମ୍ଭାବନା ଓ ପ୍ରତିଭା ସତ୍ତ୍ୱେ ଉତ୍ତର ସତୁରୀ ବେଳକୁ କବିତା କ୍ଷେତ୍ରରୁ କବି ଶ୍ରୀ ଗୁରୁ ପ୍ରସାଦ ମହାନ୍ତି ଯେତେବେଳେ କ୍ରମେ ନିଷ୍କ୍ରାନ୍ତ ହୋଇ ଯାଇଛନ୍ତି; ସେତିକିବେଳେ ତାକୁ ଭିନ୍ନ ମୋଡ଼ରେ ଭିନ୍ନ ବାଗରେ ଚଳେଇ ନେବାକୁ ଆସିଛନ୍ତି କବି ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର, ସୌଭାଗ୍ୟ କୁମାର ମିଶ୍ର, ଦୀପକ ମିଶ୍ର, ରାଜେନ୍ଦ୍ର କିଶୋର ପଣ୍ଡା, ସୌରୀନ୍ଦ୍ର ବାରିକ, କମଳାକାନ୍ତ ଲେଙ୍କା, ପ୍ରତିଭା ଶତପଥୀ, ଜଗନ୍ନାଥ ପ୍ରସାଦ ଦାସ, ଶରତ ଚନ୍ଦ୍ର ପ୍ରଧାନ, ଗୋପାଳ କୃଷ୍ଣ ରଥ, ହରିହର ମିଶ୍ର ଓ ପ୍ରସନ୍ନ ମିଶ୍ର ପ୍ରମୁଖ କତିପୟ କବି। ଏଇ କାଳରୁ ୧୯୮୫ ଯାଏ ଆଖି ପକେଇଲେ ଆମେ ଆମର କାବ୍ୟ ସାହିତ୍ୟର ଗତିପଥକୁ ମାପି ପାରିବା।

ଗୁରୁବାବୁ ତ ଜଳିଛନ୍ତି।(୧) ସୀତାକାନ୍ତ ବାବୁ ବି କମ୍ ଜଳି ନାହାନ୍ତି। ଅଷ୍ଟପଦୀରେ ସେତ ଠିକ୍ ମରୁଭୂମିର ନାଗଫେଣୀ ପରି ଶୁଖି ସେମିତି ଯାଇଛନ୍ତି। ସେଠି ଏତେ ଟିକେ ପାଣି ନାହିଁ କି ଇଷତ୍ ସବୁଜିମାର ଇଙ୍ଗିତ ମଧ୍ୟ ନାହିଁ। ଚାରିଆଡ଼େ ଖାଁ-ଖାଁ ଗାଢ଼ ନୀରବତା।(୨) ତା'ପରେ ସେ ଆସ୍ତେ ଆସ୍ତେ ଜୀବନକୁ ପାଦ ଦେଇଛନ୍ତି।

'ଆରଦୃଶ୍ୟ'(୧୯୮୧) ବେଳକୁ ଏ ନୈରାଶ୍ୟ ଭାବ କଟି କଟି ଯାଉଛି। ଯଶୋଦା ତ ସେଇଥିପାଇଁ ବୁଢ଼ାସ୍ୱାମୀଙ୍କ ପାଖରେ ବସି 'ଆଉ ଦୋଅଟି- ଆଉ ଦୋଅଟି' ବଳେଇ ଖୁଆଇ ଦେଉଛି। ପୁଅର ଫେରୁଟାଣି ବାଟକୁ ଚାହିଁ ଚାହିଁ ଆଖି କଷା ପଡୁନି, ଯଦିଓ ତା' ମନରେ ଏକ ମିଷ୍ଟିକ୍ ୫୨ ପକ୍ଷ୍ୟ ତୋଳିଛି।

''ମତେ ହସିବାକୁ ହବ, ସବୁଦିନ ପରି ଦହି ବସିବି ଗୋଳେଇ
ମାଧବୀ, ପ୍ରତିମା କିମ୍ବା ସୁଚିତ୍ରା ପରି ବସିବି ସ୍ୱାମୀଙ୍କ ସାମ୍ନାରେ
ଭାତ ଦୋ'ଟି ଖୁଆଇବି ବଳେଇ ବଳେଇ
ନିର୍ଜନ ଗୋଧୂଳି ବେଳା କଟିଯିବ
ବାହୁଡ଼ା ପଥ ପୁଅର ଏମିତି ଅନେଇ।''(୩)

ସେଠି ସେ ଆଉ ଲୁଗାରୁ ଚା' ଦାଗ ଧୋଉନି। ଶାଢ଼ୀ ଆଉ ବ୍ଲାଉଜ୍ ତାର ଅସଂଯତ ନୁହେଁ।(୪) ବରଂ ସେ ପତି ପରାୟଣା ପଦ୍ମାଟିଏ, ଯେକି ସକଳ ମାନ ଅଭିମାନକୁ ପିଠେଇ ନେଉଛି। ରମାକାନ୍ତ ବାବୁ ଅଧାମଲା ଗୋଲାପ ଗଛର ଫୁଲଟିଏ। ଯା'ର ଡେମ୍ଫ ଶୁଖି ଆସିଲାଣି, ଅଥଚ ସବୁ କଢ଼ି ଫୁଟିନି। 'ଅନେକ କୋଠରୀ' ଭିତରେ ବାଟବଣା ହୋଇ 'ସନ୍ଦିଗ୍ଧ ମୃଗୟା'ରେ କିଂକର୍ତ୍ତବ୍ୟବିମୂଢ଼ାବସ୍ଥାରେ ପୁଣି ବାହୁଡ଼ି ଆସନ୍ତି 'ସପ୍ତମ ଋତୁ' ଦେଇ 'ସଚିତ୍ର ଅନ୍ଧାର'କୁ। ସେଠି ବାରମ୍ବାର 'ତମେ'କୁ ଭେଟନ୍ତି ପୁଣି 'ଶ୍ରୀରାଧା' ଭିତରେ ଆପଣାର ମୂର୍ତ୍ତିକୁ ଦେଖନ୍ତି। ସୌଭାଗ୍ୟ କୁମାର ମିଶ୍ର ଏବେ କିନ୍ତୁ ପୁଣି ଆଶ୍ୱା ରଖନ୍ତି, ''ଆମର ପୁଣି ଦେଖାହେବ, ବସ୍‌ଷ୍ଟାଣ୍ଡ/କାଛ ସେପାଖରେ ଅନ୍ଧାର ପଡ଼ିଆରେ।''(୫) ସେ ପାଲଟି ଯାଆନ୍ତି 'ଅନ୍ଧ ମହୁମାଛି'। ସବୁଠୁଁ ମହୁ ଚୋଷିବାରେ ବ୍ୟସ୍ତ। ତେଣୁ ଆଜିର କବିତା ନୈରାଶ୍ୟବାଦ, ଜୀବନ ଜ୍ୱଳନରୁ ଦୂରେଇ ଆସି ନୂତନ ସୃଷ୍ଟି ଓ ନୂତନ ଆଶାରେ ଆଶାନ୍ୱିତ। ବୌଦ୍ଧିକତା ଦେଖେଇ ହୋଇ ଦୁର୍ବୋଧ ହେବାରେ ବାହାଦୁରୀ କ୍ରମଶଃ କଟି କଟି ଯାଉଛି। କବିତା ପୁଣି ଫେରି ଆସୁଛି ଏଇ ମାଟି ପାଣି ଆକାଶର ପଥକୁ। ଏଇ ଚିହ୍ନାମାଟିର କୋଳରେ ଛିଡ଼ାହୋଇ ଅଚିହ୍ନା ଆକାଶକୁ ଚିହ୍ନିବାକୁ ଯାଇ ସେ ବାୟବୀୟ ସମ୍ବନ୍ଧ ଯୋଡୁନି ବରଂ ଏଇ ମଣିଷ ସହିତ ହାତ ମିଳେଇ, ତା' ମନ ସହିତ ମନ ଯୋଖି ଭାବସମ୍ବନ୍ଧାନ୍ୱିତ କରିବାରେ ଦୁର୍ବାର ଆଶାୟୀ। 'ମଧ୍ୟପଦଲୋପୀ' ଓ 'ନଇ ପହଁରା'ରେ ଯେଉଁ କାବ୍ୟପୁରୁଷ ଧରିହେଉ ନଥିଲା ସେ କ୍ରମଶଃ ମହୁମାଛି ଗୀତ ଶୁଣାଉଛନ୍ତି। 'ଶକୁନ୍ତଳା'ର ମନକଥା କହୁଛନ୍ତି। କବି ପ୍ରତିଭା ଶତପଥୀ 'ଗ୍ରସ୍ତ ସମୟ' ମଧ୍ୟରେ ଚାପିହୋଇ ପଡ଼ିଥିଲେ ବି(୬) 'ନିୟତ ବସୁଧା'ରେ ସର୍ବଂସହା ଗୁଣରେ ଏଇ ମାଟି ଏଇ ମଣିଷକୁ ଆଦରି ନିଅନ୍ତି ଓ ନିଜକୁ ଏକ ସେତୁ ଭାବରେ ଯୋଡ଼ି ଦିଅନ୍ତି ଦୁଇ ଜଗତର ଦୁଇ ଦିଗନ୍ତରେ।

ଏହି ସମୟର କବି ଜଗନ୍ନାଥ ପ୍ରସାଦ ଦାସ ଅନୁରୂପ ଅସହାୟତା ଭିତରେ ନିଃସଙ୍ଗୀ। ବିକଳ୍ପ ଜୀବନର ବିଫଳ ଅନୁସନ୍ଧାନ ଭିତରେ ସ୍ୱପ୍ନଚ୍ୟୁତ ହୋଇ ମୃତ ବନ୍ଦରରେ ବସି ବସି ଆକାଶର ତାରା ଗଣନ୍ତି। ହାତରେ କମ୍ପାସ୍ ଓ ମାନଚିତ୍ର। ତଥାପି ସେ ଦିଗଭ୍ରଷ୍ଟ।(୭) ହେଲେ ମଧ ତାଙ୍କୁ ବେଳେବେଳେ ଅନୁଭବ କରିବାକୁ ପଡ଼େ-

''ମୋ ଚାରିପାଖରେ ଖାଲି ଇନ୍ଦ୍ରଧନୁ ପ୍ରଜାପତି

ଅପାର୍ଥିବ ସଙ୍ଗୀତର ସ୍ୱର
ସମୁଦ୍ର ଆକାଶ ଝଡ଼ ଅଗ୍ନି ବୃଷ୍ଟି କିଛି ନାହିଁ
ସମସ୍ତ ନୀରବ ଶାନ୍ତ ନିରୁଦ୍‌ବେଗ ସ୍ଥିର।'' (୮)

ଜୀବନର ଆରମ୍ଭ, ବିକାଶ, ବିଲୟ ସେଇ ପରିବ୍ୟାପ୍ତ ମହାକାଳ ମଧ୍ୟରେ ଗତି କରୁଛି। ଏହି ଅବ୍ୟୟ ଶବ୍ଦ ଭିତରେ ଗତି କଲାବେଳେ କବିଟିଏ କେଉଁଠି ଗୋଲାପଟିଏ ପାଇବାକୁ ଯାଇ ହାତରୁ ରକ୍ତ ଝରଉଛି। କେଉଁଠି ଲହଡ଼ି ଭାଙ୍ଗିବାକୁ ଯାଇ ଚୋରାବାଲିରେ ଧସେଇ ପଡ଼ିଛିତ ପୁଣି କେଉଁଠି ନିଜର ମିନାକରା ସୌମ୍ୟ ରୂପଟି ଦେଖିବାକୁ ଯାଇ କଙ୍କାଳର ବିକଟ ରୂପରେ ହତଚକିତ ହୋଇ ପଡ଼ିଛି। ''ବଡ଼ ହଇରାଣ ହେଲା ମଣିଷ ହୋ/ଯେଉଁଠାରେ ପାଦରଖ, ସେଠାରେ/ ବିଛାର ନାହୁଡ଼ x x /ଏଇ ଖାସ୍ ମାହାଲେ/ ଚାରିଆଡ଼େ ଲକ୍ଷେମଡ଼ା ପଚିବାର ଗନ୍ଧ, ଓ କବନ୍ଧ/ ଏକ ଭୂତ ଖୋଜିବୁଲେ ଆପଣାର ଆତ୍ମ ପରିଚୟ।''(୯) ସେଇ ଭୂତଟି ଆପଣାର ପରିଚୟ ଖୋଜିଲାବେଳେ ସବୁଠି ସୁନା ଚକ୍ ଚକ୍ କରି ଉଠେ ଓ ଶେଷରେ ବିକଳ ବାହୁନା ଭିତରେ ଶୂନ୍‌ଶାନ୍ ମଞ୍ଚ ଉପରେ ନିଜେ ହିଁ ଖଳନାୟକ ସାଜି ନିଜକୁ ଗୁଳି ମାରେ। ଏଇ ନିଜ ମଡ଼ା ଉପରେ ମହମର କି ପ୍ଲାଷ୍ଟିକ୍‌ର ସୁନ୍ଦର ମୁଖାଟିଏ ଥାପି ଆମେ ବେଶ୍ ନାଚିପାରୁ। ନିଜ ସହିତ ଛକାପଞ୍ଝା ଖେଳରେ ନିଜକୁ ହରେଇବାକୁ ଚେଷ୍ଟା କରୁ। 'ଆପଣା ବାହୁରେ ଆମେ କୁଲା ବାନ୍ଧି ଶୂନ୍ୟକୁ ସଙ୍ଘାତ କରି ଉଡ଼ିବାର' ମୋହକୁ ଆଉରି ତେଜି ଦେଉ। ଆପଣାକୁ ଖୋଲିଦେଲେ ମୁକୁଳେଇ ଦେଲେ ଆମ ଆଖି ଆଗରେ ନାଚିଉଠେ ଆମରି ମୁଖାପିନ୍ଧା ମୁହଁର ନାଚ। କବି ରାଜେନ୍ଦ୍ର ପଣ୍ଡାଙ୍କ କାବ୍ୟ ସରଣୀକୁ ଧାରାବାହିକ ଭାବେ ଅନୁଶୀଳନ କରି ଆସିଲେ କ୍ରମେ କ୍ରମେ ସେ ଯେ ଜୀବନାମୋଦୀ ହୋଇ ମୁଖାଖୋଲି ଜୀବନକୁ ସରସ ସୁନ୍ଦର ଉପଭୋଗ୍ୟ ତଥା ଆଶାର ପଥ୍ୟରେ ଗଢ଼େଇ ନେଉଥିବାରେ ସଚେଷ୍ଟ ହେଉଛନ୍ତି - ତାହା ହୃଦୟଙ୍ଗମ କରାଯାଇ ପାରିବ। 'ବୀଜ ବିକ୍ଷେପ' କବିତାରେ ପୋଡ଼ାଭୂଇଁ କାହିଁ? ସବୁ ତିଥି ଅକ୍ଷି ତୃତୀୟା। ଚାରିଆଡ଼େ ବୀଜ ବିକ୍ଷେପ ଦରକାର। ବୀଜ ବୁଣିଗଲେ ଅମାର ପୂରିବ। ସବୁଠି ସେ ଅନୁଭବ କରନ୍ତି ''ମଧୁବାତ ଋତାୟତେ ମଧୁ କ୍ଷରନ୍ତି ସିନ୍ଧବଃ'ର ବୈଦିକ ସ୍ୱର୍ଗ। ଭବିଷ୍ୟତକୁ ଚକୁଳିଆ ପଣ୍ଡା ହାତରେ ଉଙ୍ଝେଇ ଦେବାକୁ ହେବ। ଗୀତା ଦର୍ଶନ ସହ ଏକ ସ୍ୱରରେ ସେ ଘୋଷଣା କରନ୍ତି (୧୦)।-

''ଦାଇବାରେ ଦାୟ ନାହିଁ ତୋର
ଅଧିକାର କେବଳ ବୁଣାରେ + +
ପ୍ରତି ବର୍ଗଇଞ୍ଚ ମାଟି ଆଜି ଦୋଆବ୍
ପ୍ରତି ବର୍ଗଇଞ୍ଚ ନାରୀ ଆଜି ଗମ୍ୟା, ଗର୍ଭଯୋଗ୍ୟା---
ଉଡ଼ିଯା ଭାସିଯା ପଶିଯା ଉଠିଆ ବିକ୍ଷିପ୍ତ ହୋଇଯା
ରେ ବନ୍ୟ ବ୍ୟାକୁଳ ବିହନ ଗଦା
ବୁଣି ହୋଇଯା ବୁଣି ହେଉଥା
ସବୁଆଡ଼େ ସବୁବେଳେ।'' (୧୧)

ଆପଣାକୁ ଓ ଶରୀରକୁ ଥରେ ଭଲ ପାଇଗଲେ ଆଉ ତାକୁ ଛାଡ଼ି ହୁଏନା। ଘାଆର

ପୂଜ ବିନ୍ଦୁରେ ସତେକି ଆନନ୍ଦର କ୍ଷୀର ଜକେଇ ଆସେ। "ଭଲ ପାଇ ଗଲେ ତତେ/ତେଣିକି କୁଷ୍ଠ ହେଲେ କେତେ/ ଉପଦଂଶ ହେଲେ କେତେ/ପଦ୍ମ ଗନ୍ଧ ମଘ ଗନ୍ଧ ସବୁ ହୁଏ ଘ୍ରାଣ ଯୋଗ୍ୟ।" (୧୨)

ଏ ପ୍ରକାର ପରିବର୍ତ୍ତନ କେବଳ ଯେ ଜୀବନ ବୋଧରେ ଦେଖା ଦେଉଛି ତାହା ନୁହେଁ, ପ୍ରେମ ପ୍ରଣୟ କ୍ଷେତ୍ରରେ ମଧ୍ୟ। ଏ ରାଜ୍ୟରେ ରମାକାନ୍ତଙ୍କ କାବ୍ୟପୁରୁଷ ଏକ ପରାସ୍ତ ଓ ଆହତ ପ୍ରେମିକ ଭାବରେ ପ୍ରଥମରୁ ପ୍ରତୀତ ହେଉଥିଲେ ହେଁ ଉତ୍ତରିତ ସ୍ତରରେ ଆଉ ସେ ଦେହ ପାଇଁ ବ୍ୟସ୍ତ ନୁହେଁ। ମନ ଲାଖି ମନ ଏବେ ସେ ପାଇଛି। କଣ୍ଠରେ ଆଉ ନାହିଁ 'ବିଷର୍ଣ୍ଣ ଗୋଧୂଳି'। କି ଦେହରେ 'ବୟସର ଧୂଳି' ଥିଲେବି ସେଥିପାଇଁ ବ୍ୟଥିତ ନୁହେଁ। ଆଜି 'କାଳିଆ କମଳ ଦେଖିଲେ କମଳ ନୟନରେ ହୁଏ ଜରଜର' ଭାବ ଆସୁଛି। କଜଳରେ ଚିତ୍ର ଲେଖି ଚୁମା ଦେବାକୁ ବ୍ୟସ୍ତ। ପ୍ରେମର ମହାଦ୍ୟୁତି ଫୁଟି ଉଠିଛି 'ଶ୍ରୀରାଧା'ରେ। ସୀତାକାନ୍ତଙ୍କ 'ପରକାୟା' ଜୀବନ ଜଞ୍ଜାଳରେ ଗୁହମୃତରେ ସଢ଼ି ତଥାପି ଜୀବନର ମହନୀୟ ଦିଗକୁ ଦର୍ଶାଇ ଦେଉଛି।

'ଫଗୁଣର ଖରାବେଳ
କଅଁଳ ପତର ଆଉ ଆମ୍ବ ବଉଳରେ
କି ଭାଷା ଆସିଛି ଆଜି କେଉଁ ଦେଶୁ, କାହା ପାଶୁ
କୋଉଠି ମୋ ଘର
କିଏ ଅନେଇ ବସିଛି ମୋ ଲେଉଟାଣି ବାଟକୁ
କୋଇଲିରେ ଗୀତ ଖାଲି ମୋ ଆଖିରେ ଦିଏ ଲୁହଧାରା।"(୧୩)

ମୃତ୍ୟୁ ଚେତନାରେ ବିଚିତ୍ର ମହକ ପ୍ରସରିଛି। ତା ସହିତ ହାତ ମିଳେଇ ବନ୍ଧୁ ବସିଯିବାରେ ବ୍ୟସ୍ତ। 'ବଗିଚା'ରେ ବସି ବସି ତା'ରି ଅପେକ୍ଷା କରନ୍ତି। "ମୁଁ ତେଣୁ ଚଉକି ଛାଡ଼ି ଉଠିବିନି/ବସିଥିବି ବାଟଚାହିଁ ଏଇ ବଗିଚାରେ/କାଳେ ତମେ ପହଁଚିବ ସଂଜ ବୁଡ଼ି ରାତି ହେଲା ପରେ।"(୧୪) ତାର ନୂପୁର ନିକ୍ୱଣିତ ଲକ୍ଷ୍ମୀପାଦକୁ ମଧ ବାରିପାରନ୍ତି। "ଜାଣିଚି ପଛରେ ଆସୁଚ ଆସୁଚ/ଲକ୍ଷ୍ମୀପାଦ ପକେଇ ପକେଇ/ନୂପୂରର ରୁଣୁଝୁଣୁ ଶୁଭୁଚି, ଶୁଭୁଚି/କେତେ ଜନ୍ମ କେତେ ମୃତ୍ୟୁ ଡ଼େଇଁ।"(୧୫) ରମାକାନ୍ତ ମୃତ୍ୟୁଠାରୁ ନିଜକୁ ଅଲଗା ବୁଝିପାରନ୍ତି ନାହିଁ। ଦୀପକ ମିଶ୍ରଙ୍କ 'ଦନେଇ' ସେଠାକୁ ଧାଇଁ ଯିବାକୁ ବାଧ୍ୟ। 'ଅରଣା ମଇଁଷି'କୁ ସମ୍ମୁଖୀନ ହେବା ସକଳ ବାରଣ ସତ୍ତ୍ୱେ। ଶ୍ରୀମତୀ ପ୍ରତିଭା ଶତପଥୀତ ତାକୁ 'ସବାସାନ ପୁଅ' ଭାବରେ ଗ୍ରହଣ କରନ୍ତି, 'ଦୁର୍ଦ୍ଦାନ୍ତ ପ୍ରେମିକ' ଭାବରେ ତା' ନିକଟରେ ହୃଦୟ-ଶରୀର ସମର୍ପି ଦିଅନ୍ତି। ଜନୈକା ପୂର୍ଣ୍ଣଯୌବନପ୍ରାପ୍ତା ଚତୁର୍ବିଂଶ ବର୍ଷିୟା ତରୁଣୀ ପାଇଁ ମୃତ୍ୟୁ- "x x and death stood by proudly/fingering her nipples." ସେଇଠୁ କବି ମୃତ୍ୟୁର ସଜ୍ଞା ଦେଇ ବସେ-

"Death is a handcart you push
through a dayful of moon light,
of sadness you can't thrust."(୧)

ଏଇ ମୃତ୍ୟୁର ରହସ୍ୟ ଜାଣିବା ଭିତରେ ଆଜିର କବି ହୋଇ ପଡୁଛି ରହସ୍ୟଧର୍ମୀ

ବା ଅତୀନ୍ଦ୍ରିୟଚେତନାନ୍ୱେଷୀ। ଆକାଶ ଭର୍ତ୍ତି ଶବ୍ଦରେ ସେ ଭେଟୁଛି 'ହଂସ'କୁ।(୧୭) କେଉଁ ଦୁର୍ଭେଦ୍ୟ କୁହେଳିକା ଭିତରେ ଛନ୍ଦି ହୋଇ 'ସମୁଦ୍ର'ର ବିସ୍ତୀର୍ଣ୍ଣତାରେ ନିଜକୁ ଖୋଜି ଖୋଜି 'ଆରଦୃଶ୍ୟ' ନିକଟରେ ପହଞ୍ଚିଯାଇଛି। ଏଠି ସବୁ ସଂଶୟ, ସବୁ କୁହେଳିକାର ଜାଲ ଫିଟି ଯାଉଛି। ମିଛେଇ ହେଲେ ବି ସେଇ ଦୃଶ୍ୟର ଅନୁଭୂତିକୁ ନେଇ ମଶାଣି ପଦାକୁ ମନସ୍ଥ କରିଛି। ଆଉ କିଏ ବିଶ୍ୱାସ ଗଲେ କେତେ ନ ଗଲେ କେତେ।

"ସଭିଙ୍କୁ ଅଜଣା ଏଇ ଘନକୃଷ୍ଣ ଅନୁଭବ
ଚୁପ୍‌ଚାପ୍ ନିରୋଳାରେ ଛାତିତଳେ ଛପିରହି
ମୋ' ସାଙ୍ଗରେ ଶ୍ମଶାନକୁ ଯିବ।" (୧୮)

କବିତାତ ଆଜିର ସୃଷ୍ଟି ନୁହେଁ, ଇଲିଅଟଙ୍କ ଭାଷାରେ, ଜଙ୍ଗଲରେ ଯେଉଁଦିନ ଆଦିମ ମଣିଷର ଢ଼ୋଲ ପ୍ରଥମେ ବାଜିଲା, ସେହି ଦିନୁ କବିତାର ଜନ୍ମ।(୧୯) ଯାହାଦ୍ୱାରା ଜୀବନର ସ୍ୱାଦ ଅନୁଭୂତ ହୁଏନି କି ଗୁଣାତ୍ମକ ମୂଲ୍ୟ ବିକଶିତ ହୁଏନି ତାହା ସାହିତ୍ୟ ନୁହେଁ। ସେକ୍ସପିଅରଙ୍କ ନାଟକାବଳୀ, ମହାଭାରତ, ରାମାୟଣ, ଭାଗବତ ଯେପରି ମାନବବାଦ ଉପରେ ଗଭୀର ଆସ୍ଥା ରଖି ଏକ କ୍ରାନ୍ତିକାରୀ ମନୋବୃତ୍ତିର ସୂଚନା ଦେଇଥିଲେ ସେହିପରି ଆଜିର ସାହିତ୍ୟ ବରଂ ବିପ୍ଳବାତ୍ମକ ଦୃଷ୍ଟିଭଙ୍ଗୀ ନେଇ (ଯୁଦ୍ଧପାଇଁ ଡ଼ାକରା ନୁହେଁ) ଜୀବନକୁ ଅସଲ ରୂପ ଦେବାରେ ପ୍ରୟାସୀ। ଊନବିଂଶ ଶତାବ୍ଦୀର ସାମାଜିକ ଅବ୍ୟବସ୍ଥା ତଥା ଜାତିଭେଦର ଦୁର୍ଭେଦ୍ୟ ପାଚେରୀ ଭିତରୁ ସନ୍ଥକବି ଭୀମଭୋଇ ମନ୍ଦ୍ରିତ ବାଣୀ ଶୁଣାଇଥିଲେ-

"ବସିଥାଉଁ କୂଳ ମହାନଦୀ ଜଳ ଛୁଉଁଅଛି ସତ୍ୟକରି।
ଧର୍ମକୁ ଲଘିଂ ସୁରାପାନ କରିବି ହରିବି ବ୍ରାହ୍ମଣ ସ୍ତ୍ରୀରି।
ପ୍ରାଣୀଙ୍କ କଷଣ ଭେଦୁଅଛି ମନ ଜୀବନକୁ ମୋର ବାଧେ।
ଭୀମ ଅରକ୍ଷିତ କରି ଦଣ୍ଡବତ କାରଣ ମାଗୁଛି ପାଦେ।"(୨୦)

ଏହାକୁ ସମୟସୀମା ଭିତରେ ପ୍ରାଚୀନତାର ମୋହର ମାରି ଛାଡ଼ିଦେଲେ ଚଳିବନି। କାରଣ ଏଥିରେ ବି ନୂତନତାର ବା ସାଂପ୍ରତିକତାର ପ୍ରତୁଳ ମୂଲ୍ୟବୋଧ ଗୁମ୍ଫିତ ରହିଛି।

ସୀତାକାନ୍ତ ମହାପାତ୍ର ଯେତେବେଳେ 'ଭରୁଭଗ୍ନ ଲଗ୍ନ' ପାଇଁ ଅପେକ୍ଷା କରି, ସେଇ ଅଦୃଶ୍ୟ ସତ୍ତା ନିକଟରେ ଆସ୍ଥା ରଖି ଏକ ନୂତନ ସଚଳ ସମୟ ପାଇଁ ସମ୍ଭାବନା ଟାଣୁଥିଲେ ଏବେ ସେହି ମହାଭାରତୀୟ ପଟ୍ଟଭୂମିରେ ଛିଡ଼ା ହୋଇ କଣ ସୌରୀନ୍ଦ୍ର ବାରିକଙ୍କ କାବ୍ୟପୁରୁଷ ନିଜ ହାତ ମୁଠାରେ ଭରସା ରଖି ଆପଣା ଉପରେ ଆସ୍ଥା ସ୍ଥାପନ କରିଛି। ପ୍ରତ୍ୟେକ ମହାଭାରତୀୟ ଚରିତ୍ର ସେମାନେ ମାନବୀୟ ସତ୍ୟକୁ ପ୍ରକାଶ କରନ୍ତି। ସତୀ, ଦ୍ରୌପଦୀ ଅକୁଣ୍ଠିତ ଭାବେ ମନର ନିରାଟ ସତକଥାକୁ କହି ବସନ୍ତି-

"କେତେ କରୁଣ କେତେ ଲଜ୍ଜାକର ପ୍ରଭୁ
ପଞ୍ଚସ୍ୱାମୀ ସମ୍ମୁଖରେ ଅସହାୟ ଭାବେ
ତୁମ ଶରଣ ପଶିବା
ଦୁଇହାତ ଟେକି ପ୍ରସ୍ତ ପ୍ରସ୍ତ ତୁମରି ଭିତରେ
ଲଜ୍ଜାକୁ ଢ଼ାଙ୍କିବା।"(୨୧)

ଉପରୋକ୍ତ ଭାବ ଭାବନା ହିଁ ରମାକାନ୍ତଙ୍କ ସମକାଳୀନ କାବ୍ୟଧାରାର ନିର୍ଯ୍ୟାସ। ଏହା

ଏତେ ବ୍ୟାପକ ଯେ ଏହି ପରିପ୍ରେକ୍ଷୀରେ ତାର ଆଭାସ ଚିତ୍ର ମାତ୍ର ପ୍ରଦାନ କରାଗଲା ।

ପାଦଟୀକା.

୧. ''ଚମ୍ପା ଫୁଲ ମହକରେ ପଡ଼େ ସେ ଯେ ଦାରୁଣ କୁହୁକ
ରକ୍ତେ ଯାଏ ନିଆଁଲାଗି, ଛାତି ଆଉ ନିଃଶ୍ବାସରେ ନିଆଁ
ଛାତି ଆଉ ନିଃଶ୍ବାସରେ ନିଆଁ ସେଯେ ଦେହେ ଦେହେ ବିଜୁଳି ଚମକ
ବିଜୁଳି ଚମକ ସେଯେ ବଣନିଆଁ, ସବୁଯାଏ ଛିନ୍ନ ଭିନ୍ନ ହୋଇ,
ପୃଥିବୀ ଛାତିରେ ଲୋଟି ପୋଡ଼ିଯାଏ ଜଳିଯାଏ ସବୁ
ମାଂସ ଫୁଟେ ଫୁଲ ହୋଇ ମନ ପଡ଼େ ରୋମାଞ୍ଚରେ ଶୋଇ ।''
ଚମ୍ପାଫୁଲ-ସମୁଦ୍ର ସ୍ନାନ(୧୯୭୦)- ଗୁରୁପ୍ରସାଦ ମହାନ୍ତି-ପୃ-୧

୨. ''ପାହାଡ଼ ଜଳୁଛି ଏଇ ସନ୍ଧ୍ୟା ମୁଖେ
ଜଳିଯାଏ ରକ୍ତ, ମାଂସ, ହୃଦୟ ନର୍ମଦା''

x x x

ଚିତ୍ତ ଓ ମାନସ ସରେ ବୁନ୍ଦାଏ ବି ପାଣି ନାହିଁ
ଧୂ-ଧୂ ଖାଁ-ଖାଁ କରେ ଆଜି ବୁନିଆଦି ସବୁଜର ଗଳି ।''
-ମୃତ୍ୟୁନାଚ-ଅଷ୍ଟପଦୀ- ପୃ.୮-୯

୩. ଆରଦୃଶ୍ୟ-ସୀତାକାନ୍ତ ମହାପାତ୍ର-ପୃ ୬୫

୪. ଅଳକା ସାନ୍ୟାଲ-ସମୁଦ୍ରସ୍ନାନ- ପୃ ୧୮

୫. ପ୍ରତ୍ୟାବର୍ତ୍ତନ - ବଜ୍ରଯାନ-ସୌଭାଗ୍ୟ କୁମାର ମିଶ୍ର

୬. ''ମୁଁ ଗୋଟିଏ କଳାମେଘ । ଓଢ଼ନିଆ ବର୍ଷାରାତି
ତୃତୀୟ ପ୍ରହର ।/ନିଛାଟିଆ ଚାଲିଥାଏ ବୁଦା ବୁଦା ଜଙ୍ଗଲର
ଉହାଡ଼ ଛାତିରେ/ଏବଂ ମୋ ମୁଣ୍ଡରେ ଟାଣ ପାହାର ବସାଇ
ମୋ ନିଜକୁ କ୍ଷତାକ୍ତ ବି କରେ
କ୍ଷତର ଯଂତ୍ରଣା ସତ । ତୁଚ୍ଛାମିଛ ରାତିର ସପନ ।''

୭. ''ଜାହାଜ ଭାଙ୍ଗିଲା ଯାଇ ବତୀ ଘରେ ଲିଭିଲା ମଧ୍ୟାହ୍ନ
ଛକ ହେଲା ଜନଶୂନ୍ୟ ଜଳିଗଲେ ମାର୍ଚ୍ଚ ଓ ଏପ୍ରିଲ
ଏକାକୀ ମୁଁ ଠିଆହୋଇ ଲହରୀରେ ଦେଖୁଚ଼ି ମୋ ଅସଂଖ୍ୟ ଛାଇକୁ
ବିକଳ୍ପ ଜୀବନ ଖୋଜି ମୁଁ ଯାଉଚ଼ି ଧକ୍କା ଖାଇ ଅସଂଖ୍ୟ ଛକରେ

୧୧. ବୀଜ ବିକ୍ଷେପ-ଆସନ୍ତାକାଲି-ପୂଜା ୧୯୮୨-ରାଜେନ୍ଦ୍ର କିଶୋର ପଣ୍ଡା
୧୨. ନର୍ତ୍ତକ-ସଂଯୋଗ-ପୂଜା ୧୯୮୨-ରାଜେନ୍ଦ୍ର କିଶୋର ପଣ୍ଡା ।
୧୩. ପରକୀୟା-ଚିତ୍ରନଦୀ-ସୀତାକାନ୍ତ ମହାପାତ୍ର-ପୃ ୯୦
୧୪. ବଗିଚା-ଶବ୍ଦର ଆକାଶ-ସୀତାକାନ୍ତ -ପୃ.୧୪
୧୫. ସମୁଦ୍ର-ସୀତାକାନ୍ତ-ପୃ ୪୩
୧୬. Measuring Death-The False Start-Jayanta Mahapatra
୧୭. ଶବ୍ଦର ଆକାଶ - ଦ୍ରଷ୍ଟବ୍ୟ
୧୮. ଆରଦୃଶ୍ୟ-ସୀତାକାନ୍ତ-ପୃ ୬୬
୧୯. "Poetry begins, I dare say, with a savage beating a drum in a jungle, and it retains that essential of percussion and rhythm, hyperbolically one might say that the poet is older than other human beings."
-The use of Poetry and use of criticism-
Selected Prose of T.S. Eliot -Ed. Frank Kermode P.95
୨୦. ସ୍ତୁତି ଚିନ୍ତାମଣି-ଭୀମଭୋଇ
୨୧. ବସ୍ତ୍ର ହରଣ - ଉପଭାରତ-ସୌରୀନ୍ଦ୍ର ବାରିକ ।

# ତୃତୀୟ ପରିଚ୍ଛେଦ

## ବିଫଳ ପ୍ରେମର ସଫଳ ରୂପାୟନ

କବି ରମାକାନ୍ତ ରଥଙ୍କ ପ୍ରାରମ୍ଭିକ ପର୍ଯ୍ୟାୟର କାବ୍ୟ ବଳୟକୁ ଅନୁଧ୍ୟାନ କଲେ ଏକ ସୂକ୍ଷ୍ମ ମାନସ ଦୃଷ୍ଟିରେ ସେଥିରୁ ଜୀବନର ବହୁବିଧ ରଙ୍ଗକୁ ଉପଭୋଗ କରାଯାଇପାରେ ସତ; କିନ୍ତୁ ସବୁରି ଭିତରୁ ବାରିହୋଇ ପଡ଼େ ଗୋଟିଏ ରଙ୍ଗ ଯାହାକି ଖୁବ୍ ସ୍ପଷ୍ଟ ଓ ମନୋମୁଗ୍ଧକର; ତାହା ବ୍ୟକ୍ତିଗତ ପ୍ରେମ-ଜୀବନର ଅସଫଳତା ଓ ତଜ୍ଜନିତ ଅସହାୟ ମାନସିକତା, ଯଦିଓ ଉତ୍ତର କାଳରେ ଯାହା ଅଦେହୀ ଆତ୍ମାର ଅନ୍ୱେଷାରେ ପ୍ରଧାବିତ।

ପ୍ରଥମତଃ ଧରିନେବାକୁ ହେବ କବି କବିତା ଲେଖୁଛନ୍ତି ବିଂଶ ଶତାବ୍ଦୀର ପଞ୍ଚମ ଦଶନ୍ଧି ବେଳକୁ। ଅନେକ ପୂର୍ବରୁ ବିଶ୍ୱ ସାହିତ୍ୟରେ ରୋମାଣ୍ଟିକ୍ ଭାବାଳୁତାର ସମୟ ସରିଯାଇଛି। ଓଡ଼ିଆ କାବ୍ୟ ସାହିତ୍ୟ ଇତିହାସରେ ବିପୁଳ ପରିବର୍ତ୍ତନ ଆସିଯାଇଛି। ବୈଷ୍ଣବ କାବ୍ୟ ସାହିତ୍ୟରେ ରାଧାକୃଷ୍ଣଙ୍କର ଅପ୍ରାକୃତ ପ୍ରେମଲୀଳାର ପର୍ବ କେବେଠୁ ଉଦ୍‌ଯାପିତ ହୋଇ ଯାଇଛି। ରୀତିଯୁଗୀୟ କାବ୍ୟନାୟିକାର ଅବଗୁଣ୍ଠନକୁ ତ ସଚ୍ଚି ରାଉତରାୟ ପୂର୍ଣ୍ଣ ମାତ୍ରାରେ ଖୋଲି ଦେଇ ତା' ଦେହରେ ଖାକୀର ପୋଷାକ ପିନ୍ଧାଇ ତାକୁ ଟ୍ରାଫିକ୍ ଛକରେ ଛିଡ଼ା କରେଇ ସାରିଛନ୍ତି।(୧) ଗୁରୁ ବାବୁବି ତା' ଦେହରେ ସିନେମାର ହାଣ୍ଡବିଲ୍ ମାରି ସାରିଛନ୍ତି।(୨)

ଯେତେବେଳେ ବାସ୍ତବ ଜୀବନର ସକଳପଥ କଣ୍ଟକାଚ୍ଛାଦିତ ଏବଂ ପ୍ରତି ଦିଗରୁ ପ୍ରସରି ଆସୁଛି ସାହାରାର ଶୁଖିଲା ପବନ ସେତେବେଳେ ପ୍ରତିଟି ସ୍ତରରୁ ଜୀବନର ମହାର୍ଘ ଦିଗଟି ହଜିଯାଇଛି। କେବଳ ନିରନ୍ଧ୍ର ଅନ୍ଧକାର ଭିତରେ ମଣିଷକୁ ବଞ୍ଚିବାକୁ ହେବବୋଲି ସେ ବଞ୍ଚୁଛି। ପ୍ରଥମ ପର୍ବରୁ କାବ୍ୟପୁରୁଷର ବିଫଳ ପ୍ରେମ ସଂଜାତ ଅସ୍ଥିର ମାନସିକତା ଓ ତଜ୍ଜନିତ ପ୍ରତିକ୍ରିୟାରେ ରୂପାନ୍ତରିତ ଭାବାବବୋଧ ସୂଚିତ ହୋଇଥାଏ। ତାଙ୍କ କବିତାରେ ନା ଅଛି ସହକାର କୁଞ୍ଜ ନା 'ଅଛି ଚନ୍ଦ୍ରିକାଚର୍ଚ୍ଚିତ ନୀଳ ନିଶୀଥିନୀର ମୋହିନୀ ଆବେଶରେ ପ୍ରଣୟିନୀର କରକଙ୍କଣର କିଣିକିଣି ନାଦ ବା ସଂଲଗ୍ନ ଆଲିଙ୍ଗନର ଉଷ୍ଣତା। 'ପ୍ରେମ କରି ସାରି ଲାଭଗଣାଗଣି/ପୃଥିବୀରେ ହୁଏ ପ୍ରାଣଧରା।'(୩) -ଏହି ଉକ୍ତିଟିରେ ସୂଚିତ ହୋଇଯାଏ ଆଜିର ଭୌତିକତା ସର୍ବସ୍ୱ ଜଡ଼ବାଦୀ ପ୍ରତିଦ୍ୱନ୍ଦିତା ମୂଳକ ସମାଜରେ ପ୍ରେମର ଅସଲି ରୂପଟା, କାରଣ, ତା' ପୂର୍ବରୁ ଜୀବନରେ ସେ ଅନୁଭବ କରିଛି- "ଯାହା

ଧରିଥିଲି ବାଷ୍ପ ଆକାରେ/ ଉଡ଼ିଗଲା ହାୟ ଉଡ଼ିଗଲା/ ଭାରୀ ମାଠିଆର ବିକଳ ବିଷ୍ଫୋଟ/ ରାକ୍ଷସ ଏକ ଦେହ ନେଲା।"(୪)

ଗତାନୁଗତିକତାର ସ୍ରୋତରେ ପ୍ରଣୟୀ ପ୍ରଣୟିନୀ ପରସ୍ପର ପ୍ରତି ଢଳିଯିବା ଓ ଢାଳିଦେବାର ମନୋବୃତ୍ତି ଏଥିରେ ନାହିଁ। ପ୍ରେମର ନବନୀରନ୍ଧ୍ର ଅପଘନ ସନ୍ଦେହର ମ୍ଲାନଛାୟାରେ ବିବର୍ଣ୍ଣ-ବିଷର୍ଣ୍ଣ। ଯମୁନା ତଟ କଦମ୍ବ ଆଜି ପଳିତପତ୍ର। ନା ଅଛି ନିଧୁବନ ପାଇଁ ବିରହ ବଂଶୀର ଉଚ୍ଚାଟିତ ଆହ୍ୱାନ ନା ଆଜି ରାଧା କେବେ କହିବସେ-

"ଜୀବନ ଗଲେ ମୋ ଏତିକି କରିବ
ଶ୍ୟାମ ନାମ ମୋର ହୃଦେ ଲିହିବ
ଶ୍ୟାମ ରୂପ ମୂର୍ତ୍ତି ହୃଦେ ଲଦାଇ
ଶ୍ୟାମ ବସନ ଅଙ୍ଗରେ ଘୋଡ଼ାଇ
ଶ୍ୟାମ ଗତିପଥେ ଗୋ,
ମୋ' ଶବ ପୋତିବ ଆପଣା ହାତେ।
x x x
ଶ୍ୟାମ ବଂଶୀ ଶୁଭୁଥିବ ଯେଣିକି
କର୍ଣ୍ଣ ଡେରି ଦେଇଥିବ ତେଣିକି....।"(୫)
ବରଂ ସେ ଅନୁଭବ କରେ-
"ବନ୍ଧୁରେ ! ବନ୍ଧୁରେ !/ ନୂଆ ପୁରୁଣାର ସୂତା ବୁଣାବୁଣି
ପିତା ପୁତ୍ରର ଛୁରୀମରା,/ ପ୍ରେମ କରି ସାରି ଲାଭ ଗଣା ଗଣି
ପୃଥିବୀରେ ହୁଏ ପ୍ରାଣଧରା !(୬)

ଏଇ ମର୍ମାହତ ମୁହୂର୍ତ୍ତରେ ସେ ଆଉ ଜୀବନରେ ସୁଖସ୍ୱପ୍ନ ଦେଖେନା। ଅସୁମାରୀ ଫୁଟି ଯାଉଥିବା ହେନାର ସୁରଭି ପ୍ରତି ତାର ନ ଥାଏ ନିଘା। ବେସୁରା ଧରିଲାଣି ରାଗ ଆଶାବରୀ। ନିସ୍ତବ୍ଧ ହେଲାଣି ଗଜଲର ହାର୍ଦ୍ଦିକ ମୂର୍ଚ୍ଛନା। ସେଥିପାଇଁ ସେ ଜାଣି ଜାଣି ଆତ୍ମହତ୍ୟା କରେ ଜୀବନର ଦୋଛକି ରାସ୍ତାରେ। ସାକ୍ଷୀ ମଧ କେହି ନାହିଁ।(୭) କେବଳ ନିଜକୁ ନିଜ ଭିତରେ ହତ୍ୟା କରିବା। 'ସାତଟି ମାସରେ ପ୍ରେମ ପ୍ରତ୍ୟାଖ୍ୟାନ' ସବୁ ସହିଥିବା ଲୋକଟି (୮) ପୁଣିବା କେମିତି ଆଶାର ମସିଣା ବୁଣି ସୁଖନିଦ୍ରା ଯାଇ ସ୍ୱପ୍ନରେ ବିଭୋର ହେବାର ମାନସିକତା ଆଣିବ? ଅନେକ ଗୁଡ଼ିଏ ସ୍ୱପ୍ନ ଖାଲି ଆମରି ଭିତରେ ବଞ୍ଚିରହେ ଏବଂ ଆମରି ମୃତ୍ୟୁରେ ହିଁ ସେଗୁଡ଼ିକର ଅବସାନ ଘଟିଥାଏ।

"ସେଥିପାଇଁ/ ଏ ଚନ୍ଦ୍ରକୁ ମୁକ୍ତି ଦେଲି, ବୁଡୁ ସିଏ ପଶ୍ଚିମ ଦିଗନ୍ତେ,
ତାରାଗଣେ ମୁକ୍ତିଦେଲି, ଗୋଟି ଗୋଟି ଲୁଚିଯିବା ପାଇଁ
ସକାଳର କବରରେ ସାଙ୍ଗେ ନେଇ ପୂର୍ଣ୍ଣିମାର ସ୍ମୃତି + +
ସାର ହେବ ନିର୍ଦ୍ଦୟ ବିସ୍ମୃତି।"(୯)

ମନ ଭିତରୁ ସୂକ୍ଷ୍ମ ସ୍ୱର୍ଗୀୟ ପ୍ରେମାନୁଭୂତିର ଅବର୍ତ୍ତମାନତା ସତ୍ତ୍ୱେ ଦେହର ଜୈବିକ ଡାକରା ରହିଛି। ସେହି କ୍ଷୁଧାର ମୋହରେ ଏକ ନାରୀ ସହିତ ସହବାସ କରାଯାଇପାରେ। ସେହି ମୁହୂର୍ତ୍ତରେ କାବ୍ୟପୁରୁଷ ତାକୁ ଭଲ ପାଇ ବସିଲେ ମଧ ତା'ଉପରେ ତାଙ୍କର ଟିକେ ହେଲେ ଅଧିକାର ନାହିଁ। ଏ ମିଳନ ଆକସ୍ମିକ। ମନ ସହିତ ମନର ପ୍ରଣୟିତ

ଭାବାବେଗ ଜନିତ ସଂପର୍କ ନାହିଁ, ବରଂ ମାଳତୀ ସାମଲର ମଧ୍ୟସ୍ଥତାରେ ସେମାନେ ଭେଟାଭେଟି ହୁଅନ୍ତି। ତା' ପରେ ସେ ପୁଣି ଚାଲିଯାଏ। କାବ୍ୟପୁରୁଷ ମନ ଭିତରେ ଅସଂଖ୍ୟ ପ୍ରଶ୍ନମାଳା। ଏଇ ଚିଠି, ଏଇ ଶପଥ, ଏଇ ବ୍ୟାକୁଳତା, ଏଇ ଚେତନା ସବୁ କ'ଣ ଖାଲି ମିଛ? ଏଇ ଦ୍ୱୈତ ଭାବ ଭିତରେ ସେ ସନ୍ତୁଳିତ। ଅଣନିଃଶ୍ୱାସ ହୋଇ ପଡୁଛି।(୧୦) ଲଣ୍ଡନର ଧାତବ ଦହନ ଭିତରେ ଅନୁଭବ କରେ ବାସ୍ତବ ପ୍ରେମର ଏକାନ୍ତ ଅନୁପସ୍ଥିତରେ ସେ କିପରି ଭଦ୍ରଭାବରେ ଜଳୁଛି।

"ତମେ କେବେ ଦେଖିପାର ପ୍ରଜ୍ଜ୍ୱଳିତ ଅସ୍ତିତ୍ୱ ମୋହର?
ଅନୁମାନ କରିପାର, ମୁଁ ଜଳୁଚି ଓ ଜଳୁଚି ତୀବ୍ର ଦରଜରେ
ମିଡ଼ିୟମ ଧୋତି ଏବଂ ଇସ୍ତ୍ରୀକରା ଅଧା କମିଜରେ?"(୧୧)

ଅନେକ ଆତୁ ମୌସୁମୀର ଆଳସ୍ୟ ନେଇ, ଡୋଳା ସଞ୍ଚାଳନରେ ଗହଳ ବାଳତଳୁ ଚଂପକର ମଧୁବାସ୍ନା କେଉଁ ଏକ ଦୈହିକ ମିଳନର ଇସାରା ଦେଉଛି ସତ କିନ୍ତୁ ପ୍ରଜ୍ଜ୍ୱଳିତ ଲଣ୍ଡନର ତୀବ୍ର ଦହନ ଭିତରେ ସବୁ କେବଳ ପରିଣତ ହୋଇ ଯାଉଛି ଧୂମକୁଣ୍ଡଳୀର ଆସ୍ତରଣ। ମିଳନ ବିଚ୍ଛେଦ, ସ୍ୱପ୍ନ ବାସ୍ତବ, ଜୀବନ ଓ ମୃତ୍ୟୁ -ଏହାର ଭିତରେ କାବ୍ୟପୁରୁଷ ଚାପି ହୋଇ ପଡ଼ିଛି। ତେଣୁ ସେ ଟିକେ ଚାହୁଁଛି ଘରକୁ ଆସି ଗୀତଗାଇ ନାଚନ୍ତା, "କିନ୍ତୁ ମକ୍‌ଚା ପାଦ ନେଇ କିଏ ନାଚେ?"(୧୨)

ଏଇ ଅସହ୍ୟ ଉତପ୍ତ ବାତାବରଣ ଭିତରେ ପ୍ରେମର ଦହନ, ଜୀବନର ହାହାକାର ଓ ମୃତ୍ୟୁର ବିଭୀଷିକା ଚୌଦିଗ ବିସ୍ତୃତ। 'କେତେଦିନର' ସ୍ମୃତି 'ଅନେକ କୋଠରୀ'ର ଅନେକ କୋଠରୀରେ ସଂଗୋପିତ। ଧୀରେ ଧୀରେ ଖୋଲି ଯାଉଛି କୋଠରୀର ଦ୍ୱାର। ଆଜି ସେ ନିସ୍ତବ୍ଧ ନିଃସଙ୍ଗତା ଭିତରେ ଜଡ଼ସଡ଼। ନିଶୂନ ପାଚେରୀର ବେଢ଼ା ଭିତରେ ଶୂନ୍ୟକୁ ହାତ ପାତିଲେ ଶୂନ୍ୟତାରୁ ମେଞ୍ଚାମେଞ୍ଚା ଖସି ପଡୁଛି ଶୂନ୍ୟ ହସ୍ତରେ। କେବଳ ଦେହର ଡାକରା, ନାରୀ ଓ ବାଘ ଏକାପରି ପ୍ରତୀତ; ଠିକ୍ ଯେମିତି ଚଣ୍ଡୀଦାସ ଗାଇଥିଲେ - "ଦିନ୍‌ମେଁ ମୋହିନୀ ରାତ୍‌କେ ବାଘିନୀ / ପଲକ୍ ପଲକ୍ ଲହୁ ଚୋଷେ।" 'କେତେଦିନର' ସଂକଳନସ୍ଥ 'ବିଦାୟ' କବିତାରେ ଥିବା ବାଘର ଯେଉଁ ଭୟାବହତାକୁ କାବ୍ୟପୁରୁଷ ସାମ୍ନା କରିଥିଲା ପୁଣି ତାହା ଅନେକ କୋଠରୀ'ର 'ବାଘଶିକାର' ଭିତରେ ଭୀଷଣତର ହେବାକୁ ବସିଛି।

"ହଠାତ୍ ସକାଳ ହେବା ଦେଖି ଅବା ବଣର
ବଳଦର ମଡ଼ାଛାଡ଼ି ଚାଲିଗଲା, ଏବଂ ଦି' ପାଖର
ଜଙ୍ଗଲୀ ଭୂର୍ଷୁଙ୍ଗାବଣ ଭାଙ୍ଗି ରୁଜି କାଟି ଦେଲା ବାଟ।
ତମେ ଯେବେ ଚାଲିଗଲ ପଛକରି ପିଠା ଆଉ ବେଣୀ
ତ୍ରସ୍ତଭାବେ ଫିଟିଗଲା ମୋ ମାଟିର କାଛର କବାଟ।"(୧୩)

ଏହି ଚିତ୍ର କଳ୍ପଟିରେ ଆଙ୍କିହୋଇଛି ନାରୀ-ପୁରୁଷର ନିଶୀଥ ସଂଭୋଗ। ସାରାରାତି ଜଗି ବସିଛି ବାଘ ରୂପିଣୀ ନାରୀଟି ମଲାବଳଦ ରୂପକ ନିସ୍ତେଜ (ରତିକ୍ଳାନ୍ତ?) ଅବସନ୍ନ ପୁରୁଷଟିକୁ ଝିଙ୍କି ଓଟାରି ଖାଇ ଯାଉଛି ଦେହରୁ ପଳପଳ ମାଂସ ଓ ରକ୍ତ। ସକାଳୁ ସକାଳୁ ବାଘୁଣୀ ମଢ଼ ଛାଡି ଅଗମ୍ୟ ଜଙ୍ଗଲରେ ଆତ୍ମଗୋପନ କରିବା ସ୍ୱାଭାବିକ୍। ଦିବସର କୋଳାହଳ ତା' ପକ୍ଷେ ଅସହ୍ୟ। ଠିକ୍ ସେହିପରି ନାରୀଟି ପୁରୁଷ-ସଂଭୋଗ

ପ୍ରକ୍ରିୟାରୁ ବିଦାୟ ନେଇ ଚାଲିଯାଏ ରାତ୍ରିର ବିଦାୟ ସଙ୍ଗେ। ମୃତ୍ୟୁ ରୂପିଣୀ ବାଘୁଣୀର ପ୍ରସ୍ଥାନ ସାଥେ ସାଥେ ପୁରୁଷ ଜୀବହୀନ ଭାବେ ପଡ଼ିରହେ। ତାର ମାଟି କାନ୍ଥର ଦୁର୍ବଳ ଛାଞ୍ଚ ଫାଟି ଧସେଇ ପଡ଼େ। 'ଅନେକ କୋଠରୀ'ର 'ବାଘଶିକାର'ରେ ଆମେ ସେଇ ଦୈହିକ ପ୍ରେମର ଭୟାବହତାକୁ ପୁଣି ଲକ୍ଷ୍ୟ କରୁ।

'ବାଘ ଆସେ ଗର୍ଜିଗର୍ଜି ଗାଉଁ ଗାଉଁ ଓ ହମ୍
ଆକର୍ଷିତ ହୋଇ ତମେ ଜାଳିଥିବା ମହମ ବତୀରେ
+ + + +
ରାସ୍ତାରେ ଦେଖିଛି ବହୁ ସ୍ୱପ୍ନ ଏବଂ ଯେତେ ସ୍ୱପ୍ନ
ରାସ୍ତାରେ ଦେଖୁଚି
ସବୁରି ସିନ୍ଦୁକେ ହଲେ ବାଘ
ଏବଂ ମୂର୍ଦ୍ଧାର ଅଛନ୍ତି।''(୧୪)

କାବ୍ୟପୁରୁଷ 'ଅନୁଭବ କରେ ସ୍ୱପ୍ନର ସିନ୍ଦୁକ ଭିତରେ ବାଘର ଉପସ୍ଥିତି। ଜୀବନ ରୂପକ ବଣଭୋଜିର ଅବସାନ ପରେ ସେ ଆଜି କ୍ଳାନ୍ତ ଶ୍ରାନ୍ତ। ''ମୋ' ପାଖରେ ଯୁବତୀ ସମସ୍ତେ/ଘୁମାନ୍ତି, ବା/ ମୋ ଦରଜ ଗୋଇଠିରେ ଗୋଇଠି ଘଷନ୍ତି।''(୧୫) ନା ଏଠି ଦୈହିକ କାମନାର ଚରିତାର୍ଥତା ଆସୁଛି ନା ଶାଶ୍ୱତ ପ୍ରେମର ଦୀପ୍ତିରେ ଝଲକି ଉଠୁଚି କାବ୍ୟ ପୁରୁଷ। ଧୂ-ଧୂ ବାଲିରେ ଚାଲିଚାଲି ଉଡ଼ନିଆଁ ଭିତରେ ଶୁଖିଲା କାଗଜ ଗିଳି ଚାଲିଛି। ପାଦରେ ଫୋଟକା। ଆଣ୍ଠୁ ଥୁରୁଥୁରୁ। କାହା ପାଇଁ ଏ ନୟାନ୍ତ ଅବସ୍ଥା? କାହା ପାଇଁ ଏ ଅସହ୍ୟ ଦୁଃଖ ବରଣ? ସେ ଜାଣେନା। ତଥାପି ଚାଲେ। ସ୍ୱାମୀତ୍ୱକୁ ବରଣ କରିନେବାର ସୁସ୍ଥ ମାନସିକତା ନାହିଁ। ବରଂ ଖାଲି ପୋଖରୀ କୂଳରେ ବସି ଅଶ୍ରୁମୂଞ୍ଚନ କରିଚାଲେ। ତା' ପରେ ନିଜକୁ ସେ ଏହିପରି ଅବସ୍ଥାରେ ଦେଖେ - ''ହଠାତ୍ ବିଜୁଳୀ ଆସେ, ମୁଁ ଲାଜରେ ଦେଖେ ବାଥ୍‌ରୁମ୍/ ଟେବୁଲରେ ଗୋଟାଗୋଟା କମିଜର ଭାଙ୍ଗ ମୁଁ ଦଳୁଚି।''(୧୬)

ଶ୍ରୀରଥଙ୍କ ''କେତେଦିନର' କବିତା ଗ୍ରନ୍ଥର ପ୍ରଥମ କବିତା 'ଭୟ'କୁ ଯଦି ଆମେ ତାଙ୍କ କାବ୍ୟ ସରଣୀର ଉପୋଦ୍‌ଘାତ ଭାବରେ ଗ୍ରହଣ କରିନେଉ ତେବେ ତାଙ୍କ କାବ୍ୟପୁରୁଷର ଦ୍ୱୈତଭାବକୁ ସହଜରେ ଧରିହେବ। ପ୍ରଥମତଃ ନିର୍ଜନତା ଏବଂ ଅସହାୟତାର ରାତ୍ରିର ସେ ନିରୀହ ମେଷ ଛୁଆକୁ ଦେଖି ଭୟଭୀତ ହୋଇ ପଡିଛନ୍ତି; ପୁନଶ୍ଚ ଶାନ୍ତି ଭିତରେ ନିଜକୁ ଅବସ୍ଥାପିତ କରି ଗଢ଼େଇ ନେବାର ଇଚ୍ଛା ଥିଲେ ବି ତାହା ବାସ୍ତବାୟିତ ହୋଇପାରୁନି।

''ତୁମ ରାଣ ସଖି, ହିଂସ୍ର ମୋହର ମରମ
ନିରୀହତାଠାରୁ ଭୟ ଲିଭିଥିଲା ଚରମ
+ + + +
ଏକା ହୋଇ ମୁହିଁ ସେ ପଥେ ଯେବେ ଗୋ ଯାଉଚି
ମତେ ଜଣାଯାଏ ମେଷଛୁଆ ଅବା ଆସୁଚି।''(୧୭)

ଦୈହିକ ପ୍ରେମ ଓ ଅନନ୍ତ ପ୍ରେମ - ଏହି ଦ୍ୱୈତ ଚେତନା ଭିତରେ କାବ୍ୟପୁରୁଷ 'କେତେଦିନର' ଠାରୁ 'ଶ୍ରୀରାଧା' ପର୍ଯ୍ୟନ୍ତ ଛନ୍ଦି ହୋଇ ଆସୁଚି। 'ବାଘାବଲୋକନ' କବିତାରେ ବାଘ ଓ ନାରୀକୁ ସମାନ୍ତରଳ ଭାବରେ ଦେଖେଇ ଦିଆଯାଇଛି। ଗଡ଼ଜାତୀ ଜଙ୍ଗଲର ବାଘ

ହିଂସ୍ରତା ଓ ଯୌନତାର ପ୍ରତୀକ। ହରିଣଛୁଆ କୋମଳତା ଓ ନିରୀହତାର ପ୍ରତୀକ। ମହାବଳର ହୁଙ୍କାର ପ୍ରବଳ ଯୌନାବେଗର ସଙ୍କେତ। 'ଗରୁଡ଼' କବିତାରେ ମଧ୍ୟ ଏହିପରି କାମ ଓ ତଜ୍ଜନିତ ମାନସିକ ଯଂନ୍ତ୍ରଣାର ଭାବ ପ୍ରକଟିତ ହୁଏ।

"ବିଶ୍ୱାସଘାତକ ବାଦ ଚାରିପାଖେ ଜମିଆସେ କା'ର
ସହବାସ ଲାଗି ଡ଼ାକେ ନାଗକନ୍ୟା ଭୁରୁକୁ ନଚାଇ,
ନଗ୍ନ ଜାନୁ, ନଗ୍ନ କୁଚ, ବେହରଣ ବିଦାୟ ନେଇଛି
ଶେଯକୁ ଦେଖାଏ ହାତ ମରଣର ସଂଗମ ସୂଚାଇ।"(୧୮)

ପରିଣତି ସଂପର୍କରେ ସଚେତନ ଥାଇ ମଧ୍ୟ ସେଥିରୁ ତାର ନିସ୍ତାର ନାହିଁ। ପତଙ୍ଗ ସମ ସେ ଅଗ୍ନିରେ ଝାସ ଦେଇ ମୃତ୍ୟୁ ସହିତ ସଙ୍ଗମ କରିବାରେ ଆଶାୟୀ। ଏହା ସହିତ ଇଲିଅଟଙ୍କୁ ଦେଖନ୍ତୁ - ଭାବସାମ୍ୟ କିପରି ଅନୁରୂପ। Those who sharpen the tooth of the dog, meaning Death,"(୧୯)

ସ୍ଥଳ ବିଶେଷରେ କାବ୍ୟପୁରୁଷ ପ୍ରତି କେତେ ନାରୀ ଅନାସକ୍ତ ଓ ହେୟ ଦୃଷ୍ଟି ନିକ୍ଷେପ କରି ତାଙ୍କର ଶଯ୍ୟାକୁ ନିଃସଙ୍ଗ କରି ଛାଡ଼ି ଚାଲି ଯାଆନ୍ତି। ଏହି ଧିକ୍କାର ଭିତରେ ତଥାପି ଆଶା ଟିକକ ଉଜ୍ଜ୍ୱଳି ଉଠେ। ତାଙ୍କ କ୍ଲାନ୍ତି ବୁଝିପାରି କେହି ଜଣେ ସେହି ବିବିକ୍ତ ଶଯ୍ୟାକୁ ମୁଖରିତ କରିବାର ପ୍ରତ୍ୟାଶା ଆଣେ। ତୋଫା ଜହ୍ନ ଆଲୁଅରେ ତା'ର ଗୋରା ପେଟ ସଫା ହୋଇଉଠେ। ପୁଣି ସେହି ମୁହୂର୍ତ୍ତରେ ପାହାଡ଼ ଉପରେ ଚାହିଁ ବସିଥିବା ଏକାକୀ ତାରା ନିର୍ଜନତା ଓ ପ୍ରତୀକ୍ଷା ଭିତରେ ତଥାପି ବସି ରହିଥାଏ। ପୁଣି କଳା ଅନ୍ଧାର ଭିତରେ ପେଚାଟିଏ ମଧ୍ୟ ଅସରନ୍ତି ଧାନବିଲ ଆଡ଼କୁ ଚାହିଁ ରହିଥାଏ। ଉଭୟ ଦିଗରେ ରହୁଛି ଗୋଟେ ଅପେକ୍ଷା। ସେ ପ୍ରତୀକ୍ଷା ମୃତ୍ୟୁ ପାଇଁ। ନିଜର ଅସମର୍ଥ୍ୟ ନିପାରିଲା ପଣ ଯୋଗୁଁ। ଯୌନ-ଅସହାୟତାକୁ ସୂଚେଇ ଦେଉଛି କାବ୍ୟପୁରୁଷ-

"ମୁଁ ତାକୁ ଚାହିଁଲି ପୁଣି, ତା' ଜଙ୍ଘର ଡ଼େଣାରେ କୁଆଡ଼େ
ଉଡ଼ିବାର ଚେଷ୍ଟା ମୋର ମରିବାକୁ କୁତୁକୁତୁ କରେ।
ଜହ୍ନର ଆଲୋକେ ଏକ ତାରା ପରି ଜଳି ସେ କହୁଚି,
ମୋ' ଭଲ ପାଇବା କ'ଣ ଜାଗା ହେବ ତମ ବିଛଣାରେ।"(୨୦)

ବାସ୍ତବ ଜୀବନ ଭିତରେ ପ୍ରତାରଣା ଓ ଭର୍ତ୍ସନାକୁ, ଅପାରଗତାକୁ ଆଦରି ନେଉଥିବା ମଣିଷଟି ବି ବେଳେବେଳେ ସ୍ୱପ୍ନ ଦେଖେ। କେତେବେଳେ ମଲ୍ଲୀ ଫୁଲ ଜୁଡ଼ାରେ ଖୋସି ଦେଉଛି। ତା' ପାଇଁ ପରିଷ୍କାର ବିଛଣା ଚାଦର ପାରିଛି କିନ୍ତୁ ଘର ଭିତରେ ମଲାମୂଷାଙ୍କ ଶବ। ଆକାଶରେ ଆଶାୟୀ କୁଆପଲ। ତଥାପି ସେ ଯଦି ଆସେ ସେମାନେ ଏ ମଲା ମୂଷାକୁ ଫିଙ୍ଗିଦେବେ ବାହାରକୁ ଏବଂ ତାର ଉଷୁମ ଛାତିରେ ଭରାଦେଇ ସେ ପକ୍ଷୀଙ୍କ କାକଳି ଶୁଣିବେ। ଯେଉଁ କବି ଆଶା କରୁଥିଲା, 'ଚାଲି ଆସ ଦୀପପରି ଅନ୍ଧାର ପବନେ/ଖସିପଡ଼ ବର୍ଷାପରି ମୋ ହାତଙ୍କ ବୈଶାଖ ମାସରେ', ସେହି ସ୍ୱପ୍ନରେ ପୁଣି ସେ ଦେଖେ-

"ଦେଖୁଚି ଯେ ହସି ହସି ଧାଉଁଥିବ ତମେ ଓ ତମର
ପଛେ ପଛେ ମୁଁ ଧାଇଁବି। ଆମେ ଦୁହେଁ ଦୁଲ୍‌ଦାଲ୍ କରି
ଅନ୍ଧାର କୁଅର ଭଙ୍ଗା ଚୌତରାରେ ପଡ଼ିବା + +
ତାଙ୍କ ସଙ୍ଗେ ତମେ ଫେରିଯିବା ଆଗୁଁ ରଖିବ ମନରେ
ପ୍ରାୟ ଦେଢ଼ ମାସ ଯାଏ ମୁଁ ରହିବି ଏହି ସହରରେ।(୨୧)

ନାୟିକା ତିରୋହିତା। ପରିତ୍ୟକ୍ତ ନାୟକ ସ୍ୱପ୍ନ ଦେଖେ। ତଥାପି ତା'ମନରେ ଲୁଚି ରହିଚି ଆସକ୍ତି। ସୂଚେଇ ଦିଏ ଯେ ସେ ଏଇ ସହରରେ ଦେଢ଼ମାସ ଯାଏ ରହୁଚି। ଏକଥା ନାୟିକା ଯେପରି ମନେ ରଖେ। ଏ କବିତାଟିରେ ଏକ ଉଦ୍‌ଗତ ବ୍ୟକ୍ତିଗତ ପରକୀୟା ପ୍ରେମର ସ୍ମୃତି ରହିଚି ଯାହା ବାସ୍ତବତା ମଧ୍ୟରେ ନହେଲେ ବି ସ୍ୱପ୍ନରେ ଉଙ୍କିମାରେ। ସ୍ୱପ୍ନରେ ସମ୍ଭବ ହୁଏ।

ସମଗ୍ର ବିଶ୍ୱବ୍ରହ୍ମାଣ୍ଡ ତା' ପାଇଁ ଚନ୍ଦ୍ରିକା ଚର୍ଚ୍ଚିତ। କାବ୍ୟପୁରୁଷ ନିଜେ ପୃଥିବୀରେ ରୂପାନ୍ତରିତ ହୋଇଯାଏ। ସାରା ଆକାଶ ପରି ନାୟିକା। ଏବଂ ସେ ଅନୁଭବ କରନ୍ତି, "ତମେ ଠିକ ସେହିପରି ମେଲା କରିଅଛ ହାତମାନ, ଯେଉଁଠାରେ ଓହ୍ଲାଇଲେ ସେହିଠାରେ ତମ ଆଲିଙ୍ଗନ।" କିନ୍ତୁ ଏ ନିବିଡ଼ ଅନୁଭବ ବି ଦେହ ସ୍ତରକୁ ଉତୀର୍ଣ୍ଣ ହୋଇ ରହିଯାଏ। ଏଠି ବାନ୍ଧିହୋଇ ପଡିଛି ସେ। ଏଠୁ କକ୍ଷଚ୍ୟୁତ ହେଲାପରେ ସେ ହୁଏତ ପୁନର୍ବାର ଏଠିକୁ ଫେରି ନ ଆସିପାରେ। ପ୍ରବାସରୁ ପ୍ରିୟତମ ବିହଙ୍ଗମକୁ ବାରମ୍ବାର ଆହ୍ୱାନ କରେ। ସେହି ସ୍ୱପ୍ନପୁରୀକୁ ଇଚ୍ଛା କରୁଥିଲେ ବି ପୁଣି ଭାବାନ୍ତର। "ମୁଁ ଏଠାରୁ ପାରିବିନି ଘୁଞ୍ଚି କାଳେ/ଜହ୍ନ ବୁଡ଼ିଯିବ।/ କାଳେ ମୁଁ ଫେରିବା ବେଳେ ସୂର୍ଯ୍ୟାଲୋକେ / ବାଟ ନ ଦିଶିବ।"(୨୨) ନିଷ୍ଠୁର ସତ୍ୟରୂପୀ ସୂର୍ଯ୍ୟାଲୋକରେ ତାର ସ୍ୱପ୍ନ ଭାଙ୍ଗିଯିବ, କାରଣ ସେଠାରେ ପୃଥିବୀର ସମସ୍ତ ବାସ୍ତବତାର ବୋଝ। ବାସ୍ତବ ଜୀବନରେ ଏତେ ଆଘାତ ଏତେ ପ୍ରତାରଣା ପାଇ ସାରିଲା ପରେ ପୁଣି ବା କେମିତି ସେ କକ୍ଷଚ୍ୟୁତ ହେବାକୁ ଯିବ! କବିତାର ପ୍ରଥମ ଭାଗରେ ଦ୍ୟାବ୍ୟା- ପୃଥିବୀ ବା ପ୍ରକୃତି-ପୁରୁଷର ମିଳନ ଜନିତ ଉତୀର୍ଣ୍ଣ ଭାବାବେଗର ସୂଚନା ରହୁଥିଲେ ମଧ୍ୟ ଶେଷରେ ଯନ୍ତ୍ରଣାକ୍ତ କାବ୍ୟପୁରୁଷ ସେହି ଦୂରରୁ ଜହ୍ନକୁ ମାନସିକ ସ୍ତରରେ ଉପଭୋଗ କରିବାର ପ୍ରୟାସ ରଖୁଛି କିନ୍ତୁ କ୍ରୁର ବାସ୍ତବତାକୁ ଭୟ କରୁଛି।

ଧବଳ ଚନ୍ଦ୍ରକିରଣ ରୂପରେ କାହାକୁ ପାଇବାର ବାସନା ପ୍ରବଳ ଥିଲେ ମଧ୍ୟ ପରବର୍ତ୍ତୀ ସମୟରେ ସେହି ଚେତନା ପୁଣି ରଙ୍ଗ ବଦଳାଇଛି। ଏଠି ଆଉ ଜହ୍ନ ନାହିଁ। ସଂଧ୍ୟା ଆସିଛି। ଧୂସର ସଂଧ୍ୟା। ଦିଗ୍‌ବଳୟଯାଏ ଲମ୍ବିଯାଇଥିବା ହଳଦିଆ ଧୂସର ପ୍ରାନ୍ତର ମୃତ ପ୍ରିୟତମାର ଛାତି। ତାରି କୋଳରେ ଶୋଇଲେ ତାକୁ କେତେ ଭଲ ଲାଗୁଛି। କିନ୍ତୁ ସବୁ ଖାଲି ପ୍ରେମ ଭିତରେ ବନ୍ଧା ହୋଇ ଫଟୋ ପରି କାନ୍ଥରେ ଝୁଲୁଛି। ବାର୍ଦ୍ଧକ୍ୟ ଭିତରେ ସବୁକିଛି ହଜି ଯାଇଛି। ସବୁକିଛି ଭାଙ୍ଗି ରୁଜି ଯାଇଛି। "କି ଦୀର୍ଘ ବିଚ୍ଛେଦ ପରେ ଜାହାଜର ଟୁକୁଡ଼ା ଦିଶିଲା।"(୨୩) କାବ୍ୟପୁରୁଷର ପ୍ରେମ ଜଗତ ଭିତରେ ସେହି ନାରୀଟି କେତେବେଳେ ପତ୍ନୀ ଭାବରେ ତ କେତେବେଳେ ପ୍ରଣୟିନୀ ଭାବରେ ଉଙ୍କି ମାରୁଛି। ଅନ୍ତଃସତ୍ତ୍ୱା ପତ୍ନୀର ଫୁଲିଲା ଶଙ୍ଖମଲ୍‌ମଲ୍ ବିବସ୍ତ୍ର ପେଟକୁ ସେ ଆସ୍ତେ ଆସ୍ତେ ଥାପୁଡ଼େଇ ଦିଏ, କାଳେ ତାକୁ କଷ୍ଟ ହେବ। କିନ୍ତୁ ସମୟ କ୍ରମେ ଶୀତଦିନରାତିଅଧର କୁହୁଡ଼ିପରି ତା' ପାପୁଲି ଓଜନିଆ ହୋଇଉଠେ। ପତ୍ନୀର ମୃତ୍ୟୁରେ ସେ ଘୁମେଇ ପଡ଼େ।(୨୪)

ଆଜି ଆଉ ବସନ୍ତରେ ମଳୟ ଶିଖରୀ ଶିରୀ ଚୋରିକରି ମନ୍ଦ ସମୀର ବହୁନାହିଁ। କୋକିଳ ପଞ୍ଚମ ତାନରେ ରାଗିଣୀ ତୋଳୁ ନାହିଁ। କଣ୍ଠଆଳତୀ ରୋଗରେ ସେ ଆକ୍ରାନ୍ତ। ବସନ୍ତ ପଳିତ। ଯଦିଓ ବସନ୍ତ 'ଶୀତର ଯନ୍ତ୍ରଣା ପରେ ଉଷ୍ମ ଜଳରେ ଦେହ ଧୋଇ, ଶେଯରେ ସଫା ଚାଦର ପକାଇ ଓ ଧଳା ପୋଷାକ ପିନ୍ଧି ନର୍ସପରି ତା' ବଳିଲା ହାତରେ ଘଣ୍ଟା ଚର୍କ୍‌ଚର୍କ୍ କରି ଆସୁଛି', ତଥାପି କାବ୍ୟପୁରୁଷ ଅନୁଭବ କରୁଛି-

"ମୁଁ ପ୍ରାୟ ଯାଇଛି ଭୁଲି ଗୁରୁଅଛି ଚନ୍ଦ୍ରର ଆଠରେ,
କେବଳ ସେତିକି ନୁହେଁ, ଚନ୍ଦ୍ର ସଙ୍ଗେ ଶନି ରହିଅଛି,
ସୁତରାଂ ଏ ବସନ୍ତ ସତ୍ତ୍ୱେ ମୁହିଁ ପଡ଼ିବି ରୋଗରେ ।"(୨୫)

ଏହି ଦଶାରେ ତାଙ୍କୁ ଅର୍ଥନାଶ, ବନ୍ଧୁନାଶ, ପୁତ୍ରଦୁଃଖ, ଅଯଥା ଶତ୍ରୁତା ଏପରିକି ପ୍ରାଣହାନୀ ମଧ୍ୟ ଭୋଗ କରିବାକୁ ପଡ଼ିବ। କେତେ ସନ୍ଦେହ ଓ ଆଶାନ୍ୱିତ ପ୍ରାଣରେ ସେ ହୁଏତ ବସନ୍ତକୁ ସଙ୍ଖୋଳି ବସନ୍ତା। "କିନ୍ତୁ ଅଣ୍ଡା ତଳକୁ ମୁଁ ଏକ ମଲାଗଛ ଏବଂ ମୋର/ଶୁଖିଲା ହାତଙ୍କ ଡାଳ ନୀଳ ଏବଂ ଖରାରେ ଉଷୁମ।"(୨୬) ନିଜର ସକଳ ଅସାମର୍ଥ୍ୟ ଓ ଅସହାୟତା ସତ୍ତ୍ୱେ ମନର ସୂକ୍ଷ୍ମ ପ୍ରଦେଶରେ ବସନ୍ତର ମହୋତ୍ସବ ଭିତରେ ରଙ୍ଗର ମଶାଣିରେ ଠିଆ ହୋଇ ସେମାନେ ପରସ୍ପରକୁ ବନ୍ଧୁଜନ୍ମର ସାଥି ଭାବରେ ଗ୍ରହଣ କରିନେବାର ମାନସିକତା ରହିଛି।

ଯେତେବେଳେ କାବ୍ୟପୁରୁଷ ପ୍ରକୃତ ପ୍ରୀତିରୁ ବଞ୍ଚିତ ହୋଇଛି ଏବଂ କେବଳ ଦେହସର୍ବସ୍ୱ ଦୁନିଆକୁ ନିରୀକ୍ଷଣ କରିଛି ସେତେବେଳେ ଏକ ବ୍ୟଙ୍ଗାତ୍ମକ ଦୃଷ୍ଟିଭଙ୍ଗୀ ନେଇ ସେ ପ୍ରେମକୁ ମାପି ବସିଛି। ସେ କବିଙ୍କ ପାଇଁ ଏକ ବିଜୁଳି ଯାହା ଅଲିଭା। ଏକ ସଙ୍ଗୀତ ଯାହା ଅଭୁଲା। କିନ୍ତୁ, "ଅକସ୍ମାତ୍ ଯଦି ମୋ' ଦେହରେ ଥରିବା ଲକ୍ଷଣ ଦିଶେ ତମେ ହାତ ମେଲାଇବ, / ତମ ପେଟ ବର୍ଷା ଓଦା ବଣ/ ହସ ହସ ମହାବଳ ଲୁଚିଛନ୍ତି ଅସତର୍କ ମୃତ୍ୟୁ ଉଦ୍ଦେଶ୍ୟରେ।"(୨୭)

ପୁନଶ୍ଚ, "ତମେ ଅଧିଷ୍ଠାତ୍ରୀ ଦେବୀ ଅସମ୍ଭବ ମୁହୂର୍ତ୍ତ ମାନଙ୍କ।
ସକାଳର ବିସ୍ଫୋରଣ ତମର ସ୍ତନରେ।
ଏକୁଟିଆ ଦି' ପହର ଉଙ୍କିମାରେ ତମ କାଖତଳେ।
ତମେ ଯେବେ ହସି ହସି କଥା କହ ଦରବୁଢ଼ା ମାନଙ୍କ ସାଙ୍ଗରେ
ଆକାଶ ପବନ ପୂର୍ଣ୍ଣ ହୁଏ ଏକ ଭଗ୍ନ ମନୋରଥ
ମଧ୍ୟ ରାତ୍ରି ଦୀର୍ଘ ନିଃଶ୍ୱାସରେ।"(୨୮)

ସେ ଅନେକ ଭୟଙ୍କର ମୁହୂର୍ତ୍ତମାନଙ୍କର ବି ଦେବୀ। ସେ ସାପ, ଭଙ୍ଗା ବୋଇତ, ଜୁଆଡ଼ି, ଭାଡୁଆ ଓ ବେଶ୍ୟା ମାନଙ୍କର ବି ସାମ୍ରାଜ୍ଞୀ। ଏପରି ନାରୀ (ମାଧବୀ)କୁ ସେ ଆଉ ନିଜ ବିଛଣାରେ କି ତକିଆରେ ତାର ମୁଣ୍ଡକୁ ମଧ୍ୟ ଦେଖି ପାରନ୍ତି ନାହିଁ।

ଜୀବନରେ ଚାଳିଶ ବର୍ଷ ପୂରଣ ହୋଇଗଲା ପରେ ଏଣିକି ଆଉ ଆକାଶରେ ଖାଲି ପ୍ରସ୍ତ ପ୍ରସ୍ତ ଧୂସର ବାଦଲ ଘୋଟି ଆସୁଛି। ତା'ରି ଭିତରେ ମନର ତୋଫାନରେ ହାତକଟା ବ୍ଲାଉଜ୍‌ର ଝାଳର ମହକ ଭାସିଆସେ। ଲହ ଲହ ନିଆଁର ପରିଧି ଭିତରେ ସେ ଜଳିଯାଏ। ଚାରିଆଡ଼େ ବାଘର ହୁଙ୍କାର। ବାଘର ଶିକାର। ଏହା ବାହାରେ ହୁଏତ କେଉଁ ଝରଣାର କୁଳୁକୁଳୁ ଡ଼ାକ ଥାଇପାରେ; କିନ୍ତୁ "ମୋ ମୁହଁରେ ପାଚିଲା ରୂଢ଼ ମୋ/ ଆଖିରେ ପାଓ୍ୱାର ବାଲା ପ୍ରଚକ୍ଷୁ ଓ ମୋର/ କାନ୍ଦକାନ୍ଦ ଅଧୋଗତି ଲୋଡୁଅଛି କ୍ଷିପ୍ର ଜନ୍ମାନ୍ତର।"(୨୯) ବୁଢ୍ଢା ହୋଇଗଲା ପରେ ମଧ୍ୟ ଏଠି ତଥାପି କିଛି ବାକୀ ରହିଯାଉଛି। 'ବୁଢ଼ାର ବୟସ ଜମା ଛତିଶ ସାର୍ଟିଫିକେଟରେ।' ଟୀକାଦିଆ ବି ନାଁ ଲେଖେ। ଏକୁଟିଆ ଛେଳିଟି ପରି ଅସହାୟତା ଭିତରେ ବୁଢ଼ା ତାର ସ୍ମୃତି ରୋମନ୍ଥନ କରି ଚାଲିଛି। ବୁଢ଼ାର କାହାକୁ ଭୟ ନାହିଁ। "ବୁଢ଼ାଲୋକ ରାଜହଂସ, ସର୍ବୋଚ୍ଚ ମେଘର / ଊର୍ଦ୍ଧ୍ୱେ

ଅନ୍ତରୀକ୍ଷେ ତା'ର / ଆପଣାର ପସନ୍ଦ ଯୌବନ।" (୩୦) ଏହି ଭାବ ସାନ୍ଦ୍ରୀଭୂତ ହୋଇଛି ଅନ୍ୟ ଏକ କବିତାରେ -

"ଖରାବେଳେ ନିଛାଟିଆ
ବୃନ୍ଦାବନ ସହରର ବାଟ
ଉତ୍ତାପର ଟହଟହ
ହସ ମଧ୍ୟେ ପ୍ରେମିକ ସମ୍ରାଟ
ଆଖିରେ ପ୍ରଚକ୍ଷୁ ଏବଂ ହାତରେ ମୁରଲୀ
ଧରି ଡାକୁଛନ୍ତି ରାଧା ଆସ ଆସ ବୋଲି।
ସ୍ୱର ଅତି ଜଣାଶୁଣା; ନିଭୃତ ଗଳିରେ
ବାୟାହାତୀ ପରି ଧସି ଚାଲିଯାଏ ବତାସ ବେଗରେ।
ପ୍ରଶ୍ନଙ୍କର ଛାଇ ଛାଇ
ବଖରାରୁ କେହି
ଆସିବ ନିଦରେ ଭୋଳ
ସ୍ୱାମୀଙ୍କୁ ଏଡ଼ାଇ।" (୩୧)

ପ୍ରେମକୁ ଏଠି ସାଂପ୍ରତିକ ପରିପ୍ରେକ୍ଷୀରେ ହାସ୍ୟାସ୍ପଦ (ridiculous) ଦୃଷ୍ଟିଭଙ୍ଗୀରେ ଅଙ୍କନ କରାଯାଇଛି।

ପାଦଟୀକା ●

୧. "ପ୍ରତିମା ନାୟକ ହସେ, ଓଠେ ତା'ର ସ୍ୱପ୍ନର ଆଭାସ।
ମୁହଁରେ ଖାକୀର ହସ, ଆଖିରେ ତା' ରାତିର ଇସାରା
ଦୁଇ ପାଖେ ଦ୍ରୁତବାନ୍, ଗତିବାନ୍ ନକ୍ଷତ୍ରର ଧାରା
ଆହା ! ହସୁ ହସୁ ପ୍ରତିମା ନାୟକ
ଅଞ୍ଚଳ ତା' ନାଇ ଦେହେ,
ଦେଖିଅଛି ଖାକୀର ପୋଷାକ।"
- ପ୍ରତିମାନାୟକ - ପାଣ୍ଡୁଲିପି - ସଚ୍ଚିଦାନନ୍ଦ ରାଉତରାୟ
୨. ଅଳକା ସାନ୍ୟାଲ-ସମୁଦ୍ର ସ୍ନାନ-ଗୁରୁ ପ୍ରସାଦ ମହାନ୍ତି-ପୃ ୧୯
୩. ଘଣ୍ଟା - କେତେ ଦିନର - ପୃ ୧୬
୪. ତତ୍ରୈବ - ପୃ. ୧୫
୫. ବିଦଗ୍ଧ ଚିନ୍ତାମଣି - ଅଭିମନ୍ୟୁ ସାମନ୍ତ ସିଂହାର
୬. ଘଣ୍ଟା - କେତେ ଦିନର - ପୃ ୧୬
୭. "ସେଥିପାଇଁ/ ବାଦ୍‌ଶାହୀ ଇନାମକୁ ପାଦେ ଫିଙ୍ଗି ଆତ୍ମହତ୍ୟା କଲି। ଚେତନା ଓ ଚେତନାର ଦୁଃଖ - ଏଇ ଦିନ୍ଦକି ରାସ୍ତାରେ ପଙ୍ଗୁ ହୋଇ ଆତ୍ମହତ୍ୟା କଲି। ମୋର ସାକ୍ଷୀ କେହି ନାହିଁ।"
-ଧର୍ମପଦର ଆତ୍ମହତ୍ୟା - କେତେ ଦିନର - ପୃ. ୨୭
୮. ଚିଲ - ତତ୍ରୈବ - ପୃ ୧୭
୯. ଧର୍ମପଦର ଆତ୍ମହତ୍ୟା - ତତ୍ରୈବ - ପୃ ୨୭

୧୦. "ତମକୁ ମୁଁ ଭଲ ପାଏ, ମାତ୍ର ତାହା ଆକସ୍ମିକ ଅଟେ।
ତମର ଉପରେ ନାହିଁ ଏତେ ଚୋପେ ଦାବୀ ବି ମୋହର।
ଯାହା ବା ସଂପର୍କ ଅଛି ତାକୁ କେତେ ମିନିଟ୍ ମାଣରେ
ମାପିବା ବୋକାମି ଅଟେ। ଗତକାଲି ତମର ଓ ମୋର
ଚିହ୍ନା ବି ନ ଥିଲା ଜମା, ଖାଲି ସିନା ମାଳତୀ ସାମଲ
ଆମକୁ ଜୁଟେଇ ଦେଲା, ତାହା ପରେ ତମେ ଆଗେଇଲ।"
ପରାସ୍ତ ମୁହୂର୍ତ୍ତ - ତତ୍ରୈବ - ପୃ ୩୪
୧୧. ଲଣ୍ଡନ - ତତ୍ରୈବ- ପୃ ୪୩
୧୨. ଅନ୍ୟଦିନ - ତତ୍ରୈବ - ପୃ ୮୯
୧୩. ବିଦାୟ (ଦୁଇଟି ଗୀତ) - କେତେ ଦିନର - ପୃ ୮୭
୧୪. ବାଘଶିକାର - ଅନେକ କୋଠରୀ - ପୃ ୯ -୧୪
୧୫. ତତ୍ରୈବ - ପୃ ୧୩
୧୬. ତତ୍ରୈବ - ପୃ ୯
୧୭. ଭୟ - କେତେ ଦିନର - ପୃ ୨
୧୮. ଗରୁଡ଼ - ତତ୍ରୈବ - ପୃ.୮
୧୯. Marina - Selected poems - T.S Eliot - P. 103
୨୦. ପ୍ରତ୍ୟାବର୍ତ୍ତନ - ଅନେକ କୋଠରୀ - ପୃ. ୨୪
୨୧. ଖସିପଡ଼ ମୋ କୋଳକୁ - ତତ୍ରୈବ - ପୃ. ୫୦-୫୧
୨୨. ଜହ୍ନ ରାତି - ତତ୍ରୈବ - ପୃ.୨୫
୨୩. ସଂଧ୍ୟା - ସନ୍ଦିଗ୍ଧ ମୃଗୟା - ପୃ ୪
୨୪. ଭୁଲାମନ - ତତ୍ରୈବ - ପୃ ୫
୨୫. ବସନ୍ତ ଋତୁ - ତତ୍ରୈବ - ପୃ ୧୨
୨୬. ତତ୍ରୈବ - ପୃ ୧୩
୨୭. ସମୟକୁ ଚାରିଟି ଚୋରା ଚାହାଣୀ - ତତ୍ରୈବ ପୃ. ୭୬-୭୭
୨୮. ତତ୍ରୈବ - ପୃ ୭୭
୨୯. ରାତିର ଆକାଶ - ତତ୍ରୈବ - ପୃ ୯୦
୩୦. ବୁଢ଼ାଲୋକ - ତତ୍ରୈବ - ପୃ.୯୩
୩୧. ସୂର୍ଯ୍ୟାସ୍ତରେ ଖରା ଶେଷ ନୁହେଁ - ତତ୍ରୈବ - ପୃ.୯୧

## ନୈରାଶ୍ୟବୋଧ

ଓମାର ଖାୟାମୀ ସୁରାସାକୀରେ ମଜିଯାଇ ଜୀବନକୁ ଗୋଲାପୀ ମହକରେ ବିତେଇ ଦେବାରେ ଆଜିର କବି ଆଉ ପ୍ରୟାସୀ ନୁହେଁ। ତା' ଚାରିପାଖରେ ଅନେକ କଳା କୋମଶ ହାତ ତଣ୍ଟିଚିପା ଇଙ୍ଗିତ। ତୀକ୍ଷ୍ଣ କଣ୍ଟାର ସ୍ପର୍ଶ ଆଉ ରକ୍ତର ଛିଟିକା।

ତେଣୁ ତ ବସନ୍ତ ଆଜି ପଳିତ। ମୃତ। କୋଇଲିର କୂଜନ ଶୁଣିବାକୁ ମଣିଷର ସମୟ ନାହିଁ।(୧) କାଳର ଖରାରେ ଗୋଲାପ ପାଖୁଡ଼ା ମଉଳି ଯାଉଛି। ଚାରିଆଡ଼େ ଏକ ଅବିଶ୍ୱସ୍ତତା, ଘୃଣା ଓ ବିଦ୍ୱେଷର ଝାଞ୍ଜି। ପ୍ରତି ରାଜପୁତ୍ର ଜିଭରେ 'ସସେମିରା'- 'ସସେମିରା'ର ଚିତ୍କାର। କୋକୁଆର ଅଦୃଶ୍ୟ ଭୀତି ତାକୁ ଟାଣି ନେଉଛି ଏରକାର ବନକୁ। କାଦମ୍ବରୀପାନ ପ୍ରମତ୍ତ ମଣିଷର ବିଭ୍ରମତାରୁ ମୁକ୍ତି ନାହିଁ।

ଆତ୍ମସଚେତନ କାବ୍ୟନାୟକ ଆଜି ନିଜ ଅସ୍ତିତ୍ୱର ଅସାର୍ଥକତା, ଉଦ୍ଭଟତା ଓ ନିରର୍ଥକତା ସଂପର୍କରେ ଅବହିତ। ତାର ଦୃଷ୍ଟିଭଂଗୀ ଆଜି ସ୍ୱପ୍ନାଭିମୁଖୀ ନୁହେଁ ବରଂ ଶ୍ଳେଷାତ୍ମକ। ଗଣଜୀବନ ପ୍ରତି କ୍ରମଶଃ ଆସିଛି ତାର ଅରୁଚି (nausea)। ଐହିକ ବିଶ୍ୱ ଭିତରେ ସେ ବଞ୍ଚି ରହି ମଧ ବଞ୍ଚି ପାରୁନି। ତେଣୁ ଏହି ପାପବିଦ୍ଧ ଅପରିଚ୍ଛନ୍ନ ଅସ୍ୱାସ୍ଥ୍ୟକର ପରିବେଶ ଭିତରୁ ସେ ନିଜକୁ ଏଡ଼େଇ ନେବାର ପ୍ରଚେଷ୍ଟାରେ ମଧ ପ୍ରତିହତ ହେଉଛି। ତେଣୁ ସେ ସ୍ଥିତିବାଦୀ ଦର୍ଶନ ଅନୁଯାୟୀ ଜାଣିଶୁଣି ଆତ୍ମହତ୍ୟା କରିବାକୁ ପ୍ରସ୍ତୁତ। ସେ ଛାତ ସାରରେ ମିଥ୍ୟା ଉତ୍ତର ଦେବାକୁ ଆଗଭର। ''ମୁଁ କରିଲି ଆତ୍ମହତ୍ୟା, ଯେହେତୁ ମୁଁ ଅତିଭଲ ପାଏ / ଶରୀରକୁ।''(୨) ଯଦି ସେ ସବୁ ଦୁଃଖ, ହତାଶା, କ୍ଲେଶ ଓ ଯାତନାକୁ ସହି ଏ ସଂସାରରେ ଜୀବନ ଧରିପାରିଥାନ୍ତା; ତେବେ ଲୋକଚକ୍ଷୁରେ ସେ ଭଲ ହୋଇ ପାରିଥାନ୍ତା। କିନ୍ତୁ ଯେହେତୁ ସେ ଆତ୍ମହତ୍ୟା କରିଛି ତେଣୁ ତାଚ୍ଛଲ୍ୟର ଶରବ୍ୟ ହେବାକୁ ପଡୁଛି - ''ଏଇ ଅଟେ ରମାକାନ୍ତ ରଥ/ ନିଜହାତେ ମାରିଅଛି ମୂଲ୍ୟବାନ ଜୀବନ ତାହାର।''(୩) ଜୀବନର ମହାର୍ଘ ଦିଗଟି ଯେତେବେଳେ ବିପର୍ଯ୍ୟସ୍ତ ଏବଂ ଅବିନ୍ୟସ୍ତ ସେତେବେଳେ ଅତୀତର କାହାଣୀ ବୟାନରେ କୌଣସି ଯଥାର୍ଥ୍ୟ ନ ଥାଏ। ତଥାକଥିତ ଧର୍ମ, ନ୍ୟାୟ ଭିତରେ ସାଧାରଣ ମଣିଷପଣିଆକୁ ବଳିଦେଇ ରକ୍ତଶୋଷଣ ହିଁ ଚାଲିଛି। ଆଜି ତାକୁ ବିବେକକୁ ହତ୍ୟା କରିବାକୁ ପଡୁଛି। ତା'ପାଇଁ ସାରା ଆକାଶରେ ରକ୍ତ ଛିଟିକା। ଏ ରକ୍ତ କୁମାରୀ ମାତାର ବିଦୀର୍ଣ୍ଣ ଯୋନିରୁ ଉତ୍ସରିତ। ଏ ନିଷ୍ଠୁର ଜହ୍ନ ହିଁ ସେହି ରକ୍ତରେ ଗାଧେଇ ଆସୁଛି। ସମାଜର ପ୍ରଥାଗତ ଚଳଣି ଓ ବିଶ୍ୱାସରେ ସେ ଆସ୍ଥାବାନ ନୁହେଁ। ସାରା ଦୁନିଆ ଯାହାକୁ ଜ୍ୟୋତ୍ସ୍ନା (ସ୍ୱପ୍ନ ଓ ସୌନ୍ଦର୍ଯ୍ୟର ବସ୍ତୁ) ଭାବରେ ଗ୍ରହଣ କରି ନେଇଛି ସଚେତନ କାବ୍ୟପୁରୁଷ ତାକୁ ଗୋଟେ 'ବିକଳ ରକ୍ତ ଝରା' ଭାବରେ ସ୍ୱୀକାର କରୁଛି। ଅତୀତର ଯେଉଁ ମୋହ, ଯେଉଁ ମାନେ, ଯେଉଁ ଭାବସିକ୍ତ ସ୍ମୃତି ତାକୁ ମୁଠା ମୁଠା କରି ପାତାଳକୁ ଛାଡ଼ି ଦେବାକୁ ହେବ। ସମୟର (ଘଣ୍ଟା) ଗତିକୁ ରୋଧ କରିବାକୁ ପଡ଼ିବ। ଏ ଗଣସମାଜ ପ୍ରତି ଏକ ଅଭିଶାପାତ୍ମକ ମନୋବୃତ୍ତି ସ୍ୱତଃ କାବ୍ୟପୁରୁଷ ମନରେ ପରିପୁଷ୍ଟ ହୋଇଯାଏ - ''ପାଦକୁ ତମର ସାପ ଦଂଶୁରେ/ ପାନୀୟେ ଜହର ମିଶୁ/ ମୃତ୍ୟୁ ସହିତ ସଙ୍ଗମ କରି/ ଚୁମ୍ବନ ଖାଅ ପଶୁ।''(୪)

ଏଠି ପ୍ରତିଟି ଶିଳାରେ ଚୋରାବାଲି ରହିଛି। ଜୀବନ କଣ ଏକ ଅପଦେବତାର ଅଭିଶାପ? ଏଠି ଜୀବନରୂପୀ ଉର୍ବର କ୍ଷେତ୍ରରେ ଆଉ କେହି ଚାଷ କରି ଫସଲ ଉଠାଇନିଏ ତା' କୋଠିକୁ। ତେଣୁ ଆଜି ସେ କୌଣସି ଅତୀତର ଗାଥା ଶୁଣିବାକୁ ପ୍ରସ୍ତୁତ ନୁହେଁ।

''ବନ୍ଦକର! ବନ୍ଦକର! ଶୁଣିବାର ଧୈର୍ଯ୍ୟ ମୋର ଲଭିଚି ମରଣ
ମୁଁ ଏକ ପ୍ରେତାତ୍ମା ଖାଲି, ଦେହେ ମନେ ଜଳେ ମୋର ଅଗ୍ନିର ହୁତାଶ
ମିଛର ସାଗରେ ଯଦି ଡୁବେ ମୁହିଁ କେଜାଣି ବା ପାଇବି ଉଶ୍ୱାସ।''(୫)

ଏବଂ ସେ ଜୀବନକୁ ନୂଆ ରୂପ ଦେବାରେ ପ୍ରତିହିଂସା ପରାୟଣ।
"ଜୀବନ ଯାଇଚି ହଜି, ଆଜିଠାରୁ ଜନ୍ମନେବ ପ୍ରଶସ୍ତି-ଗାୟକ
ମିଛ ପାଇଁ ଗାଇଯିବ କୋଟି କୋଟି ସ୍ତୁତିଗାଥା, ନୂଆ ରାମାୟଣ,
ନ ଦେଖିବ ଲୋକେ ଦେଖ, ଜୀବନର ତ୍ରକୋଷ୍ଠରେ ଜୀବନ୍ତମରଣ।"(୬)

ଯେହେତୁ ଏ ଚନ୍ଦ୍ରରେ ଅଉ ଜୀବନର କୌଣସି ମହନୀୟ ଦିଗ ଉଦ୍‌ଘାଟିତ ହୋଇ ପାରୁନାହିଁ ତେଣୁ ତାକୁ କିଛି କର୍ଦ୍ଦମାକ୍ତ ପାଣିର ପାତ୍ରରେ ମଗ୍ନ କରିବାକୁ ଏବଂ ତାରାମାନଙ୍କୁ କକ୍ଷଚ୍ୟୁତ କରିବାକୁ କାବ୍ୟପୁରୁଷ ଆଶାୟୀ। ବର୍ତ୍ତମାନର ସବୁ ବ୍ୟବସ୍ଥା କେବଳ ଏକ ଗୁଣିଆର କିମିଆ ପରି ଆଶ୍ଚର୍ଯ୍ୟଜନକ ଭାବେ ଚାଲିଛି। ତେଣୁ ଆଶାବରୀ ତୋଳିଜାଣିଥିବା, ଗଜଲ୍ ଗାଇ ଶିଖିଥିବା ଓ ସ୍ୱପ୍ନର ମସିଣା ବୁଣି ଜାଣିଥିବା କାବ୍ୟପୁରୁଷ ଅଥର୍ବାବସ୍ଥାରେ ପଡ଼ି ରହୁଛି। କାରଣ, ସେ ସକଳ ଆଶା ହିଁ ଦିନେ ନିରାଶାରେ ରୂପାନ୍ତରିତ ହୋଇଯିବ। ତେଣୁ 'ସୂର୍ଯ୍ୟର ନିଃଶ୍ୱାସରେ ସ୍ୱପ୍ନର ସେବତୀ ଦଗ୍‌ଧ ହେଉ।' 'ସବୁଜ ଭ୍ରୂଣ ଚନ୍ଦ୍ରକର ଲୋତକରେ ସିକ୍ତ ହେଉ।' ତା'ପରେ - "ହୁଏତ ସେଇଥିପାଇଁ ନିଜେ ଜଳି ନିଆଁ ମୁଁ ଲିଭାଏ / ଯେଉଁ ନିଆଁ ଆମ ରକ୍ତେ ଜନନୀର ଭୁଲ ରଖିଥାଏ।"(୭) ମଲ୍ଲୀ ଫୁଲ ଫୁଟା ସଂଜବେଳେ ସେ ମୃତ୍ୟୁ ଭାବନାରେ ହୁଏ ପ୍ରପୀଡ଼ିତ। "ବାଉଁଶ ବଣରୁ ଭାଙ୍ଗି ନୂଆ ନୂଆ ବାଉଁଶ କେତେଟା / କୋକେଇ ସଜାଡ଼ି ଆଉ ମତେ ରଖି ପ୍ରାର୍ଥନା ଗାଅ ଗୋ।"(୮)

"Man is born free but everywhere he is in chains" - ଋଷୋଙ୍କର ଏହି ଉକ୍ତିଟି ଆଜି ଜୀବନର ପ୍ରତି ଛତ୍ରେ ଛତ୍ରେ ପ୍ରତିପାଦିତ ହୋଇ ସାରିଛି। ସବୁଠି ଶୃଙ୍ଖଳ । ସବୁଠି ଏକ ସୁସ୍ଥ ବାତାବରଣକୁ କଳୁଷିତ କର୍ଦ୍ଦମାକ୍ତ କରାଯାଉଛି। ଶଗଡ଼ଗୁଳା ଭିତରେ ମାପି ଚୁପି ହିଁ ପାଦ ପକେଇବାକୁ ପଡ଼ିବ। ନଚେତ ଗତ୍ୟନ୍ତର ନାହିଁ। 'ଲଣ୍ଡନ' କବିତାରେ ଆମେ କବିସଭାକୁ ଦୁର୍ଦ୍ଦାନ୍ତ ନିଆଁ ଓ ବାଘ ରୂପରେ ଦେଖିଲେ ହେଁ ତାହା ପ୍ରାୟ ବନ୍ଦୀ। ଗଡ଼ଜାତୀ ଜଙ୍ଗଲର ବାଘ ଆଜି ସର୍କସ୍‌ର ବାଘ। ଆଗରେ ତା'ର ଲୁହା ଘେର। ସେ ଖେଳ ଦେଖାଇ ପେଟ ପୋଷେ। ସେହିପରି ଦୁର୍ଦ୍ଦାନ୍ତ ନିଆଁ ଆଜି ଏକ ଧାତବ ବେଷ୍ଟନୀ ଭିତରେ ସୁନାପିଲା ପରି ଆବଦ୍ଧ। ପ୍ରଚଳିତ ସମାଜ ବିଧିରେ ସେହିପରି କାବ୍ୟପୁରୁଷ ଆବଦ୍ଧ। ବନ୍ଦୀ। ପ୍ରଚେଷ୍ଟା ଥିଲେ ମଧ ତାହା ଅସଫଳତା ଭିତରେ ଆଛନ୍ନ ଠିକ ଲଣ୍ଡନରେ ନିଆଁ ଓ ସର୍କସରେ ବାଘ ପରି। ଏ ଯନ୍ତ୍ରଣା କମ କଷ୍ଟଦାୟକ ନୁହେଁ। ଏ ଅସହାୟ ଅବସ୍ଥାରେ ଆଉ ମୌସୁମୀର ଆଳସ୍ୟ କି ଚମ୍ପକର ଲେପ କିଛି ମନପ୍ରାଣରେ ପୁଲକ ସଂଚାର କରିପାରୁନାହିଁ। ତେଣୁ ସେ ଆପଣାର ଅସହାୟ ନୈରାଶକୁ ଆଙ୍କି ବସେ।

"ତମେ କେବେ ଦେଖିପାର ପ୍ରଜ୍ୱଳିତ ଅସ୍ତିତ୍ୱ ମୋହର ?
ଅନୁମାନ କରିପାର, ମୁଁ ଜଳୁଚି ଓ ଜଳୁଚି ତୀବ୍ର ଦରଜରେ
ମିଡିୟମ ଧୋତି ଏବଂ ଇସ୍ତ୍ରୀ କରା ଅଧା କମିଜରେ।"(୯)

ଯେତେବେଳେ ଏପରି ଏକ ପୋଡ଼ାଭୂଇଁରେ ଏ ଜୀବନ ଯନ୍ତ୍ରଣାକ୍ତ; ତେଣୁ ଏହି କୃକଳାସୀ ଜୀବନ ପ୍ରବାହ ଭିତରେ ଆଉ କୌଣସି ସମ୍ଭାବନା ନାହିଁ। ପ୍ରତିଶ୍ରୁତି ନାହିଁ, ଦେହ ଓ ଆତ୍ମା ପ୍ରତି ନଜର ନାହିଁ। ପତଙ୍ଗ ସମ ସେ ଡ଼େଇଁ ଡ଼େଇଁ ଚାଲିଛି। ସ୍ଥିର ସ୍ଥିତି

ନାହିଁ। ଇହକାଳ ଓ ପରକାଳର ପରିଣତି ପ୍ରତି ମଧ ସଚେତନ ନିଘାନାହିଁ। ତାର ଅସ୍ତିତ୍ୱ ମଧ୍ୟରେ ସେ ଏକ କ୍ଳେଶର ପୃଥିବୀକୁ ଖୋଜି ପାଏ। ଏହି କ୍ଳେଶର ପୃଥିବୀ ହିଁ ଅପାର୍ଥିବ ଆନନ୍ଦ ରହିତ ପୃଥିବୀ। କାବ୍ୟପୁରୁଷ ହିଁ ଏକମାତ୍ର ଅନୁଭୂତିକୁ ଆପଣାର କରିପାରେ। ତାହା ନିରାଶାର ଅନୁଭୂତି। ଏପରି ଏକ ଘିଟିବାଦ ଭିତରେ ସେ ସବୁକିଛିକୁ ନିଶ୍ଚିହ୍ନ କରିଦେବାରେ ପ୍ରୟାସୀ। ନିର୍ଦ୍ଦୟ ଓ ନିର୍ବିକାର ଭାବରେ ସ୍ମୃତିର ହତ୍ୟା ପାଇଁ ମଧ ଆଶାୟୀ। "ପାଉଁଶ ବି ରଖ ନାହିଁ ଯେହେତୁ ମୋ କ୍ଳେଶର ପୃଥିବୀ/ ପାଉଁଶ ବି ଲୋଡ଼ିବସେ, ଲୋଡ଼ିବସେ ସ୍ମୃତିର କ୍ରନ୍ଦନ।" (୧୦)

ଐତିହାସିକ ଦିଲ୍ଲୀ ସହର ପରିଭ୍ରମଣ କରୁଥିବା ବେଳେ କାବ୍ୟପୁରୁଷ ମନରେ ଏକ ବିଦ୍ରୋହାତ୍ମକ ମନୋବୃତ୍ତିର ସୂତ୍ରପାତ ହୋଇଥିଲେ ମଧ ପରବର୍ତ୍ତି କ୍ଷେତ୍ରରେ ଏକ ମଝାମଝି ଜୀବନକୁ ଆଦରି ନେବାରେ ପ୍ରୟାସୀ। ଫୁଲପରି କୁଢ଼େଇ ହୋଇ ପଡୁଥିବା ଘର ଆଡ଼କୁ ଦୃଷ୍ଟି ଦେବାର ଆବଶ୍ୟକତା ନାହିଁ କାରଣ ଦଳେ ଲୋକ ସେମିତି ଘର ଟେକି ଚାଲିଥିବେ। ଏବଂ ଅନ୍ୟଦଳେ ଲୋକଙ୍କର ଦେହାନ୍ତ ପରେ ମଧ ଘରମାନେ ସେମିତି ଦର୍ପିତ ଭଙ୍ଗୀରେ ଦିଲ୍ଲୀ ସହରକୁ ଆବୋରି ବସିଥିବେ। ଏଥିପାଇଁ ଉଦ୍‌ବିଗ୍ନ ହେବାର କାରଣ ନାହିଁ। ଉଦ୍‌ବେଗ ଆସିଲେ କେବଳ 'ଯମୁନାରେ ପାଣି ପଡ଼ିଥିବାର ସୂଚନା ମିଳିପାରେ'। ଗୀତ ମଧ ଗାଇବାର ଆବଶ୍ୟକତା ନାହିଁ। 'ଗୀତ ଯେଣୁ ପ୍ରମାଣିତ କରେ / ତମର ହାଡ଼ରେ ତମ ପିତୃବ୍ୟଙ୍କ ବିଶ୍ୱାସ ବଞ୍ଚିଛି।' (୧୧) ଏ ଦିଲ୍ଲୀ ଭ୍ରମଣ କେବଳ ଏକ କସରତ୍ ପରି। କାଛରେ ଅକ୍ଷର ପଢ଼ିବା ବି ଆଉ ସମ୍ଭବ ହେଉନି। ଦୃଷ୍ଟିଶକ୍ତି କମି ଆସିଲାଣି। ଟୋଳା ନିଷ୍କ୍ରିୟ ହୋଇ ପଡ଼ିଲାଣି। ଅପରିଚ୍ଛନ୍ନ ମେଞ୍ଚା ମେଞ୍ଚା ଆଲୁଅରେ ରାତ୍ରିର ଦିଲ୍ଲୀ ସଫେଦ 'ହେଲାଣି। ତେଣୁ ଏ ପ୍ରତିଦ୍ୱନ୍ଦିତା ଭିତରେ କାବ୍ୟପୁରୁଷ ପାଦ ଟଳମଳ। କାଛ ସବୁ ମିଳେଇ ଗଲାଣି। ମନରେ ଅସାହାୟତା। ନୈରାଶ୍ୟର ବୋଝ।

"ଯଦି ଆମେ ପଡ଼ିଯାଉଁ କ'ଣ ଧରିଉଠିବା ପୁନଶ୍ଚ ?
ଯଦି ଆମେ ହଜିଯାଉଁ କ'ଣ ଦେଖି ବାଟକୁ ଫେରିବା ?
ଯଦି ଆମେ ଡରିଯାଉଁ କ'ଣ ଦେଖି ଭରସା ପାଇବା ?" (୧୨)

ସେ ଆଉ ଉନ୍ମୁଖ ହୋଇ ପାରୁନି। ବରଂ ବ୍ୟାଦିତ ମୁଖରେ ଶୂନ୍ୟ ଆକାଶକୁ ଚାହିଁ ରହୁଛି। ଆପଣାର ଭୟ ଭିତରେ ନିଜର ଭାବାବେଗକୁ, ସୃଜନଶୀଳତାକୁ ଚାପି ଦେଉଛି। ଚାଲିଆସୁଥିବା ପଥରୁ ଓହରି ଆସୁଛି। "ମୋ ଭୟର କିଆବାଡ଼େ ଲୁଚେ ମୋର ମନର ନେଉଳ।" (୧୩) ପ୍ରଶସ୍ତ ପଥର ଖଣ୍ଡ ଉପରେ କଫି ପିଇ ପିଇ ଶୋଇ ରହୁଛି। ଦେହ ଭିତରେ ଅନେକ ଯନ୍ତ୍ରଣା। ଅନେକ ନିହତ ଓ କ୍ଷତାକ୍ତ ସ୍ୱପ୍ନ। ଏହାରି ଭିତରେ ବେଳେବେଳେ ମନେହୁଏ କେନାକେନା କରି ଆପଣା ଓଠକୁ ଛିଡ଼ାଇ, ବାଳକୁ ଟାଣି ଆତ୍ମହତ୍ୟା କରିବାକୁ। ପରବର୍ତ୍ତୀ ମୁହୂର୍ତ୍ତରେ ପୁଣି ଭାବାନ୍ତର ଆସେ ଯେ ମରିବା ପୂର୍ବରୁ ଏଇ ଧ୍ୱଂସର ପାତାଳରେ ଆଉ ସର୍କସ ନ କରି ବରଂ ଆକାଶରେ କି ସମୁଦ୍ରର ବାଲିଶେଯ ତଳେ ଲୁଚିଯିବାକୁ। ଏପରି ଏକ ଅନନ୍ତ ଚିନ୍ତାଦ୍ୱାରା ମନ ଆକ୍ରାନ୍ତ ହୋଇ ଉଠିଲେ ମଧ ପୁଣି ତାହା ସ୍ମୃତି ଦ୍ୱାରା ଭାବାନ୍ତରିତ ହୋଇ ଯାଉଛି। ନିଜକୁ ନା ନିଜ ପାଖରେ ବୁଝେଇ ହେଉଛି ନା ଅନ୍ୟ ଆଗରେ ଖୋଲି ହେଉଛି। ଗଛ ଝଡ଼ା

ପତ୍ରକୁ କ୍ଷତାକ୍ତ ଯନ୍ତ୍ରଣା, ଗୋଠଫେରା ଗାଈର ଗୋଚର ପାଇଁ ବ୍ୟତିବ୍ୟସ୍ତତାକୁ କିଏ ବା ବୁଝେଇ ପାରିବ? "ତମକୁ କିପରି ତେବେ ବୁଝାଇବି? ଅବଶ୍ୟ ମୁଁ ଏତେ ଦିକ୍‌ଦାର / ଯେ ମୁଁ ଭାବେ ମରିଯାନ୍ତି, ସରିଯାନ୍ତା ଏତେ ହା-ହୁତାଶ।"(୧୪) ଏ କୋଟି କୋଟି ଜଡ଼ଭୂତଙ୍କ ମନରେ ବିଶ୍ୱାସ ଆଣିବା ଅସମ୍ଭବ। ସେ ଟିକେ ନାଚି ପାରୁନି ଯଦିଓ ମନ ଭିତରେ ବେଳେବେଳେ ସ୍ୱପ୍ନ ମେଞ୍ଚାଏ ଗୁମୁରି ଉଠେ। କିନ୍ତୁ "ମକ୍‌ଚା ପାଦ ନେଇ କିଏ ନାଚେ?" (୧୫)

ନିଜର କଳ୍ପନା ଓ ବିଶ୍ୱାସ ପ୍ରତି ଏ ଯାବତ୍ ଆସ୍ଥା ସ୍ଥାପନ କରି ଆସିଥିବା ମଣିଷଟି ନିଜର ବୋକାମିକୁ ଜାଣିପାରୁଛି। ସ୍ଥିତି ଭିତରେ ଆପଣାକୁ ନିରେଖୁଥିଲେ ମଧ ତାହା ତା'ର ବାସ୍ତବ ସ୍ଥିତି ନୁହେଁ। କବି ଇଲିଅଟ୍ ଯେପରି ସ୍ୱର୍ଗରେ ସମ୍ମାନ ପ୍ରାପ୍ତି, ରାଜଧାନୀ ସ୍ଥାପନ, ସମାଜ ଗଠନ ଆଶା ନ କରି ଏଇଠାରେ ସାର୍ ଫିଲିପ୍ ସିଡିନ୍, ସାର୍ ଆଲ୍‌ଫ୍ରେଡ୍ ମଣ୍ଡ ଓ ମାଡ଼ାମ୍ ବ୍ଲାଭାସ୍କି ପ୍ରଭୃତି ପ୍ରତିଷ୍ଠିତ ବ୍ୟକ୍ତିତ୍ୱ ସହିତ ମିଶି ଜୀବନକୁ ଏକ ପ୍ରାନ୍ତିକଆଭିଯାତ୍ୟ ମାର୍ଗରେ ଚଳେଇ ନେବାର କଳ୍ପଲୋକ ସୃଷ୍ଟି କରିଥିଲେ ମଧ ପରବର୍ତ୍ତୀ ସ୍ତରରେ ତାଙ୍କର ମନରେ ପ୍ରଶ୍ନ-

> "Where are the eagles and the trumpets?
> Buried beneath some snow-dead Alps.
> Over buttered scones and crumpets
> Weeping, weeping multitudes
> Droop in a hundered A.B.C.'S. (୧୬)

ଅନୁରୂପ ଭାବେ କବି ଶ୍ରୀ ରଥ ସ୍ୱୀକାର କରନ୍ତି-

"ମୁଁ ଉଲୁ କାହାଁକା! ମୋର ଆପଣାର କଳ୍ପନାକୁ ଯାହା ଆଲୋକିତ କରୁଥିଲି ଅନ୍ଧତ୍ୱର ଚିହ୍ନା ବିଜୁଳୀରେ।" (୧୭)

'କେତେଦିନର' ଅସହାୟତା 'ଅନେକ କୋଠରୀ' ଭିତରେ ପୁଣି ଘନୀଭୂତ ହୋଇଉଠେ। ସାମାଜିକ ବିଧିରେ ସ୍ୱାମୀ ସାଜିଥିଲେ ମଧ ସ୍ୱାମୀତ୍ୱକୁ ଜାହିର କରିପାରେ ନାହିଁ। କୋଟ୍ ସୁଟ୍ ପିନ୍ଧି ପୌରୁଷକୁ ଦେଖାଇବାର ମାନସିକତା ନାହିଁ। ଲାଇଟ୍ ନଥିବାବେଳେ ବାଥ୍‌ରୁମ୍ ଭିତରେ ପଶି ଇସ୍ତ୍ରୀକରା କମିଜକୁ ଭାଙ୍ଗିଭୁଙ୍ଗି ଲୋଚାକୋଚା କରିଦିଏ। ଜୋତାର ବକ୍ଲିସ୍‌ରେ ଚିକିଟା ରଙ୍ଗ କାଦୁଅ ଲାଗିଯାଇଥାଏ। କାଳେ ପତ୍ନୀ ଦରଜା ଫାଙ୍କରୁ ଦେଖିଦେଲେ ଏଇ ସମ୍ଭାବ୍ୟ ଉଦ୍‌ବେଗରେ ସେ ଶଙ୍କିତ। ଏହାହିଁ ତାର ମାନସିକ ସଂସ୍ଥିତି।

> "ତମର ଫେରିବା ପରେ ମୋର ଆଉ ସାହସ ହେଲାନି
> କୋଟ୍ ପିନ୍ଧି ସାମ୍ନା ହେବି, ବାଥ୍‌ରୁମ ଭିତରେ ମୁଁ ମୋର
> ଇସ୍ତ୍ରୀକରା କମିଜକୁ ଭାଙ୍ଗିଭୁଙ୍ଗି ଲୋଚାକୋଚା କଲି
> x x x x
> ଯୋତାର ବକ୍ଲିସ୍ ଦେହେ ରଙ୍ଗ କିଛି ଚିକ୍‌ଟା କାଦୁଅର
> ତମେ ମୋ' ସାମ୍ନାରେ ଅଳ୍ପ ହସିବାରୁ ମତେ ଖୁବ୍ ଡ଼ର ଲାଗିଲାଯେ
> ବାଥ୍‌ରୁମ୍ ଦର୍ଜା ଫାଙ୍କେ ତମେ କ'ଣ ଉଙ୍କୁଥିଲ ଯେବେ
> ମୁଁ ମୋର କମିଜ ଭାଙ୍ଗ ଦଳିଦାଳି ନଷ୍ଟ କରୁଥିଲି?"(୧୮)

ଇଲିଅଟ୍‌ଙ୍କ ' ପ୍ରୁଫ୍ରକ୍' ଅନୁଭବ କରିଛି ଯେ ସେ ବୁଢ଼ା ହୋଇ ଯାଉଛି। ତାର ପ୍ରେମ ସଙ୍ଗୀତ ଭିତରେ ନିଜର ରୂପକୁ ବର୍ଣ୍ଣନା କରି ବସେ।

> "I grow old---grow old---
> I shall wear the bottoms of my trousers rolled.
> Shall I part my hair behind?
> Do I dare to eat a peach?"(୧୯)

ନିଜ ଘରର ଦର୍ଜା ମଧ୍ୟ ନିଜର ରୂପ ପ୍ରତି ଈର୍ଷାନ୍ୱିତ। କ୍ରୋଧର ଡ଼ମ୍ବରୁ ଶବ୍ଦ ତାଳେ ତାଳେ ମଣିଷଟି ସମୟ ମଶାଣିରେ ଆପଣାର ଲାଞ୍ଜର ଦୈର୍ଘ୍ୟ ମାପି ନାଚି ଚାଲୁଛି। ହାସ୍‌ପାତାଳ ଭିତରେ ହ୍ୱିସ୍କି ନିଶାରେ ନର୍ସ ରୋଗୀକୁ ଅମ୍ଳଯାନ ଦେବାକୁ ଭୁଲି ଯାଇଥିବା। ଏଇ ସବୁ ଦୃଶ୍ୟ ଦେଖି, 'ହସ ସିନା ମାଡ଼େ ମତେ, ବାସ୍ତବିକ୍ ମୁଁ ଖୁବ୍ ବ୍ୟାକୁଳ।'(୨୦) କାବ୍ୟପୁରୁଷ ଯେଉଁ ଉତ୍ତରିତ ଚେତନା ଆଡ଼କୁ ହାତ ବଢ଼ାଉଛି ତାହା ଦୂରଲଭ୍ୟ ହୋଇଯାଉଛି। ସବୁବେଳେ ରହୁଛି ଏଇ ପ୍ରଥାସିଦ୍ଧ ସାମାଜିକ ବ୍ୟବସ୍ଥା ପ୍ରତି ମାନସିକ ସ୍ତରରେ ଭୟଭାବ। ସ୍ୱାମୀର ଅନୁପସ୍ଥିତିରେ ଅନ୍ୟ ପୁରୁଷକୁ ପ୍ରୀତି/ରତି ପାଇଁ ଆହ୍ୱାନ କରେ ନାରୀଟି ଏବଂ ଏହାର ଫଳାଫଳ ପାଇଁ ମଧ୍ୟ ସେ ସଚେତନ, "ମୁଁ ଜାଣେ ଯେ ସକାଳେ ମୁଁ ଠିଆହେବି ବଜାର ମଝିରେ/ଲଙ୍ଗଳା ହୋଇ ଓ ମୋର ସ୍ୱର ଶୁଣାଯିବନି କାହାକୁ। x x ମୋର ଗତି ବିଦ୍ଧ ହେବ ସହସ୍ର ବେଶ୍ୟାଙ୍କ/ଫାଙ୍କା ପେଟମାନଙ୍କର ଥଟ୍ଟାଦ୍ୱାରା ନିର୍ମିତ କ୍ରୁଶରେ"। (୨୧) ଏଇ ହେଉଛି ତାର ଜୀବନର ସ୍ଥିତି, ତଥାପି ଏଇ ଜୀବନର ଇତି ନାହିଁ। ନିଜକୁ ତ୍ରିକୋଣାକାର ଗଧଟୋପି ପିନ୍ଧାଇ ସେ ନାଚେ। "ମୁଁ ଉଲ୍ଲୁ ପିନ୍ଧିବି ମୋର ମୁଣ୍ଡରେ ଏଥର/ତ୍ରିକୋଣାକାରର ଗୋଟେ ଗଧ ଟୋପି ପାଳିବାକୁ ଜୁବିଲି କ୍ଷତିର-" (୨୨), ଯେମିତି ପ୍ରୁଫ୍ରକ୍ ସ୍ୱୀକାର କରେ-

> "No! I am not Prince Hamlet, no was meant to be;
> Am an attendant, Lord, +.+
> At times, indeed, almost ridiculous-
> Almost, at times, the Fool." (୨୩)

ଏଇ ନିର୍ବୋଧ ବୋକାଟି ସେଇ ତତଲା ବାଲିର ରଡ଼ନିଆଁ ଉପରେ ଚାଲେ। ଶୃଙ୍ଖଳା ତଣ୍ଟିରେ ଶୃଙ୍ଖଳା କାଗଜ ଗିଳି ଚାଲୁଥାଏ। ନୟାନ୍ତକ ପରିଣତି। କାହା ପାଇଁ ଏ ଚାଲିବା ତାହା ବି ଅଜ୍ଞାତ। ତା' ଆପଣାର ଦେଶକୁ ସେ ଆଉ ଫେରିବାର ଆଶା ନାହିଁ; ଯେଉଁଠି ଯଥେଷ୍ଟ ଧାନର ଫସଲ ଓ କ୍ଷେତରେ ଶୁଆ। ଏକ ଜୀବନ୍ତ ଅତୀତକୁ କାବ୍ୟପୁରୁଷ ଛାଡ଼ି ଆସିଛି। ସେଠାକୁ ଆଉ ଫେରି ହେଉନି। ଆଗରେ କେବଳ କଳାମଚମଚ ଅନ୍ଧାର। ଏହିପରି ଏକ ତ୍ରିଶଙ୍କୁର ମଧ୍ୟ-ସ୍ୱର୍ଗରେ ତାର ସ୍ଥିତି।

> "ଛାଇମାନେ ମତେ ଘେରି ନାଚିଲେଣି କ୍ରମେ କ୍ରମେ
> ଅସଂଖ୍ୟ ଚିକ୍କଣ (ଓ ଉତପ୍ତ) ପାହାଚରେ ମୁଁ ଖସୁଛି ପାଳଭୂତ ପରି।
> ମୋ ସାମ୍ନାରେ ମଚ୍‌ମଚ୍ ଅନ୍ଧାର ଓ ପଛଆଡ଼େ ପୂର୍ଣ୍ଣଧାନ କ୍ଷେତ
> ଭିତରେ ସେମାନେ ବସି କିଳିଛନ୍ତି ଦର୍ଜା ହସିକରି।"
>
> (ଅନନ୍ତଶୟନ)

ଛନ୍ଦକାଳ ପ୍ରତି ଆସ୍ଥାଚ୍ୟୁତି ଘଟିଲା ପରେ ପରେ ପରକାଳ ପାଇଁ ମଧ୍ୟ କୌଣସି ସମ୍ଭାବନା ରହୁନି। କାବ୍ୟପୁରୁଷ ନିଜକୁ ଏ ଯୁଦ୍ଧ କ୍ଷେତ୍ରରେ କାପୁରୁଷ ଅର୍ଜୁନ ପରି ଭେଟେ ଏବଂ ସେତେବେଳେ ସେ ସ୍ୱୀକାରୋକ୍ତି ବାଢ଼େ- ''ମୋ ଅରକ୍ଷ ଭବିଷ୍ୟତ ଭାସିଯାଏ ଛଅଖଣ୍ଡ କାଠର ଭେଳାରେ/ଅସଜ ବିମାନ ପରି ସମୁଦ୍ରର ରକ୍ତାକ୍ତ ଆକାଶେ,''(୨୪) ଦୈହିକ ମୃତ୍ୟୁ ଭିତରେ ହିଁ ସବୁକିଛି ନିଶ୍ଚିହ୍ନ ହୋଇ ଯାଉଛି।

'ଅନେକ କୋଠରୀ'ରୁ ପାଦ କାଢ଼ି କାବ୍ୟ ପୁରୁଷ ଏବେ ମୃଗୟାରତ। ଅଗ୍ନାଗ୍ନି ବନସ୍ତ ଭିତରେ ସେ ସନ୍ଦିଗ୍ଧ। ମୃତା ପ୍ରିୟତମା ଆଜି ମନେ ପଡ଼େ। ତାର ଫଟୋଗ୍ରାଫ୍‌କୁ ସେ ଚୁମାଦେବା ପାଇଁ ଆଶାୟୀ। ତା' ପିଠିକି ଥାପୁଡ଼େଇ ଦେବ ଏବଂ ଏଇ ମୁହୂର୍ତ୍ତପାଇଁ ସେ ଛାତି ଫାଟି ନଯିବା ପର୍ଯ୍ୟନ୍ତ ହସିବ। ଏଇ ହସ ଅନ୍ତରାଳରେ ଲୁଚି ରହିଚି ଯନ୍ତ୍ରଣାରେ ଆକ୍ରାମାକ୍ରା ହୋଇ ଉଠିଥିବା ଏକ ରକ୍ତାକ୍ତ ପ୍ରାଣ।(୨୫) ପାରିବାରିକ ବା ବୈବାହିକ ଜୀବନର ଘଷରା ଛାଞ୍ଚରେ ସେ ଅତିଷ୍ଠ। 'ମାଂସର ଆରାମ' ଭିତରେ ସେ ହନ୍ତସନ୍ତ। ହାତଗୋଡ଼ ଭାଲୁଗୋଡ଼ ପରି ଦିଶିଲାଣି। ମୁଣ୍ଡ ମଧ୍ୟ ମାଙ୍କଡ଼ର ଗୋଳିଆ ବୁଦ୍ଧିହୀନ ମୁଣ୍ଡପରି। ଏପରି ଅବସ୍ଥାରେ ବୟସତର କିଛି ମାନେ ନାହିଁ। ''ଅଣ୍ଟା ତଳକୁ ମୁଁ ଏକ ମଲା ଗଛ ଏବଂ ମୋର/ଶୃଙ୍ଖଳା ହାତଙ୍କ ଡ଼ାକ ନୀଳ ଏବଂ ଖରାରେ ଉଷୁମ।''(୨୬) 'ରଜାଙ୍କ ରୋମାନ୍‌ସ'ରେ ଇଲିଅଟ୍‌ଙ୍କ 'ଜେରନ୍‌ସନ୍'ର ପ୍ରଭାବ ସୁସ୍ପଷ୍ଟ। ଯୌନାବେଗ କ୍ରମଶଃ ଶିଥିଳ ପଡ଼ି ଆସିଲେ ମଧ୍ୟ ଘିଅ, ମରିଚ୍, ଦୁଧ, ମିଶ୍ରି ସହ କଇଁଥ ମଞ୍ଜିର ଚୂର୍ଣ୍ଣ, ଗରମ ଦୁଧରେ ବାଦାମ ଓ ପେସ୍ତା ଆଦି କାମୋଦ୍ଦୀପକ ପଥ୍ୟ ସେବନ କରି ପୁଣି ଯୌବନକୁ ଫେରାଇ ଆଣିବାର ପ୍ରଚେଷ୍ଟା ଭିତରେ ଏକ ଶାଣିତ ବ୍ୟଙ୍ଗାତ୍ମକ ଦୃଷ୍ଟିଭଙ୍ଗୀ ରହୁଛି। 'ସିନ୍ଦୂରର ଦାଗ ତମର ମୁଣ୍ଡରୁ -ଢ଼ଣଢ଼ଣ ଲୋଚାକୋଚା ପଞ୍ଜାବୀରେ ମୋର ଲାଗିବାର।' ନାୟିକାର ହାତଗୋଡ଼ ଧୂଆମୂର୍ଗୀ ପରି ଦେଖାଗଲେ ମଧ୍ୟ ତାର ମୂର୍ଦ୍ଧାର ସତୀତ୍ୱକୁ ଓ ଶାଶ୍ୱତ ପ୍ରୀତିକୁ ଜାହିର୍ କରିବସେ। ''ଆଗୋ ସଖିଗଣ, ଶ୍ୟାମ ପଦଧୂଳି ବୋଳ ମୋର ଶିର-----'' ଭିତରେ ବୈଷ୍ଣବୀୟ ପ୍ରୀତିର ବାର୍ତ୍ତମାନିକ ଅପପ୍ରୟୋଗ ହିଁ କେବଳ ସୂଚିତ ହୋଇଥାଏ।(୨୭)

ଏହି ଅସତ୍ୟ ସହର (୨୮) ଭିତରେ ଯେତେ ଘର ଅନ୍ୱେଷଣ କରାଗଲେ ମଧ୍ୟ 'ତମେ ଯେଉଁ ଘର ଖୋଜ ଏ ଘର ସେ ନୁହେଁ।' ଏଠି ଖାଲି ଦଳଦଳ ଜନ୍ତୁମାନଙ୍କର ଭିଡ଼। ଘର ଭିତରେ କିନ୍ତୁ ଆତ୍ମହତ୍ୟାର ସଂକେତ।(୨୯) କେବଳ ପୋଡ଼ା ମାଟିର ଗନ୍ଧ। ଏଠି ଜୀବନ ଯୌବନରେ ଅକାଳ ବାର୍ଦ୍ଧକ୍ୟର ଆଗମନ! ସେଥିପାଇଁ ରମାକାନ୍ତଙ୍କ ବୁଢ଼ାର କାହାକୁ ଭୟ ନାହିଁ। 'ମୃତ୍ୟୁକୁତ କେବେହେଲେ ନୁହେଁ।'(୩୦) ଏଇ ଜୀବନ୍ତ ମରଣ ଭିତରେ ସେ ପମ୍ପା ମଣିଷଟିଏ। ସେ ସୁଖ ଦୁଃଖକୁ ସବୁକିଛିକୁ ଆପଣାର କରିନେଇପାରେ। ଜୀବନଯାତ୍ରା ସ୍ୱାଭାବିକ ଭାବେ ଠିକ ଚାଲିଛି। ସର୍କାରୀ ନଥିରେ ବୁଢ଼ାର ବୟସ ଛତିଶ। ଦୋକାନୀ ବାକୀ ଦିଏ। ବୁଢ଼ା ଆଜି ଚକ୍ରାନ୍ତରେ ପଡ଼ିଯାଇଛି। ସେ କାହାକୁ କିଛି କହିପାରେନା। ଛେଳି ଜଗୁଆଳୀକୁ ବାଘ ଖାଇସାରିଲା ପରେ ଏକୁଟିଆ ଛେଳିପରି ସେ ଆଜି ମୃତକାଙ୍କ୍ଷ ରାଜ୍ୟରେ ଖୁବ୍ ଏକାକୀ। ''x x ନିଭୃତତା ତା'ର/ଅଗମ୍ୟ ଜଙ୍ଗଲ ସେଠି କନ୍ଦବା କେମିତି/ ପତ୍ରଙ୍କର ଶୀର୍ ଶୀର୍ ରୁଗ୍‌ଣ ପବନରେ/ କ'ଣ ବା କହନ୍ତା ବୁଢ଼ା ?''(୩୧) ପ୍ରତି ମୁହୂର୍ତ୍ତରେ ତାର ମୃତ୍ୟୁ ଆଶଙ୍କା। ସବୁ ପ୍ରକାର ଆତ୍ମୀୟତାର ସମ୍ପର୍କ ଆଜି ଛିନ୍ନଭିନ୍ନ। ବାକ୍ ରହିତ। ''ପାକୁଆ ପାଟିରେ/ଶବ୍ଦ ସବୁ

ସଢ଼ିଗଲେ ଖିନ୍‌ଭିନ୍ ଆତ୍ମୀୟଭାବର/ଅନାସକ୍ତ ବ୍ରାହ୍ମ ମୁହୂର୍ତ୍ତରେ।'' ଜୀବନରେ ଏପରି ସମୟ ଏପରି ପରିସ୍ଥିତି ଆସି ପହଞ୍ଚି ଯାଉଛି ଯେତେବେଳେ ତା'ର ସମସ୍ତ ସମ୍ପର୍କର ଗ୍ରନ୍ଥି ଛିଡ଼ି ପଡ଼ୁଛି। ଏ ବୁଢ଼ାର ଯେଉଁ ଅସହାୟ ଭାବ ତାହା ଠିକ ଫ୍ରାନ୍‌ଜ କାଫ୍‌କାଙ୍କ 'ମେଟାମରଫୋସିସ୍' ଗଳ୍ପର ସ୍ଥିତିବାଦୀ ନାୟକ ଗ୍ରେଗର ସାମ୍‌ସାର ଦଶା। ବୈକୁଣ୍ଠ ସମାନ ପରି ଘର ଆଉ ନାହିଁ। 'ତମେ ଯେଉଁ ଘର ଖୋଜ ଏ ଘର ସେ ନୁହେଁ'। ଏଠି. ହଠାତ୍ ଗ୍ରେଗର୍ ସକାଳୁ ଶେଯ ଉପରେ ଗୋଟେ ବଡ଼ ପୋକ (a gigantic insect)'ରେ ପରିଣତ ହୋଇଯାଏ। କ୍ରମଶଃ ସେ ଅନୁଭବ କରେ ବାହ୍ୟ ଜଗତରୁ ବିଚ୍ଛିନ୍ନ ହୋଇଗଲେ ମଧ ପାରିବାରିକ ସହାନୁଭୂତି ଓ ସମବେଦନା ମିଳୁଛି। ମାତ୍ର ପରବର୍ତ୍ତୀ ପର୍ଯ୍ୟାୟରେ ସେ ଏକ ଅବାଞ୍ଛିତ ଚରିତ୍ରରେ ପରିଣତ ହୋଇଯାଏ। ପିତାମାତା, ଭାଇ ଭଉଣୀ ଓ ବନ୍ଧୁ ମଧ ତାର ଉପସ୍ଥିତିକୁ ଘୃଣିତ ଦୃଷ୍ଟିରେ ଦେଖନ୍ତି। ଦରଜାରେ ବାରମ୍ବାର କରାଘାତ। କିନ୍ତୁ ସେ ନିରୁପାୟ। ଝାଡୁଦାରର ଛାଞ୍ଚୁଣୀ ଆଘାତ ସହେ। କି ବିକଳ ଜୀବନ ଯନ୍ତ୍ରଣା ଭଏ।(୩୨) କାଫ୍‌କାଙ୍କ ବଡ଼ପୋକ ପରି ବୁଢ଼ା ଏଠି ଏକୁଟିଆ ଛେଲିଟିଏ।

'କେତେଦିନର' ଠାରୁ 'ସନ୍ଦିଗ୍ଧ ମୃଗୟା' ଯାଏ ଆମେ କାବ୍ୟପୁରୁଷକୁ ଏକ ଅସହାୟ ଚରିତ୍ର ଭାବରେ ଦେଖୁ ଯାହା ପ୍ରତି ମୁହୂର୍ତ୍ତରେ କିଛି ଖୋଜୁଛି। କିଛି ନିରୀକ୍ଷଣ କରୁଛି। କିନ୍ତୁ ଲକ୍ଷ୍ୟ ପୂର୍ତ୍ତି ହୋଇ ପାରୁନି। ପୁଣି ସେଇ ଅସାର ଖୋଜା ଭିତରେ ସେ ରୁନ୍ଧି ହୋଇ ଚିତ୍କାର ଛାଡୁଛି।

### ପାଦଟୀକା

୧. ''ବ୍ୟର୍ଥ ଆଜି ମଳୟ ସଞ୍ଚାର,
ବସ୍ତିର ଅଗଣନ ଧୂଳି ଭାଙ୍ଗେ ଆଜି ପୁଷ୍ପରେଣୁ ଛାତି + +
ପ୍ରଭାତର ପୁରୋଭାଗେ ବାଜି ଉଠେ ଜୀବନର ଡ଼ାକ;
ଭାସିଆସେ ମନ୍ଥର ସମୀରେ
ଫର୍ଣ୍ଣେସ୍‌ର ଉଷ୍ମ ଆଉ ଚିମିନିର ଧୂଆଁଳିଆ ବାସ୍ତବ ସୂଚନା;
ଆଗନ୍ତୁକ ଆଲୋକରେ ଦ୍ରବିଯାଏ ମଳୟର ଶବ।''
-ମଳୟର ଆତ୍ମହତ୍ୟା- ପିଙ୍ଗଳାର ସୂର୍ଯ୍ୟ- ବେଣୁଧର ରାଉତ।

୨. ଗୋଟିଏ ସ୍ୱପ୍ନ-କେତେଦିନର- ପୃ୬

୩. ତତ୍ରୈବ।

୪. ଘଣ୍ଟା-ତତ୍ରୈବ-ପୃ ୧୪

୫. ପାରିଷଦର ରାତ୍ରି- ତତ୍ରୈବ- ପୃ୧୦

୬. ତତ୍ରୈବ- ପୃ୧୨

୭. ଧର୍ମପଦର ଆତ୍ମହତ୍ୟା- ତତ୍ରୈବ ପୃ ୨୫

୮. ତତ୍ରୈବ- ପୃ ୨୫

୯. ଲଣ୍ଡନ-ତତ୍ରୈବ-ପୃ ୪୩

୧୦. ପତଙ୍ଗ-ତତ୍ରୈବ- ପୃ ୬୦

୧୧. ଦିଲ୍ଲୀ (ରାତି)- ତତ୍ରୈବ- ପୃ୬୨

୧୨. ତତ୍ରୈବ- ପୃ ୬୩

୧୩. ପବନ ଓ ମୁଁ- ତତ୍ରୈବ- ପୃ ୭୭

୧୪. ଚଉପହରା-ତତ୍ରୈବ -ପୃ ୮୩
୧୫. ଅନ୍ୟଦିନ- ତତ୍ରୈବ- ପୃ ୮୯
୧୬. A Cooking Egg- Selected poems- T.S. Eliot
୧୭ ଦଶହରା ୧୯୬୧ -କେତେଦିନର- ପୃ ୯୭
୧୮. ବାଘଶିକାର- ଅନେକ କୋଠରୀ- ପୃ ୮
୧୯. Thle Love Song of J.' Alfred Prufrock- Selected Poems- T.S. Eliot
୨୦. ଅପେକ୍ଷା- ଅନେକ କୋଠରୀ- ପୃ ୧୮
୨୧. ଏହା ସହିତ ଇଲିଅଟଙ୍କୁ ଦେଖନ୍ତୁ-
"Let me be no nearer/In death's dream Kingdom Let me also wear/such deliberate disguises Rat's Coat, Crowskin, clossed staves/In a field Behaving as the wind behaves...."
-The Hollowmen- Selected Poems- T.S. Eliot
୨୨. ଅନନ୍ତ ଶୟନ- ଅନେକ କୋଠରୀ- ପୃ ୨୯
୨୩. Love song of J' Alfred Prufrock- Eliot
୨୪. ବିମାନ ଦୁର୍ଘଟଣାରେ ମୃତ୍ୟୁ-ଅନେକ କୋଠରୀ- ପୃ ୫୭
୨୫. ସନ୍ଧ୍ୟା-ସନ୍ଦିଗ୍ଧ ମୃଗୟା- ପୃ ୩
୨୬. ବସନ୍ତଋତୁ- ତତ୍ରୈବ- ପୃ ୧୩
୨୭. ରଜାଙ୍କ ରୋମାନ୍ସ- ତତ୍ରୈବ- ପୃ ୧୫-୧୯
୨୮. "Unreal city, Under the brown fog of a winter dawn.
A crowd flowed over London Bridge, so many
I had not thought death had undo so many."
-The Burial of the Dead- The waste Land- Eliot
୨୯. ଦିନ କଣ ରାତି କଣ-ସନ୍ଦିଗ୍ଧ ମୃଗୟା- ପୃ ୫୩
୩୦. ବୁଢ଼ାଲୋକ- ତତ୍ରୈବ- ପୃ ୯୪
୩୧. "This is the dead land/This is the cactus land
Here the stone images/Are raised, here they receive
The supplication of a dead man's hand
Under the twinkle of a fading star."
ଏବଂ "The eyes are not here
They are no eyes here
In this valley of dying stars
In this hollow valley
This broken jaw of our lost kingdoms."
The Hollowmen-T.S. Eliot
୩୨. " The serious injury done to Gregor, which disabled him for more than a month-the apple went on sticking in his body as a visible reminder since no one ventured to remove it - seemed to have made even his father recollect that Gregor was a member of the family, despite his present unfortunate and repulsive shape, and ought not to be treated as an enemy, that, on the contrary, family duty required

the supression of disgust and the exercise of patience, nothing but patience".
-Metamorphosis and other stories- Franz Kafka

# ନିଃସଙ୍ଗ ମଣିଷର ବିଚ୍ଛିନ୍ନ ସତ୍ତା

"ଏ ଯୁଗର ନିଃସଙ୍ଗତା, ନିର୍ଜ୍ଜନତା ଅନ୍ୟମାନଙ୍କଠାରୁ ଶାରୀରିକ ଦୂରତା-ବୋଧରେ ପର୍ଯ୍ୟବସିତ ନୁହେଁ। ନିର୍ଜ୍ଜନ ଦ୍ୱୀପରେ ନିର୍ବାସିତର ବିଳାପ ନୁହେଁ। ଏ ନିଃସଙ୍ଗତା କୋଳାହଳ ଭିତରେ, ରାସ୍ତାର ଜନଅରଣ୍ୟ ଭିତରେ, ନଭଶ୍ଚୁମ୍ବୀ ଅଟ୍ଟାଳିକା ଓ ଗହଗହ ହାଉଜାଉ ମଣିଷ ସମୁଦ୍ର ଭିତରେ। ଏ ନିର୍ଜ୍ଜନତାବୋଧ ଆତ୍ମାର, ହୃଦୟର।"(୧) ମନ୍ଦା ମଣିଷ (massman) ଭିତରେ ବ୍ୟକ୍ତି ବିଶେଷ ଏକ ମୁଖାଧାରୀ କଳାକାର। ଦାର୍ଶନିକ ୟାସ୍‌ପରସ୍‌ଙ୍କ ଭାଷାରେ, ଏଇ ମନ୍ଦାମଣିଷ ଭିତରେ ମଣିଷ exists only as we. ଏଇ ମଣିଷ ପୁଣି Just like everybody.'ନିଜକୁ ହଜେଇ ଦେଇଥିବା ମଣିଷଟିର କୌଣସି ସ୍ୱାତନ୍ତ୍ର୍ୟ ନ ଥାଏ। କରାମତି ନ ଥାଏ। ବରଂ ଉଇହୁଙ୍କା ଭିତରେ ଉଇମାନଙ୍କର ସ୍ଥିତି ପରି ତାର ସ୍ଥିତି। କିନ୍ତୁ ଯେତେବେଳେ ସେ ମନ୍ଦା ଭିତରୁ ନିଜକୁ ବିଚ୍ଛିନ୍ନ କରି ଆଣେ; ଆପଣା ଭିତରକୁ ଫେରିଆସିବାର ପ୍ରଚେଷ୍ଟା କରି ଆପଣାକୁ ହରାଇବସେ ଏବଂ ପୁଣି ଆପଣାକୁ ଖୋଜି ବସେ ସେତେବେଳେ ହିଁ ଜୀବନର ଅନାବିଷ୍କୃତ ଇଲାକାରେ ସକାଳର ଖରା ପଡ଼େ। କେତେକଙ୍କ ମତରେ ଭୟ, ଆଶଙ୍କା ଓ ନିଃସଙ୍ଗବୋଧରେ ମଣିଷ ନିଜଠୁ ନିଜେ ଦୂରେଇ ନେବାକୁ ଚେଷ୍ଟା କରେ କାରଣ ନିଜ ଭିତରେ ଥିବା ଦୋଷ ଓ ଦୁର୍ବଳତାଗ୍ରସ୍ତ ସତ୍ତାଟିକୁ ନିଜେ ଭେଟିବାର ଭୟରେ।

ଏହି ନିଃସଙ୍ଗ ମଣିଷ ସବୁଥିରେ ଥାଇ ମଧ୍ୟ ନଥିବାର ପରି। ସମାଜତତ୍ତ୍ୱ ବିଶ୍ଳେଷଣରେ ଏହି ସତ୍ୟରେ ମଣିଷକୁ ପହଞ୍ଚିବାକୁ ପଡ଼େ ଯେ ଅର୍ଥନୈତିକ ଓ ରାଜନୈତିକ ବୈଷମ୍ୟରୁ ହିଁ ଏ ଭାବଟା ସୃଷ୍ଟି ହୋଇଛି। ଶ୍ରମଲବ୍ଧ ଫସଲରୁ ଯେତେବେଳେ ଖଟିଖିଆ ଚାଷୀ, ମୂଲିଆ ତାର ମାଲିକତ୍ୱ ହରାଉଛି; ଏବଂ ତଥାକଥିତ ରାଜନୀତିର ଶିକାର ହୋଇ ପଡୁଛି, ସେତେବେଳେ ସମାଜଠାରୁ ବା ଗଣଠାରୁ ସେ ଦୂରେଇ ଆସୁଛି। ଆରିଷ୍ଟଟଲ୍‌ଙ୍କ ସାମାଜିକ ଜୀବ (Social animal) ଆଜି ଅସାମାଜିକ ଓ ନିଃସଙ୍ଗ ଜୀବରେ ରୂପାନ୍ତରିତ।(୨) ଯେଉଁ ପରିବାର ଭିତରେ ପାରସ୍ପରିକ ସ୍ନେହ ଶ୍ରଦ୍ଧା ପୂର୍ବକ ଜୀବନ ଗଢ଼ି ଆସୁଥିଲା ସେଠି ଆଜି ଅବିଶ୍ୱାସ, ଛଳନା ଓ ମାୟାର ଧ୍ୱାନ୍ତ କୁହେଳିକା। କାହା ସହିତ ମନ ଯୋଡ଼ି ହେଉନି। ହୃଦୟକୁ ଥାପି ହେଉନି, ବରଂ ଏକ ବିରୋଧାଭାସ ଭିତରେ ସେ ବଞ୍ଚିଛି। ଭାରତୀୟ ପରିପ୍ରେକ୍ଷୀରେ ଅର୍ଥନୈତିକ ବୈଷମ୍ୟରୁ ମୁଖ୍ୟତଃ ମଣିଷମନ ଭିତରେ ଆସିଛି ନିଃସଙ୍ଗଭାବ। ସମାଜ ପ୍ରତି ବିଚ୍ଛିନ୍ନତାଭାବ। ପାଶ୍ଚାତ୍ୟ ଦେଶରେ ଯନ୍ତ୍ର ସଭ୍ୟତାର ପାଶବିକ ଅକ୍ଟୋପାସୀୟ ଆବରଣ ଭିତରେ ସେ ଆଜି କଳମଣିଷ (robot) ପାଲଟି ଯାଇଛି। ସୂକ୍ଷ୍ମ ଆଧାତ୍ମିକ ଏବଂ ମାନସିକ ଚୈତନ୍ୟଟି ଶୁଖି ଝାଉଁଳି ପଡ଼ିଲାଣି। ତେଣୁ ସେ ଅନୁଭବ କରେ ତଥାକଥିତ ବୈଜ୍ଞାନିକ ସଭ୍ୟତା ଓ ସଂସ୍କୃତିର ପ୍ରତୀକ ଲଣ୍ଡନପୋଲ

ଭାଙ୍ଗି ପଡୁଛି। ତା' ଆଖିରେ ସବୁକିଛି ପୋଡ଼ି ଜଳି ପାଉଁଶ ହୋଇ ଯାଉଛି। କେବଳ ଊଷର ଭୂମି ଉପରେ ସେ ତ୍ରିଶଙ୍କୁ ପାଲଟି ଯାଉଛି। ଭୀଷଣ ଦାବ ଦହନ ଭିତରେ ସେ ଜଳୁଛି ଯେ ଜଳୁଛି। କି ବିକଳ ଚିତ୍କାର କି ଯନ୍ତ୍ରଣା ଦେଖନ୍ତୁ-

"Burning bı rning burning burning
O Lord, Thou pluckest me out
O Lord, Thou pluckest
burning------"(୩)

ଏହି ଆଧ୍ୟାତ୍ମିକ ନିଃସଙ୍ଗତା ଭିତରେ ଜଡ଼ସଡ଼ ବ୍ୟକ୍ତିସତ୍ତାଟି ହିଁ ଆଜିର ଅବକ୍ଷୟଗ୍ରସ୍ତ ସଭ୍ୟତାର ପ୍ରତିଭୂ। କବି ରମାକାନ୍ତ ରଥଙ୍କ କବିତାରେ ଏହି ନିଃସଙ୍ଗ ମଣିଷଟିକୁ ବେଶ୍ ଚିହ୍ନାଯାଇପାରେ। କାବ୍ୟପୁରୁଷ ପ୍ରଥମରୁ ନିରୀହତା ପାଖରୁ ଭୟଗ୍ରସ୍ତ ଜୀବନର ସକଳ ଦିଗରେ ସେ ହା-ହାକାର ଧୂସର ବାଲିସ୍ତୂପକୁ ଦେଖେ। ଗଡ଼ଜାତୀ ଜଙ୍ଗଲରେ ଶୋଇ ଶୋଇ ହାଇମରା ରଜା, ଯାହାର ଅଳସ କୁହାଟରେ ପଥିକର କଳିଜାରେ ନିଆଁ ଲାଗି ଯାଉଥିଲା, ସେ ବ୍ୟାୟାମରେ ପେଟ ପୋଷୁଛି। 'ଆଜି ଯେ ରାଜେନ୍ଦ୍ରାସନେ କାଲି ସେ ଫକୀର'। ଏଠି ବ୍ୟକ୍ତିସତ୍ତାଟି ବିପର୍ଯ୍ୟସ୍ତ। ସ୍ୱାଧୀନତା ପରାହତ। ସେ କିଂକର୍ତ୍ତବ୍ୟବିମୂଢ଼। ଲୁହାତାର ଘେରା ଜାଲିରେ ସେ କସରତ୍‌ରତ।(୪) ଏ ସମାଜ ଏ ରାଜନୀତି ଯେତେବେଳେ ଛଳନା ଓ ମାୟାର ଫିସାଦି ରୂପକ ଜାଲପାତି ଦେଇଛି ସେତେବେଳେ ନିରୀହ ବ୍ୟକ୍ତିସତ୍ତାଟି ଅନନ୍ୟୋପାୟ ହୋଇ ଜନଗହଳି ଭିତରେ ତିନିମହଲା କୋଠା ଉପରୁ ଡେ଼ଇଁ ଆତ୍ମହତ୍ୟା କରୁଛି। ଜାଣିଶୁଣି ମଧ୍ୟ ମିଥ୍ୟାର ଆଶ୍ରୟ ନେଉଛି। ବିବିଧ ଭାବ୍‌ସତ୍ତା ଭିତରେ ସେ ଛନ୍ଦି ହୋଇ ପଡୁଛି।(୫) ଜୀବନର ଧାରା ଏଠି ଏକ ଗାଣିତିକ ସୂତ୍ର। ଆତ୍ମ ପରିଚୟ ନାହିଁ। ସେ କ'ଣ ଭୂତଟେ। ତା'ପରେ ଆତ୍ମ ସମୀକ୍ଷା କରିବସେ-

"ସତେ କ'ଣ ଭୂତଟେ ମୁଁ? ସତେ କ'ଣ ଜୀବନ
ନାହିଁ ମୋ?
ଏ କଳିଜା ଚିରିଦିଅ, ଚିରିଦିଅ କହିବା ପୂର୍ବରୁ
ଯେ ମୁଁ ମାତ୍ର ପ୍ରାଣ ପ୍ରତି ଦ୍ୱେଷପୂର୍ଣ୍ଣ ଅଟ୍ଟହାସ୍ୟ ଏକ,
ଯେ ମୁଁ ଖାଲି ବଞ୍ଚିରହେ ମାନସିକ ବିକୃତି ଭିତରେ;
ଚିରିଦିଅ, ଆଉ ଦିଅ ମୋ ଜିଭରେ ଟମର ନିମକ।"(୬)

ନିଃସଙ୍ଗ ମଣିଷଟିର ଆଉ କାହାପ୍ରତି ନିଘା ନଥାଏ। ଦୁଃଖ ଓ ହତାଶା ଭିତରେ ଭିଜିଭିଜି ସେ ହୁଏତ ନିଜେ ଦୁଃଖ ପାଲଟି ଯାଇଛି। ନିଜ ପାଇଁ ନିଜେ ଏକ ପ୍ରଶ୍ନବାଚୀ। ସେ ଦୁଃଖ ପ୍ରତି ବି ସନ୍ଦୀହାନ। "ସୁତରାଂ ଏହା ବି ସମ୍ଭବ, ଯେ ମୁଁ ଯାହା ତାହା ନୁହେଁ। ଏହା ବି ସମ୍ଭବ ଦିକ୍‌ଦାର ହେବା ସତ୍ତ୍ୱେ/ମୁଁ ଆଦୌ ଦିକ୍‌ଦାର ନୁହେଁ,/ଲକ୍ଷ ଲକ୍ଷ ଦୁଃଖ ମୋର ପିଛା ଧରିଛନ୍ତି, କିନ୍ତୁ ମୋର/ପିଛା କେହି ଧରି ନାହିଁ ଯେହେତୁ ମୋ ଦୁଃଖ ମୋର ନୁହେଁ।"(୭) ଛୋଟ ଏକ ଉଦ୍ୟାନ ଭିତରେ ସେ ବନ୍ଦୀ। ତାର ବାଡ଼ ଡେ଼ଇଁ ସେ ମଧ୍ୟ ଦୌଡ଼ି ପାରିବନି। ନିଆଁ ପୋଇଁ କାକର ଶୀତରୁ ରକ୍ଷା ପାଇବାର ମଧ୍ୟ ସମ୍ଭାବନା ନାହିଁ। ଶୀତ କାକରରେ ଥରୁଥିବା ମଣିଷମାନଙ୍କ ସହିତ ସେ ଆଉ ନିଜକୁ ମିଶାଇ ପାରିବ ନାହିଁ। ତେଣୁ ସେ ପରମୁହୂର୍ତ୍ତରେ ପୁଣି ମର୍ମାହତ- "ଆହା

କେଉଁ ପ୍ରେମ, କିମ୍ବା ଶ୍ୱାସରୁଦ୍ଧ କଳାପରି ଏକ/ନିଷ୍ଠୁରତା କାବୁ କଲା ଉଦ୍ୟାନରେ ଆମ୍ଭାକୁ ତମର''।(୮) ସମାଜ ରୂପକ ହାସ୍‌ପାତାଳ ଭିତରେ ସେ ଆଜି ଶାୟିତ। ଛାତିରେ ଭୀଷଣ କଷ୍ଟ। ମୃତ୍ୟୁ ସନ୍ନିକଟ। ତଥାପି ତା' ପ୍ରତି ସେ ସଚେତନ ନୁହେଁ।(୯) ଏଠି ଖାଲି ବାଘ ମାଡିଛି। ସଚ୍ଚୋଟ ପରିଶ୍ରମୀ କୃଷକ ଘରଣୀକୁ କାନ୍ଦୁଲ କ୍ଷେତରୁ ବାଘ ଖାଇଯାଏ। ତିନିତିନିଟା ଛୁଆ ଗାଁ ଦାଣ୍ଡରେ ଅକ୍ଷିତ ଅବସ୍ଥାରେ ପଡ଼ି ରହନ୍ତି। ସ୍ୱାମୀ ମୁଣ୍ଡପିଟି କାନ୍ଦେ। ନିଃସଙ୍ଗ ମଣିଷର ଚିତ୍ର ଏହିପରି- ''ଗାଆଁ ଦାଣ୍ଡେ ବ୍ଲାକ୍‌ବୋର୍ଡ଼େ ଅଧାକଷା ହିସାବ ଅଙ୍କର/ପୋଛି ଦେଇଗଲା ମାଆ ପ୍ରଜାପତି ଡ଼େଣାର ଡ଼ଷ୍ଟର୍।''(୧୦)

ପ୍ରତି କ୍ଷେତ୍ରରେ ବ୍ୟକ୍ତିର ଅପାରଗତା ପ୍ରମାଣିତ। ସ୍ତ୍ରୀ ପାଖରେ ନା ହୋଇ ପାରୁଛି ପୌରୁଷଦୀପ୍ତ ସ୍ୱାମୀ, ନା ପ୍ରେମିକା ପାଖରେ ହୋଇପାରୁଛି ପ୍ରେମିକ ପ୍ରବର। ଶାରୀରିକ ଅସାମର୍ଥ୍ୟରୁ ନିଜକୁ ଛପେଇବା ପାଇଁ ଦକ୍ଷିଣ ଭାରତ ପର୍ଯ୍ୟଟନ କରେ ସସ୍ତ୍ରୀକ। କିନ୍ତୁ 'ମହାବଳୀପୁରମ୍‌ରେ ପଚାରୁଚ (ବଙ୍କା) ହସ ହସି/ ଏ ହାତୀଗୁଡ଼ାକ କେଡ଼େ ଜୀବନ୍ତ ମ!' ଏହାରି ଭିତରେ କାବ୍ୟପୁରୁଷ ପୁଣି ଫେରି ଆସୁଛି ନିଜ ଭିତରକୁ, 'ମୁ ମକଚୁଚି ଆଖିପତା ମୋର'।

ହାସ୍ପାତାଲରେ ଶୋଇ ମଧ୍ୟ 'କାହା ଦାନ୍ତ ଛାତିରେ ବସିଛି'- ଏଇ ଦ୍ୱିଧାଗ୍ରସ୍ତ ମଣିଷଟି ସତରେ କେତେ ଏକାକୀ। କେତେ ବିଚ୍ଛିନ୍ନ। ଲଣ୍ଡନର ଧାତବ ଦହନ ଭିତରେ ଜଳି ସିଝି ଯାଉଥିବା ବ୍ୟକ୍ତିସତ୍ତାଟି ନିଜକୁ ପୁଣି ଏକ ଫମ୍ପା ମଣିଷ ଭାବରେ ଦେଖେ।

''ଏବଂ ମୁଁ ଅଗ୍ନାଗ୍ନି ବଣେ ଶୁଆ ତଥା ଅନ୍ୟାନ୍ୟ ଚଢ଼େଇ
ମାନଙ୍କୁ ତଡ଼ିବା ପାଇଁ ଧାନକ୍ଷେତେ ବାଉଁଶରେ ବନ୍ଧା
ସଫେଦ କନ୍ଥାର ଅଟେ ଅଭ୍ୟନ୍ତର। ଖୁବ୍ ଏକୁଟିଆ।''(୧୧)

ଏହା ସହିତ ଇଲିଅଟଙ୍କ 'ହଲୋମ୍ୟାନ୍'କୁ ଦେଖନ୍ତୁ-

"We are the hollowmen
We are the Stuffedmen
Leaning together
Headpiece filled with straw-Alas!
our dried voices, when
when we whisper together
Are quiet and meaning less
As wind in dry grass
Or rats' feet over broken glass
In our dry cellar
Shape without form, shade without color,
Paralysed face, gesture without motion."(୧୨)

ଶୁଖିଲା ପତ୍ର ଦେଇ ପବନ ଶିର୍ ଶିର୍ ହୋଇ ବହିଗଲା ପରି ନିରର୍ଥକ ଆମର ସ୍ୱର ଶବ୍ଦ। ଆକାରହୀନ ଆମର ଗଠନ ଏବଂ ମୁଦ୍ରାହୀନ ଆମର ଗତି। ଏଇ ପକ୍ଷାଘାତ ଜୀବନ ହିଁ ଆମର ନିଃସଙ୍ଗ ମୁହୂର୍ତ୍ତର ଏକାନ୍ତ ନିଜର। ସେ ଏକ ପରିତ୍ୟକ୍ତ ଷ୍ଟେସନ୍। ବର୍ଷାଦିନ ରାତିରେ ଶେଷ ଗାଡ଼ି ଚାଲିଗଲା ପରେ ବିବିକ୍ତି ପରିବେଶ ହିଁ ତାର ସ୍ଥିତି। ପବନରେ ବତୀ ସବୁ ଲିଭିଗଲାଣି। କେବଳ ଦୂରରୁ ଅପେକ୍ଷାଗୃହରେ ହିଁ ଇଞ୍ଜିନ୍‌ର ପରିତ୍ୟକ୍ତ ଡ଼ାକ,(୧୩) ଠିକ୍ ଯେମିତି ସୀତାକାନ୍ତଙ୍କ ଦୁର୍ଯ୍ୟୋଧନ ଭରା ରକ୍ତନଈ କୂଳରେ ଠିଆ

ହୋଇଛି। ପଛରେ ଭୀମ ରଡ଼ି। ଆପଣା ପୁତ୍ରର ଶବକୁ ସବାର ହୋଇ ରକ୍ତନଦୀ ସନ୍ତରଣ ପରେ ବ୍ୟାସସରୋବରରେ ଆତ୍ମଗୋପନ କରିବାର ଅଭୀପ୍ସା। କୁରୁକ୍ଷେତ୍ର ଆଜି ବିପର୍ଯ୍ୟସ୍ତ। ଭଗ୍ନ ରଥ, ଛିନ୍ନ ଅସ୍ତ୍ର ଢ଼ାଲ ଭିତରେ ନିଃସଙ୍ଗ ଦୁର୍ଯ୍ୟୋଧନ।

"ଅତନ୍ଦ୍ରିତ ଆ୍‌ପ୍ରତା ଆଜି ଖାଲି ନିଦ୍ରା ମାଗେ
ନାମହୀନ ଛାଇର ଏ ଭିଡ଼େ
ଯାଦୁଘର ଅମୂର୍ତ୍ତ ଆଶା ଆକାଙ୍‌କ୍ଷା ଅପୂଷକ ଜୀବ
ନିଷ୍ଫଳ ଓ ନିରୁତ୍‌ସବ ନିମେଷର ନିର୍ବାକ୍ ପହିଚ।"(୧୪)

ରମାକାନ୍ତଙ୍କ ଚନ୍ଦ୍ରା ବେହେରାଣୀ, ମାଳତୀ ସାମଲ, ମାଷ୍ଟ୍ରାଣୀ, ମାଧବୀ ଓ ଭିକାରୁଣୀ ଆଜିର ନିଃସଙ୍ଗ ମଣିଷର ଏକ ଏକ ପ୍ରତିନିଧି। ଚନ୍ଦ୍ରାବେହେରାଣୀ ତ କମ୍ ନିଃସଙ୍ଗ ନୁହେଁ ଯଦିଓ ଦେହକୁ ନେଇ ପେଟ ପୋଷିବା ତାର ଧର୍ମ। ସେ ମରି ମରିନାହିଁ। ସେ ଯେମିତି ଏକ ଅସହାୟ ମିରିଗ ଛୁଆ। କାମୁକ ପୁରୁଷର ଅଜଗରୀ ଆକ୍ରମଣରେ ସେ ଚୁରି ହୋଇଯାଏ।

"ଆଶ୍ଳେଷର ହରିକାଠେ ଚନ୍ଦ୍ରମାର ଅନୁଭୂତି ମଲା,
ଝାଳର ଗନ୍ଧରେ ହେଲା ଲୁପ୍ତ ତାର ସକଳ ଚେ଼ତନା,
ଚୁମ୍ବନର ଚାବୁକରେ ଗାଲ ଆଉ ଛାତିରୁ ଜୀବନ
କୃପଣର ଧନପରି ଅନ୍ଧାରର ସିନ୍ଧୁକେ ଲୁଚିଲା।"(୧୫)
ଅନ୍ୟପାଖରେ ନିଜକୁ ବାରମ୍ବାର ସମର୍ପୁଥିଲେ ମଧ
ତାର ବିଚ୍ଛିନ୍ନ ବ୍ୟକ୍ତିସତ୍ତାଟି କହିବସେ,
"ଭାଙ୍ଗୁ ଏଇ ଚୂଡ଼ିମୋର ଲିଭୁ ମୋର ମଥାରୁ ସିନ୍ଦୂର
ଜଳୁ ଏଇ ପେଟ ଯାର ଭୋକେ ମୁହିଁ ବସିଲି ବାଟରେ
ଫାଟନ୍ତା ହେଲେ ଏ ଭୂଇଁ, ତା' ଭିତରେ ପଶି ମୁଁ କହନ୍ତି
ମତେ ତମେ କ୍ଷମା ଦିଅ, ମୁଁ ନିଜକୁ ବିକିଚି ହାଟରେ।"(୧୬)

ଏଇ ଆତ୍ମପ୍ରବଞ୍ଚନାକୁ ସେ ସ୍ୱୀକାର କରେ। ମାଳତୀ ସାମଲ ଅଭାବ ଅନାଟନ ଭିତରେ ମାଳତୀ ଫୁଲ ପରି ସଢ଼ି ଯାଉଛି। ଦେଶାନ୍ତରୀ ସ୍ୱାମୀକୁ ତଥାପି ସେ ଅପେକ୍ଷା କରୁଛି। ପ୍ରଲମ୍ବିତ ପ୍ରତୀକ୍ଷା ଭିତରେ ମାଳତୀର ନିଃସଙ୍ଗ ମନଟି ଗୁମୁରି ଉଠୁଛି। ଅଣଚାଷ ପବନ ଆଗରେ ଅଗାଡ଼ିଟି ପରି ସେ ଉଡ଼ିଯାଏ ଦୂରକୁ। "ଯେଉଁ ନିଆଁ କୁହୁଳୁଚି ମୋ ମନର ଗହଳ ସନ୍ଧିରେ/ମୁଁ ସେଥିରେ ପୋଡ଼ି ହୁଏ, ତମେ ଫେରି ଦେଖ କିଛି ନାହିଁ।"(୧୭) ଅଭିମାନ ଥିଲେ ମଧ ବିଚ୍ଛିନ୍ନ ଭାବସତ୍ତାର ନିଜ ପ୍ରତି ଏକ ପ୍ରଶ୍ନବାଚୀ ନୁହେଁକି? 'ଦୁଇ ଆଉ ଦୁଇ ମିଶି ଚାରି' ଏଇ ଗାଣିତିକ ସତ୍ୟର ପାରମ୍ପରିକ ମୂଲ୍ୟବୋଧ ସବୁବେଳେ ପାଇଁ ଜୀବନକୁ ଅର୍ଥାନ୍ୱିତ କରିପାରେ ନାହିଁ। ଆଉ ବା ମାଷ୍ଟ୍ରାଣୀ ଜୀବନରେ କ'ଣ ଅଛି! ପରିତ୍ୟକ୍ତା ଏକାକିନୀ ନାରୀ ଜୀବନରେ ଖାଲି କଳାଘୁମର ଅମାବାସ୍ୟା ବ୍ୟତୀତ ଏତେ ଟିକେ ଜହ୍ନର ଚିହ୍ନ ବର୍ଣ୍ଣ ବି ନାହିଁ। ଘର, ବାହାଘର, ମାତୃତ୍ୱ, ପ୍ରେମ ସବୁଥିରୁ ନିଜକୁ ଦୂରେଇ ଦେଇଛି ତାକୁ ଏ ସମାଜ। କେଡ଼େ ନିଃସଙ୍ଗ ମଣିଷଟିଏ ସତେ! ତା'ର ନିଃସଙ୍ଗତା ଆଉରି ଫୁଟିଉଠେ-

"ଆଜି ସ୍କୁଲ ଛୁଟି ଆଜି ଶୋଭାଯାତ୍ରା ମାଷ୍ଟ୍ରାଣୀଙ୍କ ପାଇଁ
ଖଇ ଓ କଉଡ଼ି ପଡ଼େ, ସବୁ କିଛି ସରିଯାଇ ନାହିଁ।"(୧୮)

ମାଧବୀ ମଧ ତା' ଜୀବନରେ ତିରିଶଟି ମହମବତୀ ଜଳେଇ ସାରିଛି। ଅନ୍ୟକୁ ଖୁସି କରିବାକୁ ଯାଇ ନିଜକୁ ଜାଳିଛି। କିନ୍ତୁ ଶେଷକୁ ସେ ଦାୟୀ ହୁଏ ଅନ୍ୟର ଅଧୋଗତି ପାଇଁ। ଶେଷକୁ ଦୋଚାରିଣୀ ବୋଲି ନାମିତା ହୁଏ। ଏଇ କ'ଣ ଥିଲା ମାଧବୀର ଜୀବନର ଲକ୍ଷ୍ୟ ? ତାର ସ୍ୱପ୍ନ ? ଆଜି ସେ ନିଖୋଜ। କେମିତି ବା ତା' ନିଃସଙ୍ଗ ସତ୍ତା ଚିତ୍କାର କରି ଉଠୁନଥିବ ? "ସେ ଏକ ଦଦରା ଭୂତ ତାକୁ ଦେଖି ଉଡ଼ିଗଲେ ସବୁ/ଚଢ଼େଇ -- ସେ ସୀମାହୀନ ଜଙ୍ଗଲ ଯେଉଁଠି - ଏକମାତ୍ର ଶବ୍ଦ ଅଟେ ଟପ୍‌ଟାପ୍ ବର୍ଷା ପଡ଼ିବାର।"(୧୯) ଭିକାରୁଣୀଟି ମଧ ବାହାଘର ପଟୁଆର ଦେଖି କେତେ ସମୟ ବା ମୁଗ୍ଧ ଚକିତ ହେବ! "ମୁଁ ଅବା କରନ୍ତି କ'ଣ ? ମୁଁ ତ ମାଆ ଏପରି ଛୁଆର,/ ମୋ ନାରୀତ୍ୱ ଝୁଲୁଅଛି କାଗଜର ସ୍ତନ ଦୁଇଟିରେ/ରେଲଗାଡ଼ି ଆସିଲାଣି ଷ୍ଟେସନ୍‌କୁ।"(୨୦) ମରାମତ୍ ସ୍ୱପ୍ନମାନେ ଚେଇଁ ଉଠିଲେବି, ରକ୍ତଟିକେ ତାତି ଉଠିଲେବି, 'ତା' ପରେ ମୋ ଶେଯ କାଗଜ ପାଲଟି ଗଲା।' ମାଧବୀ ଚତ୍ୱାରିଂଶ ବର୍ଷରେ ପଦାର୍ପଣ କଲେ ମଧ ତଥାପି ତା'ର ହୃଦୟ ବ୍ୟାକୁଳିତ। ବୃଦ୍ଧ ସ୍ୱାମୀ ଛାଡ଼ି ଚାଲି ଯାଇଛନ୍ତି। ତାର ଲମ୍ବା ଚୌଡ଼ା ପରିତ୍ୟକ୍ତ ଘର ପଡ଼ି ରହିଛି। ଅସହାୟା ନିଃସଙ୍ଗ ମାଧବୀ। 'ପିମ୍ପୁଡ଼ି ଖିଆ କାଛରେ' ପଡୁଥିବା ଖରାକୁ ମନୋହର ଭାବି ନେଉଥିଲେ ମଧ 'ଜନ୍ମଦିନ', 'ଅପରାହ୍ଣ', 'ବେଦାନ୍ତ' ଓ 'କଳ୍କି ଅବତାର' -- ସବୁ ତାର ଆଦିମ ନିଃଶ୍ୱାସରେ ପୋଡ଼ି ଜଳି ଯାଏ।(୨୧) ଏଇ ନିଃସଙ୍ଗତା ଭାବ 'ବାଘ ଶିକାର'ରେ ଆଉରି ସାନ୍ଦ୍ରୀଭୂତ ହୋଇଛି। ଲୋକକଥାର ବିଧିନିର୍ଦ୍ଦିଷ୍ଟ ରାଜକୁମାର ସମୁଦ୍ର ଟାପୁରେ ଅନ୍ତଃପୁର ନିର୍ମାଣ କରି ମଧୁଶଯ୍ୟା ବିଛାଇଲେ ମଧ ରାଜକୁମାରୀଙ୍କ ନିର୍ଦ୍ଦେଶରେ ରାଜକୁମାର-ଅଙ୍କିତ ବାଘ ଚିତ୍ରପଟଟି ଜୀବନ୍ତ ହୋଇ ତା'ର ପ୍ରାଣହାନୀର କାରଣ ହୁଏ। ନିଃସଙ୍ଗ ରାଜକୁମାରୀ। ଚାରିଆଡ଼େ ମୃତ୍ୟୁର ଲହରୀ। ଏଇ ନିଃସଙ୍ଗତାଭାବ କାବ୍ୟପୁରୁଷର ଉତ୍ତରିତ ସ୍ତରରେ ଭିନ୍ନ ରୂପରେଖ ଓ ଚେତନା ନେଇ ଆସିଛି ଯାହା ପରବର୍ତ୍ତୀ ପରିଚ୍ଛେଦରେ ଆଲୋଚନା କରାଯାଉଛି।

ପାଦଟୀକା

୧. ନିଃସଙ୍ଗ ମଣିଷ- ଭୂମିକା- ସୀତାକାନ୍ତ ମହାପାତ୍ର- ପୃ 'କ'

୨. "Time was and it was all time up to 300 years ago when the whole of life went forward in the family, in a circle of loved, familiar faces, known and fondled objects all to human sins. That time has gone for ever."- The world we have lost - Peter Laslett- 'ନିଃସଙ୍ଗ ମଣିଷ' ଗ୍ରନ୍ଥରୁ ଉଦ୍ଧୃତ।

୩. The Fire Sermon - The Waste Land- T.S. Eliot

୪. ବାଘାବଲୋକନ- କେତେଦିନର- ପୃ ୩

୫. ଗୋଟିଏ ସ୍ୱପ୍ନ-ତର୍ଜ୍ଜମା- ପୃ ୫

୬. ପୁତ୍ତଳିକା- ତତ୍ରୈବ- ପୃ ୩୦
୭. ଚଉପହରା- ତତ୍ରୈବ- ପୃ ୮୫
୮. ପୁନର୍ମିଳନ- ଅନେକ କୋଠରୀ- ପୃ ୩
୯. ''ତମର କି ମନେପଡ଼େ ଛାତିକଷ୍ଟ ହାୱାତାଲେ କାଲି
ତମେ କି କଳ୍ପନା କର ଆଜି ତମ ଧ୍ୱଂସର ଦିଆଲୀ।
- ବାଘ ଶିକାର- ତତ୍ରୈବ- ପୃ ୯
୧୦. ତତ୍ରୈବ- ପୃ ୧୦
୧୧. ଅନନ୍ତ ଶୟନ- ଅନେକ କୋଠରୀ- ପୃ ୨୬
୧୨. The Hollowmen- T.S. Elliot
୧୩. ବର୍ଷାଋତୁ- ଅନେକ କୋଠରୀ- ପୃ ୩୭
୧୪. ରକ୍ତନଦୀ ସନ୍ତରଣ ପରେ- ଅଷ୍ଟପଦୀ- ପୃ ୧୦୪
୧୫. ଚନ୍ଦ୍ରମାର ଚୂଡ଼ି- କେତେଦିନର- ପୃ ୨୩
୧୬. ତତ୍ରୈବ- ପୃ ୨୩
୧୭. ନବଗୁଞ୍ଜାର- ତତ୍ରୈବ- ପୃ ୩୮
୧୮. ମାଷ୍ଟାଣୀ- ସନ୍ଦିଗ୍ଧ ମୃଗୟା- ପୃ ୨୯
୧୯. ସମୟକୁ ଚାରୋଟି ଚୋରା ଚାହାଣୀ- ତତ୍ରୈବ- ପୃ ୭୯
୨୦. ଭିକାରୁଣୀର ବରାନୁଗମନ ଦର୍ଶନ- ତତ୍ରୈବ- ପୃ ୮୨
୨୧. ମାଧବୀର ପଞ୍ଚତ୍ରିଂଶତମ ଜନ୍ମୋତ୍ସବ- ସନ୍ଦିଗ୍ଧ ମୃଗୟା- ପୃ ୮୭

## ରହସ୍ୟବାଦ ଓ ମୃତ୍ୟୁଚେତନା

"Do I contradict myself?
Very well then I contradict myself.
I am large, I contain multitudes."
(Walt whitman)

ଏହାହିଁ ମଣିଷର ପରିଚୟ। ପ୍ରତି ମୁହୂର୍ତ୍ତରେ ନିଜ ସହ ବିରୋଧାଭାସ ସୃଷ୍ଟି କରୁଥିବା ମଣିଷ ହିଁ ଅନ୍ବେଷାର ପଥିକ। ବହୁଧା ବିଭକ୍ତ ବ୍ୟକ୍ତିତ୍ୱକୁ ନେଇ ସେ ସୃଷ୍ଟି ଓ ଆପଣା ସମ୍ପର୍କରେ ଅନେକ ଛାୟାଚ୍ଛନ୍ନ ସତ୍ୟତାକୁ ଉଖାରି ବସେ। ସେଠୁ କେତେବେଳେ କେଉଁ ଗୋପନ ତଥ୍ୟର ଆବିଷ୍କାର ହୋଇଯାଏ ଯେ ତେଣିକି ମନ ପୁଣି ନୂତନତ୍ୱରେ ଆଶାୟୀ ହୁଏ। ସୃଷ୍ଟିର ପ୍ରାକ୍‌କାଳରୁ ଏ ଯାବତ୍ ମଣିଷ ଖୋଜି ଚାଲିଛି କିଛି। ସେହି ଖୋଜିବା ଭିତରେ ଅନେକ ତତ୍ତ୍ୱ, ଅନେକ ବାଦ, ଅନେକ ସମନ୍ୱୟ ଆସିଥିଲେ ମଧ ତଥାପି ସେ ଅନ୍ବେଷଣ ଅବ୍ୟାହତ। ଜୀବନରେ ବଞ୍ଚିରହି ପ୍ରୀତି ପ୍ରଣୟରେ କି ଉଦର ପୋଷଣରେ ନିଜକୁ ଉପଭୋଗ କରିଲେ ବି ବେଳେବେଳେ ମନରେ ଏକ ଖାଁ-ଖାଁ ଭାବ ଆସେ। 'ୱେଷ୍ଟଲ୍ୟାଣ୍ଡ୍'ରେ କବି ବସ୍ତୁତାନ୍ତ୍ରିକ ସମାଜ ଭିତରେ ଅଣନିଃଶ୍ୱାସ ହୋଇ ସାରିଲା ପରେ ପୁଣି ସେ ଫେରି ଆସେ ଓଁ ଶାନ୍ତିଃ...ଶାନ୍ତିଃ..ର ସ୍ୱସ୍ତ୍ୟୟନ ମଧକୁ। ପାଶ୍ଚାତ୍ୟରେ

ଆଧ୍ୟାତ୍ମିକ ନିଃସଙ୍ଗତା ବସ୍ତୁକୈନ୍ଦ୍ରିକ ବିତୃଷ୍ଣତାରୁ ଉଦ୍ଭୂତ ହେବା ସ୍ଥଳେ ପ୍ରାଚ୍ୟରେ (ବିଶେଷତଃ ଭାରତ) ତାହା ତାର ବିପରୀତ କାରଣରୁ ଦେଖାଦେଇଛି। ଏବଂ ତାହା ଓଡ଼ିଶାର ବାୟୁମଣ୍ଡଳରେ ମଧ୍ୟ ସଂକ୍ରମିତ ହୋଇ ଯାଇଛି। ବୈଜ୍ଞାନିକସମାଜବାଦ (Scientific Socialism) ଈଶ୍ୱରଙ୍କ ଅସ୍ତିତ୍ୱ ସ୍ୱୀକାର ନ କଲେ ବି ମନ କେଉଁ ଏକ ଅଜଣା ଅଛୁଆଁ ଅଦେଖା ଶକ୍ତି ପଛରେ ଧାଇଁଚାଲେ।

ସାଂପ୍ରତିକ କାଳରେ ବିଜ୍ଞାନର ପ୍ରଭୂତ ଉନ୍ନତି ସାଧନ ଓ ବୈଷୟିକ ବିଦ୍ୟାର ପ୍ରାବଲ୍ୟ ସତ୍ତ୍ୱେ ଜୀବନର ଯେ ଏକ ସୂକ୍ଷ୍ମଦିଗ ରହିଛି ତାହା ସ୍ୱୀକାର୍ଯ୍ୟ। ଏ ସମ୍ପର୍କରେ ବାର୍ଟାଣ୍ଡ ରସେଲ୍ କହନ୍ତି- "The attempt to receive the world as a whole by means of thought has been developed by the union and conflict of the mystical impulse and scientific impulse. Mysticism prefers insight or intuition to reason. Such insight begins with the sense of a mystery unveiled." (୧) ଆଜିର ଜୀବନରେ ଯେତେ ପ୍ରକାର ବାହ୍ୟିକ ଉପଚାର କରି ତାକୁ ସମୃଦ୍ଧ ଓ ରୁଚିଶୀଳ କରାଗଲେ ମଧ୍ୟ ଏକ ଅନ୍ତଃ ଅଭାବବୋଧ ରହି ଯାଉଛି। ତାକୁ ତେଣୁ ପରିତ୍ରାଣ ଲୋଡ଼ିବାକୁ ପଡ଼େ। ଏଇ ପରିତ୍ରାଣରୁ ମୁକ୍ତି ମିଳେ ଏକ ଅଦୃଶ୍ୟ ସମ୍ପର୍କ ସହିତ ମାନସିକ ସହାବସ୍ଥାନରୁ। ବୈଷ୍ଣବ କାବ୍ୟରେ ରାଧା-କୃଷ୍ଣ ପ୍ରୀତି ପ୍ରସଙ୍ଗରେ ଯେଉଁ ଶୃଙ୍ଗାର କଥା କୁହାଯାଇଛି ତାହା ସେହି ମାନସିକ ସ୍ତରର ବ୍ୟାପାର। ପ୍ରକୃତି-ପୁରୁଷ ବା ଦ୍ୟାବ୍ୟା-ପୃଥିବୀର ସଙ୍ଗମ। ସେଠି ଶେଷକୁ ହିଁ କେବଳ ରହିଯାଉଛି ଏକ ଦିବ୍ୟ ଅନୁଭୂତି ମାତ୍ର। ଏଇ ଅନୁଭୂତି ହିଁ ଏକ ସୂକ୍ଷ୍ମାନୁଭୂତି। "Mysticism maintaining the possibility of direct intercourse with this, Being of being, intercourse not through any external media such as a historical revelation, oracles, answers to prayer and the like, but by a species of transfusion or identification in which the individual becomes in very truth 'partaker of the divine nature', God ceases to be an object to him and becomes an experience." (୨) ଉପନିଷଦରେ କଥିତ ଅଛି, "ବ୍ରହ୍ମୈବ ସନ୍ ବ୍ରହ୍ମ ଅପ୍ୟେତେ ବିମୁକ୍ତଶ୍ଚ ବିମୁଚ୍ୟତେ।"

ପ୍ରାଚ୍ୟଦର୍ଶନ ପର୍ଯ୍ୟାଲୋଚନା କ୍ରମେ ଆମେ ସେହି ଅନନ୍ତ ରହସ୍ୟମୟ ସତ୍ତାକୁ ବିବିଧ ରୂପରେ ଦେଖିବାକୁ ପାଉ। ବିଭିନ୍ନ ଗ୍ରନ୍ଥରୁ କେତୋଟି ନମୂନା ନିଆଯାଉ।

(କ) "ଏକ ଏବାଗ୍ନିର୍ବହୁଧା ସମିଦ୍ଧ
ଏକଃ ସୂର୍ଯ୍ୟୋ ବିଶ୍ୱମନୁ ପ୍ରଭୂତଃ
ଏକୈ ବୈଷା ସର୍ବମିଦଂ ବିଭା
ତ୍ୟେକଂ ବାଇଦଂବିବଭୂଃ ସର୍ବମ୍।"

ଋଗ୍‌ବେଦ (-୮/୧୯/୨)

(ଖ) "ଓଁ ଈଶାବାସ୍ୟ ମିଦଂ ସର୍ବଂ-
ଯତ୍‌କିଞ୍ଚଜଗତ୍ୟାଂ ଜଗତ୍।"

(ଈଶାବାସ୍ୟୋପନିଷଦ)

(ଅର୍ଥାତ୍, ଜଗତରେ ଯାହା କିଛି ଅଛି ସବୁ ସେହି ଶକ୍ତିର ଅଧୀନ।)

(ଗ) "ଅନ୍ତିସନ୍ତଂ ନ ଜହା-
ତ୍ୟନ୍ତି ସନ୍ତଂ ନ ପଶ୍ୟତି।

ଦେବସ୍ୟ ପଶ୍ୟ କାବ୍ୟମ୍
ନମମାର ନ ଜୀର୍ଯ୍ୟତି।''- (ଅଥର୍ବବେଦ- ୧୦/୮/୩୨)
(ଅର୍ଥାତ୍ ସେ ନିକଟରେ ଅଛନ୍ତି କିନ୍ତୁ ସବୁରି ଅଦୃଶ୍ୟ)

(ଘ) ''ତ୍ୱଂ ସ୍ତ୍ରୀ ତ୍ୱଂ ପୁମାନସି
ତ୍ୱଂ କୁମାର ଉତ ବା କୁମାରୀ
ତ୍ୱଂ ଜୀର୍ଣ୍ଣୋ ଦଣ୍ଡେନ ବଞ୍ଚସି
ତ୍ୱଂ ଜାତୋଭ ବସି ବିଶ୍ୱତୋମୁଖଃ।''
(ଅଥର୍ବବେଦ-୧୦/୮/୨୭)

ଏହି ଚେ଼ତନା ଜୀବାତ୍ମା-ପରମାତ୍ମା ଓ ଶରୀରକୁ ନେଇ ଆହୁରି କୁହେଳିକାମୟ ହୋଇ ଉଠିଛି ଏକ ଉପନିଷଦୀୟ ପ୍ରତୀକରେ-

''ଦ୍ୱାସୁପର୍ଣ୍ଣା ସଯୁଜାସଖାୟା
ସମାନଂ ବୃକ୍ଷଂ ପରିଶସ୍ୱଜାତେ
ତୟୋରନ୍ୟଃ ପିପ୍ପଳଂସ୍ୱାଦ୍ୱତ୍ତି
ଅନଶ୍ନନନ୍ୟୋ ଅଭିଚାକଶୀତି।''
(ଶ୍ୱେତାଶ୍ୱତର ଉପନିଷଦ)

ଗୋଟିଏ ବୃକ୍ଷରେ ଦୁଇଟି ପକ୍ଷୀ ରହୁଥିଲେ ମଧ ଗୋଟିଏ ପକ୍ଷୀ ଫଳ ଭକ୍ଷଣ କରୁଥିବା କାଳେ ଅନ୍ୟଟି କେବଳ ଚାହିଁ ରହିଥାଏ। ମନୁଷ୍ୟ-ଶରୀର ଏକ ବୃକ୍ଷ। ଜୀବାତ୍ମା-ପରମାତ୍ମା ଯୁଗଳ ପକ୍ଷୀ ଜୀବାତ୍ମା କର୍ମଫଳ ଭୋଗ କରୁଥିବା ବେଳେ ପରମାତ୍ମା ହିଁ ଏ ସବୁର ଅନାସକ୍ତ ଦ୍ରଷ୍ଟା ଭାବେ ଅବସ୍ଥାନ କରନ୍ତି।

ଏ ତତ୍ତ୍ୱକୁ ପରିପ୍ରକାଶ କରିବା ପାଇଁ ଯେଉଁ ଅହରହ ପ୍ରଚେ଼ଷ୍ଟା ଚାଲି ଆସିଛି ତାହାର ପ୍ରତିଫଳନ ମୁଖ୍ୟତଃ ସାହିତ୍ୟରେ ପଡ଼ିଛି ଯେହେତୁ ଜୀବନ ଓ ସାହିତ୍ୟ ସର୍ବଦା ସହବାସରତ। ପ୍ରାଚ଼ୀନ ଓ ମଧ୍ୟଯୁଗୀୟ ସାହିତ୍ୟରେ ଏହି ରହସ୍ୟବାଦ ପ୍ରାଧାନ୍ୟ ଲାଭ କରି ଆସିଥିଲେ ମଧ ଆଧୁନିକ ସାହିତ୍ୟରେ ତାହା ପୁଣି ନୂତନ ରୂପରେଖ ନେଇ ପ୍ରକଟିତ।

ଇଂରାଜୀ ସାହିତ୍ୟରେ ସାର୍ ୱାଲ୍‌ଟର ରାଲେଙ୍କ (୧୫୫୨-୧୬୧୦) ଠାରୁ ଜନ୍‌ଡ଼ନ୍, ବେନ୍ ଜନ୍-ସନ, ଜର୍ଜ ହରବେଟ୍, ଜନ୍ ମିଲ୍‌ଟନ୍, ବ୍ଲେକ୍ ଦେଇ ଆଧୁନିକ ଯୁଗର ଟି.ଏସ୍.ଇଲିଅଟ, ଫିଲିପ୍ ଲାର୍କିନ୍ ଓ ସିଲ୍‌ଭା ପ୍ଲାଥ୍ ପର୍ଯ୍ୟନ୍ତ ଆଧିଭୌତିକ କବିମାନେ କବିତାରେ ସେହି ଜୀବନ ଓ ମୃତ୍ୟୁ ଓ ତଜ୍ଜନିତ ମାନସିକତାକୁ ଓ ଜଗତର ଅସାରତାକୁ ହିଁ ଘାଣ୍ଟ ଚକଟ କରାଯାଇଛି। ବାଇବେଲ ବର୍ଣ୍ଣିତ 'Song of Solomon,'ରେ ରହସ୍ୟମୟ ଚେ଼ତନା ଯଦିଓ ପ୍ରାକ୍ କାଳରୁ ରହି ଆସିଛି, ତଥାପି ସାଂପ୍ରତିକ କାଳରେ ଏହି ଚେ଼ତନାର ପରିପ୍ରକାଶ ଆଉରି ଦୃପ୍ତ ଓ ତୀର୍ଯ୍ୟକ ବୋଧ ହେଉଛି। ଭାରତୀୟ ସାହିତ୍ୟରେ ମଧ ଏହି ତତ୍ତ୍ୱ ବହୁଚ଼ର୍ଚ୍ଚିତ। ଆଧୁନିକ ହିନ୍ଦୀ ସାହିତ୍ୟରେ ମୈଥିଳୀ ଶରଣ ଗୁପ୍ତ, ନିରାଲା, ମହାଦେବୀ ବର୍ମା, ସୁମିତ୍ରା ନନ୍ଦନ ପନ୍ଥ ଆଦି କବି ବେଶ୍ ରହସ୍ୟବାଦୀ। କବି ମହାଦେବୀ ବର୍ମା ତାଙ୍କର ପ୍ରିୟତମ ଘୋର ଅନ୍ଧାର ଭିତରେ ଆସନ୍ତି ବୋଲି ବିଶ୍ୱାସ କରନ୍ତି। ଜୀବନରେ ଦୁଃଖ ଲାଗି ରହିଥାଉ। ଆଲୋକ ଦେଖି କାଳେ ତାଙ୍କ ପ୍ରିୟତମ ବାହୁଡ଼ିଯିବେ ସେଥିପାଇଁ

ସେ ତାରାମାନଙ୍କୁ ଲୁଚିଯିବାକୁ କହନ୍ତି-

"ମେରେ ପ୍ରିୟତମ କୋ ଭାତା ହୈ, ତମ୍‌କେ ପର୍ଦ୍ଦ ମେଁ ଆନା
ଓ ନଭ୍‌କୀ ଦୀପାବଲ୍ଲୀୟୌଁ, ତୁମ କ୍ଷଣ ଭରକୋ ଛୁପ୍‌ଯାନା।"

ବଙ୍ଗଳା ସାହିତ୍ୟରେ ରବୀନ୍ଦ୍ରନାଥ ଠାକୁର ହିଁ ଅନେକ କାଳ ଧରି ତାକୁ ଖୋଜିଛନ୍ତି। "ତୋରା ଶୁନିସ୍‌ନିକି ଶୁନିସ୍‌ନିକି ତାଁର ପାଏର ଧ୍ୱନି/ଐଯେ ଆସେ ଆସେ ଆସେ।"(ଗୀତାଞ୍ଜଳି)। ଓଡ଼ିଆ ସାହିତ୍ୟରେ ଚର୍ଯ୍ୟାପଦାବଳୀଠାରୁ ରମାକାନ୍ତ ରଥଙ୍କ ପର୍ଯ୍ୟନ୍ତ ଯୁଗେ ଯୁଗେ ସାହିତ୍ୟରେ ସେହି ଅନ୍ୱେଷଣ ଚାଲିଛି।

ରମାକାନ୍ତଙ୍କ କାବ୍ୟପୁରୁଷ ପ୍ରଥମରୁ ଯେତେବେଳେ ଚେତ୍‌ନାର ଚୌହଦୀକୁ ଡେଇଁଛି ସେତେବେଳେ ଅନୁଭବ କରିଛି, "ମୋତେ ଜଣାଗଲା ପଛେ ମୋର କିଏ ଆସୁଚି/ ମୋର ଗତିପଥ ନିରେଖି ନିରେଖି ଦେଖୁଚି।" ଏକ ନିରୀହ ମେଷ ଛୁଆଠାରୁ ସେ ଭୟପ୍ରାପ୍ତ। ଏହି ଭୟ ପ୍ରାୟ ୧୯୫୦ -୫୫ ଠାରୁ (କେତେଦିନର) ୧୯୭୧ (ସନ୍ଦିଗ୍ଧ ମୃଗୟା) ପର୍ଯ୍ୟନ୍ତ ରହି ଆସିଛି। ମୃତ୍ୟୁ ପାଇଁ ଭୟ ଭାବ ରହିଛି। ସ୍ଥଳ ବିଶେଷରେ ସେ ସ୍ୱବିରୋଧ କରିଥିଲେ ମଧ୍ୟ 'ସପ୍ତମଋତୁ' ବେଳକୁ ସେଇ ଭୟ ତୁଟି ଯାଉଛି। ଏହି ପରିଚ୍ଛେଦରେ 'ସନ୍ଦିଗ୍ଧ ମୃଗୟା' ପର୍ଯ୍ୟନ୍ତ କାବ୍ୟମାନସକୁ ଅନୁଶୀଳନ କରାଯିବାର ସାମାନ୍ୟତମ ପ୍ରଚେଷ୍ଟା କରାଯାଇଛି।

ଯେତେବେଳେ ସମାଜ ଚାରିପାଖରେ ବିଶ୍ୱାସଘାତକତା ଜମି ଆସୁଛି ସେତେବେଳେ ଗରୁଡ଼ର ଆବିର୍ଭାବ ସୁନିଶ୍ଚିତ। ନାଗକନ୍ୟା ମରଣର ସଙ୍କେତ ସୂଚାଇ ଦେଉଛି ଶେଯକୁ ହାତଠାରି।(୩) ଜୀବନର ଦାବଦହନ ଭିତରେ ଅତିଷ୍ଠ ହୋଇଗଲା ପରେ ସେ ଚାହୁଁଛି ମୃତ୍ୟୁ। ମୃତ୍ୟୁରେ ହିଁ ପୂର୍ଣ୍ଣାଙ୍ଗ ଜୀବନ। "ମିଥ୍ୟା ମୋର ଜନ୍ମନେବା, ମିଥ୍ୟା ମୋର ଧରିବା ଜୀବନ;/ ଯେ ଯାଏଁ ମୁଁ ମରି ନାହିଁ ସେ ଯାଏଁ ମୁଁ ସମ୍ପୂର୍ଣ୍ଣ ହୋଇନି।"(୪) ଜୀବନରେ ମଧ୍ୟ ଚଣ୍ଡୀ (evil spirit) ର ଦାଉ ରହୁଛି।(୫) 'ଆଳାପ' କବିତାଟିରେ ତଥାକଥିତ ନିର୍ବାଣପ୍ରାପ୍ତି ଓ ଐହିକ ଜୀବନ ଭିତରେ ଦ୍ୱନ୍ଦ୍ୱ ଆସିଛି। ସ୍ୱପ୍ନ ଭିତରେ କାବ୍ୟପୁରୁଷ ଏକ ଜ୍ୱଳନ୍ତ ଦୀପ୍ତିର ସମ୍ମୁଖୀନ ହୁଏ। ଆଖି ଫୁଟିଗଲା ପରି ମନେ ହୁଏ। ଦୁର୍ଦ୍ଦାନ୍ତ ପବନର ଗତିରେ ସବୁକିଛି ଭାଙ୍ଗିରୁଜି ଯିବାର ସୂଚନା ଥିଲେ ମଧ୍ୟ ତାଙ୍କ ବାନ୍ଧବୀର ପଣତ ବି ହଲିଲା ନାହିଁ। ସେ କ୍ରମଶଃ ଊର୍ଦ୍ଧ୍ୱଗାମୀ ହୋଇଛି। ମହାକାଳର ଗତିକୁ କେହି ଲଙ୍ଘନ କରି ପାରିବେ ନାହିଁ। ତାହା ଆସିବ ହିଁ ଆସିବ। ସମୟ ସାଗର ତଟରେ ଘର କରିଥିବା ମଣିଷଟି ଯେତେ ଅସଚେତନ ଥିଲେ ମଧ୍ୟ ସାଗରର ଢେଉ ଦିନେନା ଦିନେ ପୋଛିନେବ ସେଇ ଘରକୁ। "ସେ ଢେଉ ଆସିଲା ସତ, ଲୋକ କିନ୍ତୁ ଜାଣି ପାରିଲାନି।"(୬) ଆଜି ହେଉ ବା ଶହେ ବର୍ଷ ପରେ ହେଉ ମୃତ୍ୟୁ ହିଁ ଧ୍ରୁବ। କାହାର ବା ତ୍ରାହି ଅଛି ? ସେଇ ସମୁଦ୍ର ତାର ଘରକୁ ଭାଙ୍ଗି ଦେଲେ ମଧ୍ୟ ତାକୁ ପୁଣି ସେଠାକୁ ଆସିବାକୁ ପଡ଼ିବ ଏକ ପରମ ତୃପ୍ତି ପାଇଁ। ଭୌତିକ ଜଡ଼ ସର୍ବସ୍ୱ ଜୀବନ ଭିତରେ ଟିକେ ଆନନ୍ଦ ଦରକାର। ସେ ଆନନ୍ଦ ମହାନନ୍ଦ ବା ପରମାନନ୍ଦ। ତାହା କେବଳ ଏଇ ମହାକାଳ ଦ୍ୱାରା ହିଁ ସମର୍ଥିତ।

"ତମେ ଯେବେ କ୍ଳାନ୍ତ ହେବ ଶୁଣି ଶୁଣି ରେସ୍ତୋଁରାର ଗୀତ
ତମେ ଯେବେ କ୍ଳାନ୍ତ ହେବ ପିନ୍ଧି ପିନ୍ଧି କୃତ୍ରିମ ରେଶମ

ସମୁଦ୍ର କୂଳକୁ ଆସ ଧୈର୍ଯ୍ୟ ଧରି, ସମୁଦ୍ର ତମର
କ୍ଷତିତ କରିବ ନାହିଁ, ବରଂ ଦେବ ପ୍ରଚୁର ଆରାମ।''(୭)

ଏଠି କେବେ ଡ଼ଙ୍ଗା ବୁଡ଼ିଯାଏ ନାହିଁ। ଯଦି ଭାଙ୍ଗିଯାଏ ତେବେ, ''ପୁନର୍ବାର ଯୋଡ଼ିହୋଇ ଭାସୁଥିବ ସମୁଦ୍ର ଉପରେ।'' ଜଗତର ସବୁ ଗୁଣଯୁକ୍ତ ବସ୍ତୁର ମୃତ୍ୟୁ ଯେ ଅବଶ୍ୟମ୍ଭାବୀ ଏହା ଶାସ୍ତ୍ରସିଦ୍ଧ। ପ୍ରାଚୀନ ପ୍ରାଚ୍ୟ ଗ୍ରନ୍ଥମାନଙ୍କରୁ କେତୋଟି ଶ୍ଳୋକକୁ ନେଇ ଅନୁଶୀଳନ କଲେ ଏହାର ସତ୍ୟତା ପ୍ରତିପାଦିତ ହୋଇ ପାରିବ।

''ତେଷାଂ ବ୍ରହ୍ମାବିଷ୍ଣୁରୁଦ୍ରାଖ୍ୟୋତ୍ପତ୍ତିସ୍ଥିତିଲୟ କର୍ତ୍ତାରଃ।
ରାଜସୋ ବ୍ରହ୍ମା ସାତ୍ତ୍ୱିକୋ ବିଷ୍ଣୁ ସ୍ତାମସୋ ରୁଦ୍ର
ଇତି ତ୍ରୟୋଗୁଣଯୁକ୍ତାଃ।।'' (ଯୋଗଚୂଡ଼ାମଣି ଉପନିଷଦ)

ବ୍ରହ୍ମା ରଜଗୁଣଯୁକ୍ତ, ବିଷ୍ଣୁ ସତ୍ତ୍ୱଗୁଣ ଓ ରୁଦ୍ର ତମଗୁଣଯୁକ୍ତ ହୋଇଥିବାରୁ ଏମାନେ ସବୁ ବିନାଶ-ଶୀଳ।

''ରକ୍ଷକୋ ବିଷ୍ଣୁରିତ୍ୟାଦି ବ୍ରହ୍ମା ସୃଷ୍ଟେସ୍ତୁ କାରଣମ୍।
ସଂହାରେ ରୁଦ୍ର ଇତ୍ୟେବ ସର୍ବ ମିଥ୍ୟେତି ନିଶ୍ଚିନୁ।।''
(ତେଜ ବିନ୍ଦୁ ଉପନିଷଦ-୫୧)

''ପରମେଷ୍ଠ୍ୟପି ନିଷ୍ଠାବାନ ହୀୟତେ ହରିରପ୍ୟଜଃ।
ଭବୋଽପ୍ୟଭବ ମାୟାତି ଜୀର୍ଯନ୍ତେ ବୈଦିଗୀଶ୍ୱରାଃ।।
ବ୍ରହ୍ମା ବିଷ୍ଣୁଶ୍ଚ ରୁଦ୍ରଶ୍ଚ ସର୍ବାବା ଭୂତ ଜାତୟଃ
ନାଶମେ ବାନୁ ଧାବନ୍ତି ସଲିଳାନୀନ ବାଡ଼ବମ୍।''
(ମହୋପନିଷଦ- ୩।୫୧।୫୨)

ଅର୍ଥାତ୍ ନିଷ୍ଠାପରାୟଣ ବ୍ରହ୍ମା ଓ ଜନ୍ମ-ରହିତ ବିଷ୍ଣୁ ମଧ ନାଶପ୍ରାପ୍ତ ହୁଅନ୍ତି। ଭବ (ଶିବ)ଙ୍କର ମଧ ଅଭାବ (ନାଶ) ଘଟିଥାଏ। ଇନ୍ଦ୍ରାଦି ଦିଗ୍‌ପାଳ ମଧ ଦିନେ ଲୋପପ୍ରାପ୍ତ ହୁଅନ୍ତି। ବ୍ରହ୍ମା, ବିଷ୍ଣୁ, ରୁଦ୍ର ତଥା ସମଗ୍ର ପ୍ରାଣୀ ଜଗତ ବଡବାଗ୍ନି ମୁଖରେ ଜଳପରି ନାଶ ଅଭିମୁଖରେ ସର୍ବଦା ଧାଇଁଛନ୍ତି। ଏଥିପାଇଁ କବି ବିଦ୍ୟାପତି ଗାଇଛନ୍ତି-

''କତ ଚତୁରାନନ ମରି ମରି ଜାଓତ
ନତୁୟା ଆଦି ଅବସାନା
ତୋହେ ଜନମି ପୁନଃ ତୋୟେ ସମାୟତ
ସାଗର ଲହରୀ ସମାନନା।''

'ସାଂଖ୍ୟକାରିକା'ରେ ବର୍ଣ୍ଣିତ ଅଛି ଯେ ସହସ୍ର ସହସ୍ର ଇନ୍ଦ୍ର ଏହିପରି ଯୁଗକୁ ଯୁଗ ଜାତ ହୋଇ ଲୀନ ହୋଇ ଗଲେଣି। କାଳକୁ ଅତିକ୍ରମ କରିବାର ଶକ୍ତି କାହାର ନାହିଁ।

''ବହୂନୀନ୍ଦ୍ର ସହସ୍ରାଣି ଦେବାନାଞ୍ଚ ଯୁଗେଯୁଗେ।
କାଳେନ ସମତୀତାନି କାଲୋ ହିଁ ଦୁରତିକ୍ରମଃ।''

ମୃତ୍ୟୁ ଓ କାଳ ସମ୍ପର୍କରେ ରାଘବ ଜିଜ୍ଞାସା କରିଛନ୍ତି। ଏହାର ଉତ୍ତରରେ ବଶିଷ୍ଠ କହିଲେ, ହେ ରାଘବ। ଲକ୍ଷ ଲକ୍ଷ ବ୍ରହ୍ମା, ଶତ ଶତ ବିଷ୍ଣୁ, ମହେଶ୍ୱର ଓ ଇନ୍ଦ୍ର ଓ ସହସ୍ର ସହସ୍ର ନାରାୟଣ ମଧ ଉତ୍ପତ୍ତି ଓ ସ୍ଥିତି ମଧ ଦେଇ ଅତୀତ ହୋଇ ଗଲେଣି।

''ବହୂନି ବ୍ରହ୍ମଲକ୍ଷାଣି ଶଙ୍କରେନ୍ଦ୍ର-ଶତାନିଚ୍।
ନାରାୟଣ ସହସ୍ରାଣି ସମତୀତାନି ରାଘବ।।

ଅନ୍ୟେଷୁଚ ବିଚିତ୍ରେଷୁ ବ୍ରହ୍ମାଣ୍ଡେଷୁ ଚ ଭୂରିଶଃ।
ନାନାଚାର ବିହାରାଣି ବିହରନ୍ତି ସହସ୍ରଶଃ ॥
ତୁଲ୍ୟକାଳମତସ୍ତେଷୁ କାଳାନ୍ତର ଭବେଷୁଚ।
ଜଗସୁ ପ୍ରୋଦ୍ଭବିଷ୍ୟନ୍ତି ବ୍ରହ୍ମନ୍ୟନ୍ୟାନି ଭୂରିଶଃ ॥
ତେଷାମଜୋଦ୍ଭବାଦୀନାଂ ବ୍ରହ୍ମାଣ୍ଡେଷୁ ଦିବୌକାସାମ୍।
ଉତ୍ପଦ୍ୟୋ ମହାବାହୋ ବିଚିତ୍ରାଭ୍ୟୁହ୍ୟତା ଇବ ॥''
(ଯୋଗ ବାଷିଷ୍ଠ ରାମାୟଣ- ଯୋଗସ୍ଥିତି: ୪୭।୪-୭)

'ମୋହମୁଦ୍‌ଗର'ରେ ଶଙ୍କରାଚାର୍ଯ୍ୟ ମଧ କାଳଜନିତ ଶୋଚନାଗ୍ରସ୍ତ ମଣିଷକୁ ଏମିତି ବୁଝେଇଛନ୍ତି। ଏହି ଅଷ୍ଟକୁଳ ପର୍ବତ, ସାତ ସମୁଦ୍ର, ବ୍ରହ୍ମା, ଇନ୍ଦ୍ର, ସୂର୍ଯ୍ୟ, ଶିବ ପ୍ରଭୃତି ଦେବଗଣ, ତୁମେ ବା ମୁଁ ବା ଏହି ବ୍ରହ୍ମାଣ୍ଡ କେହି ଚିରସ୍ଥାୟୀ ନୁହନ୍ତି। ତେଣୁ ଶୋଚନା କାହିଁକି ?

''ଅଷ୍ଟକୁଳାଚଳ ସପ୍ତ ସମୁଦ୍ରା
ବ୍ରହ୍ମାପୁରନ୍ଦରଦିନକରରୁଦ୍ରାଃ।
ନ ତ୍ୱଂ ନାହଂ ନାୟଂ ଲୋକଃ
ତଦପି କିମର୍ଥଂ କ୍ରିୟତେ ଶୋକଃ।''

'କେତେଦିନର' ସ୍ମୃତି ଭିତରୁ 'ଅନେକ କୋଠରୀ'କୁ ଦୃଷ୍ଟି ଦେଲେ କାବ୍ୟପୁରୁଷର ରହସ୍ୟାନୁଭୂତି ଓ ମୃତ୍ୟୁ ସଚେତନତାକୁ ବେଶି ମାତ୍ରାରେ କଳିହେବ। 'ବାଘଶିକାର' କବିତାରେ ବାଘ ବିବିଧ ରୂପରେ ଅବତୀର୍ଣ୍ଣ। କେତେବେଳେ ନାରୀ ରୂପରେ ସେ ଆସୁଛି ଦେହଜ କାମନା ନେଇ। ପୁଣି କେତେବେଳେ ପାରମାର୍ଥିକ ପୁରୁଷ ଭାବରେ ଆସୁଛି ଠିକ୍ ଯେମିତି ଇଲିଅଟ ଯୀଶୁଖ୍ରୀଷ୍ଟଙ୍କୁ ବାଘ ଭାବରେ ପ୍ରତୀକିତ କରିଛନ୍ତି। "In the juvescence of the year/came Christ the tiger". (୮) କବିତାର ପ୍ରଥମ ଭାଗରେ 'ଶବ୍ଦ ବ୍ରହ୍ମ' ସମ୍ପର୍କରେ ପ୍ରାଚ୍ୟତତ୍ତ୍ୱ ବର୍ଣ୍ଣିତ। ଶବ୍ଦ ହିଁ ବ୍ରହ୍ମ। ନାଦବ୍ରହ୍ମ। ''ଶବ୍ଦମାନେ ଫୁଟୁଥିଲେ ଭୟର ରଭାପେ,/ଆପେ ସୃଷ୍ଟି ହେଉଥିଲେ ଶବ୍ଦମାନେ, ଆପେ ମଧ ଧ୍ୱଂସ ହେଉଥିଲେ।'' ଏହି ପଂକ୍ତିରୁ ଶବ୍ଦର ମାୟା ଓ ଖେଳ ସମ୍ପର୍କରେ ସୂଚନା ମିଳେ। ଏଥିରେ ଚିତ୍ରିତ ଚରିତ୍ରମାନେ ସମସ୍ତେ ଠିକ ଉର୍ଣ୍ଣନାଭି ପରି। ନିଜର କାମନା ବାସନା ଜାଲରେ ନିଜେ ବିଧୃତ। ଏହି ମର୍ମରେ ପ୍ରାଚ୍ୟପାଶ୍ଚାତ୍ୟ ଚେତନାର ସାଦୃଶ୍ୟକୁ ଲକ୍ଷ୍ୟ କରାଯାଉ।

''ଯେସନେ କୀଟ ଉର୍ଣ୍ଣନାଭି।
ନିଜ ବଦନୁ ସୂତ୍ର ସ୍ରାବି ॥
ଜାଲ ନିର୍ମାଣି ରାତ୍ର ମୁଖେ।
ମଧ୍ୟେ ବିହରେ ନାନା ସୁଖେ ॥
ଏକାନ୍ତେ ରାତ୍ରେ କ୍ରୀଡ଼ା କରେ।
ସୂର୍ଯ୍ୟ ଉଦୟେ ତା ସଂହରେ।''(୯)

କବି ଇଲିଅଟ କହନ୍ତି-

"What will the spider do....
Suspend its operation...."(୧୦)

ସିଲଭିଆ ପ୍ଲାଥ୍‌ଙ୍କ ଭାଷାରେ-

"The fountains are dry and the roses over-
Incense of death. Your day approaches.
x x x x
The spider c n its own string
Crosses the lake. The worms
Quit their usual habitations.
The small birds Coverage Coverage
With their gifts to a difficult borning." (୧୧)

ଅପ୍ରକୃତ ଜ୍ଞାନକୁ ଆତ୍ମଜ୍ଞାନ ମଣି ଏ ଚରିତ୍ରମାନେ ମିଛ ହସ ହସି ଦିଅନ୍ତି ସିନା ଭିତରେ କିନ୍ତୁ ସେମାନେ କାନ୍ଦୁଥାନ୍ତି। କୁହେଳିକା ଭିତରେ ଛନ୍ଦିହୋଇ ମହାକାଳକୁ ପାଶୋରି ଯାଆନ୍ତି। ତାକୁ ଖୋଜିଲେ ସେ ଆଉରି ଦୂରକୁ ପ୍ରସରିଯାଏ। 'ବାଘ ଯେତେ ଘୁଞ୍ଚିଯାଏ ହା-ହାକାର ଲମ୍ବେ ଶୂନ୍ୟତାର।' ଯେତେ ଡ଼ାକିଲେବି, ତାର ଆସିବାର ନଥାଏ। 'ହତୋତ୍ସାହ ତପସ୍ୟାରେ ଡ଼ାକି ଡ଼ାକି ଆସ ବାଘ ଆସ।' କିନ୍ତୁ ସଙ୍କୋଚ ସ୍ୱାମୀର ନିଜର ହାତ ପାହାନ୍ତାରୁ ସତୀ ସ୍ତ୍ରୀକୁ ଘୋଷାରି ନିଏ କାନ୍ଦୁଲ କ୍ଷେତରୁ। ତିନିଟା ଛୁଆ ଅସହାୟ ଭାବରେ ଗଡ଼ନ୍ତି। ମହାକାଳ ନିର୍ଲିପ୍ତ, ନିର୍ବିକାର ଓ ନିରାସକ୍ତ ଭାବରେ ଆଗେଇ ଯାଏ। ଶବ୍ଦ ଭିତରେ ହିଁ ସବୁକିଛି ଅନୁଭୂତିକୁ ଆସିପାରେ। ମାନବ ମଧ୍ୟ ଶବ୍ଦର ଏକ ଅଂଶ। ଅତଏବ ଜୀବନ ଓ ମୃତ୍ୟୁ ଭିତରେ ସେ ମଧ୍ୟ ଆବର୍ତ୍ତିତ। ଏଠି 'ବାଘ' ମହାକାଳ ଓ 'ସ୍ତ୍ରୀଲୋକ' ଇନ୍ଦ୍ରିୟ ଲାଳସାର ପ୍ରତୀକ।

"ଆମେ ଦେଖିନାହୁଁ ବାଘ, ଦେଖିନାହୁଁ କୌଣସି ସ୍ତ୍ରୀଲୋକ,
ତଥାପି ବିଶ୍ୱାସ କରୁ, ଶବ୍ଦଦ୍ୱାରା ଏ ବାଘ ଓ ସ୍ତ୍ରୀଲୋକ ନିର୍ମିତ,
ଆମେ ବି ଶବ୍ଦର ଅଂଶ, ଆମେ ତେଣୁ ବାଘ ଓ ସ୍ତ୍ରୀଲୋକ,
ଆମେ ସେ ଲମ୍ପର କ୍ଷୁଧା ସେ ମୃତ୍ୟୁର ଅସହାୟ ହାତ।"

ମୃତ୍ୟୁ ପ୍ରତି ଏକ ଭୟଭାବ ରହୁଛି। ପ୍ରିୟତମାକୁ କାବ୍ୟନାୟକ ଦାଣ୍ଡପଟ କବାଟ ଖୋଲିବାକୁ ବାରଣ କରୁଛି, କାରଣ, ହୁଏତ ବାଘ ଆସିପାରେ। ଚାରିଆଡ଼େ ମୃତ୍ୟୁ ଘେରି ରହୁଛି। କ୍ଲବର ବାର୍ଷିକ ସଭାରେ ମଧ୍ୟ ନିଜର ମୂର୍ଦ୍ଧାରକୁ ହଲରେ ଦେଖେ। 'ସତେକି ସେ ବାଘ ବଞ୍ଚିଅଛି ଓ ଖିନ୍‌ଭିନ୍ କରେ ମୋ ତଣ୍ଟିକି।' ଭାଗବତରେ ମଧ୍ୟ ମୃତ୍ୟୁର ଅନିର୍ବାର୍ଯ୍ୟତାକୁ ଦେଖାଯାଇଛି। "ମନୁଷ୍ୟ ମୁଣ୍ଡେ ମୃତ୍ୟୁ ବସେ। ଆମ୍ଭାକୁ ଅନୁକ୍ଷଣ ଗ୍ରାସେ"(୧୨) 'ଅନନ୍ତ ଶୟନ' କବିତାରେ ରମାକାନ୍ତ କହି ରଖନ୍ତି, "ଆହା ଉଲ୍ଲୁ ପୃଥିବୀ ଯାକର!/ ତମର ଚୌଦିଗେ ମୃତ୍ୟୁ, ଏବଂ ତାର ଥଣ୍ଡା ଥଣ୍ଡା ହାତ/ଚିପିବାକୁ ଆସେ ତମ ବେକ।"

ପ୍ରାଚ୍ୟ ଓ ପାଶ୍ଚାତ୍ୟ ଦୃଷ୍ଟିରେ ମୃତ୍ୟୁଚେତନାର ସାମ୍ୟ ପରିଲକ୍ଷିତ ହୋଇଥାଏ। ଭାଗବତରେ ମୃତ୍ୟୁ ହିଁ ଧ୍ରୁବ ଏବଂ ତାହା ଅପେକ୍ଷାରତ। ରମାକାନ୍ତ ଏହାକୁ ହାଡ଼େ ହାଡ଼େ ଅନୁଭବିଛନ୍ତି। ଠିକ୍ ତାଙ୍କର ଯଥେଷ୍ଟ ପୂର୍ବରୁ ଚିଲିର କବି ପାବ୍ଲୋ ନେରୁଦା ମୃତ୍ୟୁକୁ ସୁନ୍ଦର ଆଧୁନିକ ଚିତ୍ରକଳ୍ପ ମାଧ୍ୟମରେ ଉପସ୍ଥାପିତ କରିଛନ୍ତି।

"But death goes about the earth also,
riding a broom
Lapping the ground in search of the dead-

death is in the broom,
it is the tongue of death looking for the dead,
the needle of death looking for thread.
Death lies in our cots:
in the lazy mattresses, the black blankets,
lives at full stretch and then suddenly blows,
blows sound unknown filling out the sheets
and there are beds sailing into a harbour
where death is waiting, dressed as an admiral."(୧୩)

ଏହି ମୃତ୍ୟୁକାଳୀନ ଏକ ଭୟାନକ ଅଥଚ ଅତି ସାଧାରଣ ପୁଣି ବିରୋଧାତ୍ମକ ଦୃଶ୍ୟ ସୃଷ୍ଟି କରିଛନ୍ତି କବି ଯାହା ମାନସିକ ସ୍ତରର ଏକ ମୁହୂର୍ତ୍ତ। ପବନ ବହିବା ବନ୍ଦ ହୋଇଯାଏ। ସମୁଦ୍ରରେ ଜାହାଜର ଗତି ଥକିଯାଏ। ଲେଭେଲ କ୍ରସିଂ ବନ୍ଦ ହୁଏ ମାତ୍ର ରେଳଗାଡ଼ି ଧୂଆଁ ଛାଡୁଥିଲେ ମଧ୍ୟ ଆସିପାରେନା। ସବୁକିଛି ସେହି ମୁହୂର୍ତ୍ତରେ ସ୍ତବ୍ଧ ହୋଇଯାଏ। ସେଠି ଆଉ ନାରୀର ଦେହପ୍ରତି ମଧ୍ୟ ଭାବନା ନଥାଏ। ଆସକ୍ତି ନଥାଏ। କେବଳ ମନ ମହାଶୂନ୍ୟକୁ ଚିତାବାଘ ପରି ଲମ୍ଫ ଦିଏ। ପୁଣି ଦେହ ଓ ଦେହାତୀତର ଦ୍ୱନ୍ଦ୍ୱ। ଏହାରି ଭିତରେତ ଜୀବନର ଗତି।

"ହେ ମୋ ପଳାତକ ପକ୍ଷୀ, ମୁଁ ତମର ପଛେ ପଛେ ଧାଏଁ।
କେଉଁ ଓଦା ଜଙ୍ଗଲର ଅନ୍ଧାରକୁ ମୋ ନିଜର ମୃତ୍ୟୁର ମୁହୂର୍ତ୍ତେ।
ମୁଁ କେଉଁ ଲାଭର ଆଶାରଖି ମୋର ମୃତ୍ୟୁ ଭୁଲିଗଲି।"(୧୪)

ତା' ଚାରିପାଖରେ ଛାଇମାନଙ୍କର ନାଚ ଠିକ୍ ଇଲିଅଟଙ୍କ 'Passing shadow' ପରି। ଆଗରେ ଅନ୍ଧାର। ପଛରେ ପୂର୍ଣ୍ଣ ଧାନକ୍ଷେତର ସବୁଜିମା। ନରକଗାମୀ ମଣିଷ ପାଳଭୂତ ପରି ପାହାଚରେ ଖସୁଚି। ଦୁଇପଟର ଦ୍ୱାର ରୁଦ୍ଧ। କେବଳ ତ୍ରିଶଙ୍କୁ ପରି ମଧ୍ୟ ସ୍ୱର୍ଗରେ ତାର ସ୍ଥିତି।

ବେଳେବେଳେ ସେହି ମନ ଭିତରେ ଏକ ଅନନ୍ତ କ୍ଷୁଧା। ସେହି ମହାନ ସହିତ ସମ୍ମିଳିତ ହେବାର ପ୍ରବଳ ବାସନା। ସମୁଦ୍ର ସଙ୍ଗମ ପାଇଁ ନଦୀର ଦୁର୍ବାର ଅଭୀପ୍ସା। କିନ୍ତୁ ଅନନ୍ତତ୍ୱର ସାନ୍ନିଧ୍ୟ କେତେ ଦୁରୂହ ସତେ! ସେତ ଶଗଡ଼ିଆଟିଏ। ବଳଦମାନେ ଝୁଣ୍ଟିଲେଣି। ଭରା ଶଗଡ଼ ଦୋହଲିଲାଣି। ସମୁଦ୍ର ସବୁଦିନ ପାଇଁ ଅଛୁଆଁ। ପଛକୁ ପଛକୁ ଘୁଞ୍ଚିଯାଏ ସେ। ନିଜର ପାର୍ଥିବ ଅପାରଗତାକୁ କାବ୍ୟପୁରୁଷ ସ୍ୱୀକାର କରେ।

"ମୁଁ ବା ଅଟେ କେତେ ଲକ୍ଷ ନଦୀ
ଯେ ମୋର ସ୍ରୋତର ପାଣି ଦିନେ ହେଲେ ତମକୁ ଭେଟିବ?
ମୁଁ ବା କେତେ ଲକ୍ଷ ସ୍ୱପ୍ନ? ଖାଲି ମୋର ବଳଦ ଝୁଣ୍ଟିବେ
ଅନ୍ଧାରରେ ପଥର ଓ ମୋ ଶଗଡ଼ ଦୋଳାୟିତ ହେବ।"(୧୫)

ଭୌତିକ ଯାନ୍ତ୍ରିକ ଜୀବନ ଭିତରେ ସେ ଏପରି ସଢ଼ିଯାଇଛି ଯେ ତାର ଆସିଛି ଆଧ୍ୟାତ୍ମିକ ନିଃସଙ୍ଗତାଭାବ। ତଥାକଥିତ ଦେବତାମାନଙ୍କୁ ସେ ବ୍ୟଙ୍ଗକରି ବସେ।

"ଦିଅଁ ନିଜେ ସିଂହାସନୁ ଓହ୍ଲାଇଲେ, ସାବଧାନ ହୋଇ
ମୋ ପାଖକୁ ଆସି ମତେ ମାଗିଲେ ମୋ ଜୋତା କାଳେ

କାଚ ସେ ମାଡ଼ିବେ
ଏବଂ ଗଲେ ବାଥ୍‌ରୁମ୍ ଆଡ଼େ, ଯାଉଁଯାଉଁ ହଠାତ୍ ଭେଟିଲେ
ଅସଂଖ୍ୟ ଚିଙ୍ଗୁଡ଼ିଙ୍କର ଶୋଭାଯାତ୍ରା (ସେମାନେ ବି ଜୋତା
ପିନ୍ଧିଥିଲେ)।"(୧୬)

ଏ ଠାରେ ଆଧ୍ୟାତ୍ମିକ ଅନ୍ୱେଷାର ନିଷ୍ଫଳତା ପ୍ରତିପାଦିତ। ଦିଅଁଙ୍କୁ ଏଠି ନ୍ୟୁନ (ridicule) କରାଯିବା ଦ୍ୱାରା ଆମ ମନରୁ ଯେ ସକଳ ଆଧ୍ୟାତ୍ମିକ ବିଶ୍ୱାସ ତିରୋହିତ ହୋଇଯାଇଛି, ତାହାହିଁ ପ୍ରତିପାଦିତ ହୁଏ।

କାବ୍ୟପୁରୁଷ ଆଜି ପତ୍ନୀଙ୍କୁ ଭେଟିବାକୁ ଆସିଥିଲେ ମଧ୍ୟ ଏ ସହର ତାକୁ ନୂଆ ଲାଗୁଛି। ସତେକି ବାଟବଣା ହୋଇ ସେ ଏଠାକୁ ଚାଲି ଆସିଛି। ସେ ଆଜି ହନୁମାନ। ଅନେକ ଦିନ ଉତ୍ତାରେ ଜୀବନର ସେତୁବନ୍ଧ ଉପରେ ପାଦ ଦେଇଛି, 'କିନ୍ତୁ ସେତୁ ବନ୍ଧ ହୁଏ ଅନ୍ତର୍ଦ୍ଧାନ।' ବରଂ ମୃତ୍ୟୁସବୁ ମେଘ ପରି ବାସିବା ଆରମ୍ଭ କଲେଣି। ସେ ଅନ୍ୟ ଏକ ସହରକୁ, ଅନ୍ୟ ଏକ ଅଜଣା ଜାଗାକୁ ତୃତୀୟ ଶ୍ରେଣୀ ଭିଡ଼ ଡ଼ବାରେ ଯିବାକୁ ମନ ବଳାଉଛି।(୧୭) କାବ୍ୟପୁରୁଷ ଅନେକଥର ସୂର୍ଯ୍ୟାସ୍ତ ପୂର୍ବରୁ ମରି ସାରିଛି। କେବଳ ସୂର୍ଯ୍ୟାସ୍ତ ଦେଖିବା ପାଇଁ ସେ ପୁଣି ଫେରି ଆସୁଛି ତା ପତ୍ନୀ(?) ପାଖକୁ।

(୧୮) ସବୁଠି ସେଇ ଦ୍ୱୈତ ଚେତନା ଭିତରେ ଦ୍ୱନ୍ଦ୍ୱ। ବିମାନ ଦୁର୍ଘଟଣାରେ ହତଭାଗ୍ୟ ଯାତ୍ରୀର ମୃତ୍ୟୁ। ଜୀବନର ସକଳ ସ୍ୱପ୍ନ ସକଳ ଆସ୍ଥା ସେଠି ତୁଟିଯାଏ। 'ନିଃଶବ୍ଦେ ଜୀବନ ସ୍ରୋତ ଧାଉଁଛି କିପରି/ ଭେଟିବାକୁ ମୃତ୍ୟୁ ସିନ୍ଧୁ କରାଳ ଲହରୀ'କୁ ସେ ଅନୁଭବ କରେ। ଗୋବିନ୍ଦ ଚନ୍ଦ୍ର ଯୋଗୀ ପାଲଟିବା ଭିତରେ ସେଥିରୁ ମୁକ୍ତି କାହିଁ? ଠିକ୍ ମନୁ ସଂହିତାରେ ଏହି କଥା କୁହାଯାଇଛି। "ନାଭିନନ୍ଦେତ ମରଣଂ ନାଭି ନନ୍ଦେତ ଜୀବିତମ୍।/ କାଳମେବ ପ୍ରତୀକ୍ଷେତ, ନିର୍ଦ୍ଦେଶଂ ଭୃତ୍ୟକୋଯଥା।" (୬/୪୫) ଅର୍ଥାତ୍, ମରଣ ବା ଜୀବନକୁ ଇଚ୍ଛା କରିବ ନାହିଁ। ଯେପରି ସେବକ ସ୍ୱାମୀର ଆଜ୍ଞାକୁ ଅପେକ୍ଷା କରି ରହିଥାଏ, ସେହିପରି ସମୟକୁ କେବଳ ପ୍ରତୀକ୍ଷା କରିଥିବ। ଦୁର୍ଘଟଣା ହେବ ହିଁ ହେବ। ନିଜକୁ ଏଥିରେ ସେ ଖୁବ୍ ଅସହାୟ ଭୟଭୀତ୍ ମନେ କରୁଛି ମଧ୍ୟ।

"ମୁଁ ଅଜ୍ଞାନ ବାଳୁତ ମୁଁ ମୋ ମାଆର ଶୁଷ୍କ ବିଛଣାରେ
ପଦ୍ମଫୁଲେ ଶୋଇ ରହି ଡ଼ରୁଅଛି ବେଙ୍ଗଙ୍କ ଚିତ୍କାର
ଶୁଣି ଏବଂ ଥରୁଅଛି ଶୀତର ହାଓ୍ୱାରେ।"

'ସନ୍ଦିଗ୍ଧ ମୃଗୟା'ରେ ଚେତନା ଭିତରେ ପ୍ରବଳ ଝଡ଼। 'ରାତିସାରା ଭୀଷଣ ପବନ ବୋହିଲା'। ଜନ୍ମ ମୁହୂର୍ତ୍ତରୁ ଏ ଯାବତ୍ ଆଖି ଫେରେଇ ଆଣିଲେ ଶାରୀରିକ ରୂପାନ୍ତରକୁ ମାପି ହୁଏ। ବେଳେବେଳେ ସେ ଅନୁଭବ କରେ ଯେ ତା'ର ଲମ୍ବା ଲମ୍ବା ହାତ ଗୋଡ଼, ମୋଟା ବେକ ଓ ପ୍ରଶସ୍ତ ଛାତି ହଠାତ୍ ଏକ ମୁହୂର୍ତ୍ତରେ କୁଆଡ଼େ ଅଦୃଶ୍ୟ ହୋଇଯାଆନ୍ତି। ସେମାନଙ୍କର ସବୁ ବନ୍ଧନର ଡ଼ୋରି ଛିଡ଼ିଯାଏ। "ମୁହଁ ହେଲା କଳାଧଳା ଚିତ୍ରପଟେ କୌଣସି ବୃଦ୍ଧର ପ୍ରତିକୃତି ପରି, ଲହଲହ ନିଆଁର ଆଲୁଏ/ ମୁହଁର ଅର୍ଦ୍ଧାଂଶ ଜଳେ, ଏବଂ ଅନ୍ୟ ଅଂଶ ମିଶିଯାଏ ଅନ୍ଧାରରେ, କୋଟରା ଓ କଳାକୋଟ୍ ସଙ୍ଗେ...।" ଯୌବନ ଭିତରେ ବାର୍ଦ୍ଧକ୍ୟର କାୟା ପ୍ରବେଶ। ଚେତନାର ନିଆଁ ଭିତରେ

ମୁହଁର ଅର୍ଦ୍ଧାଂଶ ଜଳୁଥିଲାବେଳେ ଅନ୍ୟଅଂଶ ଅନ୍ଧାର ଭିତରେ। ଏକ ଦିଗରେ ଉତ୍ତରିତ ମାନସର ଉର୍ଦ୍ଧ୍ୱଗତି। ଅନ୍ୟ ଦିଗରେ ଅନୁତ୍ତରିତ ପାର୍ଥିବତାର ମୋହ।(୧୯) ଏହି ଚେତନା 'ସନ୍ଧ୍ୟା' କବିତାରେ ଆଉରି ଦୀପ୍ତ ହୋଇ ଉଠେ।

"ମୁଁ ଉଠୁଛି, ସତେ ଅବା ମୁଁ ଚଢୁଛି ଢେଉ ଉପରକୁ।
ମୁଁ ଖସୁଛି, ସତେ ଅବା ଭଙ୍ଗା ଢେଉ ସାଙ୍ଗେ ମୋ ସମ୍ପୂର୍ଣ୍ଣ
ଶରୀର ଖସୁଛି ଏବଂ ଲାଗୁଅଛି ମୁଁ ଏକ କୁଣ୍ଢେଇ
ଯାହାକୁ ଧରିଚି କାହା ଜୋର୍‌ଦାର ଓ ଖିଆଲି ହାତ।"

ଅଦୃଶ୍ୟ ହାତର ଇଙ୍ଗିତରେ ନାଚୁଛି ସେ ମୃଗୁଣୀଟିଏ। ସତରେ କେଡ଼େ ଅସହାୟ କେଡ଼େ ନିଃସଙ୍ଗ ଜୀବଟିଏ ସେ! ଆପଣା ଉପରେ ଆସ୍ଥା ନାହିଁ। ସେହି ଆସ୍ଥା ତୁଟିଯିବା ଉତ୍ତାରେ ହିଁ ଅଦୃଶ୍ୟ ଇଙ୍ଗିତକୁ ଆଦରି ନେବାକୁ ପଡ଼େ।

ଏ ପାରମ୍ପରିକ ଗଡ୍‌ଡ଼ାଳିକା ଜୀବନ ପ୍ରବାହ ଦେହଘଷରା ହୋଇ ଆସେ। ଅରୁଚି ଧରେ। ମାଂସର ଗନ୍ଧ ମନକୁ ଆଉ ବାନ୍ଧି ରଖି ପାରେନି। ନରମ ଅନ୍ଧାର ଓ ବିବାହିତା ପ୍ରେମର ଅସାର ଆଳାପ ଭିତରେ କାବ୍ୟପୁରୁଷ ନିଜକୁ ମୃତପ୍ରାୟ ମନେକରେ। "ଇଚ୍ଛାହୁଏ ଏ ସବୁକୁ ପିଙ୍ଗିଦେଇ ସାରି/ମୁଁ ଯାଆନ୍ତି ଶୁଣିବାକୁ ଶବ୍ଦ ଏକ ପୃଥକ୍ ଭାଷାର/ତାହା ନୁହେଁ ଭାଷା ଏହି, ପତ୍ରିକାର, କିମ୍ବା ସ୍କୁଲ ଯିବା ଛୁଆଙ୍କର x x " ତଥାକଥିତ ପାରମ୍ପରିକ ଜୀବନ ଭିତରେ ଜୀବନର ପୃଥକ ଭାଷାକୁ ଶୁଣିହୁଏନି/ନିଆରା ସ୍ଥାନକୁ ଯାଇ ହୁଏନି। ପାରମ୍ପରିକ ଭାଷାରେ ନିଜକୁ ଆଉ ବ୍ୟକ୍ତ କରି ହୁଏନି। ଅନ୍ତରର କଥା ଅପ୍ରକାଶ୍ୟ ରହିଯାଏ। 'ସବୁ ଭାଷା ତେଣୁ ତାହା ମିଛ।' ଘରର ନିଷିଦ୍ଧ ଇରୁଣ୍ଡିବନ୍ଧ ଡେଇଁଯିବାକୁ ଗଲାବେଳେ ଅଧାବାଟରେ "ମୃତ୍ୟୁକୁ ଦେଖିଲେ ହସମାଡ଼େ, ମୃତ୍ୟୁ ଏକ ଚପଳ ବାଳକ/ବଙ୍କା ଢଙ୍କା ଅକ୍ଷରରେ ବାଜେ କଥା ଲେଖୁଚି କାନ୍ଥରେ,/ ବାର୍ଦ୍ଧକ୍ୟ ଟାପରା ଅବା ଦାସୀଙ୍କର।" ଏଠି କାବ୍ୟପୁରୁଷ ଅନ୍ୟଲୋକକୁ ଯିବାର୍ ଚେଷ୍ଟା କଲେ ମଧ୍ୟ ଅସଫଳତା ଭିତରେ ମୃତ୍ୟୁକୁ ବ୍ୟଙ୍ଗ କରି ବସୁଛି। ମୃତ୍ୟୁ ଚେତନା ଓ ଆଧ୍ୟାତ୍ମିକ ଚେତନା ଭିତରେ ଏବେ ତଫାତ୍ ଦେଖୁଛି (ଯଦିଓ ପରବର୍ତ୍ତୀ ସ୍ତରରେ ସେଥିରେ) ଏକ ସମନ୍ୱୟଭାବ ଓ ମୃତ୍ୟୁପ୍ରତି ଆତ୍ମନିଷ୍ଠଭାବ ଆସିଛି), ତଥାପି ସେ ଆଶାନ୍ୱିତ ଯେ ଦୁଇ ଦିଗକୁ ଯୋଡ଼ିଦେବ। ଏ ଜଗତ ଓ ଅନ୍ୟ ଜଗତକୁ ସେ ମିଶେଇଦେବ।

"ଉତପ୍ତ ବାଲିରେ ରଖି ଏକ ଗୋଡ଼, ଏବଂ ଅନ୍ୟଗୋଡ଼
କୁଳୁକୁଳୁ ଓ କାକର ନଦୀ ମଧ୍ୟେ ମୁଁ ମୀନାର୍‌ପରି ଠିଆହେବି,
କୁହୁକୁହୁ ଓ ଗହବା ମୁଣ୍ଡବାଳ ଜଙ୍ଗଲରେ ଉଇଁ ଆସୁଥିବା
ଚନ୍ଦ୍ର ହଜିଯିବ ଏବଂ ଗୋଟି ଗୋଟି ଲିଭିଯିବେ ସବୁ
ଆଲୋକ ଏ ସହରର। ଅସଫଳ ସ୍ୱାମୀ ଏବଂ ଦୋଷୀ ପିତା ଯିବି
ମଚ୍‌ମଚ୍ ଅନ୍ଧାରରେ ସମୁଦ୍ରକୁ, ଅଣ୍ଡାଳି ମୋ ବାଟ, ଶିଖିବାକୁ
ନୂଆ ନୂଆ ଶବ୍ଦ, ଯାହା ଏ ପର୍ଯ୍ୟନ୍ତ ଶିଖି ଆସିଥିବା
ସବୁ ଶବ୍ଦଙ୍କଠୁଁ ବେଶୀ ସତ୍ୟ ବେଶୀ ପୂର୍ଣ୍ଣ ବେଶୀ
ଦୁଃଖଦାୟକ ବି।"(୨୦)

ପାରିଧିପାଇଁ କାବ୍ୟପୁରୁଷ ଜଙ୍ଗଲରେ ପହଞ୍ଚଗଲେ ବି ସକଳ କାମନା ଧୋଇ ହୋଇ ଯାଆନ୍ତି। ପଲପଲ ବାଘଙ୍କ ଗହଣରେ ସମୟର ଝାପ୍‌ସା ଅନ୍ଧକାର ଭିତରେ ତାଙ୍କୁ ଭଲ ଲାଗେ। ସେତେବେଳେ, "ମୋ ନାଭିକମଳ ତଳେ/କେଉଁଠାରେ କେଉଁ ଏକ ଅଦୃଶ୍ୟ ନାଡ଼ିରେ/ମୋ' ଦେହରୁ ଶୋଷିହୁଏ ସବୁ ବାୟୁ ଏବଂ ଏକ ଦ୍ୱିତୀୟ ନାଡ଼ିରେ/ଉଜ୍ଜ୍ୱଳ ଓ ଅପାର୍ଥିବ ଆଲୁଅରେ ମୋର ଅଭ୍ୟନ୍ତର/ପୂର୍ଣ୍ଣ ହୁଏ। ଏଇ ଭଳି ମୁଁ ସତେକି ପବିତ୍ର ମନ୍ଦିର।"(୨୧) ପୁଣି 'ସେତେବେଳେ ଦୂର ବିସ୍ତୃତ ଦେଶରେ ଦିକ୍‌ଦାର ଦେବତାମାନେ ହାଇ ମାରୁଥିବେ ଓ ଭୟଙ୍କର ବଜ୍ରପାତରେ ନିଜକୁ ମାରିଦେବେ। ପୁଣି ଆକାଶ କ୍ରମଶଃ ମେଘଶୂନ୍ୟ ହୋଇ ଆସୁଥିବ'। ପାର୍ଥିବତ୍ୱ ଓ ଅପାର୍ଥିବତ୍ୱ ଭିତରେ ଦ୍ୱନ୍ଦ୍ୱ। କାବ୍ୟପୁରୁଷ କ୍ରମେ କ୍ରମେ ଅପାର୍ଥିବତ୍ୱକୁ ନିଜର କରିନେବାରେ ପ୍ରୟାସୀ ହୋଇ ଉଠୁଛି।

'ଅତିଥି ଶତ୍ରୁର' କବିତା ଭିତରେ ମୃତ୍ୟୁପ୍ରତି ଭୟଭାବ କ୍ରମଶଃ ତୁଟି ଆସୁଛି। ନିଜର ପୁଅକୁ ମୃତ୍ୟୁ ହାତରେ ଟେକି ଦେଉଛି ପିତା ଆତିଥ୍ୟତାର ପୁଲକରେ।

"ମୁଁ ଧରିଲି ତା ଡ଼ାହାଣ ହାତ
ମୋ ବାଆଁ ହାତରେ ଓ ଡ଼ାହାଣ ହାତରେ

ଆଉଁସିଲି ତା' ମୁଣ୍ଡର କୋମଳ ବ୍ୟାଣ୍ଡେଜ୍
କିଚିକିଚି ଅନ୍ଧାରରେ ଚକ୍ ଚକ୍ ଚନ୍ଦ୍ର ଆଲୁଅରେ
ଯେତେବେଳେ ଚାରିଆଡ଼େ ଝଲସୁଥିଲା ଉଜ୍ଜ୍ୱଳ ଖରାରେ।"

ପୁଅକୁ ପଠେଇ ଦେଇ ସାରିଲା ପରେ କାବ୍ୟପୁରୁଷ ମନରେ ପୁଣି ଆଶା ରହିଛି ଯେ ସେ ପୁଣି ବାହୁଡ଼ି ଆସିବ। "କେତେବେଳୁ ସେ ଗଲାଣି ଏ ପର୍ଯ୍ୟନ୍ତ ଫେରିନି ଘରକୁ।" ଏଠି ମୃତ୍ୟୁ ସମ୍ପର୍କରେ ଯେଉଁ ସୂଚନା ପ୍ରଦତ୍ତ ହେଲା ତା'ର ଏକ ଉତ୍ତରିତ ଓ ପ୍ରଶସ୍ତ ଦୃଷ୍ଟିଭଙ୍ଗୀ କାବ୍ୟପୁରୁଷର କ୍ରମବିବର୍ତ୍ତିତ କାବ୍ୟସରଣୀର ଉତ୍ତର ଭାଗରେ ପରିଲକ୍ଷିତ ହୋଇଥାଏ। ଆଗାମୀ ପରିଚ୍ଛେଦରେ ତା' ଉପରେ ଆଲୋକପାତ କରାଯାଉଛି।

### ପାଦଟୀକା

୧,୨ ସାହିତ୍ୟରେ ରହସ୍ୟବାଦ- (ସଂ-ପଠାଣି ପଟ୍ଟନାୟକ ଓ ଭୋଳାନାଥ ରାଉତ)ରୁ ଉଦ୍ଧୃତ
୩. ଗରୁଡ଼- କେତେଦିନର -ପୃ ୮
୪. ପରାସ୍ତ ମୁହୂର୍ତ୍ତ- ତତ୍ରୈବ- ପୃ ୩୫
୫. ଚଣ୍ଡୀପ୍ରତି- ତତ୍ରୈବ- ପୃ ୪୫
୬. ଗୋଟିଏ ଘର ସମ୍ପର୍କରେ- ତତ୍ରୈବ- ପୃ ୫୬
୭. ବୋଇତ ବନ୍ଦାଣ- ତତ୍ରୈବ- ପୃ ୬୪
୮. Gerontion- T.S. Eliot
୯. ଶ୍ରୀମଦ୍ ଭାଗବତ- ଜଗନ୍ନାଥ ଦାସ
୧୦. Gerontion- T.S. Eliot- Selected Poems-
୧୧. The Manor Garden- The colossus- Sylvia plath-
୧୨. ଶ୍ରୀମଦ୍ ଭାଗବତ- ଜଗନ୍ନାଥ ଦାସ

୧୩. Death Alone- Selected Poems- Pablo Neruda-
୧୪. ଅନନ୍ତ ଶୟନ- ଅନେକ କୋଠରୀ- ପୃ ୩୧
୧୫. ବର୍ଷାଋତୁ- ତତ୍ରୈବ- ପୃ ୩୭/୩୮
୧୬. ଅପରାହ୍ନ- ତତ୍ରୈବ- ପୃ ୪୧
୧୭. ହନୁମାନ- ତତ୍ରୈବ- ପୃ ୪୨
୧୮. ସୂର୍ଯ୍ୟାସ୍ତରେ ଶବ ସଂସ୍କାର- ତତ୍ରୈବ- ପୃ ୪୫
୧୯. ପବନ- ସନ୍ଦିଗ୍ଧ ମୃଗୟା- ପୃ ୧
୨୦. ଗ୍ରୀଷ୍ମ ଋତୁରେ ରେଳଯାତ୍ରା- ତତ୍ରୈବ- ପୃ ୧୧
୨୧. ପାରିଧି- ତତ୍ରୈବ- ପୃ ୫୭

# ଚତୁର୍ଥ ପରିଚ୍ଛେଦ

## ଜୀବନବାଦର ପ୍ରତୁଳତା :
## ପ୍ରେମର ଉତ୍ତରିତ ଭାବଚେତନା

ଦୀର୍ଘ ଦୁଇ ଦଶନ୍ଧି (୧୯୫୦-୭୦) ଭିତରେ ରମାକାନ୍ତଙ୍କ କାବ୍ୟସରଣୀ ମାପି ବସିଲେ ଯେ କୌଣସି ସଚେତକ ପାଠକ ଏକ ଦ୍ୱିଧାଗ୍ରସ୍ତ ଅନ୍ୱେଷୀ କାବ୍ୟପୁରୁଷକୁ ଖୋଜି ବାହାର କରିପାରିବ। ୧୯୭୦ରୁ ୧୯୮୫ ଭିତରେ କାବ୍ୟପୁରୁଷର ଚେତନାରେ ଆସିଛି ଏକ ସ୍ଥିରତା। ଅନୁସନ୍ଧିତ୍ସୁ ପ୍ରାଣ ଏକ ଅନନ୍ୟ ପୁଲକପ୍ରାପ୍ତିପରେ ଦେହାତୀତକୁ ଉତ୍ତୀର୍ଣ୍ଣ ହୋଇପାରିଛି। ପ୍ରେମ-ମୃତ୍ୟୁ ସମ୍ପର୍କିତ ତର୍କ ବିତର୍କର ଏଇ ବୌଦ୍ଧିକ ମୀମାଂସା ପହଞ୍ଚିଯାଏ 'ସପ୍ତମ ଋତୁ' (୧୯୭୭) କାବ୍ୟ ଚେତନାର। ଶ୍ରୀଯୁକ୍ତ ରଥ କବି ଟି.ଏସ୍.ଇଲିଅଟଙ୍କୁ କାବ୍ୟ ଗୁରୁ ଭାବରେ ଗ୍ରହଣ କରିଛନ୍ତି। ଇଲିଅଟଙ୍କ ୧୯୪୪ ମସିହା ପୂର୍ବରୁ ଲିଖିତ କବିତାବଳୀ (୧) ଦ୍ୱାରା ପ୍ରଭାବିତ ହୋଇ ରମାକାନ୍ତ ୧୯୫୦ ରୁ ୧୯୭୦ ପର୍ଯ୍ୟନ୍ତ ଆଧୁନିକ ଜୀବନର ଯନ୍ତ୍ରଣା ଓ ଯୁଗର ବିକଳ ସ୍ଥିତିକୁ ଚିତ୍ରିତ କରି ବସିଛନ୍ତି। କିନ୍ତୁ "The Family Reunion') (୧୯୩୯) ନାଟକ ଓ 'Four Quartets (୧୯୪୪) କାବ୍ୟର ସଂସର୍ଗରେ ଆସିବାପରେ ତାଙ୍କ ଚିନ୍ତାଧାରା କେଉଁ ଏକ ଉତ୍ତରିତ ଚେତନା ପ୍ରାପ୍ତି ପାଇଁ ହାତ ପତାଇଥିବାର ଅନୁମାନ କରାଯାଏ। ଅବଶ୍ୟ 'ଚଉପହରା'ରେ ଏହି ଚେତନାର ଯେ ଅୟମାରମ୍ଭ ଘଟିଥିଲା, ଏହା ଅନାୟାସରେ କୁହାଯାଇପାରିବ। ଅସରତି ଦହନ, ବିକଳ, ଆର୍ତ୍ତଚିତ୍କାର ଭିତରେ ପ୍ରେମର ମହନୀୟ ରୂପଟି ପୁଣି ଝଲସି ଉଠୁଛି ଏବଂ ଏକ ସପ୍ତମଋତୁର ଅନନ୍ୟ ସରହଦ ଭିତରେ କାହାର ନିଃଶବ୍ଦ ପଦପାତରେ ନିନାଦିତ ହୋଇ ଯାଉଛି ମନର କୋଠରୀ।

ଛଅଟି ଋତୁର ସୀମାପରେ ସପ୍ତମ ଋତୁ ପରିକଳ୍ପନା। ଏ ଋତୁ ସମୟହୀନ ସମୟ (Timeless time)। କାବ୍ୟର ପ୍ରଚ୍ଛଦପଟରେ ଅନୁଧ୍ୟାନରେ ଠିକ୍ ଏଇକଥା ବାରିହୋଇଯାଏ। ବିସ୍ତୃତ ସାମୁଦ୍ରିକ ବେଳାଭୂମି। ଉର୍ଦ୍ଧ୍ୱମୁଖୀ ହୋଇ ବାରମାସର ନାମାବଳୀ ଆବୃତ ମଣିଷଟିଏ ଅସହାୟ ଅବସ୍ଥାରେ ପଡ଼ି ରହିଛି। ଉପରେ ଅନନ୍ତ ନୀଳ ଆକାଶ। ଏକ ସୁସଜ୍ଜିତ ଫୁଲ ତୋଡ଼ାକୁ ଶକ୍ତିଶାଳୀ କ୍ରେନ୍‌ଟିଏ ଉପରକୁ ଉଠାଇ ନେଉଛି। ବାର ମାସର ସମୟ

ଭିତରେ ଆବଦ୍ଧ ଏଇ ଦୈହିକ ଶରୀର। ତାର ଅଚଳ ଅବସ୍ଥାରେ ସେ ପଡ଼ିରହୁଛି ସମୟ ସାଗର ବେଳାଭୂମିରେ। ଆତ୍ମା ରୂପକ ସୁନ୍ଦର ଫୁଲ ତୋଡ଼ାକୁ ଏକ ଅନନ୍ୟ ଶକ୍ତିଶାଳୀ ସତ୍ତା (ପରମାତ୍ମା-ଭୂମା) ଟାଣି ନେଉଛି ଅନନ୍ତ ଆକାଶକୁ। ମହାଶୂନ୍ୟକୁ। ସେଠି ଆଉ ସମୟ ସମୟ ନୁହେଁ। ଅନନ୍ତ ସ୍ଥିର ସମୟ ଭିତରେ କ୍ରମଶଃ ଅଦୃଶ୍ୟ ହୋଇ ଯାଉଛି ଆତ୍ମା। ଜୀବାତ୍ମାପରମାତ୍ମାର ମଧୁର ମିଳନ। ସେଠି ସବୁ ନିଥର ନିର୍ବେଦ। ଶୂନ୍ୟ ଶୂନ୍ୟ ମହାଶୂନ୍ୟ। ସେହି ଅବସ୍ଥା ଓ ପରିବେଶର ବର୍ଣ୍ଣନା ଉପନିଷଦରେ ମଧ ରହିଛି।

"ନ ତତ୍ର ଚନ୍ଦ୍ରାର୍କ ବପୁଃ ପ୍ରକାଶତେ
ନ ବାନ୍ତି ବାତାଃ ସକଳା ଦେବତାଶ୍ଚ
ସ ଏବ ଦେବଃ କୃତ ଭାବଭୂତଃ
ସୟଂ ବିଶୁଦ୍ଧୋ ବିରଜାଃ ପ୍ରକାଶତେ।"
(ରୁଦ୍ର ହୃଦୟ ଉପନିଷଦ -୪୦)

ପ୍ରଥମରୁ ଯେଉଁ କାବ୍ୟପୁରୁଷ ମନ ଭିତରେ କେବଳ ଅଗ୍ନିର ଉତ୍ତାପକୁ ଅନୁଭବ କରୁଥିଲା 'ସପ୍ତମ ଋତୁ'ରେ ସେ ଚେତନା ରୂପାନ୍ତରିତ ହୋଇଯାଏ ଏକ ଉତ୍ତରଣ ପ୍ରୟାସରେ। ଉତ୍ତାନପାଦ ସତ୍ତାଟି ସ୍ୱୀକାର କରେ, "ମନ ଏକ ନୀଳ ବର୍ଣ୍ଣ ସମୁଦ୍ରର ସ୍ନେହ/ ପ୍ରତ୍ୟେକ ଢେଉରେ ତାର ଲୁକ୍କାୟିତ ମୁକ୍ତାର ଆଗ୍ରହ"(୨) ଏବେ ସେ ମୁକ୍ତା ପ୍ରୟାସୀ। ତେଣୁ ସମୁଦ୍ରସ୍ନାନ ପାଇଁ ଆଗ୍ରହୀ। ଏବେ ପ୍ରେୟସୀର ଶାରୀରିକ ଅବର୍ତ୍ତମାନରେ ସେ ଆଦୌ ମ୍ରିୟମାଣ ନୁହନ୍ତି। ସେ ସ୍ୱର ଠିକ ଦୂରରୁ ଛୁଟିଆସେ। ବାରିହୁଏନି କାହାର ସ୍ୱର। ସ୍ୱପ୍ନର ଛାଇରେ ଠିଆ ହୋଇଥିବା 'ଗଛମାନେ ଲଇଁଯାନ୍ତି ଫୁଲ ଓଜନରେ।' ତାର ଅନୁପସ୍ଥିତି ଆଜି 'ଏକ ନୀଳବର୍ଣ୍ଣ ଅଭାବ'; ଯେଉଁଠି ସବୁ ହସ, କାନ୍ଦ, ତଙ୍ଗା ପରି ସେ ନିଷିଦ୍ଧ ପଠାରେ ଲାଖିଯାଏ।(୩)

କାବ୍ୟପୁରୁଷ ଆଜି ସ୍ମୃତିରେ ଆକ୍ରାନ୍ତ। ପିଲାଦିନେ ଛୋଟ ଝିଅଟିକୁ ଭଲ ପାଉଥିଲେ ବି ତା'ର ଦିନେ ବିଚ୍ଛେଦ (ମୃତ୍ୟୁ?) ହେଲା। ସେଥିପାଇଁ ସେ ଅନେକବାର ଅଶ୍ରୁପାତ କରିଛନ୍ତି। କିନ୍ତୁ ଅନେକ ଦିନ ପରେ ସେ ନାରୀ ରୂପରେ ତାଙ୍କ କକ୍ଷକୁ ପ୍ରବେଶ କରି ନିଦ ଭାଙ୍ଗି ଦେଉଥିଲା। ସେଠି ଆଉ ଦେହର ଡାକରା ନାହିଁ। ବରଂ ତାର ଅନୁପସ୍ଥିତି ହିଁ ସାରା ଘରକୁ ତା' ଦେହର ବାସ୍ନାରେ ପୂରଣ କରିଦିଏ। (୪) ତାର ଦେହ ଦିଗ୍‌ବଳୟ ଡେଇଁ ମିଶିଯାଏ 'ବ୍ୟାପିଥିବା ବିଛଣାର ଶ୍ୱେତ ଆଲୋକରେ।'(୫) ପତ୍ନୀ/ ପ୍ରଣୟିନୀର ଭର୍ତ୍ସନା କି କାମୋଦ୍ଦୀପନା ତାଙ୍କୁ ଆଉ ଆତଙ୍କିତ କରେନି। ବରଂ ସେ ପ୍ରକୃତି ସହିତ ସମ୍ମିଳିତ ହୋଇ ଏକ ଦେହାତୀତ ଆନନ୍ଦବୋଧରେ ନିମଜ୍ଜିତ। "ମୋ ପୁରୁଷକାର/ ପର୍ବତ ସହିତ ଅଟେ ଏକାକାର, ହସହସ ଟରାଟ ଫୁଲଙ୍କ/ ନିର୍ମମ ଝଡ଼ରେ ଏବେ ପତ୍ରେ ପତ୍ରେ/ମୃଦୁ ପ୍ରତ୍ୟୁତ୍ତର।"(୬) ପୌରୁଷର ସ୍ଥୈର୍ଯ୍ୟ, ଓ ଧୈର୍ଯ୍ୟ ମଧ ପ୍ରମାଣିତ। ପ୍ରଣୟିନୀକୁ ତାରା ଓ ଟରାଟ ଫୁଲଙ୍କ ଗହଣରେ ତାଙ୍କ ଅପେକ୍ଷାରେ ରହିବାକୁ ଆବେଦନ। ଏଣିକି ଆଉ ହତାଶାର ଅଶ୍ରୁମୁଞ୍ଚନରେ ଆବଶ୍ୟକତା ନାହିଁ; ବରଂ 'ଉଭୟଙ୍କ ହସମାନେ ସାମ୍ନାସାମ୍ନି ହୁଅନ୍ତି, ଆମର/ସୁଖରେ ଦୁନିଆ ସୁଖୀ।(୭) ସେ ଜୀବନ ଘୋଡ଼ା ଦୌଡ଼ରେ କ୍ଲାନ୍ତ ଶ୍ରାନ୍ତ। ପଟେଇରୁ ଝାଳଗନ୍ଧ ବାହାରୁଛି। ପତ୍ନୀ ନିକଟକୁ ନିଃଶ୍ୱାସର

ଶୋଷ ଛୁଟିଆସେ। ତାଙ୍କ ବାଳରେ ଏଣିକି ଖାଲି 'ପ୍ରଥମ ବର୍ଷାରେ ଭିଜିଥିବା ବଣ ବାସ୍ନା', 'ଗୋଛା ଗୋଛା କଇଁ ଫୁଲଙ୍କର ବାସ୍ନା ଓ ସମୁଦ୍ରେକ କସ୍ତୁରୀର ବାସ୍ନା। ପୁନଶ୍ଚ ଭାବାନ୍ତର। ଦୈହିକ କାମନାର ବିନାଶ ଘଟୁଛି। ନାରୀର ଶୋଭନୀୟ ଅଙ୍ଗାବଳୀକୁ ମନେପକାଇଲେ ମଧ ଆଉ ମନେ ପଡୁନି। "କେବଳ ପାଇଲି/କିଛି ଶବ୍ଦ, ନାମ ନାନା ଅଙ୍ଗ ପ୍ରତ୍ୟଙ୍ଗର।"(୮)

ଆଜି ସେ ଗୃହସ୍ଥ। ପାଖରେ ପତ୍ନୀ। ତଥାପି ଅତୀତର ସ୍ମୃତି ରୋମନ୍ଥିତ। ସ୍ମୃତିରୁ ରକ୍ଷା ନାହିଁ। ରାଧାନାଥଙ୍କ ଭାଷାରେ, "ସ୍ମୃତିତ କଦାପି ନୁହେଁ ଫିଙ୍ଗିବାର, ପାରିଲେ ଫିଙ୍ଗି ସେ ଲଭନ୍ତା ନିସ୍ତାର।" ଆଧୁନିକ କବିତାକୁ ବିଚାର ବିଶ୍ଳେଷଣ କଲେ ଏହି ସତ୍ୟରେ ଉପନୀତ ହେବାକୁ ପଡ଼େ ଯେ ଆଜିର କବି ବାସ୍ତବ ଜୀବନର ଚଢ଼ାଉତରା ଶୋଣିତ ପଥରେ ରୁନ୍ଧି ହୋଇଗଲା ପରେ ଶେଷକୁ ସ୍ମୃତି ରୋମନ୍ଥନ ଓ ସ୍ୱର୍ଗୀୟ ପ୍ରେମାବେଗର ଶିହରଣ ତଥା ଆଧ୍ୟାତ୍ମିକ ରହସ୍ୟାତ୍ମକ ଅନୁସନ୍ଧିତ୍ସାରେ ମନୋନିବେଶ କରୁଛି। କବି ସୀତାକାନ୍ତ ମହାପାତ୍ର 'ପରକୀୟା'ରେ ଜୀବନର ଦାବଦହନ, ଅର୍ଥନୈତିକ ବିଷମତା ଭିତରେ ସଙ୍କୁଚିତ ରୁଗ୍ଣ ମହଲ ଜୀବନର ଅବସନ୍ନ ଚେହେରାକୁ ଦେଖୁଥିଲେ ମଧ ତଥାପି, 'ଝର୍କାକଡ଼ର ଗୋଲାପ' ପାଇଁ ମନ ଉନ୍ମୁଖ।

"ଗହନ ନିଦରେ ଶୁଏ କୋଠରୀ କୋଳରେ ମୋ ଅଚେତ ଦେହ,
ଦୂରଛାଇ ଆଲୁଅରେ ପିଲାଳିଆ ମିଠାହସ;
ତା' ଭିତରେ ଉଙ୍କିମାରେ ତମ ମୁହଁ
ଦପ୍‌କରି ଜଳି ଉଠି ପୁଣି ନିଭିଯାଏ
ଲାଜେ ଲାଜେ କଥା କହି ପାଣିକାଚ୍ ରୁଣୁଝୁଣୁ କରି
କିଏ ଯାଏ ଝରକା ସେ କଡ଼େ
ଅଧର ଅକୁହା ଭାଷା ପଣତେ ଅଜାଡ଼ି
ରାତି ଅଧ ବରଷାର ଶବ୍ଦ ପରି
ଶୁଭେ ପୁଣି ଶୁଭେ ନାହିଁ,
ଅଳ୍ପ ମନପଡ଼େ।"(୯)

ସେହିପରି କେଉଁ ଏକ ମୁହୂର୍ତ୍ତରେ ରମାକାନ୍ତଙ୍କ କାବ୍ୟ ମାନସର କୋଠରୀ ଭିତରେ ସ୍ମୃତିର ଦୀପାଳି ଜଳିଉଠେ। ସେ ନିଜକୁ ମନେକରେ ଠିକ୍ ଗୋଟିଏ "କୃଷ୍ଣକାୟ ସ୍ତମ୍ଭ" ପରି। ଏହି ନିଃସଙ୍ଗ ଏକାକୀ ସାମାଜିକ ଜୀବଟି ସ୍ମୃତିର କୋଠରୀ ଭିତରକୁ ପ୍ରବେଶ କରୁଛି। କୋଠରୀ ସାରା ନାନା ବସ୍ତୁମାନଙ୍କର ଧ୍ୱଂସାବଶେଷ। ସେହି ରୋମନ୍ଥନ ତୀବ୍ର ହେବା ଫଳରେ ଆଲୋକ 'ହାଡୁଆ ମୁହଁ'ରେ ରୂପାନ୍ତରିତ ହୋଇଯାଏ। ଅନେକ ଦିନରୁ ଘଟିଯାଇଥିବା ଘଟଣା ଆଜି ଆଖି ଆଗରେ ନାଚି ଉଠେ। କେତେବେଳେ ଜଣାଯାଉଛି ସୁଦୂର ଅତୀତର ଅସ୍ପଷ୍ଟ ଧ୍ୱନି ତ ପୁଣି କେତେବେଳେ କାଲିପରି ଲାଗୁଛି। କାନ ପାଖରେ କେତେ କଥା କହି ଯାଉଛି। ଆକସ୍ମିକ ଋତୁ ପରିବର୍ତ୍ତନରେ ଦୃଶ୍ୟାନ୍ତର ଓ ଘଟାନ୍ତର ହୋଇ ଯାଉଛି। ସ୍ମୃତିର ପେଡ଼ି ଖୋଲି ଯାଉଛି। ଅନେକ ଅବୋଧ ଭାଷାରେ ଅତୀତ ତା'ର ଆତ୍ମକାହାଣୀ ବୟାନ କରୁଛି। ଦୃଶ୍ୟ ପରେ ଦୃଶ୍ୟ ଗଢ଼ିଯାଉଛି। ଝରକା ସେପଟରୁ ଅତର୍କିତ ଭାବେ ମଲ୍ଲୀଫୁଲର ବାସ୍ନା ମହକି ଉଠୁଛି। କେବେ କେଉଁଦିନ ଗୋଧୂଳି ଲଗ୍ନରେ

କଅଁଳ ସଂଜ୍ଞବେଳରେ ମଲ୍ଲୀଫୁଲଭରା ଗଭାରୁ ଉଛୁଳି ପଡୁଥିଲା ସୁଗନ୍ଧିତ ସୁରଭି। ଅତି ସରାଗରେ କେବେ ବି ପ୍ରାଣପ୍ରିୟ ମଣ୍ଡି ଦେଉଥିବ ତାର ଚାରୁ କୁନ୍ତଳକୁ ଶିହରିତ କରପ୍ରଦେଶରେ। ବହୁ ଦିନୁ ଏ ସହରର ନିଷ୍ପାପ ପବିତ୍ର ଶୈଶବର ସ୍ମୃତି ହଜିଗଲାଣି। ଏବେ ଖାଲି ଗଳିତ କୁଷ୍ଠାଗ୍ରସ୍ତ ସହରର ଅଜଗରୀ ଜୀବନ ଯାତ୍ରା ଅରୁଚିକର ବୋଧ ହେଉଛି। କିନ୍ତୁ ତାରି ଭିତରେ ସଂଜୀବିତ ହୋଇ ଉଠୁଛି ଏହି ସହର ଅତୀତ ଯାହା ଥିଲା ମଧୁ ସଂଜ ପାଇଁ ଖୁବ୍ ସହାୟକ ଓ ଆମୋଦଦାୟକ ମଧ। ସମୟର ଓଦା ବାଲି ଉପରେ ଫେରିବାର ପଦପାତ। ଆଗକୁ ଯିବାର ରାସ୍ତା ବନ୍ଦ। କେଉଁ ସୁଦୂର ଅତୀତର ଶତାବ୍ଦୀରୁ କେବଳ ସନ୍ୟାସୀର ସ୍ୱର ଶୁଣାଯାଉଛି। ''କେଉଁ ଏକ ଶତାବ୍ଦୀର କେଉଁ ଏକ ମୁହୂର୍ତ୍ତରେ / କେଉଁ ଏକ ଅରଣ୍ୟରେ ଶୁଣାଯାଏ / କେଉଁ ଏକ ସନ୍ୟାସୀର ସ୍ୱର।''(୧୦) ଏ ସ୍ୱର ସେହି ନିସ୍ତବ୍ଧ ମନର ନୀରବ ଆତ୍ମିକ ଆହ୍ୱାନ, ପ୍ରତିମୁହୂର୍ତ୍ତରେ ଯିଏ ଅପେକ୍ଷା କରୁଛି ସେହି ଗଲାଦିନର ସୁଖମଗ୍ନ ଜୀବନର ପୁନରାଗମନକୁ ବା ଏକ ରହସ୍ୟାଚ୍ଛନ୍ନ ଭାବାବେଗକୁ ଯେମିତି କାନ୍ତକବି ଶୁଣିଥିଲେ ସେହି ସୁଦୂରର ଖଣ୍ଡିସ୍ୱରକୁ।

''କିଏ ସେ ଡାକୁଚି ନଈ ସେପାରିରେ
ରହି ରହି କେଡ଼େ ବାଗରେ
ଦୋ ଦୋ ଚିହ୍ନା ସ୍ୱର ଶୁଣିଥିଲି ପରା
କେତେ ଯୁଗ ଯୁଗ ଆଗରେ।
କେଉଁ ଉହାଡ଼ରେ ଥାଇ ସେ ଡାକୁଛି
ଖଣ୍ଡି ସ୍ୱର ତାର ନ ହେଉଛି ବୁଝି
କେଉଁ ଗୁହା ଭେଦି ପହଁରି ଆସିଛି
କେଉଁ ନିଛାଟିଆ ସାଗରେ।''(୧୧)

ସମୁଦାୟ କୋଠରୀ ଜଳି ଉଠେ। ନିଜେ ମଧ ସେ ତରଳି ଯାଆନ୍ତି। ମରିବା ଆରମ୍ଭ ହୁଏ। କବି ରିଲ୍‌କେ ଯେପରି ଅନୁଭବ କରିଛନ୍ତି, ''your death was already old / when your life began''--ସେହିପରି କବି ଶ୍ରୀ ରଥ ମଧ ଯୁଗପତ୍ ଜୀବନ ଓ ମୃତ୍ୟୁକୁ ଭେଟନ୍ତି। ''ପେଚା କୁହାଟର / ବାହନରୁ ମୁଁ ଓହ୍ଲାଇ ତମକୁ ଦେଖିବା / ଲାଗି ମୋର ଆଖି ବୁଜିଦିଏ।'' ଭିତରେ ଜୀବନ ଓ ମୃତ୍ୟୁର ଯୁଗନଦ୍ଧ ଅନୁଭୂତି ଆସି ସାରିଥାଏ। ଏଣିକି ତାକୁ ଦେଖିବାରେ ସାଧାରଣ ଚକ୍ଷୁର ଆବଶ୍ୟକତା ନଥାଏ। ସେ ଆଜି ଦେଖାଯାଉଛି ଠିକ୍ କବି--ପୁରୁଷର ଅତୀତ ପରି, ଯେହେତୁ କବିଙ୍କ ଜୀବନର ସେହି ପର୍ବ ତାଙ୍କ (ତମେ) ଜୀବନ ସହ ଅଙ୍ଗାଙ୍ଗୀଭାବେ ଜଡ଼ିତ ଥିଲା। ଆଜି ସେଇ ଦିନର ରୂପ ସେ ନିଜେ ହିଁ କେବଳ। ନିଜ ଚିନ୍ତାର ଶବ୍ଦ ପରି ମଧ ତାଙ୍କ ଶବ୍ଦ। କବିଙ୍କ ଜୀବନର ସକଳ ସୁକୃତି ଓ ଦୁଷ୍କୃତିକୁ ସେ ବିଚ୍ଛିନ୍ନ କରିଛି କାରଣ ଆତ୍ମିକ ସମ୍ପର୍କବୋଧର ଭାବସେତୁ ଏତେ ସୁଦୃଢ଼ ଥିଲା ଯେ ତାହା ତାଙ୍କ ବିଚ୍ଛେଦରେ ଅଙ୍ଗୀକାର କରି ନେଇଛି। ଏକ ସ୍ରୋତପରି ସେ ବହି ଯାଉଛନ୍ତି ତାଙ୍କରି ଆଡ଼କୁ ଠିକ୍ ଯେମିତି ନଦୀ ସମୁଦ୍ରାଭିମୁଖୀ ହେବାକୁ ବାଧ ଏବଂ ଆତ୍ମା ପରମାତ୍ମାନ୍ୱେଷୀ ହେଲାପରି। ସେଠି 'ଜନ୍ମ', 'ପୁନର୍ଜନ୍ମ', 'ପିଲାଦିନ', 'ବୁଢ଼ାଦିନ' କିଛି ନାହିଁ। ଏଇଠି ହିଁ ସବୁ ସମୟ ଅତିକ୍ରମି ଯାଇ ଏକ ସ୍ଥିର ବିନ୍ଦୁ ବା ସ୍ଥିତାବସ୍ଥା (Still-point)ରେ--'ସପ୍ତମଋତୁ'ରେ ପହଞ୍ଚି ଯାଉଛି। ଭୂତ,

ଭବିଷ୍ୟତ, ବର୍ତ୍ତମାନ ଏକ କେନ୍ଦ୍ରରେ ଏକ ସ୍ଥିତାବସ୍ଥାରେ ଅବସ୍ଥାପିତ। ସେଠି ତାଙ୍କର ହସ ହସ ମୁହଁ କି କୌଣସି ସତ୍ତା ନାହିଁ, 'ଅଥଚ ମୁଁ ଦେଖୁଚି ତମକୁ'। ଠିକ ଏହି ଭାବ ଇଲିଅଟଙ୍କ ଠାରେ ଲକ୍ଷଣୀୟ।

"See, now they vanish,
The faces and places, with the self which,
at it could, loved them
To become renewed, transfigured
in another pattern." (୧୨)

ଟି.ଏସ୍.ଇଲିଅଟଙ୍କ 'In my beginning is my end' ପରି କବି ଶ୍ରୀ ରଥ ଫେରିଯାନ୍ତି ଜନ୍ମର ପୂର୍ବାବସ୍ଥାକୁ। ସୃଷ୍ଟିର ପ୍ରାକ୍‌ମୁହୂର୍ତ୍ତ। ଜଳାର୍ଣ୍ଣବ ବ୍ରହ୍ମାଣ୍ଡ। ପୃଥିବୀ ନଥିଲା। ଗଛପତ୍ର, ନଦୀନାଳ, ପାହାଡ଼ପର୍ବତ, କିଁ କିଛି ନଥିଲା। କେବଳ ଚତୁର୍ଦ୍ଦିଗରେ ପୂରି ରହିଥିଲା ଅହଂ--'ସୋଽହଂ'ର ସତ୍ତା। ଏଠି 'ମୁଁ' ବ୍ୟକ୍ତି ବିଶେଷ ନୁହେଁ। ଏକ ଭୂମାସତ୍ତା--ଆତ୍ମିକ ସତ୍ତା ଯେକି ସୃଷ୍ଟିର ପ୍ରାକ୍ କାଳରୁ ରହି ଆସିଛି ଏବଂ ସେହି ବ୍ରହ୍ମସତ୍ତାରୁ ସୃଷ୍ଟି ସାଧିତ ହୋଇଛି। ଏହା ଉପନିଷଦର କଥା।

"ଅଗ୍ନିର୍ମୂର୍ଦ୍ଧା ଚକ୍ଷୁଷୀ ଚନ୍ଦ୍ର ସୂର୍ଯ୍ୟୌ
ଦିଶଃ ଶ୍ରୋତ୍ରେ‌ବାଗ୍ବି ବୃତାଶ୍ଚବେଦାଃ
ବାୟୁଃ ପ୍ରାଣୋ ହୃଦୟଂ ବିଶ୍ୱମସ୍ୟ
ପଦଭ୍ୟାଂ ପୃଥିବୀ ହ୍ୟେଷ ସର୍ବଭୂତାନ୍ତରାତ୍ମା।"(୧୩)

ପ୍ରଥମରେ ଏକ ନିରାକାର ଅବସ୍ଥାରେ 'ମୁଁ' ରହିଥିଲା। କିନ୍ତୁ ଏହି ନିରାକାର ସତ୍ତା ସାକାରରେ ରୂପାନ୍ତରିତ ହେବାର ପ୍ରୟାସରେ 'ହାତ', 'ଗୋଡ଼', 'କଣ୍ଠସ୍ୱର', 'ଘର' 'ସନ୍ତାପ', କାମନା କଲା। ତତ୍ପରେ ଆସିଲା ସାକାରଗ୍ରସ୍ତ 'ମୁଁ'-ଅହଂସର୍ବସ୍ୱ ବ୍ୟକ୍ତିସତ୍ତା। "ଏକୋଽହଂ ବହୁ ସ୍ୟାମ୍ ପ୍ରଜାୟେୟ।" ଜ୍ଞାତସାରରେ ସେ ବରିନେଲା 'ପତ୍ରଝଡ଼ା ଋତୁକୁ'--ସବୁ ଦୁଃଖ ସବୁ ଅଶ୍ରୁକୁ ଅଙ୍ଗୀକାର କରିବାର ମାନସିକତାରେ।(୧୪) ନିରାକାର ସ୍ତରରୁ ସାକାର ହେଲାପରେ ଫେରି ଆସୁଛି ସେ ତା'ର ଉପେକ୍ଷିତ ଗୃହର ଚଟାଣକୁ। କାନ୍ଥକୁ ଆଉଜି ବସିଥିଲା ବେଳେ ଏବଂ ନିରାକାରର ପରିକଳ୍ପନା ଭିତରେ ଅତୀତ ସବୁ ଉଦ୍ଭାସିତ ହୋଇ ଉଠୁଥିଲା। ହଠାତ୍ ଅନନ୍ତ ଚେତନା ପୁଣି ହେଲା ସୀମିତ। ସେ ଅନୁଭବ କରେ ଯେ ତା'ର ହାତ ଅଛି ଏବଂ ସେହି ପାର୍ଥିବ ହାତରେ ସେ ତାର ଅଭୀଷ୍ଟ ବସ୍ତୁକୁ ଛୁଉଁଛି। କିନ୍ତୁ ତାହା ସତ ନୁହେଁ ତାର ଫଟୋ। ପ୍ରତିଛବି ମାତ୍ର। ଏକ ଅତିମାନସିକ ସ୍ତରରେ ତାକୁ ଧରିହୁଏ କିନ୍ତୁ ପାର୍ଥିବ ସଚେତନାବସ୍ଥାରେ ତାକୁ ଛୁଇଁ ହୁଏନା। କେବଳ ଏ ଘରର ଅନ୍ୟ ବଖରାରେ ସେହି ଦୂରତ୍ୱରେ ହିଁ ତାର ଖିଲି ଖିଲି ହସ ଶୁଭିଯାଏ। ଶେଷରେ ଅନୁଭବ କରେ-

"ଭଲ ପାଇବାଠୁ ଭଲ ନପାଇବା ଯାଏ
ଲମ୍ବା ରାସ୍ତା ଚାଲି ଚାଲି ବସିଅଛି
କ୍ଲାନ୍ତ ନାରୀଟିଏ।" (ଚିତ୍ରପ୍ରତିମା)

ଏ ନାରୀଟି ସେହି କାବ୍ୟପୁରୁଷ (Poetic Personae)। ଜୀବନର ପ୍ରେମ ଓ ଘୃଣାର

ଦୀର୍ଘ ପଥକୁ ଅତିକ୍ରମି ସେ ଆଜି କ୍ଳାନ୍ତ ଶ୍ରାନ୍ତ ଅବସ୍ଥାରେ ତଥାପି ପ୍ରତୀକ୍ଷିତ ଠିକ୍ ସାମୁଏଲ୍ ବେକେଟ୍‌ଙ୍କ ଅଦୃଶ୍ୟ 'ଗୋଡ୍ଡୋ' ପାଇଁ ଅପେକ୍ଷା ପରି ।(୧୫)

ମୃତ୍ୟୁଲୋକର 'ସପ୍ତମଋତୁ'ରେ ମୃତ୍ୟୁ ସହିତ ଏକାକାର ହୋଇ କାବ୍ୟପୁରୁଷ ମୃତ୍ୟୁ-ଉତ୍ତର ଜୀବନର ସନ୍ଧାନ କରେ 'ସଚ୍ଛିଦ୍ର ଅନ୍ଧାର' ରେ। ଏ ଅନ୍ଧାର ସାଧାରଣ ଅନ୍ଧାର ନୁହେଁ ବରଂ ଜୀବନର ଏକ ସୂକ୍ଷ୍ମାତିସୂକ୍ଷ୍ମ ମୁହୂର୍ତ୍ତର ଚ୍ଛିଦ୍ରିତ ଅନ୍ଧାର। ସଚ୍ଚି ରାଉତରାୟଙ୍କ ''ଆଲୁଅ ତା'ର କି ମନୋହର / ଅନ୍ଧକାର ତା'ଠାରୁ ଭଲ / ଜୀବନ ପଥେ ଫିଟାଏ ଆହା / ସକଳ ନୂଆ ରାହାଟି''(୧୬) ପଲ୍ଲୀଚିତ୍ର ଉପରେ ପର୍ଯ୍ୟବସିତ ହେଲେ ହେଁ ଏଥିରେ ବି ଅନ୍ଧାରର ମାହାତ୍ମ୍ୟ ବର୍ଣ୍ଣିତ। ସେହି ଅନ୍ଧାର ଆଉରି ଉତ୍ତୀର୍ଣ୍ଣାବସ୍ଥାରେ ସଚ୍ଛିଦ୍ରତା ଲାଭ କରିଛି।

ବିନାଦ୍ୱିଧାରେ ସେ ଆଜି ତାଙ୍କ ଜୀବନକୁ ସେହି ମହିୟସୀ ବହୁରୂପା ନାରୀକୁ ସମର୍ପି ଦିଅନ୍ତି। ଆଜି ତା' ପଛରେ କୌଣସି ଛଳନା ବା ମାୟା ନାହିଁ; ବରଂ ମୃତ୍ୟୁ ପରି ସେ ଆଦରି ନିଏ ତାଙ୍କୁ। ଯେଉଁ କବିପୁରୁଷ ନାରୀ ଓ ବାଘକୁ ଏକ ସଙ୍ଗରେ ତୁଳନା କରି ଆଶାବରୀ ରାଗ ଛାଡ଼ି ଦେଇଥିଲା ସେ ଆଜି ମାଲ୍‌କୋସ୍ ଶୁଣିପାରେ।

''ଏବେ ମୁଁ ଖାଲି ପବନ,
ଆଉଁଷି ନପାରି ତମ ଗହଳ ବାଳକୁ
ଆଉଁଷୁଛି ସୂର୍ଯ୍ୟ ଚନ୍ଦ୍ର ଧାନକେଣ୍ଡା ସମୁଦ୍ର ଫେଣକୁ।''(୧୭)

ସମଗ୍ର ପ୍ରକୃତି ଭିତରେ ନାରୀର ସ୍ପର୍ଶ। ସ୍ୱର୍ଗୀୟାନନ୍ଦର ଉଚ୍ଛଳ ଅନୁଭବ। ଅନେକ ଦିନର ବିଚ୍ଛେଦ ପରେ ସେ ବି ମନେ ପଡ଼େ। ''ତମେ ଆଜି ମନେ ପଡ଼ ତମେ ଦେଖାଦିଅ/ଅସମାପ୍ତ ଦିନଙ୍କର ଖୋର୍ଲା ବଖରାରେ।''(୧୮) ବହୁବାର ଛୁଇଁଥିଲେ ମଧ ତଥାପି ଅନେକ କିଛି ବାକି ରହିଯାଏ। ତା'ରି ପ୍ରେମରେ ପଡ଼ିଗଲେ ପୁଣି ଯାତ୍ରାର ପୂର୍ବାବସ୍ଥାକୁ ଫେରିବାକୁ ପଡ଼େ। ସବୁ ସେଠି ଶେଷ ପୁଣି ଆରମ୍ଭ। କି ଅପୂର୍ବ ସମ୍ମେଳନ ଭିତରେ ସ୍ଥିତାବସ୍ଥାର କୋଳରେ ମିଶିଯାଉଛି ପ୍ରାଣ ଅନନ୍ୟ ପୁଲକରେ। ଦୈହିକ ମିଳନାସରରେ ନା ଅଛି ଅନ୍ୟମନସ୍କତା ବା ବାହ୍ୟିକ ପ୍ରତିକ୍ରିୟା ପ୍ରତି ନିଘା - କେବଳ ଆତ୍ମନିଷ୍ଠତା ଯେପରି 'ଚର୍ଯ୍ୟାପଦାବଳୀରେ ଉନ୍ମତ୍ତ ଶବର ଶବରୀ ଆନନ୍ଦ ବିଭୋର ହୋଇ ମାତି ଯାଆନ୍ତି ନୈରାତ୍ମ୍ୟ ଦେବୀର ସାନ୍ନିଧ ପାଇଁ। ''ମୋ ରକ୍ତ ଯାଇଛି ମିଶି / ତମର ରକ୍ତରେ / ନିଃଶ୍ୱାସ କେଉଁଠି ଥିବ ତମର ସ୍ତନର / ମଝିମଝି ସଙ୍କୀର୍ଣ୍ଣ ବାଟରେ।''(୧୯) ଏହା ସହିତ ଲରେନ୍‌ସଙ୍କ ଦେହଜ ପ୍ରେମର ଦେହାତୀତ ଇଙ୍ଗିତକୁ ଲକ୍ଷ୍ୟ କରାଯାଇପାରେ। "Between her breasts is my home / between her breasts, x x / Sure on a heaven of peace, / between the mounds of her breasts." ବା "Immortality, the heaven,/is only a projection of this strange / but actual fulfilment here in this flesh."

ନୂଆ ଓଠ ପୁଣି ଆଗେଇ ଆସୁଛି ନୂତନ ସ୍ୱାଦ ଦେବାକୁ। ଏଣିକି ଯେଉଁଆଡ଼େ ଆଖି ମେଲିଯାଏ ସେ ଆଡ଼େ ଫୁଲଫୁଟା ଋତୁ। ପ୍ରତି ଧୂଳି, ମାଟି ମାଣିକ୍ୟର ଔଜ୍ଜ୍ୱଲ୍ୟରେ ଭାସ୍ୱର। ସଢ଼ା ଶବମାନେ ଦେହରୁ କାଦୁଅ ପୋଛି ଦିଅନ୍ତି। ପେଚା, ଶୃଗାଳର ବୀଭତ୍ସ ଚିତ୍କାର ଆଉ ଶୁଭେନି। ମରୁଭୂମି ଶ୍ୟାମଳ ହୋଇ ଉଠେ। ପକ୍ୱକେଶ କୃଷ୍ଣ କେଶ ପାଶରେ ପରିଣତ ହୋଇଯାଏ।

"ତମକୁ ଛୁଇଁଲା ମାତ୍ରେ ମତେ ଲାଗିଲା ଯେ
ଅସଂଖ୍ୟ ପ୍ରାଚୀନ ଯାତ୍ରାମାନଙ୍କର ଉତ୍ତେଜନା ପୁଣି
ପ୍ରଜ୍ୱଳିତ ମୋ ମାଂସରେ, ଶିରା ପ୍ରଶିରାରେ।
ମୁଁ ଏକ ଜାହାଜ ପରି ଭାସିଯାଏଁ ତମ
ଥଳକୂଳହୀନ ଅତରଙ୍ଗ ସମୁଦ୍ରରେ।"(୨୦)

ରମାକାନ୍ତଙ୍କ କାବ୍ୟପୁରୁଷ ଏକ ସନ୍ୟାସୀ। ଏ ସନ୍ୟାସୀର ଚେତନା ଭିତରେ ସର୍ବଦା ଦ୍ୱୈତଭାବ କ୍ରିୟାରତ। ଦେହୋତ୍ତର ଭାବ ଭିତରେ ସେ ମଜ୍ଜି ଯାଇଥିଲେ ବି ଦେହକୁ ମଧ୍ୟ ଛାଡ଼ି ପାରୁନି। ତେଣୁ ତା' ଭିତରେ ପୁଣି ଅସଂଖ୍ୟ କାମନା ମାନଙ୍କର ଭିଡ଼ ବସେ। "ଦେହରେ ପ୍ରଖର ତାତି ଅଶାନ୍ତ ଜ୍ୱରର / ଅଥଚ ଆକ୍ଷିରେ ଏକ ହଜିଲା ହଜିଲା ଚାହିଁବାର ଭଙ୍ଗୀ ସନ୍ନ୍ୟାସୀର/ଘର ଭିତରକୁ ହିଂସ୍ର ସଙ୍ଗୀତ ପଶିଲା / ସେଥିରେ କାତର ଆର୍ତ୍ତନାଦ ଥିଲା ଏବଂ/ପୈଶାଚିକ ହୁଙ୍କାର ବି ଥିଲା।"(୨୧) ନାରୀ ତାଙ୍କ ପାଇଁ ପ୍ରଣୟିନୀ, ପତ୍ନୀ, ସଙ୍ଗିନୀ ଓ ସିଂହୀ। ତା'ର ଓଠରେ, ଜଘରେ ନିଆଁ ଜଳେ। 'ତମେ କିଛି କହ ବା ନକହ ମୁଁ ତମକୁ ପୁରା ବୁଝିପାରେ।'(୨୨) ଉତ୍ତରିତ ଚେତନାର ଶୀର୍ଷ ବିନ୍ଦୁରେ ହିଁ ନାରୀ। ସେଠି ସେ ଏକ ବିଶ୍ୱରୂପ ଦର୍ଶନ କରନ୍ତି।

"ତମ ଘରେ କିଛି ନାହିଁ, ଆକାଶ ତମଠି
ସରିଯାଏ, ତମ ନାଭି ମଣ୍ଡଳ ପାଖରେ
ସୂର୍ଯ୍ୟ ଚନ୍ଦ୍ର ଝୁଲସନ୍ତି। ତମେ ମୋର ବୋଲି
କହିବାକୁ ଶଙ୍କା ଲାଗେ, କିନ୍ତୁ ତମ ବ୍ୟତିରେକେ କିଛି
ନାହିଁ, ମୁଁ ବି ନିଜେ ନାହିଁ
ତମ ଦୁଇ ଆଖିଙ୍କର ସ୍ୱୀକୃତି ବାହାରେ।"(୨୩)

ଏଠି ଆତ୍ମସମର୍ପଣର ଭାବ, ଏକାତ୍ମତାର ନିଷ୍ଠା ଏତେ ସନ୍ନଦ୍ଧ ଯେ ତାଙ୍କ ସହିତ ଥରେ ଦେଖାହେଲେ; ବା ସ୍ୱରକୁ ଥରେ ଶୁଣିଲା ପରେ (ସ୍ୱପ୍ନରେ ବି ହେଉ) ଆଉ କିଛି ଲୋଡ଼ା ନାହିଁ।

"ତମ ବିଷୟରେ, ଆମ ଦୁହିଁଙ୍କ ସମ୍ପର୍କ
ବିଷୟରେ ଆଉ କିଛି କହିବିନି ଏ କବିତା ପରେ,
x x x x
ତା' କାରଣ ନୁହେଁ ତମେ ଦେହଘଷା ହେଲ।
ଆଜି ଯଦି ଚୁପ୍ ହେଲି ଏ କବିତା ପରେ
ତା' କାରଣ ଏହା--ତମ ଝଡ଼ର ସମ୍ପୂର୍ଣ୍ଣ
ଫସଲ ହୁଏନି ଜାଗା ମୋ ଦୁଇ ହାତରେ।"(୨୪)

ଏ ପ୍ରକାର ସ୍ୱୀକାରୋକ୍ତି ବାଢ଼ିଥିବା କାବ୍ୟପୁରୁଷଟି ଗୁମ୍ ମାରି ବସି ପାରିନି। ସେ ଝଡ଼ର ଫସଲ ଦୁଇ ହାତରେ ଜାଗା ନ ଧରିଲେ ବି ହାତରୁ ଖସି ପଡୁଥିବା, ପୁଣି ସାଉଁଟି ଧରିବାକୁ ପ୍ରଚେଷ୍ଟା କରୁଥିବା; ଏବଂ କୌଣସି ନିର୍ଦ୍ଦିଷ୍ଟତାରେ ପହଞ୍ଚନପାରି ସମାଧାନଟିଏ ଖୋଜିବା ଭିତରେ ବୋଧହୁଏ 'ଶ୍ରୀରାଧା'ର ଜନ୍ମ। କବି ନିଜେ ସ୍ୱୀକାର କରିଛନ୍ତି, "ସାଧାରଣ ଜୀବନରେ ଘଟଣାର ସଜ୍ଜା ଯାହା ସେ ସଜ୍ଜା ଅନୁଯାୟୀ ସାହିତ୍ୟରେ କିଛି

ଘଟଣା ନାହିଁ। କୌଣସି ବିଷୟ ଉପରେ ଏକମାତ୍ର ନିର୍ଭୁଲ ମନ୍ତବ୍ୟଟିଏ, ନାନାଦି ଅସତ୍ୟାଙ୍କୁ ନିର୍ଭୟରେ ମୁକାବିଲା କରୁଥିବା ଜାଜ୍ୱଲ୍ୟମାନ ସତ୍ୟଟିଏ ପ୍ରତିପାଦିତ କରିବା ପରିବର୍ତ୍ତେ ସାହିତ୍ୟର ଘଟଣା ଗୁଡ଼ିକ ଏପରି ଏକ ମଧ୍ୟବର୍ତ୍ତୀକାଳୀନ ଅବସ୍ଥା ସୃଷ୍ଟି କରନ୍ତି ଯେଉଁଥିରେ କାହାର କିଛି ନିର୍ଦ୍ଦିଷ୍ଟତା ବା ଅପରିବର୍ତ୍ତନୀୟ ଆୟତନ ନ ଥାଏ, ଥାଏ ସୃଷ୍ଟିର ଆଦ୍ୟ ପର୍ଯ୍ୟାୟର ଅନିଶ୍ଚିତତା, ଗୋଟିଏ ଆକୃତିରୁ ଅନ୍ୟ ଏକ ଆକୃତିକୁ ବୋହି ଯିବାର ତରଳତା, କୁଆଡ଼େ ଯିବାକୁ ହେବ ଠିକ କରି ପାରୁନଥିବା ଭଳି ଇତସ୍ତତଃତା। + + + ଏହି କାରଣରୁ ଉତ୍ତୀର୍ଣ୍ଣ ସାହିତ୍ୟ ଆମ ମନ ଭିତରେ ଯେଉଁ ଅନୁଭୂତି ଆଣେ ତାହା ହେଉଛି କିଛି ବାକୀ ରହିଯାଇଥିବାର ଅନୁଭୂତି, କେତୋଟି ପ୍ରଶ୍ନର ଉତ୍ତର ନ ମିଳିଥିବାର ଅନୁଭୂତି, ଶେଷ ପଂକ୍ତିଟି ବା ବାକ୍ୟଟି ପଢ଼ି ସାରିବା ପରେ ମଧ୍ୟ କଥାଟି ସମାପ୍ତ ହୋଇନଥିବା ଭଳି ଅନୁଭୂତି।"(୨୫)

"ହ୍ଲାଦିନୀର ସାରଅଂଶ ତାର ପ୍ରେମନାମ
ଆନନ୍ଦ ଚିନ୍ମୟ ରସ ପ୍ରେମେର ଆଖ୍ୟାନ।
ପ୍ରେମେର ପରମ ସାର ମହାଭାବ ଜାନି
ସେଇ ମହାଭାବରୂପ ରାଧା ଠାକୁରାନୀ।"(୨୬)

ଏଠାରେ ବୈଷ୍ଣବ କବି ରାଧାଙ୍କୁ ହ୍ଲାଦିନୀ ଶକ୍ତି ଓ ଦେବୀ ଭାବରେ ଗ୍ରହଣ କରିଛନ୍ତି। କବି ରମାକାନ୍ତ ରଥ ପ୍ରଥମରୁ ରାଧାଙ୍କୁ ଏକ ସାଧାରଣ ନାରୀ ଭାବରେ ପରିକଳ୍ପନା କରିଛନ୍ତି। ତା'ର କାମନା, ବାସନା ଓ ଅଭୀପ୍ସା ତଥା ସୁଖ, ଦୁଃଖ ଓ ଦ୍ୱନ୍ଦ୍ୱାତ୍ମକ ମାନସିକତାକୁ ପରିପ୍ରକାଶ କରିବାର ପ୍ରଚେଷ୍ଟା ଭିତରେ ନିଜର ଅସାମର୍ଥ୍ୟ ପ୍ରକାଶ କରିଥିବାର ସ୍ୱୀକାର କରିଛନ୍ତି। "ସେ ଯଦି ଦେବୀ, ସେ ସୁଖୀ କି ଅସୁଖୀ ଜାଣିବା ସମ୍ଭବ ନୁହେଁ। ସେ ସୁଖୀ ନୁହନ୍ତି କି ଅସୁଖୀ ବି ନୁହନ୍ତି ବା ଏକାଧାରରେ ସୁଖୀ ଓ ଅସୁଖୀ ଓ ତା'ଛଡ଼ା ବି ଆହୁରି ଅନେକ କିଛି, ଆମର ସେ ସବୁ ବୁଝିବାର ଶକ୍ତି ନାହିଁ, ବର୍ଣ୍ଣନା କରିବାର ସାମର୍ଥ୍ୟ ତ ଜମାରୁ ନାହିଁ।"(୨୭)

ଏଠି ରାଧା କୃଷ୍ଣଙ୍କ ମନକୁ ବୁଝନ୍ତି। ପରସ୍ପରଙ୍କର ଅବର୍ତ୍ତମାନରେ ମିଳନର ଆସ୍ପୃହା ଖୁବ୍ ଆବେଗ ଜର୍ଜରିତ। "ମୋ ଛଡ଼ା କିଏସେ ବୁଝେ ତମେ କି ଅଧୈର୍ଯ୍ୟ / ତମେ ପୁଣି କେଡ଼େ ଶୋକାତୁର?"(୨୮) ପ୍ରଥମ ଦିନର ସ୍ପର୍ଶରେ ତାଙ୍କ ମନର ସବୁ ଶୂନ୍ୟସ୍ଥାନ ପୂରି ଉଠେ। ପ୍ରତ୍ୟେକ ଦିଗରୁ ତାଙ୍କରି ଡ଼ାକରାହିଁ ପ୍ରସରି ଆସେ। ଶ୍ରୀରାଧା ତ ନିଃସଙ୍ଗତାକୁ ଭଲ ପାଉଛନ୍ତି। ବିଚ୍ଛିନ୍ନତା ଭିତରେ ନିଃସଙ୍ଗତା ଭିତରେ ମିଳନର ତୀବ୍ରତା ଥାଏ। ପ୍ରାପ୍ତିର କୌଣସି ଆଶା ନାହିଁ। କେବଳ ମାନସିକ ସ୍ତରରେ ଆଲୋଡ଼ନ। ଏହାହିଁ କାମ୍ୟ। "ତମକୁ ଛୁଇଁଲେ ତମେ / ମିଶିଯିବ ମୋ ରକ୍ତ ଭିତରେ, / ଆଉ କ'ଣ ଆଗପରି ବଇଁଶୀ ଖଣ୍ଡିଏ / ଧରି ଚାଲୁଥିବ ପ୍ରତିଦିନ ମୋ ପଛରେ?"(୨୯) ରାଧା ଜାଣନ୍ତି ସେ ବିବାହିତା। କୃଷ୍ଣଙ୍କୁ ନେଇ ସାଂସାରିକ ଜୀବନ ବିତାଇବାର ପ୍ରୟାସ ହିଁ ଏ ସମାଜରେ ବିଫଳ। ତେଣୁ ସେଠି ଆଉ କୌଣସି ପ୍ରକାର ପ୍ରତ୍ୟାଶା ରହୁନି। ବାସନା କାମନା ରହୁନି। ସମାଜ ପ୍ରତି ମଧ୍ୟ ଭୟଭାବ ରହୁନି। ଏକ ଅସଫଳତା ଭିତରେ ହିଁ ଜୀବନର ସ୍ୱାଦ ରହିଛି। ସଂସାରର କୁର୍ଣ୍ଣିଶ୍ କରିବାରେ ଯାଥାର୍ଥ୍ୟ କାହିଁ? "ସେତେବେଳେ ତ ମୁଁ / ବୁଝିଲି ଯେ ଇଚ୍ଛା କଲେ ଫିଙ୍ଗିଦେଇ ପାରେ / ଜରା ମୃତ୍ୟୁ, ପାପ ପୁଣ୍ୟ ଯାହା ଯାହା ମୋର/ଅସଫଳତାରେ

ମୋତେ ସୀମାବଦ୍ଧ କରେ/କାଲି ସକାଳକୁ ଯେଉଁ ଅପବାଦ ମୋତେ / ମିଳିବ ତାର ଅର୍ଥ ଥିବ ମୋ ପାଖରେ ? / ମୁଁ କ'ଣ ମାଗୁଛି କିଛି ସଂସାରଠାରୁ ଯେ / ଉଠ୍ ବସ୍ ହେବି ତାର ନିର୍ଦ୍ଦେଶାନୁସାରେ।''(୩୦) ରାଧା କୁଳବଧୂ। ପତ୍ନୀ, ପତିବି ତାଙ୍କର ଅବିଶ୍ୱସ୍ତତାର ପ୍ରମାଣ ଖୋଜନ୍ତି। ସେଥିପାଇଁ ମାଡ଼ଗାଳି ଖାଆନ୍ତି। ଦୁନିଆଁ ଦାଣ୍ଡରେ ନିନ୍ଦା ଓ ଅପମାନର ନାଗରା ବାଜେ। କଳଙ୍କର ବୋଝକୁ ମୁଣ୍ଡରେ ଲଦି ଦୋଚାରିଣୀ ବୋଲି ପ୍ରମାଣିତ ହେଲାପରେ ନିଜକୁ, 'ରାଧିକା ରସିକାମାନଙ୍କ ଶିରୋମଣି' ଭାବରେ ଗ୍ରହଣ କରି ନିଅନ୍ତି। ସବୁ ହତାଶା ଦୂରେଇଯାଏ। କଳ୍ପନାତୀତ ପୁଲକ ଭିତରେ ପ୍ରାଣ ଶିହରି ଉଠେ। ''ଏତେ ଅପଯଶ କେତେ ଜନ୍ମର/କେତେ ସୁକୃତ ଫଳ,/ବାଟ ହୁଡ଼ି ଯେଉଁ ବାଟ ମୁଁ ଧରିଲି / ମୋର ଆଲୋକିତ ଦୁଃସାହସରେ ଝଟକେ ବେଳକୁ ବେଳ।''(୩୧) ଅଭିମନ୍ୟୁଙ୍କ ଶ୍ରୀରାଧାତ ଆଗରୁ ଏହା କହି ରଖିଛି।

''ତା' ନାମ ଗାଇ ତୁଣ୍ଡରେ
ପ୍ରେମ ଡ଼ମ୍ବରୁ ବଜାଇ ଦାଣ୍ଡରେ ଗୋ
ଭିକ୍ଷା ମାଗୁଥିବି ବ୍ରହ୍ମାଣ୍ଡରେ, ସଜନି ଗୋ।
ତା ନାମ ଲେଖା ଛାପାରେ
ଛାଇ ହୋଇଥିଲେ ବି ହୃଦ ଉପରେ ଗୋ
ଧାୟିଥିବି ତା' ହାସ୍ୟ ରୂପରେ, ସଜନି ଗୋ।
x x x x
ବାକୁ ଦୂଷଣ ଘୋଷଣ
ହେଲେ ହେବ ପଛେ ନାନା କଷଣ ଗୋ
ମୁଁ ତ କଲିଣି ନିନ୍ଦା ଭୂଷଣ, ସଜନି ଗୋ।''
(ବିଦଗ୍ଧ ଚିନ୍ତାମଣି- ଛାନ୍ଦ ୪୮- ୩୬/୩୭/୫୫)

ପରକୀୟା ପ୍ରୀତି ଭିତରେ ଶ୍ରୀରାଧା ନିଜକୁ ମିଶାଇ ଦେବାରେ ଉନ୍ମୁଖୀ, ଯଦିଓ ସେ ଜାଣନ୍ତି ସାମାଜିକତା ଦୃଷ୍ଟିରୁ ସେ ସ୍ୱକୀୟା।

ସାରାରାତି ପରସ୍ପରକୁ ନେଇ ବିତାଇଥିଲେ ବି କେହି କାହାରିକୁ ଛୁଇଁ ନାହାନ୍ତି। ଏବେ ଶ୍ରୀରାଧା ଅନୁଭବ କରନ୍ତି ଶ୍ରୀକୃଷ୍ଣ କେବଳ ଦେହଟିଏ ନୁହନ୍ତି। ସେ ଅଶରୀରୀ। ସବୁବେଳେ ହିଁ ପାଖେ ପାଖେ ଥାନ୍ତି। କେତେବେଳେ ଦାସାନୁଦାସ ତ ପୁଣି କେତେବେଳେ ସଂସାରୀଟିଏ। ସାରାରାତି ପାହିଗଲେ ମଧ୍ୟ ସେ ତାଙ୍କ ରକ୍ତରେ, ପାଣି ଓ ପବନରେ ମିଶିପାରୁନାହାନ୍ତି। କାରଣ ''କାଳେ ଜନ୍ମ ଜନ୍ମ ତମକୁ ଲୋଡ଼ିବା/କର୍ମଫଳ ସରିଯିବ, + + ପ୍ରାଣ ଯାଉ ପ୍ରାଣ ରହୁ,/ପାଇ ନପାଇବା ନପାଇ ପାଇବା/ଦୁଃଖ ସୁଖ ଲାଗିଥାଉ।''(୩୯) ସେଥିପାଇଁ ପ୍ରିୟତମକୁ ବେଶ କରିଦେବା ପାଇଁ ସାଗ୍ରହ ପ୍ରଚେଷ୍ଟା। ନିଜର ଉପାଦାନ ମାନଙ୍କରେ ସଜେଇ ଦେବେ ତାଙ୍କୁ। ଚାହାଣୀରେ ଶ୍ରୀ ଅଙ୍ଗକୁ ଧୋଇ ଦୀର୍ଘନିଃଶ୍ୱାସରେ ପୋଛି ଦେବେ। ସାନ୍ତ୍ୱନାର ଚନ୍ଦନ, କାନ୍ଦଣାର କୁଙ୍କୁମ ଓ ଫୁଲମାଳରେ ସାଜି ଦେବେ ଗାଲ, ଭ୍ରୂଲତା ଓ ଗଳା। ଆଖିରେ ଅନ୍ଧାରର କଜ୍ଜଳ, ଅନିଦ୍ରା-ରକ୍ତର ତିଳକ ମଧ୍ୟ ମଝି କପାଳରେ ଲଗାଇ ଦେବେ। ତିଳକ ମଝିରେ ଆଶାର ଚୂନା ଚୂନା ଧୂସର ତ୍ରିଭୁଜଟିଏ ଆଙ୍କିବେ। ପାଦରେ ଲଜ୍ଜାରୁଣ ସ୍ୱପ୍ନମାନଙ୍କର ଅଳତା, ଶିରାପ୍ରଶିରାରେ ଭିଣା ଝୀନବାସକୁ

ଶ୍ରୀଅଙ୍ଗରେ ପିନ୍ଧାଇ, "ମୁଁ ନ ଦେଇ ପାରିଥିବା ତୁମାଙ୍କର ମାଳ / ତିଆରି ପିନ୍ଧାଇ ଦେବି ତମର ଗଳାରେ।"(୩୩) ଏଠି ସମ୍ପୂର୍ଣ୍ଣ ଆତ୍ମସମର୍ପଣତାର ଭାବ ଅଛି। ତାଙ୍କର ଆଉ କୌଣସି ସଫଳତା ପ୍ରାପ୍ତିର ଆଶା ନାହିଁ କାରଣ ନିଷ୍ଫଳତାକୁ ସେ ଆପଣାର କରି ସାରିଛନ୍ତି। "ଏପରି ତମକୁ ବେଶ କରି ସାରି ଫେରିଯିବି ମୁଁ ଯେଉଁଠୁ / ଆସିଥିଲି ପୁଣି ଥରେ ସେ ନିଷ୍ଫଳତାକୁ"।

କୃଷ୍ଣଚନ୍ଦ୍ର ସାଂଘାତିକ ଭାବେ ଆକ୍ରାନ୍ତ। ଏ ଖବର ଶ୍ରୀରାଧା ଜାଣିଲା ପରେ ବି ବ୍ୟସ୍ତ ନୁହନ୍ତି କାରଣ, 'ଏପରି ଘଟିବ ବୋଲି ବହୁତ ଆଗରୁ ତମେ ନିଶ୍ଚେ ଜାଣିଥିବ।' ସେହି କ୍ଷଣକ ମୁହୂର୍ତ୍ତରେ ସେଠାକୁ ଧାଇଁଯିବାକୁ ତାଙ୍କ ମନ ଭିତରେ ସ୍ୱାଭାବିକ ଦୁର୍ବଳତା ଆସିଛି। ତାଙ୍କର ମୃତ୍ୟୁ ସମ୍ବାଦରେ ସେ ଆଦୌ ମର୍ମାହତ ନୁହନ୍ତି। ସେ ରୋକ୍‌ଠୋକ୍ ଭାବରେ ସ୍ୱୀକାର କରନ୍ତି ଯେ ସେ ତାଙ୍କର ଅନ୍ୟତମ ବିଧବା ନୁହନ୍ତି। ଶବ ପଛେ ପଛେ ଯାଉଥିବା ଲୋକମାନଙ୍କ ଭିତରୁ ମଧ ସେ କେହି ନୁହନ୍ତି। 'ତମର ଶବତ ବହୁ ଦୂର ବୃନ୍ଦାବନ ଠାରୁ।' ତାଙ୍କ ମଥାରେ ସିନ୍ଦୂର ଏବେବି ଦାଉ ଦାଉ ହୋଇ ଜଳୁଛି। ସମସ୍ତେ ତାଙ୍କ ମୃତ୍ୟୁକୁ ସତବୋଲି ଧରିନେଇଥିଲେ ମଧ ଶ୍ରୀରାଧା ବିଶ୍ୱାସ କରନ୍ତିନି। ତାହା ଏକ ଚଗଲାମି। କୁତୁକୁତୁ ପଣ। ଜୁଇ ଭିତରେ ଶବ ସଂସ୍କାର କରି ସେମାନେ ଭାବନ୍ତି ଯେ ତାଙ୍କର ସମ୍ପର୍କକୁ ପୋଡ଼ିଦେଲେ। "ମୁଁ କିନ୍ତୁ ପାରୁନି ଆଉ / ରୋକି ମୋର ସୁଖ ସଂତୋଷକୁ/ତମେ ଯଦି ତାଙ୍କ ପାଇଁ ନ ମରି ଥାନ୍ତ ମୁଁ / ଗୋଟାପଣେ ପାଇଥାନ୍ତି କିପରି ତମକୁ?" ସେ ଆଜି ବି ନିଜକୁ କନ୍ୟା ରୂପରେ ସଜେଇଛନ୍ତି, କାରଣ ଆଉ କୌଣସି ବାଧା ଏଣିକି ନାହିଁ। ଯମୁନା ଯିବା ମନା ନାହିଁ।

"ଲୋକଙ୍କ ବିନୋଦ ପାଇଁ ନାଚିବା କୁଦିବା
ଛାଡ଼ିଦେଇ ଆସ ବରବେଶେ।
କନ୍ୟାପରି ମୁଁ ପିନ୍ଧିଛି
ଅଳଙ୍କାର ପାଟ ପୀତାମ୍ବରୀ,
ଯେତେ ଥଟ୍ଟା, ଅପଯଶ ସବୁରି ଜବାବ୍
ଦେବି ଚୂଡ଼ି ଝମ ଝମ କରି।"(୩୪)

ଶରୀରର ଆବଶ୍ୟକତା ନାହିଁ, ମୃତ୍ୟୁରେ ଶୋଚନା ନାହିଁ। ଏକ ମାନସ କ୍ଷେତ୍ରରେ ଚିରବର୍ତ୍ତମାନ ରହିଛି ଶରୀର, ମନ, ପ୍ରାଣ ଓ ହୃଦୟ। ଜୀବନ ଓ ମୃତ୍ୟୁ ଭିତରେ ଆଉ କିଛି ତଫାତ୍ ନାହିଁ। ବିରହ ଓ ମିଳନ ଏକାର୍ଥବୋଧକ। ସେହି ମୁହୂର୍ତ୍ତରେ ହିଁ ସେ ଅନୁଭବ କରନ୍ତି, "ଯେତେବେଳେ ମରିପାରୁନଥିବି ଅଥଚ/ଜୀଇଁବା ବି ପୁରା ଅସମ୍ଭବ।"(୩୫) ଏଇ ମୁହୂର୍ତ୍ତରେ କୌଣସି ସତ୍ୟ ନାହିଁ। ସମାଧାନ ନାହିଁ। ସଫଳତା କି ନିଷ୍ଫଳତାର ପ୍ରଶ୍ନ ବି ଉଠୁ ନାହିଁ।

ପାଦଟୀକା

୧. (a) Prufrock and other observations- 1917
(b) Poems- 1920
(c) The Waste Land- 1922
(d) The Hollowmen - 1925
(d) Ash Wednesday- 1930

୨. ଛୁଟିର ସ୍ମୃତି- ସପ୍ତମ ଋତୁ- ପୃ ୪
୩. ଦ୍ୱିତୀୟ ବିଚାର- ତତ୍ରୈବ- ପୃ ୧
୪. ବିଚ୍ଛେଦର ଦୁଇଟି ମଧ୍ୟାନ୍ତର- ତତ୍ରୈବ- ପୃ ୮
୫,୬. ଗୃହସ୍ଥ- ତତ୍ରୈବ- ପୃ ୨୦
୭. ଆତ୍ମୀୟ ଶତ୍ରୁତାର ଦୋଟି କବିତା- ତତ୍ରୈବ- ପୃ ୨୮
୮. ନିଜେ ନିଜେ- ତତ୍ରୈବ- ପୃ ୮୬
୯. ଝର୍କାକଡ଼ର ଗୋଲାପ-ଚିତ୍ରନଦୀ-ସୀତାକାନ୍ତ ମହାପାତ୍ର ପୃ-୩୧
୧୦. ଚିତ୍ରପ୍ରତିମା- ସପ୍ତମଋତୁ- ପୃ ୯୪
୧୧. ଜୀବନ ସଙ୍ଗୀତ- ଲକ୍ଷ୍ମୀକାନ୍ତ ମହାପାତ୍ର
୧୨. Little Gidding- Four Quartets- T.S. Eliot
୧୩. ମୁଣ୍ଡକୋପନିଷଦ
୧୪. ଆଦାମ୍ ଏବଂ ଇଭ୍ 'Eden Garden' ରେ ନିଷିଦ୍ଧ ଫଳ ଭକ୍ଷଣ ପରେ ସ୍ୱର୍ଗଚ୍ୟୁତ ଓ ଦୁଃଖ ଭୋଗ ପ୍ରସଙ୍ଗ ବାଇବେଲ୍‌ରେ ବର୍ଣ୍ଣିତ।
୧୫. ସାମୁଏଲ୍ ବେକେଟ୍‌ଙ୍କ 'Waiting for Godot' ନାଟକର 'ଭ୍ଲାଦିମିର୍' ଓ 'ଏସ୍ଟ୍ରାଗନ୍' ଚରିତ୍ର ଦୁଇଟି ଅଦୃଶ୍ୟ ଗୋଦୋଁ (ଈଶ୍ୱର/ପ୍ରେମ/ମୃତ୍ୟୁ ?) ପାଇଁ ପ୍ରତୀକ୍ଷାରତ। (ଏହା 1952ରେ ଲିଖିତ) Estragon: Nothing happens, no body comes, nobody goes, its awaful! (Act-I-P.41)
Vladimir: Wait...we embraced... we were happy...happy...what do we do now that we're happy..go on waiting...waiting...let me think...it's coming...go on waiting...now that we're happy..Let me see...ah! (Act-II,p.80)
୧୬. ଛୋଟ ମୋର ଗାଆଁଟି- ପଲ୍ଲିଶ୍ରୀ- ସଚ୍ଚିଦାନନ୍ଦ ରାଉତରାୟ
୧୭. କର୍ଫ୍ୟୁ- ସଚିତ୍ର ଅନ୍ଧାର- ପୃ ୧୦
୧୮. ତମେ ଆଜି ମନେ ପଡ଼- ତତ୍ରୈବ- ପୃ ୮୨
୧୯. ତମେ ହିଁ - ତତ୍ରୈବ- ପୃ ୧୦୫
୨୦. ପରମାୟୁ- ତତ୍ରୈବ- ପୃ ୧୬
୨୧. ରାତିଟିଏ- ତତ୍ରୈବ -ପୃ ୨୬
୨୨. ପ୍ରାଣ ସଙ୍ଗିନୀ- ତତ୍ରୈବ- ପୃ ୩୦
୨୩. ଏ ନଈକୂଳରେ- ତତ୍ରୈବ- ପୃ ୫୫
୨୪. ତମେହିଁ - ତତ୍ରୈବ- ପୃ ୧୧୦-୧୧୧
୨୫. ପୃଷ୍ଠବନ୍ଧ- ସଚିତ୍ର ଅନ୍ଧାର- ପୃ ୧୫୯
୨୬. ଚୈତନ୍ୟ ଚରିତାମୃତ- ୮/୨- କୃଷ୍ଣ ଦାସ କବିରାଜ
୨୭. ଶ୍ରୀରାଧା- ପୃଷ୍ଠବନ୍ଧ- ପୃ ୧୩୪
୨୮. ଶ୍ରୀରାଧା- ପୃ ୧୦
୨୯. ତତ୍ରୈବ- ପୃ ୧୪
୩୦. ତତ୍ରୈବ- ପୃ ୫୩
୩୧. ତତ୍ରୈବ- ପୃ ୫୫

୩୨. ତତ୍ରୈବ- ପୃ ୬୪
୩୩. ତତ୍ରୈବ- ପୃ ୮୩
୩୪. ତତ୍ରୈବ- ପୃ ୧୧୮
୩୫. ତତ୍ରୈବ- ପୃ ୧୧୯

## ପରମ ଦୁଃଖ ନା ଅତୃପ୍ତ ତୃପ୍ତି :

କୁରୁକ୍ଷେତ୍ର ରଣ ପ୍ରାଙ୍ଗଣ। ପାଣ୍ଡବ ମାନଙ୍କର ସମ୍ମିଳିତ ଶଙ୍ଖ ଧ୍ୱନି। ଯୁଦ୍ଧ ପାଇଁ ଡ଼ାକରା। ଏଇ ମହାଧ୍ୱନି ଶୁଣି ଧୃତରାଷ୍ଟ୍ର ସନ୍ତାନମାନଙ୍କ ରକ୍ତରେ କମ୍ପନ। ତାଙ୍କ ପକ୍ଷର ସମସ୍ତଙ୍କ ହୃଦୟକୁ ସତେ ଯେପରି ବିଦୀର୍ଣ୍ଣ କରି ଏହି ନାଦ ଆକାଶ ଓ ପୃଥିବୀକୁ ପ୍ରତିଧ୍ୱନିତ କଲା।(୧) ଅନ୍ୟ ଦିଗରେ ବିଷାଦଗ୍ରସ୍ତ ଅର୍ଜୁନ। ଆଖିରେ ରକ୍ତର ମୋହ। ସମ୍ପର୍କର ସେତୁକୁ ସହଜରେ ଛିନ୍ନ କରି ହେଉନି। ଦେହ ହାତ ଥରି ଉଠୁଛି। ହାତରୁ ଗାଣ୍ଡିବ ଖସି ପଡୁଛି। ବିପରୀତ ଭାବ ଓ ଅପଶକୁନ ଦେଖା ଦେଉଛି। ରାଜ୍ୟ ବା ସୁଖଭୋଗର ମୋହ ତୁଟି ଆସୁଛି।(୨) ପରବର୍ତ୍ତୀ ପର୍ଯ୍ୟାୟରେ ମାୟାବୀ ପୁରୁଷ ଶ୍ରୀକୃଷ୍ଣ ବିଶ୍ୱରୂପଟିଏ ଦେଖାଇ ଦିଅନ୍ତି। କିଂକର୍ତ୍ତବ୍ୟବିମୂଢ଼ାବସ୍ଥାରେ ପଡ଼ିଯାନ୍ତି ଅର୍ଜୁନ। କାଳ ହିଁ ଧ୍ୱଂସକର୍ତ୍ତା। ସେ କେବଳ ନିମିତ୍ତ ମାତ୍ର।(୩) ତେଣୁ ତାଙ୍କୁ ଯୁଦ୍ଧରତ ହେବାକୁ ପଡ଼ିବ। ରକ୍ତ ପାଇଁ ଦୁଃଖିତ, ଅନୁତପ୍ତ ଓ ସଂତପ୍ତ ହେବ୍ ପୁଣି ସେହି ରକ୍ତ ଭିତରେ ବିଶ୍ୱରୂପ ଦେଖି ଥରି ଉଠୁଥିବ କାବ୍ୟର ଅର୍ଜୁନ। ଏହାହିଁ ଆଜି ସବୁ ମଣିଷର ଭାଗ୍ୟ। ସେ ଗୃହୀ ହେଉ ବା ସନ୍ୟାସୀ ହେଉ। ଇହକାଳର ମଣିଷଟିଏ। ରାତିରେ ସହବାସ କରେ। ଦିନରେ ସୁଟ୍ ପିନ୍ଧି ସିଗାରେଟ୍ ଟାଣେ। ବର୍ଷାରୁ ରକ୍ଷାପାଇବା ପାଇଁ ବର୍ଷାତି ଲଗାଏ। ତଥାପି ତାକୁ ମାନିନେବାକୁ ହେବ ଯେ, "ତେବେ ମଧ ସମୟ ଆସିବ / ମତେ ଟାଣି ନିଆଯିବ ବାୟୁ ଶୂନ୍ୟ ଶଙ୍ଖ ମଲମଲ- । -ପିଣ୍ଡାରେ ଅଦୃଶ୍ୟ ଏକ ବିଚାରକ ଠାକୁ।"(୪) ତାଙ୍କୁ ସେଠାରେ ତାଙ୍କର ଆତ୍ମ ପରିଚୟ ଦେବାକୁ ଜାହିର୍ କରାଯିବ। କିନ୍ତୁ ନିଜର ସଞ୍ଜ୍ଞା ଦେଲାବେଳକୁ ତାଙ୍କ ଆକୃତି ଓ ସ୍ୱର ସହିତ ସାମ୍ୟ ଆସୁ ନଥିବ। ତେଣୁ ସେଠି ଭାବାନ୍ତର ଜନ୍ମେ, "ବହୁ ଦିନୁ ମରିଥିବା ମକ୍ଷିକଙ୍କ ସହିତ ସମ୍ପର୍କ/ଏତେ ବେଶି, ବେଳେବେଳେ ଭ୍ରମହୁଏ ନିଜ ଦେହାନ୍ତର"(୫)

ଜୀବଦ୍ଦଶା ଭିତରେ କି ଏକ ଅଭାବବୋଧ ତଥାପି ରହିଯାଉଛି। କାବ୍ୟପୁରୁଷ ନିଜକୁ ଖୁବ୍ ଏକ ଅଜଣା ଅଶୁଣା ନଗଣ୍ୟ ବ୍ୟକ୍ତି ଭାବରେ ଧରି ନିଅନ୍ତି। ଆକାଶ ଯେ ନୀଳବର୍ଣ୍ଣ ଏ କଥା ବି ତା'ର ଆଉ ମନେ ନାହିଁ। ଅବସନ୍ନ ଅଙ୍ଗ ନୃତ୍ୟଶୀଳ ନୁହେଁ। ଶୋକ କରିବାର କ୍ଷମତା ବି ଗଲାଣି। ଅବସର ବିନୋଦନର ମାନସିକତାତ ସମ୍ପୂର୍ଣ୍ଣ ମ୍ଳାନ ଛାୟାଛନ୍ନ। "ହଳଦିଆ ସକାଳର ମୂର୍ଚ୍ଛନାର ଯେବେ / ଜିଭରେ ଡ଼ାମ୍ଫଣ ଫୋଡ଼ି ନାଚେ ରବିବାର।"(୬) ଚେତନାର ଦ୍ୱନ୍ଦ୍ୱ / ବଙ୍କା ଗୋଡ଼ର ବିକୃତ ଚିତ୍ରପଟଟିଏ ସେ। ଯାହାର ଆଦି ଅନ୍ତ ନାହିଁ। ଆଦିମ କାମନା ବାସନାର ଜାଲରେ ସେ ଛନ୍ଦି

ହୋଇ ପଡ଼ିଛି; ଆଧିଭୌତିକ ସ୍ତରରେ ସ୍ୱର୍ଗୀୟ ସ୍ନାନ ପାଇଁ ତାର ସମୟ ଏବେବି ହୋଇନି। ଫଳତଃ ଏଇ ଲୁହ ଓ ଝଞ୍ଜାଳ ଭିତରେ ତାକୁ ହିଁ ବଞ୍ଚିରହି ସେଠି ଅନ୍ଧାର ରାତିର ସୌନ୍ଦର୍ଯ୍ୟ ଦେଖିବାକୁ ପଡ଼ିବ।

"ସମୟ ହୋଇନି ମୋର ମାଆର ତରାଙ୍କ
ଭିତରୁ ଓହ୍ଲାଇ ମତେ ଗାଧୋଇ ଦେବାର,
ମୁଁ ତେଣୁ ଅପେକ୍ଷା କରେ ବାପାଙ୍କ ଲୁଣିଆ
ଲୁହର ପବିତ୍ର ଜଳେ ଘରୋଇ ସ୍ନାନର।
x x x x
ମତେ ଶୁଣାଯାଏ/ମୋର ସ୍ୱର, କହୁଅଛି ହେ କରୁଣାକର
ମୋର କେଡ଼େ ଭାଗ୍ୟ ଯାହା ଦେଖିଲି ଏ ରାତି,
ଯୁଗେ ଯୁଗେ ମତେ ଦିଶୁ ସୌନ୍ଦର୍ଯ୍ୟ ତାହାର।"(୭)

କବିର ଦୁଃଖ ରହିଛି। ହତାଶା ରହିଛି। ତାକୁ ସେ ସାଫ୍ ସାଫ୍ ମାନିଯାଉଛି। ସାମୟିକ ଜଞ୍ଜାଳର ମୋହକୁ ଏଡ଼େଇ ପାରୁନି କି କାହାର ଅଲଂଘ୍ୟ ଇସାରାରୁ ଲୁଚି ପାରୁନି। ଏହାରି ଭିତରେ କବି ଦଣ୍ଡାୟମାନ। ଛଳନା ନ ରଖି କାମନା ବାସନାର ମୋହଗ୍ରସ୍ତ ଜୀବନକୁ ଖୋଲି ବସୁଛି। "ଛଦ୍ମବେଶ ଥିଲେ ପ୍ରାର୍ଥନା ପରିହାସ ହୋଇଯିବ, ଭଲ ପାଇବା ସରଳ, ସୁନ୍ଦର ନିର୍ବୋଧତା ନ ହୋଇ ଚାଲାକି ହୋଇଯିବ, ଏବଂ ନା ଈଶ୍ୱରଙ୍କ ସହିତ ନା ମଣିଷ ସହିତ ଏପରି ସମ୍ପର୍କ ଗଢ଼ାଯାଇ ପାରିବ ଯାହା ବ୍ୟତିରେକେ ମଧ୍ୟସ୍ଥତା କରିବା ଅସମ୍ଭବ।"(୮)

ନିର୍ଭୟ ଭିତରେ ସଫଳତା ଭିତରେ ସମ୍ପୂର୍ଣ୍ଣ ଜୀବନ ବୋଧର ସ୍ଥିତି ନାହିଁ। ଭୟରେ ବେଳେବେଳେ କମ୍ପିବାକୁ ଭଲ ଲାଗେ। ନିଷ୍ଫଳତା ଭିତରେ ବି ଉବୁଟୁବୁ ହେବାରେ ଆନନ୍ଦ ରହିଛି। ଏହି କ୍ଷୁଦ୍ର ସତ୍ତା ଏକ ପର୍ବତ ପ୍ରମାଣ ବୃହତ୍ତମ ସତ୍ତା ଦ୍ୱାରା ଚୂର୍ଣ୍ଣ ବିଚୂର୍ଣ୍ଣ ହେବାକୁ ଇଚ୍ଛା ପୋଷଣ କରୁଥିବା ବେଳେ ଏକ ଅନୁତ୍ତରିତ ସମୟ ନିକଟରେ ସେ ପହଞ୍ଚି ସାରିଥାଏ। ଏଇ ଶବ୍ଦମୟ ମହା ସାଗରରେ ସେ କାଠରୁ ଟୁକୁଡ଼ା ପରି ଭାସିଚାଲେ। ଅନନ୍ତତ୍ୱରେ ସମ୍ମିଳିତ ହୋଇ ପାରୁନି ଯଦିଓ ତାହା ହିଁ ତାର ଅଭୀଷ୍ଟ ଲକ୍ଷ୍ୟ। "ଏବଂ ମୋ ଅନ୍ତିମ ଦିନ/ଥରୁଥରୁ ହୋଇ ଠିଆ ହୋଇଛନ୍ତି ସମୁଦ୍ର କୂଳରେ/ଅନାଥ ଶିଶୁଙ୍କ ପରି ମଇଳା ଓ ସୁତୁବୁତୁ ଲଗାଣ ବର୍ଷାରେ।"(୯)

ପିଣ୍ଡ ମଧ୍ୟରେ ବ୍ରହ୍ମାଣ୍ଡକୁ ଥାପି ପାରୁନି - ଏଯାବତ୍ କାବ୍ୟ ପୁରୁଷ। ତେଣୁ ତାର ସନ୍ତାପ ବଢ଼ିଯାଉଛି ଠିକ୍ ଭୀମଭୋଇଙ୍କ ପରି। ଖାଲି ସୀମାହୀନ ସମୁଦ୍ର ଓ ମହାଶୂନ୍ୟ। ତା' କୂଳରେ କାକୁସ୍ଥ ହୋଇ ଠିଆ ହୋଇଛି ପଞ୍ଚଭୂତର କଳେବର। "ବଖାଣରେ ଦୁଃଖ ଅଧିକରେ ଶୋକ ହୃଦରୁ ଉଠୁଛି କୋହ, ପଞ୍ଚଭୂତ ଆତ୍ମା ନିତ୍ୟେ କାନ୍ଦୁଅଛି କ୍ଷଣେ ସୁସ୍ଥ ନାହିଁ ଦେହ।"(୧୦) ବହୁବର୍ଷ ତଳେ ଭେଟିଥିବା ସନ୍ନ୍ୟାସୀତ୍ୱକୁ ସେ ଅପ୍ରମାଣିତ କରିବା ପାଇଁ ଘରଦ୍ୱାର, ପତ୍ନୀ, ପୁତ୍ରକଳତ୍ର ଓ ଦାୟିତ୍ୱ ଭିତରେ ନିଜକୁ ମିଶାଇ ଦେଲେ ମଧ୍ୟ 'ବରଂ ମୋ ଧାରଣା ହେଲା ସେ ସର୍ବଦା ଜଗିଛି ବାଟ/ମୋ ସଂକ୍ଷିପ୍ତ ସୁଡ଼ଙ୍ଗର ଅନ୍ଧାର ମୁହଁରେ'(୧୧) ଭୀମଭୋଇ ମଧ୍ୟ ଏହି ପାର୍ଥିବତାଗ୍ରସ୍ତ ସାଧାରଣ ମଣିଷର ଅନ୍ଧାରିପଣିଆକୁ ଏମିତି ଦେଖେଇଛନ୍ତି-

"ବୋଇଲେ ଆମ୍ଭେ ଖାଇବା ପିଇବା କମାଣିର କଥା ଜାଣୁ।
ପାଞ୍ଚମାଣ ପାଞ୍ଚ ବୋଡ଼ି ଘରେ ଥିଲେ ଆଉ କାହାକୁ ନ ଗଣୁ।।
x x x x
ପୁତ୍ର ଦୁହିତା ଗୁଡ଼ାଏ ଜାତକଲେ ସେଇଟି ଆମ୍ଭର ସବୁ।
ଲୋକହସା ହଟହଟା ହୋଇବାକୁ କିମ୍ବା ମହିମା ଭଜିବୁ।"(୧୨)

ଏବେ ଏ ପାର୍ଥିବ ଜଞ୍ଜାଳର ଅସାରତ୍ବ ପ୍ରତିପାଦିତ ହୋଇଯାଏ। ସବୁ ଲାଗେ ବିଷମ ବିଷମ। ତେଣୁ ସେ ଅନ୍ୟ ଦିଗକୁ ପାଦ କାଢ଼ି ସାରିଲେଣି ଏବଂ ସେଠି ଅନୁଭବକୁ ଆସେ, "ମତେ ଲାଗେ ମୁଁ ବି ଏକ ଛୋଟ ପିଲା ମୋର / ପାଖେ ଶୋଇଥିବା ପିଲାମାନଙ୍କଠୁ ବୟସରେ କମ୍/(ଯଦିଓ ମୋ ମୁଣ୍ଡଯାକ ଧଳାବାଳ ଓ ଗଣ୍ଠିରେ ବାତର ଟିଁକ୍ରାର)।"(୧୩)

ଇଲିଅଟଙ୍କ ପୋଡ଼ାଭୂଇଁରେ ଯେପରି ନିଷ୍ଫଳ ଆଧ୍ୟାତ୍ମିକ ଅନ୍ବେଷା ରହିଛି ସେହିପରି ରମାକାନ୍ତଙ୍କ ଅଧିକାଂଶ କବିତାରେ ସେଇ ଆଧ୍ୟାତ୍ମିକ ନିଃସଙ୍ଗତା ଓ ପରମ ଦୁଃଖ ଭରି ରହିଛି। ଅଗ୍ରଜ କବି ଗୁରୁ ପ୍ରସାଦ ମହାନ୍ତି ଯେପରି 'କାଳପୁରୁଷ'ରେ ଅକ୍ରୂର ମାଧ୍ୟମରେ 'ନିର୍ମୂଳି ଲତାରେ ଅରୁନ୍ଧତୀ ତାରାର ଆଲୁଅ' ଖୋଜିଛନ୍ତି ବା ନିଜର ମୂଳ ଖୋଜିବାକୁ ଯାଇ ଦିଶିହରା ହୋଇ ପଡ଼ିଛନ୍ତି, ସେହିପରି ରମାକାନ୍ତ ରଥ ଅନୁଭବ କରନ୍ତି-

"ପଡ଼ିଆରେ ଓ ଗଳି କନ୍ଦିରେ
ଭଙ୍ଗାରୁଜା ବିବେକର ଆବର୍ଜନାପୂର୍ଣ୍ଣ କୋଠରୀରେ
ଅଚଳ ପାପୁଲି ବସିରହେ ମନସ୍ତାପେ,
ଡ଼ାକବାଲା ପରି ବୁଲେ ଆତ୍ମା ଖୋଜି ନିଖୋଜ ଠିକଣା।"(୧୪)

'ସଚିତ୍ର ଅନ୍ଧାର'ରେ ଏହି ପରମ ଦୁଃଖ ପୁଣି ସେହି ଦେହ ଓ ଦେହାତୀତର ସଙ୍ଘର୍ଷ ଦେଇ ବିକଶିତ। ପିଲାଦିନ ସକାଳର ଖରାପରି କୋମଳ ଓ ପ୍ରତିଶ୍ରୁତି ପୂର୍ଣ୍ଣ ହେଲେ ବି ଯୌବନ ଆଜି ନିଷ୍ଫଳ ଠିକ୍ ମରୁଭୂମି ପରି। ଧମନୀରେ ମଇଳା କେନାଲର ପାଣି। ଅଶୁଭ ରାତି ପରି ଭାଗ୍ୟ। ସେ ନିଜେ ହିଁ ମହିଷାସୁର୍। ନିଜର ବିମର୍ଷ ଭାଗ୍ୟକୁ ସେ ଆବୋରି ବସିଚି। ଏହାରି ଭିତରେ ସେ ଏକ ଅଦୃଶ୍ୟ କ୍ଷୟକାରୀଣୀ ଶକ୍ତିର (ଦୁର୍ଗା ?) ଶିକାର ହୋଇ ଯାଉଛି। 'ନିର୍ଯ୍ୟାତନା ଠିଆ ହୁଏ ଧରି ରକ୍ତମାଂସ କଳେବର।'(୧୫) ପ୍ରତ୍ୟେକ ମଣିଷତ ଆଜି ଗୋଟେ ଗୋଟେ ମଣିଷାସୁର।

ପ୍ରତି ଯଶୋଦା ଅନ୍ତରରେ ଆଜି ଅନିର୍ବଚନୀୟ ସନ୍ତାପ। ପୁଅକୁ ତାର ଛାତିର କଣ୍ଠାବଣରେ ଶୁଆଇ ଦେବ। ଅଲରା ବାଳକୁ ମରୁଭୂମିର ପବନରେ ସଜାଡ଼ିବ। ସମୁଦ୍ର ଓ ଆକାଶକୁ ତାକୁ ପିନ୍ଧେଇଦେବ। କହ୍ନେଇ ଆଉ ଫେରିନି ଗାଈ ଗୋଠରୁ। ସମସ୍ତେ ଶୂନ୍ୟସ୍ଥାନଟିଏ ଦେଖିଲେ ମଧ୍ୟ ଯଶୋଦା ଧାଇଁ ଯାଉଛି ସେଇ ଅଗମ୍ୟ ସ୍ଥାନକୁ। ସେଠି ବିଶ୍ୱରୂପ ଦର୍ଶନ। ଯଶୋଦା ଓ କୃଷ୍ଣଙ୍କ ଭିତରେ କିଛି ତଫାତ୍ ନାହିଁ। "ଏଠାରେ / ପୃଥିବୀର ସବୁଲୋକେ, ସବୁ ପଶୁପକ୍ଷୀ / ମୋ' ଭିତରେ ଏବଂ ତୋ' ଭିତରେ-- ରହିଛନ୍ତି, ସବୁ ନଦୀ ଗଛ ଓ ପର୍ବତ / ଗୋଟିଏ ମାତ୍ରକ ନଦୀ ଗଛ ପର୍ବତରେ/ତାହିଁ ଚାହିଁ ହେଲେ ପରିଣତ।"(୧୬) ପିଣ୍ଡ-ବ୍ରହ୍ମାଣ୍ଡ ତତ୍ତ୍ୱାନୁଯାୟୀ ଏଠି ପିଣ୍ଡ ଭିତରେ ବ୍ରହ୍ମାଣ୍ଡର ଦର୍ଶନ। ମହା ମିଳନ। ପୁଣି ସେହି ପରମ ଦୁଃଖ। ଅତୃପ୍ତ ତୃପ୍ତି।

"ତତେ ଢାକି ମୋ ଓଦା ଛାତିରେ,
ତୋ' ଲାଗି ଗାଉଛି ଗୀତ, କିନ୍ତୁ ଜାଣେ ନାହିଁ
ସେ ଗୀତ ଶୁଭୁଛି ମୋର ସ୍ୱରେ ବା ମୋ
ପୂଅର ସ୍ୱରରେ।"(୧୭)

ପ୍ରଥମରୁ ଧରିନେବାକୁ ହେବ ଯେ ରମାକାନ୍ତଙ୍କ କାବ୍ୟପୁରୁଷ ଏକ ସୂତ୍ରଧର। ସେ ମଧ୍ୟସ୍ଥତା କରେ ଦେହ ଓ ଦେହାତୀତ ସହିତ। ଜୀବନ ଓ ମୃତ୍ୟୁ ସହିତ। ଘୃଣା ଓ ଭଲ ପାଇବା ସହିତ। ତେଣୁ ସ୍ୱଭାବତଃ ଏହି ପାର୍ଥିବ ସତ୍ତାଟି ନିଜକୁ ଖୁବ୍ ଭଲପାଇ ବସେ। ଜୈବିକ ପ୍ରେମରେ ଘାରି ହୁଏ। ମୃତ୍ୟୁରେ ବି ବ୍ୟଥିତ ହୁଏ। ନିଜକୁ ନିଜେ ଶତ୍ରୁତା କରେ। ସେ ବି ବହୁରୂପୀ।

"ମୁଁ ଅସଂଖ୍ୟ ରୂପନିଏ ବୃକ୍ଷଲତା ପଶୁପକ୍ଷୀ ହୁଏ
ମୁଁ ସମୁଦ୍ର ମୁଁ ଦିନ ମୁଁ ରାତି।
ପ୍ରତିରୂପ ତା' ନିଜର ମୃତ୍ୟୁର ଆଲୋକେ
ଲିଭିଯାଏ, ମୁଁ ହିଁ ରହିଯାଏ।"(୧୮)

ଏଠି 'ମୁଁ' ଆତ୍ମମ୍ଭରିତାର ପ୍ରତିଭୂ ନୁହେଁ ବରଂ ଏହି ଅହଂଭାବ ଏକ ଉତ୍ତରିତ ଅବସ୍ଥାରେ ଉପନୀତ ହୋଇଯାଏ ଯେଉଁଠି ସମଗ୍ର ବ୍ରହ୍ମାଣ୍ଡକୁ ନିଜ ପିଣ୍ଡରେ ଦର୍ଶନ କରେ ଏବଂ ପ୍ରତିରୂପ (Form) ମୃତ୍ୟୁ କବଳିତ ହେଉଥିଲେ ମଧ୍ୟ ସେହି 'ମୁଁ', (ଅହଂ-ବ୍ରହ୍ମସତ୍ତା) ଚିରଦିନ ଅମ୍ଳାନ ରହେ। ନିଜର ଶବକୁ କୋଳରେ ବୋହି ସେ ଜନ୍ମଜନ୍ମାନ୍ତର ପଥ ଚାଲେ। ସେ ମୂର୍ଦ୍ଧାର ବି ବେଳେବେଳେ ଜୀଇଁ ଉଠେ ଏବଂ ବିଳାପ କରେ। ଅର୍ଥାତ୍ ରୂପଟି (Form) ପାର୍ଥିବତ୍ୱ ଭିତରେ ଚକଟି ହେଲାବେଳେ 'ମୁଁ' ସତ୍ତାଟି ରୂପର ଅନ୍ତର୍ନିହିତ ଚେତନାକୁ ସାନ୍ତ୍ୱନା ଦିଏ ଓ ଉତ୍ତାନପାଦ କରେ। ଏଇ ଅନୁଭବ ଏକ ଉତ୍ତରିତ ଅନୁଭବ ଯାହା ଆମ ଶାସ୍ତ୍ରୀୟ ପରମ୍ପରାରେ ସ୍ୱୀକୃତ।

'ଶ୍ରୀରାଧା' ନଈରେ ଗାଧୋଇଲା ବେଳେ ତାଙ୍କ ସମଗ୍ର ଶରୀରର ଅବୟବାବଳୀ, ତାଙ୍କ ଜୀବନର ଆଶା-ହତାଶା, ଇତିହାସ-କିମ୍ବଦନ୍ତୀ, ସ୍ୱାମୀ-ଘରସଂସାର, ଜନ୍ମ-ମୃତ୍ୟୁ କିଛି ତାଙ୍କର ନୁହେଁ ବୋଲି ଅନୁଭବ କରନ୍ତି। ନଈ ହେଉଛି ଏଠି ଏକ ଉର୍ଦ୍ଧ୍ୱାୟିତ ଚେତନା, ଯାହା ଭିତରେ ସେ ନିମଜ୍ଜିତ ହେଲାମାତ୍ରେ ସବୁକିଛି ଆପଣାର ସତ୍ତାଠାରୁ ମିଛ ଲାଗେ।

"ମୁଁ ସର୍ବଦା କାଙ୍ଗାଳୁଣୀ, ଅନ୍ତରୀକ୍ଷ ଯାଏଁ
ପ୍ରସାରିତ ମୋର ଦୁଇ ସୀମାହୀନ ବାହୁଙ୍କ ଭିତରେ
ମୁଁ ଉଦ୍‌ଗ୍ରୀବ ଶୂନ୍ୟସ୍ଥାନଟିଏ।
ଖାଲି ଶୂନ୍ୟସ୍ଥାନଟିଏ ହୋଇ ରହିଯିବା
କାହା କାହା କପାଳେତ ଥାଏ।"(୧୯)

ଏହି ଶୂନ୍ୟସ୍ଥାନ ଭିତରେ ହିଁ ସବୁ ପ୍ରାପ୍ତି। ମହା ମିଳନର ଭାବ। ପରମ ଜ୍ଞାନ। ଏଣିକି ଏଇ ଶୂନ୍ୟତା ଭିତରେ; ଆପଣାର ଶୂନ୍ୟତା ଭିତରେ ରାସକ୍ରୀଡ଼ା ପାଇଁ ଯଥେଷ୍ଟ ସ୍ଥାନ ରହିଯାଏ। ବାରମ୍ବାର ସେ ସେଠାକୁ ଆସିବ ଯେତେ ନିନ୍ଦାବାଜଣା ବାଜୁ। ସେଥିପ୍ରତି ନିଘା ନାହିଁ। "ମୁଁ କିନ୍ତୁ ଆସିବି/x xପ୍ରତ୍ୟେକ ରାତିରେ ଫେରି ତମରି ପାଖକୁ/ଯେ

ପର୍ଯ୍ୟନ୍ତ ମୁଁ ନିଶ୍ଚିହ୍ନ ହୋଇ ଯାଇ ନାହିଁ/ପୂରାପୂରି ତମ ଶୂନ୍ୟତାରେ।''(୨୦) ଏହି ଶୂନ୍ୟକୁ 'ବିଷ୍ଣୁଗର୍ଭ ପୁରାଣ'କାର ଚୈତନ୍ୟ ଦାସ ନିମ୍ନୋକ୍ତ ମତେ ବର୍ଣ୍ଣନା କରିଛନ୍ତି।

''ଶୂନ୍ୟ ସଙ୍ଗତେ ଶୂନ୍ୟସେ ଶୂନ୍ୟେ ଶୂନ୍ୟରୂପୀ
ଶୂନ୍ୟ ସଙ୍ଗତେ ମିଶିଅଛି ସକଳ ସ୍ଥାନେ ବ୍ୟାପି।
ଶୂନ୍ୟ ସେ ତାହାର ଅଟଇ ନିଜଘର
ଶୂନ୍ୟରେ ଥାଇ ଶୂନ୍ୟେ କରଇ ବିହାର।''

ଅଚ୍ୟୁତାନନ୍ଦ ଦାସ 'ଶୂନ୍ୟ ସଂହିତା'ରେ ସେହି ଶୂନ୍ୟ ପୁରୁଷକୁ ମଧ୍ୟ ରୂପ ଦେଇଛନ୍ତି-

''ଶୂନ୍ୟ ପୁରୁଷ ଉଦାସରେ ରହେ।
ଶୂନ୍ୟ ପୁରୁଷ ସବୁ ମାୟା ଭ୍ୟାୟେ।
+ + + +
ଶୂନ୍ୟ ପୁରୁଷ ଅଲଗେ ରହିଛି।
ଶୂନ୍ୟ ପରେ ରହି ଲୀଳା କରୁଛି।''

ଏହି ଶୂନ୍ୟତତ୍ତ୍ୱ ସମ୍ପର୍କରେ ନାଗାର୍ଜ୍ଜୁନଙ୍କ ମତକୁ ଉପସ୍ଥାପନ କରି ଗବେଷକ ଶ୍ରୀ ମନୋରଞ୍ଜନ ରାୟ କହନ୍ତି- ''ନାଗାର୍ଜ୍ଜୁନେର ମତେ ଜଗତେର ଶୁଧୁ ଘାଟନିକ ଅସ୍ତିତ୍ୱ ଆଛେ। ଏଖାନେ ଜିନିଷ କ୍ଷଣିକ ଓ ନୟ, ଶାଶ୍ୱତ ଓ ନୟ, ଏକ ଓ ନୟ, ପୃଥକ ଓ ନୟ, ଉତ୍ପତ୍ତି ନାଇ, ବିନାଶ ଓ ନାଇ, ଆସେଓନା, ଯାୟଓନା, + + ନାରୀ ନାଇ, ନର ନାଇ, ଜୀବନ ନାଇ, ସତ୍ତା ନାଇ, ଆତ୍ମା ନାଇ, ସବଇ ଅବାସ୍ତବ, ସବଇ ଅନସ୍ତିତ୍ୱ, ସ୍ୱପ୍ନେର ମତୋ, ଆଲେୟାର ମତୋ, ଜଲେର ସୂର୍ଯ୍ୟେର ପ୍ରତିବିମ୍ବେର ମତୋ ବିଶ୍ୱଜନୀନ ହେତୁର ଫଲଛାଡ଼ା କିଛୁ ନାଇ ତ ସବ୍ ଶୂନ୍ୟତା -- ବସ୍ତୁ ବଲେଛେନ୍ ତା' ଶୂନ୍ୟନୟ, ଅଶୂନ୍ୟନୟ, ଶୂନ୍ୟ ଅଶୂନ୍ୟ ଉଭୟ ନୟ, ଶୂନ୍ୟ ଅଶୂନ୍ୟ ଥେକେ ପୃଥକ୍ ନୟ; + + ଶୂନ୍ୟତାର ଯେ ଜ୍ଞାନ ତା' ହଚ୍ଛେ ପରମାର୍ଥ ବା ପରମଜ୍ଞାନ।''(୨୧)

ଏଇ ଶୂନ୍ୟ ସହିତ ମିଳନ ପାଇଁ ଜୀବନରେ ତାକୁ ଅନେକ ଲୁହ ଗଡ଼େଇବାକୁ ପଡ଼େ। ସେଥିରେ ହିଁ ପରମ ତୃପ୍ତି। ପରମ ଦୁଃଖ ଭିତରେ ପରମ ସନ୍ତୋଷ।

''ତମେ ବୁଝିପାରିବନି କେତେ ଭଲଲାଗେ
ଯେବେ ଲୁହ ପୋଛି ହୋଇଯାଏ
ପ୍ରଥମେ ପ୍ରଥମ ବୁନ୍ଦା, ତା'ପର ବୁନ୍ଦା ବି
ଶେଷ ବୁନ୍ଦା ରହିଥିବା ଯାଏଁ।''(୨୨)

ପରବର୍ତ୍ତୀ ମୁହୂର୍ତ୍ତରେ ସବୁ ମାୟା ଅସହ୍ୟ ଲାଗେ। ଯଦି ସବୁ କିଛି କଳ୍ପନାପ୍ରସୂତ ତେବେ ଅଧୈର୍ଯ୍ୟଭାବେ ରତିଭିକ୍ଷା ଓ ଓଠ ସହ ଓଠର ମିଳନ କାହିଁକି? ଯଦି ଏଇ ଯମୁନା ଘାଟ, ଏଇ ବୃନ୍ଦାବନ ଓ ଏଇ କଦମ୍ବ ଫୁଲ ସବୁ କିଛି ମିଛ ତେବେ ବି ସେଥିରେ ଦୁଃଖ ନାହିଁ। ପୁଣି ଭାବାନ୍ତର। 'ତମର ରହସ୍ୟ ଥାଉ ତମଠାରେ।' ଆଉ ଯୁକ୍ତିତର୍କର ଆବଶ୍ୟକତା ନାହିଁ। ଆତ୍ମପ୍ରତ୍ୟୟ ଓ ଆତ୍ମସମର୍ପଣ ଭିତରେ ହିଁ ସବୁ କିଛିର ପ୍ରାପ୍ତି। 'ତମକୁ ରଖିବା ପାଇଁ ଜୀବନର ପ୍ରତି ମୁହୂର୍ତ୍ତରୁ/ଅନ୍ୟ ସବୁ ଭାଗ୍ୟ କାଢ଼ିଦେଲି।''

'ଶ୍ରୀରାଧା'ରେ 'ସପ୍ତମ ଋତୁ' କି 'ସଚିତ୍ର ଅନ୍ଧାର'ର ଆଧ୍ୟାତ୍ମିକ ନିଃସଙ୍ଗତା କଟିଯାଇଛି।

ଏଠି କାବ୍ୟପୁରୁଷ ଆଉ ବେଶୀ ବ୍ୟଥିତ ନୁହେଁ। ବ୍ୟାକୁଳିତ ନୁହେଁ। ଶ୍ରୀରାଧା ଅନୁଭବ କରିଛି, 'ତମେ ତ ମୋ ହତାଶାର ପରିପୂର୍ଣ୍ଣ ରୂପ।' ତା'ରି ଭିତରେ ହିଁ ଏକ ସମନ୍ବିତ ଜୀବନ ତାକୁ ବିତେଇବାକୁ ପଡ଼ିବ ହିଁ ପଡ଼ିବ।

## ପାଦଟୀକା.

୧. + + ଶଙ୍ଖାନ୍ ଦଧ୍ମୁଃ ପୃଥକ୍ ପୃଥକ୍॥୧୮॥
ସଘୋଷୋ ଧାର୍ତ୍ତରାଷ୍ଟ୍ରାଣାଂ ହୃଦୟାନି ବ୍ୟଦାରୟତ୍।
ନଭଶ୍ଚ ପୃଥିବୀ ଚୈବ ତୁମୁଲୋଽଭ୍ୟନୁନାଦୟନ୍॥୧୯॥

୨. ଦୃଷ୍ଟ୍ୱେମାନ୍ ସ୍ୱଜନାନ୍ କୃଷ୍ଣ। ଯୁଯୁତ୍ସୂନ ସମବସ୍ଥିତାନ୍।
ସୀଦନ୍ତି ମମ ଗାତ୍ରାଣି ମୁଖଞ୍ଚ ପରିଶୁଷ୍ୟତି ॥୨୮॥
ବେପଥୁଶ୍ଚ ଶରୀରେ ମେ ରୋମହର୍ଷଶ୍ଚ ଜାୟତେ।
ଗାଣ୍ଡିବ ସଂସ୍ରତେ ହସ୍ତାତ୍ ତ୍ୱକ ଚୈବ ପରିଦହ୍ୟତେ॥୨୯॥
ନ କାଙ୍କ୍ଷେ ବିଜୟଂ କୃଷ୍ଣ। ନ ଚ ରାଜ୍ୟଂ ସୁଖାନିଚ॥୩୧॥
-ଶ୍ରୀମଦ୍‌ଭଗବତ୍‌ଗୀତା- ଅର୍ଜ୍ଜୁନ ବିଷାଦ ଯୋଗଃ।

୩. ''କାଲୋଽସ୍ମି ଲୋକକ୍ଷୟ କୃତ୍ ପ୍ରବୃଦ୍ଧୋ ଲୋକାନ୍
ସମାହର୍ତ୍ତୁମିହ ପ୍ରବୃତ୍ତଃ।
ଋତେଽପି ତ୍ୱାନ୍ ଭବିଷ୍ୟନ୍ତି ସର୍ବେଯେଽବସ୍ଥିତାଃ
ପ୍ରତ୍ୟନୀକେଷୁ ଯୋଧାଃ॥୩୨॥
ତସ୍ମାତ୍ ତ୍ୱମୁତ୍ତିଷ୍ଠ ଯଶୋ ଲଭସ୍ୱଜିତ୍ୱା
ଶତ୍ରୂନ୍ ଭୁଙ୍କ୍ଷ୍ୱ ରାଜ୍ୟଂ ସମୃଦ୍ଧମ୍।
ମୟୈବୈତେ ନିହତାଃ ପୂର୍ବମେବ
ନିମିତ୍ତ ମାତ୍ରଂଭବ ସବ୍ୟସାଚିନ୍॥୩୩॥
-ଶ୍ରୀମଦ୍ ଭଗବତ ଗୀତା-ବିଶ୍ୱରୂପ ଦର୍ଶନ ଯୋଗଃ।

୪,୫. ଦ୍ୱିତୀୟ ବିଚାର- ସପ୍ତମ ଋତୁ- ପୃ ୨

୬. ଛୁଟିର ସ୍ମୃତି- ତତ୍ରୈବ- ପୃ ୩

୭. ଭାସମାନ ଦିନ- ତତ୍ରୈବ- ପୃ ୫-୭

୮. ଭୀମଭୋଇଙ୍କ ଦୃଷ୍ଟାନ୍ତ- ରମାକାନ୍ତ ରଥ- ଝଙ୍କାର- ବିଷୁବ ୧୯୮୨- ପୃ ୨୭

୯. ଯାଅ ନାହିଁ- ସପ୍ତମ ଋତୁ- ପୃ ୧୨

୧୦. ସ୍ତୁତି ଚିନ୍ତାମଣି- ୧ମ ବୋଲି- ଭୀମ ଭୋଇ

୧୧. ଆମର ବିମର୍ଷ ଭାଗ୍ୟ- ସପ୍ତମ ଋତୁ- ପୃ ୧୪
(ଭୀମ ଭୋଇଙ୍କ କଷା କଉପିନୀ ଧାରୀ ଅବଧୂତଙ୍କ ସହିତ ଏଇ ସନ୍ୟାସୀର ସାମଞ୍ଜସ୍ୟ ରହିଛି।)

୧୨. ସ୍ତୁତି ଚିନ୍ତାମଣି- ୨୭ଶ ବୋଲି- ଭୀମ ଭୋଇ

୧୩. ଆମର ବିମର୍ଷ ଭାଗ୍ୟ- ସପ୍ତମ ଋତୁ- ପୃ ୧୫

୧୪. ଭାରତର ତିନିଟି ପ୍ରଧାନ ଋତୁ- ତତ୍ରୈବ- ପୃ ୪୪

୧୫. ଦୁର୍ଗା- ସଚିତ୍ର ଅନ୍ଧାର- ପୃ ୪

୧୬. ଯଶୋଦା- ତତ୍ରୈବ- ପୃ ୭

୧୭. ତତ୍ରୈବ
୧୮. ଚତୁର୍ଦ୍ଦିଗେ ସବୁ ସମୟରେ- ତତ୍ରୈବ- ପୃ ୩୯
୧୯. ଶ୍ରୀରାଧା- ରମାକାନ୍ତ ରଥ- ପୃ ୪
୨୦. ତତ୍ରୈବ- ପୃ ୧୦
୨୧. ଦର୍ଶନେଇ ଇତିବୃତ୍ତ- ପ୍ରଥମ ପର୍ବ (୧୯୫୪) - ଶ୍ରୀ ମନୋରଞ୍ଜନ ରାୟ- ପୃ ୨୪୮-୪୯
୨୨. ଶ୍ରୀରାଧା- ପୃ ୨୦

# ସମୟ ସଚେତନତା ବନାମ ଉତ୍ତରିତ ମୃତ୍ୟୁଚେତନା

ଆଧୁନିକ କାବ୍ୟଗୁରୁ ଟି.ଏସ୍.ଇଲିଅଟ ପୋଡ଼ାଭୂଇଁରେ ମୃତ୍ୟୁକୁ ଭେଟି ଭେଟି ଅବଶେଷରେ ଭାରତୀୟ ବୈଦିକ ବାଣୀରେ ଉଦ୍‌ବୁଦ୍ଧ ହୋଇ ଗାଇଲେ, "Datta, Dayadhvam, Damyatam, Shantih Shantih Shantih."(୧) ୧୯୨୨ ରେ ଯେଉଁ ଏହି ଟିକକ ସୂଚନା ଦେଇଥିଲେ ୧୯୩୯ ର 'The Family Reunion' ନାଟକରେ ତାହା ଆଉରି ତୀକ୍ଷ୍ଣ ହୋଇ ୧୯୪୪ ର 'Four Quartets' ରେ ସାନ୍ଦ୍ରତା ଲାଭ କରିଥିଲା । ପ୍ରାଚ୍ୟ ଦର୍ଶନ (ମୁଖ୍ୟତଃ ଶ୍ରୀମଦ୍‌ଭଗବତଗୀତା ଓ ବେଦ ଉପନିଷଦ) ଦ୍ୱାରା ପ୍ରଭାବିତ ହୋଇ ଏକ ଉତ୍ତରିତ ମାନସ ପ୍ରତି ଉନ୍ମୁଖ ହୋଇ ପଡ଼ିଛନ୍ତି । ମହାକାଳ ସମ୍ପର୍କରେ ଉପରୋକ୍ତ ଚିନ୍ତା ଭିତରେ ସେ ସମୟହୀନ ସମୟକୁ ହିଁ ଭେଟିଛନ୍ତି । ତ୍ରିକାଳର ସମନ୍ୱୟ ଘଟିଛି ବର୍ତ୍ତମାନର ବିନ୍ଦୁରେ । ଉଭୟ ଇଲିଅଟ୍ ଓ ପ୍ରାଚ୍ୟଦର୍ଶନର ପୃଷ୍ଠପଟିକା ଉପରେ ହିଁ ରମାକାନ୍ତଙ୍କ କାବ୍ୟପୁରୁଷ ଦଣ୍ଡାୟମାନ ।

"ଶ୍ରୀ ରଥଙ୍କ କାବ୍ୟବୃତ୍ତ ମଧ୍ୟରେ ଦୁଇଟି ବିଷୟର ପ୍ରାଧାନ୍ୟ ଅନାୟସ ଲକ୍ଷ୍ୟ : ଅମୋଘ ମୃତ୍ୟୁଚେତନା ଓ ଅକ୍ଷମ ଉତ୍ତରଣ ପ୍ରୟାସ । ତାଙ୍କ କବିତାର ପ୍ରାର୍ଥନା ହେଉଛି ମାନବାତ୍ମାର ସେହି ସନାତନ ପ୍ରାର୍ଥନା, 'ମୃତ୍ୟୋର୍ମାଽମୃତଂ ଗମୟ' । ସଦ୍‌ଗତି କାମନା ଭିନ୍ନ କବିତାର ବା ଆଉ କି ପ୍ରାର୍ଥନା ଥାଇପାରେ ? କାବ୍ୟ-ନାୟକ ଜୀବନ ମୃତ୍ୟୁ କୋଳରେ ପ୍ରକାଶ୍ୟ ମୃତ୍ୟୁକୁ ଅପେକ୍ଷା କରି ବଞ୍ଚେ ସିନା, କିନ୍ତୁ କାହିଁ କେବେ ସମ୍ଭବତର ଜୀବନର ମୋହ ଛାଡ଼ିପାରେ ନାହିଁ । ତା'ର ବିଷାଦାକ୍ରାନ୍ତ ଜୀବନବୋଧକୁ କବି କୋବ୍ରିୟେରଙ୍କ ଭାଷାରେ ଭଲ ବୁଝିହେବ । 'Waiting for life to start he died/And lived awaiting death.' ଆମେ ଶ୍ରୀ ରଥଙ୍କ କବିତାରୁ ମଣିଷର ଅନୁତ୍ତରଣୀୟ ଅକ୍ଷମତା ଓ ମହତ୍ତର ସାମର୍ଥ୍ୟର ଦ୍ୱନ୍ଦ୍ୱ ଲକ୍ଷ୍ୟ କରିପାରିବା । କବି ମଣିଷର ଅନିର୍ବାର୍ଯ୍ୟ ଅସାମର୍ଥ୍ୟକୁ ତା'ର ସାମର୍ଥ୍ୟଠାରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ କରି ଦେଖିପାରନ୍ତି ନାହିଁ ।"(୨)

ସପ୍ତମରତ୍ନକୁ ଅବତରଣ କରିବା ପୂର୍ବରୁ କବି 'ଅନେକ କୋଠରୀ'ର 'ବାଘ ଶିକାର' ଭିତରେ ସେହି ମହାକାଳକୁ ଭେଟିଛନ୍ତି । କାଳ ଏଠି ବାଘରୂପୀ । ଏହି ବାଘ କବଳରୁ

ରକ୍ଷା ପାଇବା ପାଇଁ କାବ୍ୟପୁରୁଷ ନୟାନ୍ତକ ପ୍ରଚେଷ୍ଟା କରିବା ସତ୍ତ୍ୱେ ପୁଣି ଥରେ ସେହି ବାଘର ଆଗମନକୁ ଅପେକ୍ଷା କରେ। 'ଯେତେବେଳେ ଚନ୍ଦ୍ର ବୁଡ଼ିଯିବ/ଅନ୍ଧାରର ସମୁଦ୍ରକୁ ଦୁଲୁସାଇ ଫେରିବ ୮ସେ ବାଘ।' ବାଘର ଆଗମନ ସୁନିଶ୍ଚିତ। ଭର୍ତ୍ତୃହରି 'ବୈରାଗ୍ୟ ଶତକମ୍'ରେ କହି ରଖନ୍ତି, ''ବ୍ୟାଘ୍ରୀବ ତିଷ୍ଠତି ଜରା ପରିତର୍ଜୟନ୍ତୀ''। ଯୋଗବାଷିଷ୍ଠକାର ମଧ୍ୟ ମୃତ୍ୟୁର ବିବିଧ ନଟରୂପକୁ ଦର୍ଶାଇଛନ୍ତି :

''ହରତ୍ୟୟଂ ନାଶୟତି କରୋତ୍ୟତ୍ତି ନିହନ୍ତି ଚ।
କାଳଃ ସଂସାର ନୃତ୍ୟୋହି ନାନା ରୂପଂ ଯଥା ନଟଃ॥
ଭିନତ୍ତି ପ୍ରବିଭାଗସ୍ଥ-ଭୂତ ବୀଜାନ୍ୟନାରତମ୍।
ଜଗତ୍ୟସତ୍ୟା ବନ୍ଧାନ୍, ଦାଡ଼ିମାନି ଯଥା ଶୁକଃ॥
ଶୁଭାଶୁଭ-ବିଷାଣାଗ୍ର-ବିଲୁନଜନ ପଲ୍ଲବଃ।
ସ୍ଫୂର୍ଜତି ସ୍ଥୀତ ଜନତା-ଜୀବ ରାଜିର୍ବନୀ ଗଜଃ॥''
(ଯୋଗ ବାଷିଷ୍ଠ ରାମାୟଣ- ୨୩- ୧୧/୧୨/୧୩)

ଅର୍ଥାତ୍, ଯେପରି ଶୁକପକ୍ଷୀ ଡ଼ାଳିମ୍ବଫଳ ବିଦୀର୍ଣ୍ଣ କରି ତାହାର ବୀଜ ସମୂହ ଭକ୍ଷଣ କରେ, ସେହିପରି କାଳ ମଧ୍ୟ ଏହି ଅସତ୍ ଜଗତ ଭେଦକରି ତଦନ୍ତର୍ଗତ ଜୀବସମୁଦାୟକୁ ଅନବରତ ଭକ୍ଷଣ କରୁଛି। ଯେପରି ବନହସ୍ତୀ ଶୁଣ୍ଡାଗ୍ର ଦ୍ୱାରା ଆକର୍ଷଣ କରି ତରୁମାନ ଉତ୍ପାଟିତ କରେ ସେହିପରି କାଳ ମଧ୍ୟ ଏହି ଜଗତକୁ ନିରନ୍ତର ଆଲୋଡ଼ିତ ଓ ଉନ୍ମଥିତ କରୁଛି। ଏହିପରି ବହୁରୂପୀ ନଟପରି କାଳ କ୍ରୀଡ଼ାରତ ଅଛି।

'ସପ୍ତମଋତୁ' ପାଇଁ ବୋଧହୁଏ 'ବାଘଶିକାର' ଥିଲା ଏକ ପ୍ରସ୍ତୁତି ପର୍ବ। ଚେତନା ଏଠି କାଳୋତ୍ତୀର୍ଣ୍ଣ ହୋଇଛି। ସପ୍ତମ ଋତୁରେ ଆଉ ମୃତ୍ୟୁ ପ୍ରତି ଭୟଭାବ ନାହିଁ। ପ୍ରାତ୍ୟହିକ କର୍ମପରି ମୃତ୍ୟୁକୁ ମଧ୍ୟ ସେ ଆନନ୍ଦ ଚିତ୍ତରେ ବରିନିଏ ବିନା ଦ୍ୱିଧାରେ, ବିନା ଆତଙ୍କରେ। ''ଅନ୍ୟ କେତେ କାମ ପରି ମୃତ୍ୟୁ ଏକ କାମ, ସେଥିପାଇଁ/ପଛଘୁଞ୍ଚା ନାହିଁ କିମ୍ବା ଅଯଥା ବ୍ୟସ୍ତତା/ ନାହିଁ ବା ଅପରିପକ୍ୱ ବିମର୍ଷତା ନାହିଁ।'' (୩) ନିଜକୁ ଯେତେ ଯାହା ଉପଚାର ଭିତରେ ରଖି ଯେଉଁ ଦିଗରେ ଯେଉଁ ବାଗରେ ଜୀବନ ବିତାଇଲେ ବି 'ମୃତ୍ୟୁର୍ବୈପ୍ରାଣୀନାଂ ଧ୍ରୁବ'କୁ ସେ ମାନିନେବାକୁ ବାଧ୍ୟ। ଏ ମୃତ୍ୟୁ ଦୈହିକ ବୋଲି ସେ ନିଶ୍ଚିତ। 'ମୃତ୍ୟୁ ନାହିଁ, ମୃତ୍ୟୁ ଅଛି ଖାଲି ହୃଦୟର ଅନ୍ଧାରରେ ଓ ଆଶାର ଅସମର୍ଥତାରେ।' ନିଜେ କୌଣସି ସମାଧାନ ବା ଉତ୍ତରରେ ପହଞ୍ଚିବାକୁ ଆଗ୍ରହୀ ନୁହନ୍ତି। ସେହି ମହାଶୂନ୍ୟ ବା ଭୂମାଠାରୁ ସବୁ ଉତ୍ତର ସବୁ ସମାଧାନ ମିଳିଯାଏ। ତାଙ୍କ ବ୍ୟତୀତ ଏଇ 'ଦଗ୍‌ଧଭୂଖଣ୍ଡକୁ' ଶ୍ୟାମଳ କରିବାର କ୍ଷମତା ଓ ଦକ୍ଷତା ବି ଆଉ କାହାର ନାହିଁ। (୪) କାବ୍ୟପୁରୁଷ ଯେତେବେଳେ ଏକ ସ୍ଥିର ବିନ୍ଦୁରେ ପହଞ୍ଚିଯାଏ ସେତେବେଳେ ସେଠି ଆଉ କୌଣସି ଘଟଣା ନାହିଁ। କାର୍ଯ୍ୟ ନାହିଁ। କାରଣ ବି ନାହିଁ।

''ତମେ ଦେଖାଯାଅ (ତମେ ଚାଲିଯିବା ପରେ)
ନାନାରୂପେ, କୌଣସି ରୂପର
ଅସ୍ତିତ୍ୱ ଯଦିଓ ନାହିଁ ବର୍ତ୍ତମାନେ ଅବା ଭବିଷ୍ୟତେ,
ପ୍ରତିରୂପ ଏଡ଼ିଦିଏ ତାଚ୍ଛଲ୍ୟରେ ସମୟକୁ ଯାହା
ବିନା ବାକ୍ୟବ୍ୟୟେ ବାଣ୍ଟିହୋଇଯାଏ ଅତୀତକାଳ ବା

ବର୍ତ୍ତମାନ କାଳ କିମ୍ବା ଭବିଷ୍ୟତ କାଳର ଖୋପରେ।
ଏଠାରେ କେବଳ ଅଛି ଗୋଟିଏ ସମୟ,
ସେଥିରେ ଜୀବନର ପରେ ମୃତ୍ୟୁ ନାହିଁ କିମ୍ବା ମୃତ୍ୟୁ ପରେ
ପ୍ରାୟଶ୍ଚିତ ନାହିଁ, ସବୁ ମିଶାମିଶି ସେହି
ସମୟରେ, ଏବଂ ଯେବେ ସେ ସମୟ ସରିଯିବ କିଛି
ନଥିବ କେବଳ ଥିବ ଅମାପ ଅନ୍ଧାର
ପ୍ରାଣହୀନ ସମୁଦ୍ର ଓ ପ୍ରାଣହୀନ ତରାଙ୍କ ଭିତରେ।''(୫)

ତେଣୁ ଏଣିକି ଆଉ ଜୀବନ-ମୃତ୍ୟୁ ଭିତରେ କିଏବା ଫରକ୍ ଆଣିବ! ଜୀବନ କିଏ? ମୃତ୍ୟୁ କିଏ? ଯେତେ ମନା କଲେବି କେବେ ବନ୍ଦ ହୋଇ ପାରିବନି। ସେ ଆସିବ ହିଁ ଆସିବ। ''ମେଘ ମନା ମାନେ ନାହିଁ/ଓଦା ଓଦା ନିଃଶ୍ୱାସରେ ଡ଼ାକେ। /ବର୍ଷାର ଅତର ଲାଗି/ ମୋର ମୃତ୍ୟୁ ହଠାତ୍ ମହକେ।''(୬) ସମୟ ଭିତରେ ନିଜେ ସମୟ ପାଲଟି ଯିବାରେ ହିଁ ଆନନ୍ଦ। ସମୟ ନଈ ଭିତରେ 'ବୁଡ଼ିକରି ମରିବା ଅପେକ୍ଷା/ଭଲ ମୃତ୍ୟୁ ନାହିଁ।'(୭) ତେଣୁ ମହାକାଳ (ସ୍ରୋତ ଯେବେ ଅତ୍ୟନ୍ତ ପ୍ରଖର) ସହିତ ଲୀନ ହୋଇଗଲେ ପରମ ତୃପ୍ତି ପ୍ରାପ୍ତ ହୁଏ।

ପାରମ୍ପରିକତାରେ ଶାଗୁଣା ହିଁ ମୃତ୍ୟୁର ପ୍ରତୀକ। ଏକ ହେୟ ନଗଣ୍ୟ ଓ ଅଶୁଭ ପକ୍ଷୀ। 'ଶାଗୁଣା' କବିତାରେ ଆମେ ଶ୍ରୀ ରଥଙ୍କ ମୃତ୍ୟୁ ସମ୍ପର୍କିତ ଦ୍ୱୈତ ଚେତନାକୁ ବେଶ୍ ଲକ୍ଷ୍ୟ କରିପାରୁ। ଗାଁ ମୁଣ୍ଡ ନିମ୍ବ ଗଛରେ ଶାଗୁଣାଟିଏ ବସିଛି। ତା' କ୍ରୁର ଦୃଷ୍ଟି ସବୁରି ଉପରେ ପଡ଼ିଛି। 'ତା ଦୃଷ୍ଟି ଯେଉଁଠି ପରେ, ଏ ପୃଥିବୀ ସରେ ସେଇଠାରେ।' କାବ୍ୟପୁରୁଷ ରୋଗାକ୍ରାନ୍ତ ହୋଇଯାଏ। ଚମଡ଼ାରୁ ମାଂସ ଝରିପଡ଼େ। ବିଲୁଆ କୁକୁରଙ୍କ ଭିଡ଼ ଲାଗେ। ଚାରିଆଡ଼େ କାନ୍ଦଣା ଲହରୀ। ମୃତ୍ୟୁର କଳାଅନ୍ଧାର ଘୋଟି ସାରିଥାଏ। ପୁତ୍ରକୁ ପିତା ପଠାଇ ଦିଏ ଅନ୍ୟ ଏକ ଅଜଣା ଘରକୁ। ସେଠି ବରଂ ସୁଖେ ମରିଯାଉ। ସେଠି ଆତ୍ମା ସୁଖରେ ରହେ। ଏଠି କିନ୍ତୁ ଏଇ ପାର୍ଥିବ ଦୁନିଆ ଭିତରେ କେବଳ ଅସରନ୍ତି ଦୁଃଖ ଓ ଝଡ଼/ ''ଏଠାରେ/ମୃତ୍ୟୁର ପ୍ରଥମ ଚୋଟ ଆତ୍ମାରେ ବାଜେ ଓ/ଶରୀର ନିଷ୍ପ୍ରାଣ ହୁଏ ଅନେକ ଉତ୍ତାରେ।''(୮) ଏ ଗାଁକୁ ଛାଡ଼ିଯିବା ବେଳକୁ ଗଛର ଫୁଲ, ପକ୍ଷୀଙ୍କ କାକଳି, ଘନିଷ୍ଠ ଅନ୍ଧାର, ଉଜ୍ଜ୍ୱଳ ତାରକା ଆଦି ମନକୁ ପ୍ରଲୁବ୍ଧ କରନ୍ତି। ଏ ସବୁ ସତ୍ତ୍ୱେ ତାକୁ ବି ଏଠୁ ଯିବାକୁ ହେବ। ଏଠି ଜୀବନ କେବଳ ଡ଼ର ଭିତରେ ପହଁରି ଚାଲେ। 'ମୁଣ୍ଡପୋତି ଚାଲିବା' ଭିତରେ ତାର ପରାଧୀନତା ଓ ସନ୍ତାପ ତଥା ଦୁର୍ବଳତା ହିଁ ପ୍ରମାଣିତ ହୋଇଯାଏ। ପରବର୍ତ୍ତୀ ପର୍ଯ୍ୟାୟରେ ପୁଣି କାବ୍ୟପୁରୁଷ ଏଇଠି ହିଁ ରହି ମରିବାକୁ ଭଲପାଏ। ସେହି କଙ୍କାଳ, ମୁର୍ଦ୍ଦାର ମାନଙ୍କ ଭିତରେ ମରିବାରେ ତୃପ୍ତିଥାଏ।

''ଏଠାରେ ମରିବା କିନ୍ତୁ ବହୁତ ଆରାମ।
ମୁର୍ଦ୍ଦାରର ଚତୁର୍ଦ୍ଦିଗେ ଅନୁର୍ବଚନୀୟ
ପ୍ରାକୃତିକ ସୌନ୍ଦର୍ଯ୍ୟ, ନାନାଦି ପକ୍ଷୀଙ୍କ
କାକଳିରେ ମୁଖରିତ ଗଗନ ପବନ।
ସବୁ ଠିକ୍ ସ୍ତୁତିଭଳି ଦେବତା ମାନଙ୍କ

ଖେଳ ପଡ଼ିଆରୁ ବୋହି ଆସୁଥିବା ନଈ ମାନଙ୍କର
ଶୀତଳ ଜଳରେ ଅଛି
ନିସ୍ତାରର ଆନନ୍ଦେ ବିଭୋର।''(୯)

ଏଠି ଶାଗୁଣା ଆଉ ଅଶୁଭ ଶକୁନ ନୁହେଁ, ବରଂ ଦେହକୁ ଦେହାତୀତ କରିବାର ଓ ଚେତନାକୁ ଉତ୍ତାନପାଦ କରିବାର ଏକ ସୂତ୍ରଧର।

ଏହି ଚେତନାର ଆଉ ଏକ ସଫଳ କବିତା 'ଧୀବର'। ଏ ଧୀବର 'କାଳରୂପେଣ' ନାଆ ବାହୁଛି। ଆମେ ଯେଉଁମାନେ ନୋଳିଆ ଘରୁ ବାହାରି ଆସିଛୁ ସମୁଦ୍ରକୁ ଘରେ କହିଛୁ ଯେ ସମୁଦ୍ରରୁ ଫେରିଲା ବେଳକୁ ଆମର ଦେହରେ ନୂଆ ପରାକ୍ରମ ଥିବ ଏବଂ ପୁନର୍ଜୀବନର ସ୍ପଷ୍ଟ ନିଦର୍ଶନ ବି ଥିବ। ମୃତ୍ୟୁ ଏକ ବଡ଼ ସମାନକ (leveller) । ଖଚିଖିଆ ଅକ୍ଷିତ ମଣିଷ ଓ ସମ୍ଭ୍ରାନ୍ତ ମାନବ ସମସ୍ତଙ୍କୁ ସମାନ ଭାବରେ ଡ଼ରାଇଦିଏ। ସମୁଦ୍ର ଯଦି ଆମକୁ ଧ୍ୱଂସ କରିଦିଏ ତେବେ ସେଥିରେ ଆମର ଦମ୍ଭିଲାପଣରେ କ୍ଷତି ହେବନି; କାରଣ ମହାକାଳ ଭିତରେ ମିଶିଯିବାଟା ହିଁ ଏକ ଉତ୍ତରିତ ଭାବ। ଭଗବତ୍‌ଗୀତାର କାଳଚେତନା ସହିତ ଏହା ମଧ୍ୟ ଅନୁରୂପ ଭାବେ ସାଦୃଶ୍ୟ ବହନ କରିଥାଏ -

''କାଲୋଽସ୍ମି ଲୋକକ୍ଷୟ କୃତ୍ ପ୍ରବୃଦ୍ଧୋ ଲୋକାନ୍ ସମାହର୍ତୁମିହ ପ୍ରବୃତ୍ତଃ।''

''ସମୁଦ୍ର ଗର୍ଜିଲାବେଳେ ପ୍ରତି ହୃଦୟରେ
ଆତଙ୍କ ଉପୁଜେ, ଅନ୍ତତଃ ଏତିକି
ସମୁଦ୍ରର ଭଲଗୁଣ-ବିନା ବାଛବିଚାରରେ ନିର୍ଦ୍ଦୟ ହେବା ଓ
ସଭିଙ୍କୁ ଡ଼ରାଇଦେବା ସମାନ ଭାବରେ
ଯାହାଙ୍କର ପିତାମାତା ଆଜୀବନ ଭରଣ ପୋଷଣ
ଧନ୍ଦାରେ ସନ୍ତୁଳି ହେଲେ ଏବଂ ଯାହାଙ୍କର
ଧାରଣା ଯେ ତାଙ୍କ ରକ୍ତ ନୀଳବର୍ଣ୍ଣ ଅଟେ,
ସମସ୍ତେ ସମାନ ଭାବେ ଆତଙ୍କିତ। ସମୁଦ୍ର ଆମକୁ
ଯଦି ଧ୍ୱଂସ କରିଦିଏ ତା ହେଲେବି ଆମେ ଛୋଟଲୋକ
ବୋଲି ସେ ଭାବିବ ନାହିଁ, ଆମ ପିଲାକ ବିଲାଙ୍କ ପାଇଁ
କେଡ଼େ ବଡ଼ ଏକଥା ଟିକକ!''(୧୦)

ଏହି ପ୍ରସଙ୍ଗରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ବର୍ଣ୍ଣିତ ମୃତ୍ୟୁର ସାମ୍ୟଭାବ ତୁଳନୀୟ।

''ନ ତଦସ୍ତୀହ ଯଦୟଂ କାଳଃ ସକଳଘସ୍ମରଃ।
ଗ୍ରସତେ ତଜ୍ଜଗଜ୍ଜାତଂ ପାଥୋଽବ୍ଧେରିବ ବାଡ଼ବଃ'' + +
ଯେ ରମ୍ୟା ଯେ ଶୁଭାରମ୍ଭା ସୁମେରୁଗୁରବୋଽପି ଯେ,
କାଲେନ ବିନିଗୀର୍ଣ୍ଣାସ୍ତେ ଗରୁଡ଼େନେବ ପନ୍ନଗାଃ''(୧୧)

କବି ଥୋମାସ୍ ଗ୍ରେ' କହି ରଖନ୍ତି-

"The boast of heraldry, the pomp of power,
And all that beauty, all that wealth e'er gave,
Awaits alike th' inevitable hour.
The paths of glory lead but to the grave."(୧୨)

'ସଚ୍ଛିତ୍ର ଅନ୍ଧାର'ରେ କାବ୍ୟପୁରୁଷ ସବୁ ଭାଷାକୁ ମିଥ୍ୟା ମଣିଛି। ଭାଷା ସମୟକୁ ଅସ୍ୱୀକାର କରିଛି। "ଭାଷା ମିଛ କଥାଙ୍କର ସଙ୍ଗୀନ୍, ସମୟ/କିଛି ନୁହେଁ--ମୋର ଏବଂ ଭଗବାନଙ୍କର/ମିଛ ସମ୍ପର୍କର ଷଡ଼ରତୁ ଅନୁଯାୟୀ/ଛଅଟି ଅଧ୍ୟାୟ ଏକ ଅଲେଖା ବହିର।" (୧୩) ଜୀବନର ଶେଷ ବର୍ଷ ପରେ ପୁଣି ତା' ପାଖକୁ ବର୍ଷା ଓହ୍ଲେଇ ଆସୁଛି। ଶୃଙ୍ଖଳା ଭୂଇଁକି ଓଦା କରିଦେବାର ସମ୍ଭାବନା ରହିଛି। ପୁଣି ସେ ବାରମ୍ବାର କାମନାକୁ ଭେଟୁଛି। ସମୟକୁ ଭେଟୁଛି। "ମୁଁ ଖାଲି କାମନାଟିଏ, ମୋ ମୃତ୍ୟୁ ସହିତ/ବାରମ୍ବାର ଆଖି ମିଳାଉଛି।" (୧୪) ସେ କାହାର ଅଲଂଘ୍ୟ ଇସାରାକୁ ବାରି ପାରନ୍ତି। ଶାରୀରିକ ଅସହାୟତା ସତ୍ତ୍ୱେ ସେ ସେଠାକୁ ନୟାନ୍ତ ହୋଇ ଦୌଡ଼ି ଚାଲିଛନ୍ତି। "ମୁଁ ତାକୁ ଭେଟିବା ଲାଗି ଦଉଡୁଛି, ସେ ଡ଼ାକ ନିଶ୍ଚୟ / ଆତ୍ମହତ୍ୟା ପରି ଏକ ସମୁଦାୟ ବୋଧଗମ୍ୟତାର।" (୧୫) ଏଥିପାଇଁ କମବଡ଼ ପ୍ରତୀକ୍ଷା ନଥିଲା! ସାରା ଜୀବନ ଘୁଷୁରି ଘୁଷୁରି ଚାଲୁଥିବା ଜାନୁଭଗ୍ନ ଦୁର୍ଯ୍ୟୋଧନ କାହାର ଡ଼ାକରା ଶୁଣି ଥରି ଉଠିଲାଣି। ମାନସୀ ବା ପ୍ରଣୟ ଠାରୁ ଆଉରି କିଛି ପୁରାତନ ଅଥଚ ନିତ୍ୟନୂତନ ବସ୍ତୁର ସେ ସନ୍ଧାନ ପାଏ, ସୃଷ୍ଟି ସର୍ଜନାର ଆଦ୍ୟ ଝଙ୍କାର ଭିତରେ। ସେ ସେଥିରେ ଲୀନ ହୋଇଯିବ।

"ମୁଁ ବୁଝୁଛି ଆଉ କିଛି ଅଛି ଯାହା ଅଟେ
ତମ ପ୍ରେମ ଅପେକ୍ଷା ପୁରୁଣା,
ମୁଁ ବୁଝୁଛି ଆଉ କିଛି ଅଛି ଯେଉଁଥିରେ
ପୃଥିବୀ ସର୍ଜନା ଆଗୁଁଥିବା ବାଦ୍ୟ ଧ୍ୱନି ଶୁଣିଶୁଣି
ମୁଁ ନିଶ୍ଚିହ୍ନ ହୋଇଯିବି, ମୋ ନିସ୍ତେଜ ଦେହ
ମରୁଭୂମି ହୋଇଯିବ, କାଠ କୋଇଲା ଓ/ସ୍ତବ୍ଧତା ଓ ଖରାଦିନ
ବାସୁଥିବା ହାତ ମୋ ଆଖିରୁ/ପୋଛିଦେବ ସବୁଯାକ ଲୁହ।" (୧୬)

କବି ରବୀନ୍ଦ୍ର ନାଥ ଠାକୁର ମଧ ସେହି ଅନନ୍ତର ଡ଼ାକରା ଶୁଣି ବିହ୍ୱଳିତ ହୋଇ ପଡ଼ିଥିଲେ। ତାଙ୍କ ମିଷ୍ଟିକ୍ କାବ୍ୟରେ ରୋମାଣ୍ଟିକ୍‌ଧର୍ମ ପ୍ରବଳ। ସେଥିରେ ଅରୂପ, ଅସୀମର ରହସ୍ୟମୟ ରୂପଧ୍ୟାନ ଅଛି। ଝଡ଼ରାତିରେ ଗଭୀର ନଦୀ, ଗହନ ବନ, ବହଳ ଅନ୍ଧକାର ଅତିକ୍ରମ କରି ପ୍ରାଣର ସଖା କ୍ରମାଗତ ତାଙ୍କ ନିକଟକୁ ଆସୁଛନ୍ତି। ଏ ନଦୀ ସୁଦୂରର କେଉଁ ନଦୀ? ଏଇ ଗହନ ବନ କେଉଁ ବନ?

"ଆଜ୍ ଝଡ଼େର ରାତେ ତୋମାର ଅଭିସାର
ପରାନ୍ ସଖା ବନ୍ଧୁହେ ଆମାର! + +
ସୁଦୂର୍ କୋନ ନଦୀର ପାରେ
ଗହନ କୋନ ବନେର୍‌ଧାରେ
ଗଭୀକୋନ ଅଂଧକାରେ
ହତେଛୋ ତୁମି ପାର୍
ପରାନ୍ ସଖା ବନ୍ଧୁ ହେ ଆମାର।" (୧୭)

କିନ୍ତୁ ତାଙ୍କୁ ହାତରେ ପାଇବା ସମ୍ଭବ ନୁହେଁ। ସ୍ୱପ୍ନରେ ପ୍ରାଣପ୍ରିୟଙ୍କୁ ଦେଖନ୍ତି। ଅଥଚ୍ 'ଉଠିନୁ ଯଖନ ତଖନ ଗିୟାଛଚ୍‌ଲେ।' ଏହି ପ୍ରାଣପ୍ରତିମ ପ୍ରିୟତମ ଦେବତା ହିଁ ମୃତ୍ୟୁ, ଜୀବନସାରା ସେ ତାଙ୍କୁ ଖୋଜିଛନ୍ତି। ଉଲ୍ଲସିତ ପ୍ରାଣ ଶଙ୍ଖୋଳୁଛି। 'ମରଣ ତୁହୁଁ ମମ ଶ୍ୟାମ ସମାନ୍।' ଶ୍ୟାମ ଆସୁନି। ବିରହିଣୀ ରାଧିକା ଜୀବନସାରା ପ୍ରତୀକ୍ଷିତା।

କବି ରମାକାନ୍ତ ମଧ୍ୟ ସେହିପରି ରହସ୍ୟବାଦୀ ଚିନ୍ତା ଭିତରେ ଖୁବ୍ ରୋମାଣ୍ଟିକ୍। 'ସପ୍ତମଋତୁ', 'ସଚିତ୍ର ଅନ୍ଧାର' ଓ 'ଶ୍ରୀରାଧା'ର ପ୍ରାୟ ସମଗ୍ର କାବ୍ୟ ଚେତନାରୁ ଏହାର ସୂଚନା ମିଳିଥାଏ।

"ଜୀବନ ଗୋଟାକ ଯାକ
କଟିଗଲା ଏପରି ଭାବରେ,
ବର୍ତ୍ତମାନ ଆଖିମୋର କ୍ଳାନ୍ତ ଚାହିଁ ଚାହିଁ
ତମେ କାଳେ ଆସୁଥିବ ତାରାଙ୍କ ଭିତରେ,
କାନରେ ନଥିଲା ନିଦ ଚାହିଁଚାହିଁ ତମ
ଆସିବା ଆଗର ଯେଉଁ ବାଦ୍ୟଧ୍ୱନି ଶୁଭେ,
ମୋ ଅଜସ୍ର ଶବ୍ଦଙ୍କୁ ମୁଁ କଲି ପରିଣତ
ଫୁଲରେ ଯେହେତୁ ଚୁମା ନେଲାବେଳେ ନେବ
ଶରତ ଋତୁର ସର୍ବ ପ୍ରଥମ ଅମୃତ।" (୧୮)

ସମସାମୟିକ କବି ସୀତାକାନ୍ତ ମହାପାତ୍ର ଠିକ ସେମିତି ବଗିଚାରେ (ଦେହ) ବସି ଅପେକ୍ଷା କରିଛନ୍ତି। କାଳେ ବନ୍ଧୁ ବିଳମ୍ବ ହେଲେ ବି ଆସି ପହଞ୍ଚିଯାଇ ପାରନ୍ତି। ଶଙ୍ଖୋଳିବା ଭିତରେ କି ଆବେଗର ସମ୍ଭାବନା ଓ ଶିହରଣ ରହୁଛି:

"ମୁଁ ତୁମ ଅପେକ୍ଷାକରେ ବସି ବସି ବଗିଚାରେ
କାଳେ ତୁମେ ଆସୁଥିବ ଫାଇଭ୍ ଡ଼ାଉନ୍ କିମ୍ବା
ବସ ଧରି ଓ ଏଇନେ ପହଞ୍ଚିବ ଚାଲି ଚାଲି
କିମ୍ବା ରିକ୍ସା ଟିଂଟିଂ କରି ଆସି ଛିଡ଼ାହେବ
ଫାଟକ ସାମ୍ନାରେ। ହଠାତ୍ ଡ଼ାକ ଶୁଭିବ,
"ଭଲ ଅଛ ସୀତାକାନ୍ତ, ବହୁଦିନ ପରେ ଆଜି ଦେଖା"।
ହେ ଅତିଥି, ହେ ମୋର ବିଶାଳତମ ଅସହ୍ୟ ବେଦନା
ହେ ମୋ' ପ୍ରାଣ ସଖା।" (୧୯)

'ଆତ୍ମୀୟତାର ତିନୋଟି ପର୍ଯ୍ୟାୟ' କବିତାଟି ପ୍ରାଚ୍ୟ ଦର୍ଶନ ଉପରେ ଆଧାରିତ। 'ଓଲଟ ବୃକ୍ଷେ ଖେଳୁଛି ଲୋଟଣୀ ପାରା' ପରି ଏଠି ମଧ୍ୟ ଚଢ଼େଇଟିକୁ ତିନୋଟି କୁଟାରେ ତିଆରି ବସା ଅର୍ଥାତ୍ ମାୟିକ ତ୍ରିକାଳରୁ ତାକୁ କାଳାତୀତ ଅବସ୍ଥାକୁ ଯିବାକୁ ହେବ। ଏଇ ପର୍ଯ୍ୟାୟର ଅବସ୍ଥା ହିଁ ସପ୍ତମଋତୁ। ଏହି ଆଲୋକ ହିଁ ସଚିତ୍ର ଅନ୍ଧାର। ଏଇ ସ୍ଥିତାବସ୍ଥାରେ ମହାନନ୍ଦ ପ୍ରାପ୍ତି। ପ୍ରେମର କୁହୁକ ସ୍ପର୍ଶରେ ମୃତ୍ୟୁ ବିଲୀନ ହୋଇଯାଏ। ଉତ୍ତୀର୍ଣ୍ଣ ବିଶ୍ୱ ଭିତରେ ବିଚ୍ଛେଦର ସବୁ ଜ୍ୱଳନ ନିର୍ବାପିତ ହୋଇଯାଏ। ଜୀବନର ଦହନ ପ୍ରସମିତ ହୋଇଯାଏ ଏଇଠି ଅଲୌକିକ ଭାବେ।

"ଯାଆରେ ଚଢ଼େଇ ଯାଆ/ତିନିଟି କୁଟାରେ/ତିଆରି ବସାରୁ ଉଡ଼ି
ଗଛପତ୍ର ଶୂନ୍ୟ ଆକାଶରେ। /ସୂର୍ଯ୍ୟ ଚନ୍ଦ୍ର ହୁଅନ୍ତୁ ତୋ/କାନର ଝୁମୁକା
ନିଶ୍ଚଳ ପବନେ ଉଡ଼ୁ/ତୋ ଉଡ଼ନ୍ତା ନାଆର ପତାକା।
ତୋ ବ୍ରହ୍ମାଣ୍ଡେ ବର୍ଷମାସ/ଦିନ ମାନଙ୍କର
ଯାଆ ଆସ ବନ୍ଦ ହେଉ, /ତୋ ଉଡ଼ିବା ହେଉ ଫେରିବାର

ମହାସୁଖ, /ତୁ କାହାର ନୋହୁ/କିଛି ନୁହେଁ ତୋର,
ତୁ କେବଳ/ନିର୍ମାୟା ଚନ୍ଦ୍ରେଇଟିଏ + + +
ପଲଙ୍କ ଉପରୁ/ ଯୁଗଯୁଗ ଚାହିଁଥିବା ବିଦେହୀ ସୁନ୍ଦରୀ
ତୋ' ଭାଗ୍ୟକୁ ଟେକି ଆଣୁ/ଅସଂଖ୍ୟ ଜନ୍ମରୁ ଏବଂ
ଅସଂଖ୍ୟ ମୃତ୍ୟୁରୁ।'' (୨୦)

'ଶ୍ରୀରାଧା'ରେ ତ ମୃତ୍ୟୁଭୟ ସମ୍ପୂର୍ଣ୍ଣ ଅପସାରିତ। ଲୌକିକତା ଭିତରେ ସେହି ଅତୀନ୍ଦ୍ରିୟ ରାଜ୍ୟର ଅଲୌକିକ ରୂପଚିତ୍ର ଦିଆଯାଇଛି। ଏଠି ସାଧାରଣ ମୃତ୍ୟୁ ସହିତ ସେ ଆଦୌ ଜଡ଼ିତ ନୁହେଁ। ମୃତ୍ୟୁକୁ ଅତିକ୍ରମି ଅମୃତର ସନ୍ଧାନ ପାଇ ସାରିଲା ପରେ ଆଉ କେଉଁ ଭୟ? 'Only through time time is Conquered.' ''ମୁଁ କିପରି ବୁଝାନ୍ତି ମୋ ନିଜକୁ ଯେ ମୁଁ ନୁହେଁ/ଏକାକାର ମୋ ମୃତ୍ୟୁ ସହିତ?'' (୨୧)

ବୈଷ୍ଣବ କାବ୍ୟ ପରମ୍ପରାରେ 'ଶ୍ରୀରାଧା'କୁ ମୂଲ୍ୟାଙ୍କନ କରିବାକୁ ଗଲେ ଆମେ ତତ୍ତ୍ୱକୁ ବାଦ ଦେବାକୁ ଯାଇ ସମ୍ପୂର୍ଣ୍ଣଭାବେ ଦେଇପାରୁ ନାହୁଁ। ପ୍ରକୃତି-ପୁରୁଷର ଯେଉଁ ମିଳନ ଆକାଙ୍‌କ୍ଷା ବା ପ୍ରକାରାନ୍ତରେ ଆତ୍ମା-ପରମାତ୍ମାର ଯେଉଁ ମହାମିଳନ ତାକୁ ସାଧାରଣ ଗଣ ସମ୍ମୁଖରେ ଉପସ୍ଥାପିତ କରିବାକୁ ଯାଇ ବୈଷ୍ଣବ ସାଧକମାନେ ମାନବୀୟ ପୃଷ୍ଠଭୂମିକୁ ଆଧାର କରିଛନ୍ତି। ରାଧା ସାମାଜିକ ବନ୍ଧନରେ ଆବଦ୍ଧ। ତଥାପି ସେହି ମୋହନବଂଶୀର ଉଚ୍ଚାଟନରେ ରାଧା ବାଇ ହୋଇ ଉଠନ୍ତି। ସେ ନିଶ୍ଚୟ ଯମୁନା ତଟକୁ ବା ସମୟତୀରକୁ ଯିବାକୁ ବାଧ୍ୟ। ସେଇ ଅଲଂଘ୍ୟ ଇସାରାକୁ ଫାଙ୍କି ଦେବାରେ କାହାର ବା ସାମର୍ଥ୍ୟ ଅଛି? ରମାକାନ୍ତଙ୍କ ଶ୍ରୀରାଧା ମର୍ଘ ସାଧାରଣ ନାରୀଟିଏ ହେଲେ ବି ସେ ଅସାଧାରଣ ଜଣା ପଡ଼ନ୍ତି। ଏଇଠି କବିର ଭାଷା ଆଉ ସମର୍ଥ ହୁଏନି ଶ୍ରୀରାଧାର ପ୍ରକୃତ ରୂପ ଦେବାକୁ। ଯୁଗଯୁଗ ପାଇଁ କବିର ଏଇ ଅଭାବବୋଧ ରହି ଆସିଛି। ଏଇ ଅନନ୍ତ ମହା ଅଭାବ ଭିତରେ ସେ ରାଧାଙ୍କୁ ସେହି ଦେବୀ ସ୍ତରରେ ଛାଡ଼ିଦିଅନ୍ତି।

ପରବର୍ତ୍ତୀ ପର୍ଯ୍ୟାୟରେ 'ଶ୍ରୀରାଧା' ଉପରେ ସ୍ୱତନ୍ତ୍ର ଆଲୋଚନା କରାଯାଇଥିବାରୁ ଏଠି ଆଭାସ ମାତ୍ର ଦିଆଗଲା।

## ପାଦଟୀକା.

୧. What the Thunder said- The Waste Land- Eliot
୨. ମୃତ୍ୟୁଲୋକରେ ଋତୁ ସପ୍ତମ- ଦାଶରଥି ଦାସ- ପୃ ୧୭-୧୮
୩. ଉଜ୍ଜ୍ୱଳ ଭବିଷ୍ୟତ- ସପ୍ତମ ଋତୁ- ପୃ ୫୮
୪. ଶିଷ୍ଟାଚାର- ତତ୍ରୈବ- ପୃ ୫୫
୫. ତମେ ଚାଲିଯିବା ପରେ- ତତ୍ରୈବ- ପୃ ୫୦
୬. ମେଘ- ତତ୍ରୈବ- ପୃ ୪୫
୭. ବୁଡ଼ିମରିବା- ତତ୍ରୈବ- ପୃ ୮୩
୮. ଶାଗୁଣା- ତତ୍ରୈବ- ପୃ ୮୧
୯. ଶାଗୁଣା- ତତ୍ରୈବ- ପୃ ୮୨
୧୦. ଧୀବର- ତତ୍ରୈବ- ପୃ ୯୨
୧୧. ଯୋଗବାଶିଷ୍ଠ ରାମାୟଣ- ୨୩/୪-୮

୧୨. Elegy written in a country churchyanrd -Thomas gray.

୧୩. ସମ୍ବନ୍ଧ- ସଚ୍ଚିଦ୍ର ଅନ୍ଧାର- ପୃ ୨୪

୧୪. ଅଲଘ୍ୟ ଇସାରା'- ତଦ୍ରୈବ- ପୃ ୫୯

୧୫. ତଦ୍ରୈବ

୧୬. ଗୋଟିଏ ସମ୍ବନ୍ଧ ଶେଷେ- ତଦ୍ରୈବ- ପୃ ୭୧

୧୭. ଗୀତାଞ୍ଜଳି- ରବୀନ୍ଦ୍ର ନାଥ ଠାକୁର

୧୮. ଗୋଟିଏ ସମ୍ବନ୍ଧ ଶେଷେ- ସଚ୍ଚିଦ୍ର ଅନ୍ଧାର- ପୃ ୭୦

୧୯. ବଗିଚା- ଶବ୍ଦର ଆକାଶ- ସୀତାକାନ୍ତ ମହାପାତ୍ର- ପୃ ୧୨

୨୦. ଆତ୍ମୀୟତାର ତିନୋଟି ପର୍ଯ୍ୟାୟ- ସଚ୍ଚିଦ୍ର ଅନ୍ଧାର- ପୃ ୭୩-୭୪

୨୧. ଶ୍ରୀରାଧା- ରମାକାନ୍ତ ରଥ- ପୃ ୫୮

# ପଞ୍ଚମ ପରିଚ୍ଛେଦ

## ବାସ୍ତବବାଦୀ ସମାଜ ସଚେତନତା

ଏ ପ୍ରସଙ୍ଗ ଆଲୋଚନା କରିବା ପୂର୍ବରୁ ଯେ କୌଣସି ସଚେତନ ପାଠକ ଲକ୍ଷ୍ୟ କରି ପାରିବେ ଯେ କବି ଶ୍ରୀ ରଥ ଜଣେ ବିପ୍ଳବୀ କବି ନୁହନ୍ତି। କବି ରବି ସିଂଙ୍କ ପରି ତାଙ୍କ କବିତାରେ ଜ୍ୱଳନ୍ତ ଓ ଦୃପ୍ତ ସ୍ୱରର ଝଙ୍କାର ନାହିଁ ବରଂ କବି ଗୋଦାବରୀଶ ମହାପାତ୍ରଙ୍କଠାରୁ ଆହୁରି ଏକ ଶାଣିତ ପ୍ରଚ୍ଛନ୍ନ ବ୍ୟଙ୍ଗାତ୍ମକ ଦୃଷ୍ଟିଭଙ୍ଗୀ ରହିଛି। ଗଡ଼ଜାତି ଜଙ୍ଗଲରେ ବାଟୋଇର କଲିଜାରେ ନିଆଁ ଜାଳି ଦେଉଥିବା ଓ ସମଗ୍ର ଉପତ୍ୟକାକୁ ପ୍ରକମ୍ପିତ କରୁଥିବା ବାଘଟି ଆଜି ସର୍କସ ପାର୍ଟିରେ ଖେଳ ଦେଖାଇ ପେଟ ପୋଷୁଛି। ଏଇ ହେଉଛି ତାର ବିମର୍ଷ ଭାଗ୍ୟ: 'ଆଜି ଯେ ଇନ୍ଦ୍ରାସନେ କାଲି ସେ ଫକୀର।' ସରଳ ସତ୍ୟବାଦୀ ଜୀବନ ଯାପନ କରୁଥିବା ମଣିଷ ପାଇଁ ଏ ସମାଜ ସ୍ଥାନ ଦେଇନି। ତାର ସରଳତା ଓ ନିରୀହତାର ସୁଯୋଗ ନେଇ ସେ ହୁଏ ଅନ୍ୟ ଦ୍ୱାରା ପ୍ରତାରିତ। ଜୀବନର ସବୁକିଛି ଲକ୍ଷ୍ୟ, ସବୁକିଛି ସଫଳତା ସେଠି ହୁଏ ବିପର୍ଯ୍ୟସ୍ତ। ଯେଉଁମାନେ ଜୀବନ ବଗିଚାରୁ ଫୁଲକୁ ଚିପୁଡ଼ି କୁସୁମ ନିର୍ଯ୍ୟାସ ପାନ କରନ୍ତି ସେମାନେ ହିଁ ସମାଜର ପୂଜ୍ୟ। ସେମାନେ ହିଁ ମହାପୁରୁଷ। ସେଥିପାଇଁ କାବ୍ୟପୁରୁଷ ଆଉ ସତ୍ୟପଥରେ ବିବେକକୁ ନେଇ ବଞ୍ଚିବାକୁ ଚାହେଁ ନାହିଁ। ତା' ମନ ଭିତରେ ଭୀଷଣ ଶୀତଳ ଯୁଦ୍ଧ। "ମୁଁ ଏକ ପ୍ରେତାତ୍ମା ଖାଲି, ଦେହମନେ ଜଳେ ମୋର ଅଗ୍ନିର ହୁତାଶ/ ମିଛର ସାଗରେ ଯଦି ବୁଡେ ମୁହିଁ କେଜାଣି ବା ପାଇବି ଉଶ୍ୱାସ।" (୧) ଏଣିକି ତାର ସରଳତା, ସତ୍ୟତା ଓ ବିବେକର ଶବକୁ କାନ୍ଧରେ ବୋହି ସେ ଚାଲିବ। ଅନେକ ବେତ୍ରାଘାତ, ଅନେକ ଯନ୍ତ୍ରଣା ପାଇଲା ପରେ ଏ ସମାଜ ପ୍ରତି ତାର ଆସିଛି ଅବିଶ୍ୱାସ। ତେଣୁ ସେ ନିଜ ଉପରେ ହିଁ ଦାଉ ସାଧି ଚାଲିଛି। ପ୍ରତିଶୋଧ ନେଉଛି। ଆଉ ଏକ ନୂଆ ଜୀବନର ସମ୍ଭାବନା ଆଣୁଛି।

> ଜୀବନ ଯାଇଚି ହଜି, ଆଜିଠାରୁ ଜନ୍ମନେବ ପ୍ରଶସ୍ତି-ଗାୟକ
> ମିଛ ପାଇଁ ଗାଇଯିବ କୋଟିକୋଟି ସ୍ତୁତିଗାଥା, ନୂଆ ରାମାୟଣ,
> ନ ଦେଖିବା ଲୋକେ ଦେଖ,
> ଜୀବନର ପ୍ରକୋଷ୍ଠରେ ଜୀବନ୍ତ ମରଣ। " (୨)

'ଘଣ୍ଟା' କବିତାରେ ମଧ୍ୟ ଅନୁରୂପ ଚେତନା ରୂପାୟିତ ହୋଇଛି। ଏଠି ଜୀବନର ଉର୍ବର କ୍ଷେତରେ ଆଉ ଜଣେ ଜୁଆଲି ଯୋଚେ। ମଣିଷ ଛାତିରେ ଫସଲ ଫଳାଇ

ଅନ୍ୟ କୋଠିକୁ ତାକୁ ବୋହି ନିଏ। ଚନ୍ଦ୍ରା ବେହେରାଣୀ ଘର ତୋଳିଥିଲା। ବିବାହ କରିଥିଲା। ଶଙ୍ଖା ସିନ୍ଦୂରକୁ ଆଦରି ନେଇ ପତିପରାୟଣା ନାରୀଟିଏ ହୋଇ ରହିଥିଲା। କିନ୍ତୁ ତା' ଜୀବନରେ ଝଡ଼ ଆସେ। ଅଭାବ ଅନାଟନ ଭିତରେ ସ୍ୱାମୀ ରୋଗାଗ୍ରସ୍ତ ହୋଇ ଅକାଳରେ ଚାଲିଗଲା' ପରେ ଚନ୍ଦ୍ରମାର ଆଉ କ'ଣ ବା ଚାରା ଥିଲା ? ପେଟ ପୋଷିବା ପାଇଁ ସେ ହେଲା ପଣ୍ୟ ଦ୍ରବ୍ୟ। ଏଣିକି ସେ ତା'ର ଅଧାମେଲା ଦରଜା ପାଙ୍କରେ ଚାହିଁ ବସେ। କାଚ଼ଭଙ୍ଗା କଳାଲଣ୍ଠନର ବତୀକୁ କମାଇ ନିଜକୁ ତା'ରି ଭିତରେ ବିକିଦିଏ ରାତିକ ପାଇଁ। ସେ ମଧ, "ରାତିର ଖାଟେଣୀ ,ପରେ ସହରର କୋହଳ ସକାଳେ/ଦିହର ଦରଜ ମାରେ ଶୁଣ୍ଠି ଆଉ ଗରମ ପାଣିରେ।" (୩) ଜୀବନର କ୍ରୁର ବାସ୍ତବତା ଭିତରେ ତାକୁ ବଞ୍ଚିବାକୁ ପଡ଼େ। ସେତେବେଳେ ଧନିକର ଅଜଗରୀ ଆଶ୍ଲେଷରେ ତାର ଅନୁଭୂତି ମରିଯାଏ।'ଚୁମ୍ବନର ଚାବୁକ'ରେ ଜୀବନ ଛାଡ଼ିଯାଏ। ଝାଳର ଗନ୍ଧରେ ସମସ୍ତ ଚେ଼ତନା ଲୁପ୍ତ ହୁଏ। ଏଠି ଦେହର କ୍ଷୁଧା ନାହିଁ। କାମନାର ପରିତୃପ୍ତି ପାଇଁ ଆବେଗ ନାହିଁ। ଖାଲି ପେଟର କ୍ଷୁଧା ପାଇଁ ଏହା ଏକ ମାଧ୍ୟମ ମାତ୍ର। ଅବଲମ୍ବନ କେବଳ। ପ୍ରଥମ ମଧୁରାତ୍ରିର ସ୍ମୃତି ଦ୍ୱାରା ସେ ବେଳେବେଳେ ଆକ୍ରାନ୍ତ। ମୃତ ପତିଙ୍କର ଶେଷ କେତୋଟି ପଦକୁ ଏବେବି ମନେ ରଖିଛି:

"ମୋ ଛାତି ଛୁଇଁ ତୁ କହ, ମୁଁ ଯଦି ମରିବି ତେବେ
ତୁ କାହାକୁ ଦୁତୀଅ ହବୁନି,
ତତେ ନେଇ ଆଉ କାହା ସାଥେ ମୋର ହବା ଭାଗୁଆଳ
ଦିହରେ ଯିବନି ଜମା ପ୍ରେତଲୋକେ ଥିଲେ ବି ମୁଁ ତୋର
ମୁଁ ତୋତେ ପାଇଛି କେତେ ଭଲ
ତାହା ଜାଣିଚ଼ି କେବଳ
ଆକାଶ ଉପରେ ଦିଅଁ, ଦିନରାତି ଘଟଣ ଯାହାର।" (୪)

ସେଥିପାଇଁ ସେ କମ ଅନୁତପ୍ତା ନୁହେଁ। କମଳା, ଚମ୍ପା ଓ ଚନ୍ଦ୍ରାର ବ୍ୟବସାୟ ଏକ ହେଲେ ମଧ ଚନ୍ଦ୍ରା ଏଇ ଦିଗରୁ ଭିନ୍ନ। (କମଲା ବା ଚମ୍ପାର ଜୀବନ ଇତିହାସ କିଏ ବା ଦେଖିଛି ?) ବାସ୍ତବ ଜୀବନରେ କିଛି ସ୍ୱପ୍ନ, କଳ୍ପନା, ଆଦର୍ଶ ଓ ଭାବପ୍ରବଣତାର ସ୍ଥାନ ନଥାଏ।

"ଜୀବନର ଚକ୍ର ଘୂରେ, ଘୂର୍ଣ୍ଣନରେ ପେଷିହୁଏ ହୃଦୟ
ଓ ବିବେକ ଆଦର୍ଶ
ଜାଇଁବାଟା ବୋଧହୁଏ ଜୀବନରେ ସବୁଠାରୁ ସତ,
ତା'ଠାରୁ ବି ସତ ବୋଧେ ଆଦର୍ଶର ହତ୍ୟା ଆଉ ବିବେକର
ମୃତ୍ୟୁର କାହାଣୀ
ସେଥିପାଇଁ ଗ୍ଲାନି କିମ୍ପା ? ଏ ଗ୍ଲାନିର ପରିଣାମ ଖାଲି
ତିଳେ ତିଳେ ଅନ୍ତର୍ଦାହ ସାବଧାନ ଚନ୍ଦ୍ରାବେହେରାଣୀ"।(୫)

ପ୍ରତ୍ୟେକ ସ୍ତରରେ ଆଜି ମଣିଷ ଆଶାହତ। ଜୀବନରେ କୌଣସି ସ୍ୱପ୍ନ ସମ୍ଭାବନା ନାହିଁ। ଏ ସମାଜ ତା' ଜୀବନର ସକଳ ପେଲବତାକୁ ହତ୍ୟା କରିଛି। କୋଣାର୍କ ମନ୍ଦିର ମୁଣ୍ଡିମାରି ଏକ ବିରାଟ ସଫଳତା ହାସଲ କରିଥିଲେବି ଏ ଜାତି ଧରମାକୁ ଆତ୍ମହତ୍ୟା

କରିବାକୁ ବାଧ କରେ। ତେଣୁ ସ୍ୱପ୍ନ ଦେଖିବାର ଆବଶ୍ୟକତା ନାହିଁ। ଗଜଲ୍ ଗାଇବାର ମାନସିକତା ନାହିଁ। ମଲ୍ଲୀଫୁଲର ସୁଗନ୍ଧିରେ ବିମୋହିତ ହେବାର ଯାଥାର୍ଥ୍ୟ ନାହିଁ। ଫଳତଃ କାବ୍ୟପୁରୁଷ ଏଠି ଆତ୍ମହତ୍ୟା କରୁଛି। ଚନ୍ଦ୍ରା ବେହେରାଣୀ ବାସ୍ତବ ଜୀବନକୁ ଆଦରି ନେଉଥିବା ବେଳେ ଧର୍ମପଦ ଆତ୍ମହତ୍ୟା କରେ।(୧୦) ଏକ ଦିଗରେ ସମାଜବାଦୀ ବାସ୍ତବତା ଓ ଅନ୍ୟଦିଗରେ ରୋମାଣ୍ଟିକ୍ ବାସ୍ତବତା।

ମାଳତୀ ଅଭାବଗ୍ରସ୍ତ ପରିବାର ଭିତରେ ବଞ୍ଚିଛି। ଚାରିବର୍ଷ ହେବ ସ୍ୱାମୀ ଏକମାତ୍ର ଶିଶୁପୁତ୍ର କୁନିକୁ ଛାଡ଼ି ଚଟକଳକୁ ଚାଲିଯାଇଛି। ମାଳତୀର ବର୍ଷ ବର୍ଷର ପ୍ରତୀକ୍ଷା ସତ୍ତ୍ୱେ ସେ ଆଉ ଫେରି ନାହିଁ। ସେ ଦେହ ଆଉ ମନରେ ଜଳୁଛି। କେତେ ଆଶାୟୀ ଦୃଷ୍ଟିରେ ଚାହିଁ ରହିଛି ତାକୁ। ଚାଉଳ ତଉଲେ ଧାର ଆଣିଛି ବୋଲି 'ଘଇତା ଖାଇ' ବୋଲି ପଡ଼ୋଶିନୀ ଗାଳିଦିଏ। କରଜ ଶୁଝିବା ପାଇଁ ଜମିଡ଼ିହ ମୁକୁଳାଇବା ଲାଗି ସ୍ୱାମୀ ହୋଇଛି ଘରଛଡ଼ା। ସ୍ୱାଧୀନୋତ୍ତର ଓଡ଼ିଶାର ଏଇ ହେଉଛି ଅର୍ଥନୈତିକ ଜୀବନର ମାନଦଣ୍ଡ। ମାଳତୀ ମନରେ ଅଭିମାନ। ତା'ର ଧନସମ୍ପତ୍ତି ଟଙ୍କା ଦରକାର ନାହିଁ, 'ମାତ୍ର ମୁଁ ପାଇଚି ଭଲ, ତମେ କ'ଣ ତାହା ବୁଝିବନି ?' (୭)

ଇହକାଳରେ ଚିରନ୍ତନ କଳ୍ପିତ ଜୀବନକୁ ସେ କାମନା କରେନି। ବାସ୍ତବ ଜୀବନ ଭିତରେ ଯେହେତୁ ସେ ବଞ୍ଚିଛି, ତେଣୁ ଏଇ ଲୋକରେ ସେ ଦୁଃଖ ହେଉ ବା ସୁଖ ହେଉ ତାର ପରିଣତି ଚାହେଁ।

"ମୁଁ ଘୃଣା କରୁଚି ଏକ ଚିରନ୍ତନ ଅସ୍ତିତ୍ୱ। ଯଦି ମୁଁ
ପାପ କିଛି କରିଅଛି, ଫଳତାର ମିଳୁ ଏ ଜୀବନେ।" (୮)

ମାଷ୍ଟ୍ରାଣୀ ଜୀବନସାରା ଆଦର୍ଶକୁ ଲଦି ଚାଲିଛି। ଜୀବନ ଭିତରେ ସବୁକିଛି ସେ ଛାଡ଼ି ଆସିଛି। ବୈକୁଣ୍ଠ ସମାନ ଘର, ବଉଳପାଟ, ମାତୃତ୍ୱ, ପ୍ରେମ, ତା' ଜୀବନରେ ଆସିନି। ଏକ ବନ୍ଧ୍ୟା ଧୂସର ଜୀବନ ଭିତରେ ସେ ଖାଲି ସେହି ତଥାକଥିତ ସତ୍ୟ, ନୀତିକୁ ଧରି ଚାଲିଛି। ଏହାରି ଭିତରେ ତା' ଜୀବନର ଦୀପ ଲିଭିଛି ସତ କିନ୍ତୁ ବାସ୍ତବ ଜୀବନଟିଏ ପାଇଁ ସେ କି ନୀରବ ବ୍ୟାକୁଳତା ପ୍ରକାଶ ନ କରିଛି।(୯) 'ଭିକାରୁଣୀର ବରାନୁଗମନ' କବିତାଟି କବିର ସମ୍ବେଦନଶୀଳ ବାସ୍ତବବାଦୀ ଦରଦୀ ମନୋଭାବର ସୂଚନା ବହନ କରିଥାଏ। ଭିକାରୁଣୀଟିଏ ରାସ୍ତା କଡ଼ରେ ଠିଆ ହୋଇଛି। ବେକରେ ମହମହ ବାସୁଥିବା ଭାସ୍କରମାଳା, କପାଳରେ ଚନ୍ଦନ-ସିନ୍ଦୂର ଲେଖି ଗାଡ଼ି ଭିତରେ ମହା ଆଡ଼ମ୍ବରରେ ଯାଉଛି ବର। ସେ ବା କେତେକାଳ ଆଉ ଏ ଦୃଶ୍ୟକୁ ଦେଖିପାରିବ ? "ମୁଁ ତ ମାଆ ଏପରି ଛୁଆର/ମୋ ନାରୀତ୍ୱ ଝୁଲୁଅଛି କାଗଜର ସ୍ତନ ଦୁଇଟିରେ" (୧୦) ଷ୍ଟେସନ୍‌ରେ ଗାଡ଼ି ଆସି ପହଞ୍ଚି ଗଲାଣି। କାକର ପଡୁଛି। ଥଣ୍ଡା ପବନ ବହୁଛି। ତାକୁ ପୁଣି ହାତ ପତେଇବାକୁ ପଡ଼ିବ। ସେ ନାରୀଟିଏ। ଜୀବନରେ ତା'ର ଅଧା ଭୋକ ଓ ଶୋଷର ଜ୍ୱାଳା ରହିଛି। ପବନ ତା' କାନ ପାଖରେ ଅସଭ୍ୟ ପ୍ରତିଧ୍ୱନି ତୋଳେ। ଦେହର ଶୃଙ୍ଖଳା ନଇରେ ହଠାତ୍ ଉଷ୍ମ ବନ୍ୟା ବହିଯାଏ। ସ୍ୱପ୍ନମାନେ ମରାମତ୍ ହୋଇ କଅଁଳି ଉଠନ୍ତି। ସେ ଆଉ ଦୁଆର ବନ୍ଦ ଚପି ପାରେନା। ବାସ୍ତବତାକୁ ପୁଣି ସେ ଫେରି ଆସେ। "ତାପରେ ମୋ ଶେଯ କାଗଜ ପାଲଟି ଗଲା।" (୧୧)

ଚନ୍ଦ୍ରା ବେହେରାଣୀ ପେଟପାଇଁ ଦେହବିକ୍ରି ଚଳୁଥିଲା ବେଳେ ମାଳତୀ ସ୍ୱାମୀର ଆଗମନ ପାଇଁ ପ୍ରତୀକ୍ଷିତା; ମାଷ୍ଟ୍ରାଣୀ କେବଳ ଆଦର୍ଶକୁ ଆଖି ଆଗରେ ଧରି ଧରି ଚାଲୁଥିଲାବେଳେ ମାଧବୀ କିନ୍ତୁ ଜୀବନକୁ ଉପଭୋଗ କରିନେବାରେ ଆଶାୟୀ।

"ମାଧବୀକୁ ହେଲା ଆଜି ଛତିଶ, ଆଜି ମାଧବୀର
ହୃଦୟ ବ୍ୟାକୁଳ ହୁଏ ଏପରି ଚିନ୍ତାରେ
ଯାହାର ଉଲ୍ଲେଖ ନାହିଁ ଓଡ଼ିଆ କାବ୍ୟରେ।" (୧୨)

ଛତିଶ ବର୍ଷରେ ପଦାର୍ପଣ କଲେବି ବାଉଣା ଖୁଣ୍ଟକୁ ଆଉଜି ସେ ପିଲାଙ୍କ ପରି ଟପି ଖାଏ। ତାଙ୍କ ବୟାଳିଶ ବର୍ଷର ପୃଥୁଳକାୟ ସ୍ୱାମୀ ମୃତ। ଘର ତା'ର ପରିତ୍ୟକ୍ତ। ଚୋରମାନେ ସବୁ ବୋହି ନେଲେଣି। ତଥାପି ଫିମ୍ପିମରା କାଛରେ ଖରା ପଡ଼ିଲେବି ତାହା ସୁନ୍ଦର ଦେଖାଯାଏ। 'ଯଦିବା ନ ପଡ଼େ ଖରା ଅନ୍ଧାରର ଚୋରା ପାଦଧ୍ୱନି/ ନିଭୃତ ଶିକାର ଆଣେ ମନୋରଥ ପୂର୍ଣ୍ଣ ନାରୀଦ୍ୱାର।" (୧୩) ତା' ମନ ଭିତରେ ଅନେକ ଝଡ଼। ସେ ତା'ର ଗାଲକୁ, ମୁଣ୍ଡକୁ ଏବଂ ଶେଷରେ ଛାତିକୁ ଆସ୍ତେ ଆସ୍ତେ ଛୁଏଁ। ମନର କ୍ଷୁଧା ଏବେ ଅପ୍ରମିତାବସ୍ଥାରେ ଚିତ୍କାର କରେ-

"କେତେଦିନୁଁ ପଡ଼ିଥିବା ହାର୍ମୋନିୟମ୍‌ରେ
ପ୍ରତ୍ୟେକ ପ୍ରତ୍ୟଙ୍ଗ ଏକ ସ୍ୱର ଘର ପ୍ରତ୍ୟେକ ସ୍ୱରରେ
ଅଚାନକ ପ୍ରତିବାଦ ମାନଙ୍କର ଭୀଷଣ ମୂର୍ଚ୍ଛନା।" (୧୪)

'ଧନୀପ୍ରତି ଭୃତ୍ୟର ଉକ୍ତି' ଭିତରେ ଏକ ସାମାଜିକ ଅଙ୍ଗୀକାରବଦ୍ଧ କାବ୍ୟପୁରୁଷର ବ୍ୟଙ୍ଗାତ୍ମକ ସଚେତନ ଭାବ ରହିଛି। ଭୃତ୍ୟ ପାଣି ଓ ସାବୁନ ଧରି ଠିଆ ହୋଇଛି ଧନୀ ହାତରୁ ରକ୍ତ ଛିଟିକାକୁ ଧୋଇବ। କିନ୍ତୁ ଶୋଷିତ ନିହତ ବ୍ୟକ୍ତିର ପ୍ରଶ୍ନ ଏବେବି ତା' ମନର ଦୁଆର ଆଗୁଳି ବସିଛି। ଭୃତ୍ୟ ମନରେ ଅସଂଖ୍ୟ ଅଛିଣ୍ଡା ପ୍ରଶ୍ନ। ତାକୁ ସେ ଅତିକ୍ରମି ପାରୁନି। କାରଣ ସେ ନିଜେ ସେଇ ଗୋଷ୍ଠୀର ଜଣେ ପ୍ରତିନିଧି। ତେଣୁ ତାର ପ୍ରଶ୍ନ- "ଆପଣଙ୍କ ଶ୍ରୀ ହସ୍ତ ମୁଁ କିପରି ଧୋଇବି ?" (୧୫)

'ଧୀବର' କବିତାଟିରେ ମହାକାଳର ଭାବଚେତନା ବର୍ଣ୍ଣିତ ଥିଲେ ମଧ୍ୟ ଆଜିର ସାମାଜିକ ବୈଷମ୍ୟ ପ୍ରତି ଏକ ଶାଣିତ ପ୍ରଚ୍ଛନ୍ନ ବ୍ୟଙ୍ଗ ନିହିତ ଅଛି-

"ମହାପ୍ରଭୁ, ଯଦି ତମେ ଇଚ୍ଛା କର ସମୁଦ୍ର ଫେରାଉ
ଆମକୁ ତା'ହେଲେ ତମ ଇଚ୍ଛା ପୂର୍ଣ୍ଣ ହେଉ
କୁଆ କା' କରିବା ପୂର୍ବରୁ,
ମାଗଣାରେ ମିଳିଥିବା ଗଦା ଗଦା ଖବର କାଗଜ
ଜାଳି ସଜା ହୋଇଥିବା ଚିତାଗ୍ନିରେ
ପିଲାମାନେ ଶୋଇବା ଆଗରୁ।" (୧୬)

ଏହିପରି କବିଙ୍କର କାବ୍ୟ ଚେତନାର ଏକ ବିଶିଷ୍ଟ ଅଂଶକୁ ସମାଜର ନିପୀଡ଼ନ ଓ ଶୋଷଣର ପ୍ରଶ୍ନମାନ ଆବୋରି ବସିଛନ୍ତି। କବି ଖୁବ୍ ବଡ଼ ପାଟିରେ ଏପରି ଏକ ବୈଷମ୍ୟଗ୍ରସ୍ତ ସମାଜ ବିରୁଦ୍ଧରେ ସ୍ୱର ପ୍ରକାଶ ନ କଲେବି ତାଙ୍କ କବିତାରେ ଏହାର ପ୍ରତିକ୍ରିୟା ବେଶ୍ କଳାଗତ ମାନ ରକ୍ଷାକରି ପ୍ରକଟିତ ହୁଏ।

ପାଦଟୀକା

୧,୨. ପାରିଷଦର ରାତ୍ରି- କେତେଦିନର- ପୃ୧୨
୩. ଚନ୍ଦ୍ରମାର ଚୂଡ଼ି- ତତ୍ରୈବ- ପୃ ୨୨
୪. ତତ୍ରୈବ- ପୃ ୨୩
୫. ତତ୍ରୈବ- ପୃ ୨୪
୬. ଧର୍ମପଦର ଆତ୍ମହତ୍ୟା- ତତ୍ରୈବ- ପୃ ୨୫
୭. ନବଗୁଞ୍ଜର- ତତ୍ରୈବ- ପୃ ୩୮
୮. ଆଳାପ- ତତ୍ରୈବ- ପୃ ୪୯
୯. ମାଷ୍ଟ୍ରାଣୀ- ସନ୍ଦିଗ୍ଧ ମୃଗୟା- ପୃ ୨୬
୧୦. ଭିକାରୁଣୀର ବରାନୁଗମନ ଦର୍ଶନ- ତତ୍ରୈବ- ପୃ ୮୨
୧୧. ତତ୍ରୈବ- ପୃ ୮୩
୧୨. ମାଧବୀର ପଞ୍ଚତ୍ରିଂଶତମ ଜନ୍ମୋତ୍ସବ- ତତ୍ରୈବ- ପୃ ୮୭
୧୩. ତତ୍ରୈବ- ପୃ ୮୭
୧୪. ତତ୍ରୈବ- ପୃ ୮୮
୧୫. ଧନୀପ୍ରତି ଭୃତ୍ୟର ଉକ୍ତି- ସପ୍ତମ ଋତୁ- ପୃ ୭୮
୧୬. ଧୀବର- ତତ୍ରୈବ- ପୃ ୯୩।

## ପରମ୍ପରା ଓ ଐତିହ୍ୟ ସଚେତନତା :

"No poet, no artist of any art, has his complete meaning alone. His significance, his appreciation is the appreciation of his relation to the dead poets and artists. You cannot value him alone. You must set him, for contrast and comparison, among the dead. I mean this as a principle of aesthetic, not merely historical criticism." (୧) ଯେ କୌଣସି ଭାଷା ସାହିତ୍ୟର ତୁଳନାତ୍ମକ ଅଧ୍ୟୟନରୁ ଏହି ନିଷ୍କର୍ଷରେ ହିଁ ପହଞ୍ଚିବାକୁ ପଡ଼େ। ସାହିତ୍ୟରେ ଆଉ କିଛି କହିବାର ନଥାଏ। ସବୁ କିଛି କୁହା ସରିଛି। କେବଳ ନୂଆ ବାଗରେ, ନୂଆ ମୋଡ଼ରେ ଓ ନୂଆ ରୂପରେ ହିଁ ତାହା ନୂତନତ୍ୱକୁ ରୂପାନ୍ତରିତ ହୋଇଯାଏ। ବ୍ୟକ୍ତିଗତ ପ୍ରତିଭାର ଭାସ୍ୱର-ବିକାଶ ପାଇଁ ପରମ୍ପରା ଓ ଐତିହ୍ୟର ଭୂମିକା ଯଥେଷ୍ଟ ରହିଛି। ଜଳ ଉପରେ ପଦ୍ମଫୁଲଟି ଢଳଢଳ ହୋଇ ବିଶ୍ୱକୁ ବିମୋହିତ କରୁଥିଲେ ବି ତାର ନାଭିପିଣ୍ଡ ହିଁ ପଙ୍କ ମଧ୍ୟରେ ଲୁକ୍କାୟିତ। ପଙ୍କକୁ ବାଦ ଦେଲେ ତାର ଅସ୍ତିତ୍ୱ ସ୍ୱୀକାର୍ଯ୍ୟ ଅସମ୍ଭବ। ତେଣୁ ତ ସେ ପଙ୍କଜ। ପାରମ୍ପରିକତା ଓ ଐତିହ୍ୟର ଯଥାର୍ଥ ଅବବୋଧ ଭିତରେ ହିଁ ବ୍ୟକ୍ତିଗତ ପ୍ରତିଭାର ପୁଷ୍କଳ ବିକାଶ ସାଧିତ ହୋଇଥାଏ। ପ୍ରତ୍ୟେକ କବି ତା'ର ପୂର୍ବସୂରି ମାନଙ୍କ ନିକଟରେ ଋଣୀ। ସମୟେ ସମୟେ ଏକ ପ୍ରତିଭାବାନ୍ କବି ଜନ୍ମଗ୍ରହଣ କରନ୍ତି। ନୂଆ ଭାବରେ କିଛି କହି ଯାଆନ୍ତି। ଏବଂ ଭବିଷ୍ୟତ

ପାଇଁ ମଧ୍ୟ କିଛି ଉପାଦାନ ଛାଡ଼ିଯାଆନ୍ତି। ଇଲିଅଟ୍‌ଙ୍କ ଭାଷାରେ: And in poetry there is no such thing as complete originality, owing nothing to the past. Whenever a Virgil, a Dante, a Shakespear, a Goethe is born, the whole future of European poetry is altered. When a great poet has lived, certain things have been done once for all and can't be achieved again, but on the other hand, every great poet adds something to the complex material out of which future poetry will be written."(୨)

କବି ରମାକାନ୍ତ ରଥଙ୍କ କାବ୍ୟପୁରୁଷକୁ ସୂକ୍ଷ୍ମଭାବେ ନିରୀକ୍ଷଣ କଲେ ସଚେତନ ପାଠକେ ତାଙ୍କ ପୃଷ୍ଠଭୂମିକୁ ଉଦ୍‌ଘାଟିତ କରିପାରିବେ। 'କାବ୍ୟର ପ୍ରାରମ୍ଭିକ ପର୍ବରେ ମୁଖ୍ୟତଃ ସେ ପାଶ୍ଚାତ୍ୟ ଦର୍ଶନ ଓ ସାହିତ୍ୟ ଦ୍ୱାରା ବେଶୀ ମାତ୍ରାରେ ଅନୁପ୍ରାଣିତ ହୋଇ ପଡ଼ିଥିଲେ। ପରବର୍ତ୍ତୀ କ୍ଷେତ୍ରରେ ପ୍ରାଚ୍ୟ ଦର୍ଶନ ଓ ପ୍ରାଚୀନ ଓଡ଼ିଆ କାବ୍ୟ ଦ୍ୱାରା ପ୍ରେରଣା ଲାଭ କରି ସ୍ୱ ପରମ୍ପରା ସଂପ୍ରୀତି ଓ ଐତିହ୍ୟ ସଚେତନତାକୁ ଦର୍ଶାଇ ପାରିଛନ୍ତି।

ମୁଖ୍ୟତଃ ତାଙ୍କ କବିତାର କେତେକ ଛତ୍ରରେ ପରିବେଶ (mileu) ବର୍ଣ୍ଣନା କରିବାକୁ ଯାଇ ସେ ପ୍ରାଚୀନ ପଲ୍ଲୀଜୀବନର କେତୋଟି ପ୍ରତ୍ୟକ୍ଷ-ରୂପକଳ୍ପ (Visual Image) ସୃଷ୍ଟି କରିଛନ୍ତି ଯାହାକି ଆମର ପରମ୍ପରାକୁ ହିଁ ସ୍ମରଣ କରାଇଦିଏ।

"ଯେଉଁ ରାସ୍ତା ବେଢ଼ିଅଛି ସହରର ଅଣ୍ଟାକୁ, ଗାଉଁଲି
ଭୁଆଷୁଣୀ ଅଣ୍ଟାଦେହେ ନିକେଲର ଅଣ୍ଟାସୂତା ପରି,
ଯେଉଁ ରାସ୍ତା ସୁରୁହୋଇ ମଶାଣିର ମଇଳା ଦାଢ଼ରୁ
ନଈର ଅମଡ଼ା ଘାଟେ ହଜିଯାଏ ବୁଲାଗୋରୁ ପରି।" (୩)

ଗାଉଁଲି ଭୂଆଷୁଣୀଟିଏ। ଅଣ୍ଟାରେ ତା'ର ନିକେଲର ସୂତା। ସତେକି ଆଖି ଆଗରେ ନାଚିଯାଏ ଆମର ହଜିଯାଇଥିବା ପରମ୍ପରାଟିଏ ଯାହାଥିଲା ଦିନେ ଆମର ସମ୍ପୂର୍ଣ୍ଣ ଓଡ଼ିଶୀ ବସନ ଭୂଷଣ। 'ବୁଲାଗୋରୁ' ଶବ୍ଦଟି ଭିତରେ ଏବେବି ଆମ ଆଖି ଆଗରେ ଫୁଟିଉଠେ ଖରାବେଳର ନଈ ଦାଢ଼ରେ ଖାଁ-ଖାଁ ନୀରବତା ଓ ଝାଉଁମଚ୍ଛା ପରିବେଶ।

'ନବଗୁଞ୍ଜର' କବିତାରେ ମାଳତୀ ଜୀବନର ଦୁଃଖଦ ରକ୍ତକ୍ଷୟୀ ବିପର୍ଯ୍ୟସ୍ତ କାହାଣୀ କେବଳ ମାଳତୀର ନୁହେଁ, ସ୍ୱାଧୀନୋତ୍ତର ଓଡ଼ିଶାର ପୁରପଲ୍ଲୀରେ କେତେଯେ ମାଳତୀ ସେମିତି ଅସରନ୍ତି ପ୍ରତୀକ୍ଷା ଭିତରେ ନିଜର ଜୀବନ ଯୌବନକୁ ଉଜାଡ଼ି ଦେଇଛନ୍ତି ତାହା ଖାଲି ଇତିହାସର ଅପେକ୍ଷା ରଖେ। ମାଳତୀ ଅଝଟ ପୁଅକୁ ବୁଝେଇବାକୁ ଯାଇ ନାନାବାୟା ଗୀତ ଗାଇଛି- "ବାୟା ଚଢ଼େଇରେ ବାୟା ଚଢ଼େଇ ତୁ, ତାଳ ଗଛେ କରୁ ବସା x x ମୋ କୁନି କାନ୍ଦୁଛି/ତୋ ସାଙ୍ଗେ ଖେଳିବ ପଶା।" (୪) ଏହା ଓଡ଼ିଶୀ ଲୋକ ଗୀତର ପରମ୍ପରା। ମାଳତୀର ମନସ୍ତାତ୍ତ୍ୱିକ ଚିତ୍ର ଦେବାକୁ ଯାଇ କବି ଲୋକଗୀତ ପରମ୍ପରାର ଆଶ୍ରୟ ନେଇଛନ୍ତି। 'ଅନେକ କୋଠରୀ'ର ଗରୁଡ଼, ଧର୍ମପଦର ଆତ୍ମହତ୍ୟା, ଅରୁନ୍ଧତି, ଚଣ୍ଡୀପ୍ରତି, ଅବୋଲକରା, ବୋଇତ ବନ୍ଦାଣ, ଯୋଡ଼େ ଚମ୍ପୁ, ଛାୟା ଚୁମ୍ବନ ଓ ଦଶହରା-୧୯୬୧ ଆଦି କବିତାର ଶୀର୍ଷକ ଗୁଡ଼ିକ ଆମର ପୌରାଣିକ, ଧାର୍ମିକ, ଦାର୍ଶନିକ, କିମ୍ବଦନ୍ତୀମୂଳକ ଲୋକକଥା ଓ ସାହିତ୍ୟିକ ସଂସ୍କୃତି ତଥା ପରମ୍ପରାକୁ ବହନ କରିଛି। ପୁନଶ୍ଚ ତା'ରି ଭିତରେ ସାମ୍ପ୍ରତିକ ଜୀବନକୁ ଟିକ୍‌ନିକ୍ କରି ଦେଖିବାର ମଧ୍ୟ ପ୍ରଚେଷ୍ଟା

ରହିଛି । ଏହି ପରିପ୍ରେକ୍ଷୀରେ ଓଡ଼ିଶୀ ସଂସ୍କୃତି ସମ୍ପର୍କରେ କବି ଶ୍ରୀ ରଥଙ୍କ ମତାମତ 'ଉଲ୍ଲେଖ କଲେ ଅପ୍ରାସଙ୍ଗିକ ହେବ ନାହିଁ। "ସାଂସ୍କୃତିକ ଦୃଷ୍ଟିରୁ ଓଡ଼ିଶାରେ ଏପରି ଏକ ଗୋଷ୍ଠୀ (ଭାବ ପ୍ରଧାନ)ର ଆବିର୍ଭାବ ଅଦ୍ୟାପି ହୋଇନାହିଁ ଯାହା ଫଳରେ ଓଡ଼ିଆ ସଂସ୍କୃତି ଏ ପର୍ଯ୍ୟନ୍ତ ଦୃଷ୍ଟିଗତ ରହିଛି। ଇତିହାସରେ ଅବଶ୍ୟ ଏପରି ସମୟ ଆସିଛି ଯେତେବେଳେ ସାଂସ୍କୃତିକ ଆଭିମୁଖ୍ୟ ଭାବପ୍ରଧାନ ହୋଇଛି, ଯଥା ପଞ୍ଚସଖା ଯୁଗରେ; କିନ୍ତୁ ମୋଟାମୋଟି ଏ ପର୍ଯ୍ୟନ୍ତ କୌଣସି ଉଲ୍ଲେଖଯୋଗ୍ୟ ସାମାଜିକ ବିପ୍ଳବ ଘଟି ନଥିବାରୁ ପରମ୍ପରାଗତ ଦୃଷ୍ଟି ପ୍ରଧାନ ସାଂସ୍କୃତିକ ଆଭିମୁଖ୍ୟ କାଏମ୍ ରହିଛି।"(୫)

କବି ରମାକାନ୍ତ ରଥଙ୍କ କାବ୍ୟାତ୍ମା ଭିତରେ କିପରି ଓଡ଼ିଆ ସଂସ୍କୃତିର ଭାବଗତ ସମ୍ବନ୍ଧ ରହିଛି ତାହା ବାସ୍ତବିକ୍ ପ୍ରଣିଧାନ ଯୋଗ୍ୟ। ଏହି ଦୃଷ୍ଟିକୋଣରୁ ବିଚାର କଲେ ଶ୍ରୀ ରଥଙ୍କ କାବ୍ୟ ଜଗତର ମୂଳପିଣ୍ଡ ଭିତରେ କବି ଜଗନ୍ନାଥ ଦାସ, ବଳରାମ, ଅଚ୍ୟୁତାନନ୍ଦ, ଅଭିମନ୍ୟୁ, ଦୀନକୃଷ୍ଣ, ଭକ୍ତଚରଣ, ଭୀମଭୋଇ, କବିସୂର୍ଯ୍ୟ ବଳଦେବ, ରାଧାନାଥ ଓ ମଧୁସୂଦନଙ୍କ ପ୍ରଭାବ ସହିତ ବେଦ, ଉପନିଷଦ, ଓ ଭାଗବତର ପ୍ରଭାବ ମଧ ଲକ୍ଷଣୀୟ। 'ବାଘ ଶିକାର'ରେ ଭାଗବତର କେତୋଟି ପଂକ୍ତି ଉଦ୍ଧୃତ ହୋଇଛି।

"ଯେସନେ କୀଟ ଉର୍ଣ୍ଣନାଭି। ନିଜ ବଦନୁ ସୂତ୍ର ଭାବି॥
ଜାଲ ନିର୍ମାଣି ରାତ୍ର ମୁଖେ। ମଧ୍ୟେ ବିହରେ ନାନା ସୁଖେ॥
ଏକାନ୍ତେ ରାତ୍ରେ କ୍ରୀଡ଼ା କରେ। ସୂର୍ଯ୍ୟ ଉଦୟେ ତା' ସଂହାରେ॥"(୬)

ଏହାର ପୂର୍ବ ଦୁଇପଦ ଏହିପରି:

"ଦେଖ ଏ ବିଷ୍ଣୁ ମାୟା କରି। ଜଗତେ ଖେଳଇ ମୁରାରୀ॥
ପୁଣି ସଂହାରି କାଳରୂପେ। ନିଶ୍ଚିନ୍ତେ ରହେ ଆତ୍ମସୁଖେ॥" (୭)

ମାୟାବୀ ବିଷ୍ଣୁ ହେଉଛନ୍ତି ସୃଷ୍ଟିକର୍ତ୍ତା। ମହାକାଳ ବିଷ୍ଣୁ ହିଁ ସଂହାର କର୍ତ୍ତା। ଉର୍ଣ୍ଣନାଭ ପରି ସେ ମାୟାଜାଲ ବିସ୍ତାର କରି ତା' ମଧ୍ୟରେ କ୍ରୀଡ଼ା କରନ୍ତି। ଏଇ ମାୟାଜାଲର ଚତୁଃପାର୍ଶ୍ୱରେ ଧ୍ୱାନ୍ତ କୁହେଳିକା। ଅଭ୍ୟନ୍ତରରେ ସଂଗୁପ୍ତ ଭାବରେ ରହିଛି କାଳରୂପୀ ସୂର୍ଯ୍ୟ। 'ଶ୍ୱେତାଶ୍ୱେତ ଉପନିଷଦ'ରେ ପ୍ରକୃତିକୁ ମାୟା ଓ ସୃଷ୍ଟିକାରୀଙ୍କୁ ମହେଶ୍ୱର ବୋଲି କଳ୍ପନା କରାଯାଇଛି। "ମାୟା ତୁ ପ୍ରକୃତିଂ ବିଦ୍ଧି, ମାୟିନଂ ତୁ ମହେଶ୍ୱରଃ।" ତେଣୁ ବ୍ରହ୍ମର ପ୍ରକାଶିତ ରୂପ ମାୟା ଓ ଅବ୍ୟକ୍ତ ରୂପ କାଳ। ମାୟା ପ୍ରକୃତ ସତ୍ୟକୁ ଆବୃତ କରେ ଓ ମିଥ୍ୟାକୁ ସତ୍ୟବୋଲି ଭ୍ରମଜାତ କରାଏ। "ହିରଣ୍ମୟେନ ପାତ୍ରେଣ ସତ୍ୟସ୍ୟାପିହିତ ମୁଖମ୍।" 'ବାଘ ଶିକାର'ର ସମସ୍ତ ଚରିତ୍ର ଉର୍ଣ୍ଣନାଭି ପରି ଅନ୍ଧାରରେ ଜାଲ ବୁଣନ୍ତି। ଅସତ୍ୟ ବସ୍ତୁକୁ ସତ୍ୟ ବୋଲି ମଣନ୍ତି। ଅଯଥା, ହସ-କାନ୍ଦ, ସନ୍ଦେହ, ଅବିଶ୍ୱାସ, ଓ ହତାଶାର ଶିକାର ହୁଅନ୍ତି। ରହସ୍ୟମୟ ମାୟା ଜଙ୍ଗଲ ଭିତରେ ମହାକାଳ ରୂପୀ ବାଘକୁ ସେମାନେ ଖୋଜିଲେ ମଧ ବାଘ ମିଳେନା। 'ବାଘ ଯେତେ ଘୁଞ୍ଚିଯାଏ ହା-ହା କାର ଲଘେ ଶୂନ୍ୟତାର।'

ଶବ୍ଦ ହିଁ ବ୍ରହ୍ମ। ସଂସ୍କୃତ ଶ୍ରୀମଦ୍‌ଭାଗବତର ୧୧ଶ ସ୍କନ୍ଧ, ୩ୟ ଅଧ୍ୟାୟରେ ଏହାର ବର୍ଣ୍ଣନା ରହିଛି। ଶବ୍ଦ ବ୍ରହ୍ମ ଅନାଦି ଓ ଅନନ୍ତ ଯାହା ଭିତରେ ଭୟାର୍ତ୍ତ ଅନିତ୍ୟ ଶବ୍ଦମାନେ ବାରମ୍ବାର ତିଆରି ହୋଇ ବିନଷ୍ଟ ହୁଅନ୍ତି।

"ପ୍ରଥମ ସାକ୍ଷାତେ ଶବ୍ଦ। ଶବ୍ଦମାନେ ଦ୍ରୁହସିତ ବହୁଦିନୁଁ ଭୁଲିବା ପ୍ରେମର
ହଳଦିଆ ପୁନର୍ଜନ୍ମେ। ଶବ୍ଦମାନେ ଫୁଟୁଥିଲେ ଭୟର ଉତ୍ତାପେ
ଆପେ ସୃଷ୍ଟି ହେଉଥିଲେ ଶବ୍ଦମାନେ, ଆପେ ମଧ୍ୟ ଧ୍ୱଂସ ହେଉଥିଲେ।"(୮)

ପୁନଶ୍ଚ,

"ଆମେ ଦେଖି ନାହୁଁ ବାଘ କୌଣସି ସ୍ତ୍ରୀଲୋକ,
ତଥାପି ବିଶ୍ୱାସ କରୁଁ, ଶବ୍ଦଦ୍ୱାରା ଏ ବାଘ ଓ ସ୍ତ୍ରୀଲୋକ ନିର୍ମିତ,
ଆମେ ବି ଶବ୍ଦର ଅଂଶ, ଆମେ ତେଣୁ ବାଘ ଓ ସ୍ତ୍ରୀଲୋକ।"(୯)

କବି ଏଠାରେ ଶବ୍ଦ ସହିତ ବାଘ, ସ୍ତ୍ରୀଲୋକ ଓ ନିଜକୁ ରଖି ବର୍ଣ୍ଣନା କରନ୍ତି। ଆଦି ଜନନୀ ଓ ଆଦି ପିତାଙ୍କଠାରୁ ଆମେ ଜାତ। ତେଣୁ ତାଙ୍କ ସହିତ ଆମର ସମ୍ପର୍କ ରହିଛି। ପୁନଶ୍ଚ ଗୌଡ଼ୀୟ ବୈଷ୍ଣବମାର୍ଗୀମାନେ ନାରୀ ରୂପରେ ଈଶ୍ୱରପ୍ରାପ୍ତି କାମନା କରିଥାନ୍ତି। "ଓଷଧୀଷାନନ ହେ ମାଗୁଛି ପାଦଧରି/ 'ଓ' କରିବି 'ଆଲୋ ଦାସି' ଡ଼ାକିଲେ କିଶୋରି।"(୧୦) ସମସ୍ତଙ୍କ ହୃଦୟରେ ବ୍ରହ୍ମମୟ ସତ୍ତା ହିଁ ନିହିତ। "ସକଳ ଘଟରେ ପୂରି ସମାନରେ ନୋହେଁ ସାନ ବଡ଼ କରି।"(୧୧)

ମିଥ୍ ପ୍ରୟୋଗରେ ରମାକାନ୍ତ ମଧ୍ୟ ଆମର ପାରଂପରିକ ଓ ସାଂସ୍କୃତିକ ପୃଷ୍ଠଭୂମିକୁ ଆଧାର କରିଛନ୍ତି। ଏଗୁଡ଼ିକ ପ୍ରାୟ ଅଧିକାଂଶ ଆମ ମାଟି ପାଣି ଓ ପବନରେ ଗଢ଼ା। ରକ୍ତମଜ୍ଜାଗତ।

"ପାଗଳ ଜାହାଜ ଡ଼େକ୍ ପୂର୍ଣ୍ଣକରି କର୍ପୂର ଓ କସ୍ତୁରୀ ଗନ୍ଧରେ
ବାତୁଳ ନନ୍ଦିନୀ କହେ ଏ ଅଙ୍ଗ ମୁଁ ଦେବଇଁ କେମନ୍ତେ
ଆଜ୍ଞା ପ୍ରମାଣରେ ସେ ହୁଅଇ ନବଯୁବା
ଓ କୁହୁଡ଼ି ଢ଼ାଙ୍କିଦିଏ ଦୁଇକୂଳ ଲୋକଙ୍କ ଦେଖିବା।
ସେ ଉଲ୍ଲୀ କୈବର୍ତ୍ତୀ ପୁଣି ଫେରିଯିବ ଋଷିଙ୍କ ସ୍ୱପ୍ନରୁ।"(୧୨)

ଏଠାରେ ପରାଶର ଓ ମସ୍ତଗନ୍ଧାଙ୍କ ଶୃଙ୍ଗାର ସମ୍ପର୍କରେ ବର୍ଣ୍ଣନା କରାଯାଇଛି। ବ୍ୟବହୃତ କତିପୟ ଶବ୍ଦାବଳୀ ଯଥା, 'ଦେବଇଁ କେମନ୍ତେ', 'ବାତୁଳ', 'ଆଜ୍ଞା ପ୍ରମାଣରେ', 'ହୁଅଇ', 'ନବଯୁବା' ଆମର ପ୍ରାଚୀନ ପୁରାଣ ସାହିତ୍ୟର ଭାଷାକୁ ଉଜ୍ଜୀବିତ କରିବା ସହିତ ପରିବେଶକୁ ତତ୍କାଳୀନ ପୃଷ୍ଠଭୂମିକୁ ନେଇ ଭାବୋଦ୍ଦୀପକତା ପ୍ରକାଶ କରିଥାଏ। ପୁଣି, "କିଏ ସେ କରିବ ଅବା ପାଞ୍ଚ ମୁଠା ଅରୁଆ ଚାଉଳେ/ବାଟିବୁଟି ପିତୁଳାଟେ, ପିନ୍ଧାଇବ ହଳଦିଆ ଲୁଗା"। ବିଧି-ନିର୍ଦ୍ଦିଷ୍ଟତାହିଁ ସକଳ ବାରଣ ସତ୍ତ୍ୱେ ବାସ୍ତବାୟିତ ହୁଏ। ବିମର୍ଷ ଭାଗ୍ୟରେ ମଧୁଯାମିନୀ ମଧ୍ୟ ମଶାଣିରେ ପରିଣତ ହୁଏ। ଲୋକଗଳ୍ପ ଉପରେ ଆଧାରିତ ଶାପଗ୍ରସ୍ତ ରାଜକୁମାର ବି ଆପଣା ହସ୍ତରେ ଚିତ୍ରିତ ବାଘର ଶିକାର ହୁଅନ୍ତି।(୧୩) ନଶ୍ୱର ଦେହର ମୃଣ୍ମୟତା ସମ୍ପର୍କରେ ଗୀତା ଦର୍ଶନ (ବାସାଂସିଜୀର୍ଣ୍ଣାନି ଯଥା ବିହାୟ---) ସହିତ ସେ କହନ୍ତି-

"ମାଂସ ମଧ୍ୟ ଲୁଗାପରି, କାଳକ୍ରମେ ହୁଏ ପୁରାତନ
ପରିତ୍ୟକ୍ତ ହୁଏ କେଉଁ ଶ୍ମଶାନର କଦମ୍ବ ଡ଼ାଳରେ।"(୧୪)

ତାଙ୍କ ନିଜ କବିତା ଭିତରେ ଅନ୍ୟ କବିଙ୍କର ପ୍ରସିଦ୍ଧ ଉକ୍ତିକୁ ପରିବେଷଣ କରି ସେ ଭାବସାନ୍ଦ୍ରତା ସୃଷ୍ଟି କରନ୍ତି। ବ୍ରହ୍ମଦର୍ଶୀ ମଧୁସୂଦନଙ୍କ 'ନିଃଶବ୍ଦେ ଜୀବନସ୍ରୋତ ଧାଉଁଛି କିପରି--' ଓ 'ଗୋବିନ୍ଦ ଚନ୍ଦ୍ର'ର 'କାଲି ଯାଆ ଯୋଗୀ ହୋଇକରି କୁମର ମଣିରେ'- 'ବିମାନ ଦୁର୍ଘଟଣାରେ ମୃତ୍ୟୁ' କବିତା ଭିତରେ ଗୁମ୍ଫିତ ହୋଇ ଆତ୍ମାର ଅମରତ୍ୱ ଓ ଦେହର ଅସାରତା ସମ୍ପର୍କରେ ଭାବସନ୍ଦ୍ରତା ଆଣେ। (୧୫)

'ସପ୍ତମରତୁ' ଗ୍ରନ୍ଥର ପୃଷ୍ଠବନ୍ଧରେ କବି ବୈଷ୍ଣବ କବି ଭକ୍ତ ଚରଣ ଦାସଙ୍କ 'ମଥୁରାମଙ୍ଗଳ' କାବ୍ୟର ଏକ ନବମୂଲ୍ୟାୟନ କରିଛନ୍ତି। 'ସଚ୍ଛିଦ୍ର ଅନ୍ଧାର' ପୃଷ୍ଠବନ୍ଧରେ ଭାଗବତର ଦଶମ ସ୍କନ୍ଧ ଓ 'ଶ୍ରୀରାଧା'ର ପୃଷ୍ଠବନ୍ଧରେ ବୈଷ୍ଣବ ପରମ୍ପରାରେ ଶ୍ରୀରାଧା-ତତ୍ତ୍ୱକୁ ସେ ଖୁବ୍ ଆଧୁନିକ ଓ ନୂତନ ଦୃଷ୍ଟଭଙ୍ଗୀ ନେଇ ଆଲୋଚନା କରିଛନ୍ତି। ପୁନଶ୍ଚ 'ଭୀମଭୋଇଙ୍କ ଦୃଷ୍ଟାନ୍ତ' ପ୍ରବନ୍ଧଟି ମହିମାଦର୍ଶନ ଓ ଭୀମ ଭୋଇଙ୍କ କାବ୍ୟ ପ୍ରତିଭାର ଏକ ଅଭିନବ ଆକଳନ କହିଲେ ଅତ୍ୟୁକ୍ତି ହେବ ନାହିଁ। (୧୬) ମୃତ୍ୟୁଚେତନା ମୂଳକ କବିତା 'ଚିତ୍ର ପ୍ରତିମା' ଭକ୍ତ ଚରଣଙ୍କ 'ମନବୋଧ ଚଉତିଶା'ର, ''ଚିତ୍ର ପ୍ରତିମା ପ୍ରାୟ ଦିଶୁ ସୁନ୍ଦର/ଚିରି ଭିତର ଦେଖ କି ନାଗଖାର---।'' ଉପରେ ଆଧାରିତ।

ସମଗ୍ର 'ଶ୍ରୀରାଧା' କାବ୍ୟଟି ମିଥ୍ ଆଧାରିତ। ଏକାନ୍ତ ଭାବରେ ଏ କାବ୍ୟଟିରେ କବି ଆମ ପୁରାଣ ସାହିତ୍ୟର ଶ୍ରେଷ୍ଠ ପୁରୁଷ ଶ୍ରୀକୃଷ୍ଣ ଓ ଚିରନ୍ତନ ପ୍ରେମିକା ଆଭିରୀ ନାରୀ ରାଧାଙ୍କ ପ୍ରସଙ୍ଗରେ ଚିରନ୍ତନ ମଣିଷର ଶୋକ, ଅଶ୍ରୁ, ଅଭୀପ୍‌ସା, ଉପେକ୍ଷା, ରାଗରୋଷ, ପ୍ରେମପ୍ରଣୟ ଓ ମାନର ଚିତ୍ର ପ୍ରଦାନ କରିଛନ୍ତି। ତାଙ୍କ ଚେତନାରେ ମୃତ୍ୟୁ ଏକ ବିଶିଷ୍ଟ ଭୂମିକା ବହନ କରି ଏ କାବ୍ୟରେ ମଧ ଶୋକାତୁରା ରାଧାଙ୍କ ପ୍ରାଣ ଓ ମନକୁ ଅଧିକାର କରି ବସିଛି। ପ୍ରେମ ପ୍ରସଙ୍ଗରେ ଯେଉଁ ଅଚରିତାର୍ଥତା ତାଙ୍କ କାବ୍ୟ ଭାବନାରେ ଏକ ବିଶିଷ୍ଟ ଅଙ୍ଗ ଭାବେ ଅର୍ଦ୍ଧ ଶତାଧିକ କବିତାରେ ପ୍ରକାଶିତ ହୋଇଛି ଏହି କାବ୍ୟରେ ତା'ର ଏକ ପରିପୂର୍ଣ୍ଣ ଚିତ୍ର ଦେଖିବାକୁ ମିଳେ। ଶ୍ରୀକୃଷ୍ଣ ପରମ ପୁରୁଷ ହୋଇ ମଧ ମୃତ୍ୟୁ ମହାକାଳର କବଳରୁ ନିଜକୁ ରକ୍ଷାକରି ପାରି ନାହାନ୍ତି; ତାହାହିଁ ରାଧାଙ୍କ ମନ ଓ ପ୍ରାଣରେ ଏହି ପରମ ପ୍ରେମିକ ପୁରୁଷ ଶ୍ରେଷ୍ଠ ମଣିଷ ପ୍ରତି ନାନାଦି ପ୍ରଶ୍ନ ସୃଷ୍ଟି କରିଛି ଓ ଶ୍ରୀକୃଷ୍ଣଙ୍କ ଜୀବନର ଅଚରିତାର୍ଥତାକୁ ପ୍ରତିପନ୍ନ କରିଛି। ବସ୍ତୁତଃ ଏହାହିଁ ଆଧୁନିକ ମଣିଷ ଜୀବନର ଏକ ବିଶିଷ୍ଟ ପ୍ରସଙ୍ଗ। ସେ ତା' ଜୀବନ କାଳରେ କେତେ ପରିମାଣରେ ସଫଳ-ଏହା ହିଁ ପ୍ରଶ୍ନ। ତା'ର ଉତ୍ତର ରମାକାନ୍ତ ତାଙ୍କ କାବ୍ୟ ଜୀବନ ସାରା ହୁଏତ ଖୋଜିଛନ୍ତି-ଉତ୍ତର ପାଇ ନାହାନ୍ତି। ଶ୍ରୀରାଧା ହୁଅନ୍ତୁ ବା ଶ୍ରୀକୃଷ୍ଣ ହୁଅନ୍ତୁ- ଏମାନେ ଏଭଳି ଜଣେ ଜଣେ ଅଚରିତାର୍ଥ ମଣିଷ ଯେଉଁମାନଙ୍କ ବ୍ୟକ୍ତିତ୍ୱର ବ୍ୟାକୁଳତା ସେମାନଙ୍କୁ ବହୁ ପାଖରେ ବିନ୍ଧ କରେ, ଛଟପଟ କରେ। ସେମାନେ ଧନ୍ଦି ହୁଅନ୍ତି, ଖୋଜି ହୁଅନ୍ତି। କେତେ ବା ପାଆନ୍ତି ? କିନ୍ତୁ ହଜେଇ ବସନ୍ତି ଅନେକ ଭାଗ। ଏହା ହିଁ କାବ୍ୟନାୟକ ଓ ନାୟିକାକୁ ଏକ ଗଭୀର ଅତୃପ୍ତିରେ ଓ ନୈରାଶ୍ୟରେ ଛଟପଟ କରାଏ। ରମାକାନ୍ତଙ୍କ କବିତା ଭିତରୁ ଅନୁଭୂତିର ଏ ଗଭୀରତାକୁ ମାପିବା ଯେପରି କଷ୍ଟକର ତା' ବିଷୟରେ ଏକ ମୀମାଂସାରେ ପହଞ୍ଚିବା ମଧ ତତୋଧିକ ଦୁରାତିସାଧ।

## ପାଦଟୀକା.

୧. Tradition and the Individual Talent-
Selected Prose of T.S. Eliot- Edited by-Frank Kermode- Faber and Faber Ltd.London- (1975)- P.38
୨. The Unity of European Culture- (Appendix) Notes Towards the Definition of Culture- T.S. Eliot- Faber and Faber- P 114.
୩. ପ୍ରତିଳିକା-କେତେଦିନର- ପୃ ୨୮
୪. ନବଗୁଞ୍ଜର-ତତ୍ରୈବ-ପୃ ୩୬
୫. ପୃଷ୍ଠବନ୍ଧ-କେତେଦିନର-ରମାକାନ୍ତ ରଥ-ପୃ ୧୦୪
୬,୭. ଶ୍ରୀମଦ୍‌ଭାଗବତ-୧୧ ଶ ସ୍କନ୍ଧ, ୧୦ ମ ଅଧ୍ୟାୟ-ଅବଧୂତ ଉବାଚ
୮. ବାଘଶିକାର- ଅନେକ କୋଠରୀ- ପୃ ୫
୯. ତତ୍ରୈବ
୧୦. ବିଦଗ୍ଧ ଚିନ୍ତାମଣି-(ପ୍ରଥମ ଛାନ୍ଦ)-ଅଭିମନ୍ୟୁ ସାମନ୍ତ ସିଂହାର
୧୧. ସ୍ତୁତି ଚିନ୍ତାମଣି-ଭୀମଭୋଇ
୧୨. ବାଘ ଶିକାର-ଅନେକ କୋଠରୀ-ପୃ ୬
୧୩. ତତ୍ରୈବ- ପୃ ୧୫
୧୪. ବର୍ଷାଋତୁ- ତତ୍ରୈବ- ପୃ ୩୮
୧୫. ବିମାନ ଦୁର୍ଘଟଣାରେ ମୃତ୍ୟୁ- ତତ୍ରୈବ- ପୃ ୫୪
୧୬. ଭୀମଭୋଇଙ୍କ ଦୃଷ୍ଟାନ୍ତ- ରମାକାନ୍ତ ରଥ- ଝଙ୍କାର-
୩୪ ଶ ବର୍ଷ, ବିଷୁବ ୧୯୮୨, ପୃ ୨୫।

୭

# ଷଷ୍ଠ ପରିଚ୍ଛେଦ

## ରମାକାନ୍ତଙ୍କ କବିତାରେ 'ତମେ'ର ସ୍ୱରୂପ

ଅନେକ ସମୟରେ ଜିଜ୍ଞାସା ଉପୁଜେ ରମାକାନ୍ତଙ୍କ 'ତମେ' ସମ୍ପର୍କରେ। କିଏ ସେ ରହସ୍ୟମୟୀ ସତ୍ତା 'ତମେ' ଯାହା ତାଙ୍କ କାବ୍ୟ ଜଗତର ଅଧିଷ୍ଠାତ୍ରୀ ଦେବୀ ଓ ଯାହା କେଉଁ ଲୋକକଥାର ବୁଢ଼ୀ ଅସୁରୁଣୀ ପରି ନିଜ ଇଚ୍ଛାମତେ ସବୁର ରୂପାନ୍ତର ଆଣିପାରେ, ସକଳ କାର୍ଯ୍ୟ-କାରଣର ମୂଳ ହୋଇପାରେ ? ଏହି 'ତମେ' ସତ୍ତାଟି କାବ୍ୟପୁରୁଷର ପ୍ରାରମ୍ଭିକ ପର୍ଯ୍ୟାୟରୁ ତା' ଉପରେ ସବାର ହୋଇଛି ଓ ବିବିଧ ଦୃଷ୍ଟିଭଙ୍ଗୀ ନେଇ ତାକୁ ଦେଖିବାର ମୋହାଞ୍ଜନ ପ୍ରଦାନ କରିଛି। ଏହାର ସ୍ୱରୂପ ନିର୍ଣ୍ଣୟ ବାହ୍ୟତଃ ଯଦିଓ ଅସହଜ ତଥାପି କବିତା 'ଚିତ୍ରପ୍ରତିମା'କୁ ମୂଳସୂତ୍ର ଧରି ଏହାର ନିର୍ଦ୍ଧାରଣ ପନ୍ଥା ନିର୍ବାଚନ କରାଯାଇପାରେ।

"ତମେ ଦିଶ ଯେଉଁପରି ଦେଖାଯାଏ ନିଜର ଅତୀତ,
ନିଜର ଚିନ୍ତାର ଶବ୍ଦପରି ଶୁଭେ ତମ ସ୍ୱର, ତମେ
ମୋ'ଠାରୁ ବିଚ୍ଛିନ୍ନ କଲ
ମୋର ସବୁ ସୁକୃତ ଦୁଷ୍କୃତ।
ମୁଁ କେବଳ ଏକ ସ୍ରୋତ ବୋହିଯାଏ ତମରି ଆଡ଼କୁ,
ଜନ୍ମ ପୁନର୍ଜନ୍ମ ପିଲାଦିନ ବୁଢ଼ାଦିନ
କିଛି ନାହିଁ ଏପରିକି ତମ ହସହସ
ମୁହଁ ନାହିଁ, ଅଥଚ ମୁଁ ଦେଖୁଛି ତମକୁ।" (୧)

'କାବ୍ୟପୁରୁଷ' ଓ 'ତମେ' ଏକ ଓ ଅଭିନ୍ନ ସତ୍ତା। ସେହିଁ ତାର ଅତୀତ। ତାର ଆଜି ଓ ଆସନ୍ତା-କାଲି। ଚୈତନିକ ପୃଷ୍ଠଭୂମିର ସାମ୍ୟ ହିଁ ସବୁ କିଛିକୁ ଯୋଡ଼ି ଦେଇଛି ପାର୍ବତୀ-ପରମେଶ୍ୱର ପରି। ଶବ୍ଦ ଓ ଅର୍ଥର ବିଯୋଗରେ ଉଭୟର ସ୍ଥିତି ଯେପରି ନିରର୍ଥକ, ଅନୁରୂପ ଭାବେ କାବ୍ୟପୁରୁଷ ଓ 'ତମେ'। ଏପରି ଏକ ରହସ୍ୟ ବିଜଡ଼ିତ ଉତ୍ତରିତ ପର୍ଯ୍ୟାୟରେ ସେ ଉପନୀତ ଯେ ସେଠି ଆଉ ହୁଏତ ଇନ୍ଦ୍ରିୟଗ୍ରାହ୍ୟ ସତ୍ତାର ଉପସ୍ଥିତି ଅବର୍ତ୍ତମାନ ଥାଇ ପାରେ; କିନ୍ତୁ ସେ ତାକୁ ଠିକ୍ ଦେଖିପାରେ ଅନନ୍ତ ସମୟର ଅବିଚ୍ଛିନ୍ନତାରେ ଓ ମହାନ୍ ସ୍ରୋତର ଅଖଣ୍ଡ ପ୍ରବହମାନତାରେ। ସେଠି ସେ ଅରଣ୍ୟର ସ୍ୱର ଶୁଣେ,

ସନ୍ୟାସୀର ସ୍ୱର ଶୁଣେ। ଏ ଶତାବ୍ଦୀଠୁ ବହୁତ ପଛରେ ରହିଯାଇଥିବା ଶତାବ୍ଦୀ ଓ ବାକୀଥିବା ଶତାବ୍ଦୀ ମାନଙ୍କର ସ୍ୱର ମଧ୍ୟ ଶୁଣେ। ଏହି 'ତମେ' ସବାଟି କେତେବେଳେ, ନିଷ୍କାମ ସନ୍ୟାସୀଟିଏ ତ ପୁଣି କେତେବେଳେ, "ମୁଁ ଜାଣେ ଯେ ଫୁଲପରି ତମେ ଜଳ, ତମର ଓଠରେ,/ଜଙ୍ଘରେ ଓ ସମଗ୍ର ଦେହରେ/ ନିଆଁ ଜଳେ। ତମେ କିଛି କହ ବା ନକହ/ ମୁଁ ତମକୁ ପୁରା ବୁଝିପାରେ।"(୨) "ରକ୍ତମାଂସ ଦେହଧାରୀଙ୍କ ସହ ସମ୍ପର୍କ ବେଳେବେଳେ ଦେହାତୀତ ହୋଇଯାଏ। ପୁଣି ଦେହାତୀତ ସମ୍ପର୍କର ପ୍ରତିଶ୍ରୁତି ଥିବା ଜାଗାରେ ବେଳେବେଳେ ସମ୍ପର୍କ ପଞ୍ଚେନ୍ଦ୍ରିୟଙ୍କ ବାଟେ ବି ଉପଲବ୍ଧ ହୁଏ। ଜୀବନରେ ଏ ସବୁକୁ ଅଲଗା ଅଲଗା କରିବା କାଠିକର ପାଠ। ଅସମ୍ଭବ।" (୩)

ଦେହ ଓ ଦେହାତୀତ ଭିତ୍ତିକ ଦର୍ଶନ ତତ୍ତ୍ୱ ସମ୍ପର୍କରେ ପ୍ରଶ୍ନ ଉଠିଲା ମାତ୍ରେ ଏହାର ନାଭିକେନ୍ଦ୍ର ଭାବରେ ପ୍ରତିଭାତ ହୋଇ ଉଠେ ପ୍ରେମ। ଶ୍ରୀ ରଥ ଦେହ ମଧ୍ୟ ଦେଇ ବିଦେହୀ ସତ୍ତା ଓ ଏଇ ବିଦେହ ରାଜ୍ୟରେ ପ୍ରବେଶ ପାଇଁ ବେଳେବେଳେ ଦେହ ପାଲିଙ୍କିର ଯେ ଆବଶ୍ୟକତା ପଡ଼େ ଏ କଥା ସ୍ୱୀକାର କଲାବେଳେ ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଜଗତରେ ଏହାର ସ୍ୱୀକୃତି ଅନେକ ଯୁଗରୁ ମିଳି ସାରିଛି। ସାହିତ୍ୟ କ୍ଷେତ୍ରରେ ଏହାର ପ୍ରଚାରର ସ୍ଫୁରଣ ଘଟିଥିଲେ ମଧ୍ୟ ପ୍ରଥମେ ଯେ ଏହି ଚେତନା ଧାର୍ମିକ ପୃଷ୍ଠଭୂମି ସମ୍ଭୂତ ଓ ଗୃହୀତ ତାହା ଲକ୍ଷଣୀୟ। ଉତ୍କଳୀୟ ବୈଷ୍ଣବ ପରମ୍ପରାରେ ଜ୍ଞାନଭକ୍ତିର ପ୍ରାଧାନ୍ୟ ବିସ୍ତାର ହୋଇଥିଲେ ମଧ୍ୟ ଗୌଡ଼ୀୟ ପରଂପରାରେ ପ୍ରେମଭକ୍ତି ମୂଳମନ୍ତ୍ର। ଭାଗବତର ବୀଜ ଆଧ୍ୟାତ୍ମିକତା ହେଲେ ହେଁ ଏଥିରେ ପ୍ରେମ-କାମ, ଦେହ-ବିଦେହକୁ ପ୍ରତୀକିତ କରାଯାଇଛି। ଭାଗବତରେ ବର୍ଣ୍ଣିତ ଅଛି ଶରତ ରାତ୍ରିରେ ବିକଶିତ ପ୍ରଫୁଲ୍ଲ ମଲ୍ଲିକା ଦର୍ଶନ କରି ଭଗବାନ ଯୋଗମାୟାଙ୍କର ଆଶ୍ରୟ ଗ୍ରହଣ ପୂର୍ବକ ଯୋଗୀମାନଙ୍କ ସହିତ ରମଣ କରିବାର ଇଚ୍ଛା ପ୍ରକାଶ କଲେ।

"ଭଗବାନପି ତା ରାତ୍ରିଃ ଶାରଦୋତ୍ଫୁଲ୍ଲମଲ୍ଲିକାଃ।
ବୀକ୍ଷରନ୍ତୁ ମନଶ୍ଚକ୍ରେ ଯୋଗମୟାମୁପାଶ୍ରିତଃ ॥"(୪)
ଏହା ସହିତ ଓଡ଼ିଆ ଭାଗବତର ମନୋଜ୍ଞ ସ୍ୱର ଶୁଣାଯାଉ-
"ଗୋବିନ୍ଦ ବିଚାରନ୍ତି ମନେ। ଆଜି ରମିବା ବୃନ୍ଦାବନେ॥
ଷୋଳ ସହସ୍ର ଗୋପନାରୀ, ମୋତେ ବରିଲେ ତପକରି॥
ମୁଁ ତାଙ୍କ ପୂରାଇବି ଆଶ। ସେ ମୋର ଭକତ ବିଶ୍ୱାସ॥
ଅନେକ ଜନ୍ମେ ତପ କରି। ଏବେ ହୋଇଲେ ଗୋପନାରୀ॥
ରମିଣ ଦେବି ନିଜ ପୁର। ଆଜ ମୁଁ କରିବି ନିସ୍ତାର॥

\+ + +

ମାୟାର ଯୋଗବଳେ ହରି। ଷୋଳ ସହସ୍ର ରୂପ ଧରି॥
ହୋଇଲେ ବେନି ବେନି ଜନ। ଗୋପୀ ରମିଲେ ଭଗବାନ॥
ରତି ପଣ୍ଡିତ ବଳବନ୍ତ। ତୋଷିଲେ ଗୋପୀଙ୍କର ଚିତ୍ତ॥(୫)

ଏହି ପ୍ରସଙ୍ଗ ମନରେ ବିସ୍ମୟାତ୍ମକ ପ୍ରଶ୍ନବୋଟୀଟିଏ ଆଣେ। ଭଗବାନ ଓ ରମଣ? ବୈଷ୍ଣବ ମତରେ 'ରମଣ ଇଚ୍ଛା' ଏକ ସହଜ ଭାବ, ସୁଖର ପୂର୍ବରାଗ। ସୃଷ୍ଟି ସଂରଚନାର ପ୍ରାକ୍‌କାଳରେ ଭଗବାନଙ୍କର ରମଣେଚ୍ଛା ଅର୍ଥାତ୍ ସୁଖାନୁରାଗର ସଞ୍ଚାର ହୋଇଥିଲା। ଗୋଲୋକରେ

ରାଧା ସହ ସେ ନିତ୍ୟ ରମଣ ରତ। ଏହା ଇନ୍ଦ୍ରିୟାତୀତ। ତେଣୁ ଆଦି ଅନାଦି ନିରାକାରଙ୍କ ନିକଟରେ ଇନ୍ଦ୍ରିୟର ପ୍ରଶ୍ନ ଅହେତୁକ। ଏହା ପ୍ରାଣ ଓ ଭାବର ମିଳନ। ପ୍ରେମ। ଇନ୍ଦ୍ରିୟ ପ୍ରକ୍ରିୟା ସଂଜାତ ପ୍ରୀତି ତ କାମ। ଶ୍ରୀକୃଷ୍ଣଙ୍କ ରମଣେଚ୍ଛା ଅପ୍ରାକୃତ। କାମବୀଜ ପୁଣି ତାଙ୍କର ଉପାସନାର ମନ୍ତ୍ର। ରାଧିକା ସେହି କାମବୀଜର ସ୍ୱରୂପ, ଅର୍ଥାତ୍ ତାର ବିଷୟ ରାଧା ଏବଂ ଆଶ୍ରୟ ଶ୍ରୀକୃଷ୍ଣ।

ପ୍ରାଚୀନ ତନ୍ତ୍ର ଶାସ୍ତ୍ରରେ ମଧ ଏହି ଦେହ ବା ଦେହ କୈନ୍ଦ୍ରିକ ମୈଥୁନକୁ ସ୍ୱୀକାର କରାଯାଇଛି। ସୃଷ୍ଟି, ସ୍ଥିତି ଓ ପ୍ରଳୟତ୍ରୟର ପ୍ରଧାନ କାରଣ ହେଲା ଏହି ମୈଥୁନ ବା ମିଳନ। ସେଥିରେ ସିଦ୍ଧିପ୍ରାପ୍ତ ହେଲେ ସୁଦୁର୍ଲ୍ଲଭ ବ୍ରହ୍ମଜ୍ଞାନ ଲାଭକରି ହୁଏ। ନାଦ ବିନ୍ଦୁକୁ ଯୋଗ କରି ଯେଉଁ ଯୁକ୍ତ ଧୀମାନ୍ ପୁରୁଷ ଶିବ-ଶିବାଙ୍କ ମିଳନରେ ମୈଥୁନର ଅବସାନ ଘଟାଏ, ଆତ୍ମା ଓ କୁଳକୁଣ୍ଡଳିନୀର ସଂଯୋଗ ରୂପକ ମୈଥୁନରେ ଯିଏ ରତ, ସେ ହେଲେ ପ୍ରକୃତ ମୈଥୁନ ସାଧକ। ମୈଥୁନର ଏହି ଅନ୍ତର୍ନିହିତ ଭାବ ସାଧକ ମନରେ ଉଦୟ ହୁଏ ଯେତେବେଳେ ସେ ପୂର୍ଣ୍ଣ ଜ୍ଞାନର ଅଧିକାରୀ ହୋଇ ପାରିବ। 'ପଞ୍ଚମକାର' (ମଦ, ମାଂସ, ମତ୍ସ, ମୁଦ୍ରା ଓ ମୈଥୁନ) ର ଭିନ୍ନାର୍ଥ ଘଟେ। ଶିବ କହୁଛନ୍ତି ପାର୍ବତୀଙ୍କୁ:

"ମୈଥୁନଂ ପରମଂ ତତ୍ତ୍ୱଂ ସୃଷ୍ଟି ସ୍ଥିତ୍ୟନ୍ତକାରଣମ୍।
ମୈଥୁନଂ ଜାୟତେ ସିଦ୍ଧି ବ୍ରହ୍ମଜ୍ଞାନମ୍ ସୁଦୁର୍ଲଭମ୍
ରେଫସ୍ତୁ କୁଙ୍କୁମାଭାସଃ କୁଣ୍ଡମଧ୍ୟେ ବ୍ୟବସ୍ଥିତଃ
ମକରଷ୍ଟ ବିନ୍ଦୁରୂପେ ମହାଯୋଗୌ ସ୍ଥିତ ପ୍ରିୟେ।
ଆକାର ହଂସମାରୁହ୍ୟ ଏକତା ଚ ସଦା ଭବେତ୍
ତଦା ଜାତଂ ମହାନନ୍ଦଂ ବ୍ରହ୍ମଜ୍ଞାନଂ ସୁଦୁର୍ଲଭମ୍।।"(୬)

ରମାକାନ୍ତଙ୍କ କାବ୍ୟାଙ୍ଗନରେ ସର୍ବଦା ଆତଯାତ ହେଉଥିବା ଚରିତ୍ରଟି ନାରୀ। କେତେବେଳେ ସେ ଜାନ୍ତବ କ୍ଷୁଧାରେ ଜ୍ୱଳନ୍ତ କାମନାମୟୀ ବ୍ୟାଘ୍ର ରୂପିଣୀ, ପ୍ରତାରଣାମୟୀ, ପୁଣି କେତେବେଳେ ଅତି ସାଧାରଣୀ ପ୍ରେମୋଚ୍ଛଳା ଅଥବା ରହସ୍ୟମୟୀ ଦେହାତିକ୍ରାନ୍ତ ସତ୍ତାଟିଏ। ପ୍ରାରମ୍ଭିକ ପର୍ଯ୍ୟାୟରୁ କାବ୍ୟପୁରୁଷ ଏକ ଉଷର ଭୂମିର ବନ୍ଧ୍ୟାତ୍ୱ ଭିତରେ ଅହରହ ଛଟପଟ। ବାଣିଜ୍ୟିକ ପ୍ରେମୀଜୀବନ ଭିତରେ ସେ ରୁଦ୍ଧଶ୍ୱାସ। ଚୁମାଟିଏ ଖାଇବା ପାଇଁ ପ୍ରାଣରେ କମ ଆକୁଳତା ନାହିଁ! କିନ୍ତୁ, "ତମ ବେକେ ହାତ ରଖି ଚୁମା କିଛି ଖାଇବା ଆଗରୁ/ତମେ ଯେ ଠକିବ ମତେ ଏଇ ଚିନ୍ତା ଉଠୁଚି ମନରେ।"(୭) ଏଠି ଉଦିତ ସୂର୍ଯ୍ୟର ମୁହଁରେ ଅସ୍ତରାରର ଛବି। ଜହ୍ନର ମୁହଁରେ ନିଶାଚର ପଳାୟନବାଦ। ଜୀବନର ସୂଚୀପତ୍ରରେ ଜରା ଓ ମୃତ୍ୟୁର କ୍ରମିକତା। କଢ଼ିର ଆଖିରେ ଝଡ଼ିବାର ସମ୍ବାଦ। ଏ ଜହ୍ନ 'ହଳଦିଆ ଜରି କାଗଜରେ କଟା ଜହ୍ନ ପରି'। ତେଣୁ ଏଠି ଚନ୍ଦ୍ରର ଶୀତଳତା କାହିଁ? ସ୍ନିଗ୍ଧତା ଓ ସୌନ୍ଦର୍ଯ୍ୟ କାହିଁ? ଏଇ ଜ୍ୟୋତ୍ସ୍ନାରେ କାବ୍ୟପୁରୁଷ ତା' ନାୟିକାକୁ କୋଳରେ ଧରି ତା'ର ଜୁଡ଼ା ମୁକୁଳେଇ ସାଉଁଳୁଥିଲା ବେଳେ ତା' ମନରେ ଅନେକ ସଂଶୟାତ୍ମକ ପ୍ରଶ୍ନବାଚୀ। ଏ ସୁଖର ପୌନଃପୌନିକତା କ'ଣ ସମ୍ଭବ ନା ହଠାତ୍ ମୃତ୍ୟୁର ସ୍ପର୍ଶରେ ବ୍ୟର୍ଥତାର ରାକୁତି? ସେ ତାକୁ ଭଲପାଏ କିନ୍ତୁ ତାହା ଆକସ୍ମିକ। ତା'ଉପରେ ତାଙ୍କର ଚିରନ୍ତନେଲେ ଅଧିକାର ନାହିଁ। ଗତକାଲି ବି ସମ୍ପର୍କ ନଥିଲା। ଆଜି ଖାଲି ମାଳତୀ ସାମଲର ମଧ୍ୟସ୍ଥତାରେ ସେମାନେ ଯାହା ଭେଟିଛନ୍ତି। କାଲି ଏ ସମ୍ପର୍କକୁ ଫାଙ୍କିଦେବ କାବ୍ୟନାୟିକା। ତଥାପି,

ଡ୍ରାଇଁଙ୍ଗରୁମଖାନା ଖଟିଆରେ ଶୋଇ ଶୋଇ ବି ସେ ସ୍ୱଗତୋକ୍ତି କରେ, "ମୁଁ ତମକୁ ଭଲପାଏ, ଯଦିଓ ମୁଁ ଜାଣେନି କାହିଁକି ?"(୮)

ଗହଳବାଳ ତଳେ ଚମ୍ପକ ଲେସି, ମୌସୁମୀର ଆଳସ୍ୟକୁ ପତା ତଳେ ଖୁନ୍ଦି, ଟେବୁଲ ସଞ୍ଚାଳନ ପାଇଁ ପ୍ରାଣପଣେ ପରିଶ୍ରମ କରୁଥିବା ନାରୀଟି ପ୍ରତି କାବ୍ୟପୁରୁଷ ଅନୁରୂପ ପ୍ରତିକ୍ରିୟା ପ୍ରଦର୍ଶନରେ ଅସମର୍ଥ; ଯେହେତୁ ସେ ମିଡ଼ିଅମ୍ ଧୋତି ଓ ଇସ୍ତ୍ରୀକରା ଅଧା କମିଜରେ ଜଳୁଥିବା ବା ଛଟପଟ ହେଉଥିବା ମଧ୍ୟବିତ୍ତ ସମାଜର ଜଣେ ଯନ୍ତ୍ରଣାଦଗ୍ଧ ବ୍ୟକ୍ତି।(୯) ନାରୀଟି ପାଲଟି ଯାଇଛି ଜାତବ କ୍ଷୁଧାରେ ବାଘ, ଅଥଚ କାବ୍ୟପୁରୁଷ ନପୁଂଷକତ୍ୱର ଶିକାର। ଦେହରେ ବୟସ ଥିଲେ ବି ସେ ଆଜି ବୁଢ଼ା। ସେ କୋଟ୍ ପିନ୍ଧି ତାର ସାମ୍ନା ହୋଇ ପାରୁନି। ବାଥ୍ରୁମ୍‌ରେ ଲୁଚି ଲୁଚି କାମିଜର ଇସ୍ତ୍ରୀକୁ ଦଳୁଛି। ବାଥ୍ରୁମ୍‌ର ଅନ୍ଧାର ଭିତରେ ଆପେ ହଜିଯାଉଛି। ନାରୀ ଭିତରେ କାମାଗ୍ନିର ଦହନ। ତେଣୁ ମହାବଳୀପୁରମ୍‌ର ନଗ୍ନ ଦ୍ରାବିଡ଼ୀ ଭାସ୍କର୍ଯ୍ୟ ଦେଖି ନାରୀ ଭିତରେ କାମନାର ସ୍ଫୁରଣ। ସେ ଚାହେଁ ଦୈହିକ ମିଳନ। ଉପଭୋଗ। "ଏ ହାତୀ ଗୁଡ଼ାକ କେଡ଼େ ଜୀବନ୍ତ ମ ! ମୁଁ ମକଚୁଚି ଆଖିପତା ମୋର,/ତମେ କ'ଣ କହିଲକି ଉହ୍ୟରଖି ଏ ସିଧା ପ୍ରଶ୍ନରେ ?"(୧୦) କାବ୍ୟପୁରୁଷ ମନରେ ପୌରୁଷର ଅନୁପସ୍ଥିତିରେ ଗଭୀର ଦୁର୍ବଳତା। ସେ ନାରୀକ୍ଷୁଧାକୁ ସନ୍ତୁଷ୍ଟ କରିବାରେ ଅସମର୍ଥ, ଅଥଚ ପ୍ରତି ମୁହୂର୍ତ୍ତରେ ବାଘର ଗର୍ଜନ। ବଣଭୋଜି ପରେ ଘୁମନ୍ତ ଯୁବତୀମାନେ ତାଙ୍କ ଗୋଇଠିରେ ଗୋଇଠି ଘଷିବା ଆରମ୍ଭ କରନ୍ତି। କିନ୍ତୁ ସେ ତ ଅତୀବ କ୍ଳାନ୍ତ-ଶ୍ରାନ୍ତ। ତାଙ୍କ ଇଚ୍ଛାକୁ ପୂରଣ କରିବାରେ ସେ ଅସମର୍ଥ ଠିକ୍ ଯେମିତି ଇଲିଅଟଙ୍କ ଜେରନ୍‌ସନ୍।

"I would meet you upon this honestly.
I that was near your heart was removed there from
To loose beauty in terror, terror in inquisition
I have lost my passion! Why should I need to keep it
Since what is kept must be adulterated?
I have lost my sight, smell, hearing, taste and touch
How should I use them for your closer contect"?(୧୧)

ରମାକାନ୍ତଙ୍କର ଏହି କାମନାଦଗ୍ଧ ନାରୀ ଓ ତା'ପ୍ରତି କାବ୍ୟପୁରୁଷର ଅସାମର୍ଥ୍ୟ ଆହୁରି ପ୍ରତୀକିତ ଓ ଉନ୍ମୁଖ :

"ଏବେବି ଦିଶୁଚ ତମେ ତୋଫା ବଣ ଗଙ୍ଗ ଶିଉଳିର
ମଧ୍ୟାହ୍ନ ଖରାରେ ଦଗ୍ଧ ପତ୍ର ପରି। ଏବେବି ରାତିରେ
ଅସ୍ପଷ୍ଟ ପାହାଡ଼ ତଳେ ଦପ୍ ଦପ୍ ଜଳିବା ନିଆଁର
ନିମନ୍ତ୍ରଣ ତମ ଦେହେ। ଖରାର ଘଣ୍ଟାରେ
ଏବେ ବି ହୋଇନି ସନ୍ଧ୍ୟା। କିନ୍ତୁ କେଉଁ ହଠାତ୍ ଝଡ଼ରେ
ଆମର ଜାହାଜ ହେଲା ଚୁରମାର୍, ଏବଂ ତମେ ଭାସିଗଲା ବେଳେ
ଅସହାୟ ହୋଇ ଆଉ ତକିଆକୁ ଆଖି ପିଛୁଳାକେ
ମୋ ବାର୍ଦ୍ଧକ୍ୟ କାନ୍ଦୁଅଛି ଶୁନ୍‌ଶାନ୍ ମଧ୍ୟ ରାତ୍ରିବେଳେ,
ମୁଁ ତମ ଦୁଃଖରେ ଆଜି ମ୍ରିୟମାଣ, ହେ ମୋ' ପତ୍ନୀ ମାଆ
ମୋର ମୃତ ଛୁଆଙ୍କର।"(୧୨)

କାବ୍ୟପୁରୁଷ ସିନା ଶାରୀରିକ କ୍ଷେତ୍ରରେ ନାରୀର ଉଦ୍ଦୀପ୍ତ ଯୌନ କାମନାକୁ ଚରିତାର୍ଥ କରିବାରେ ଅସଫଳ କିନ୍ତୁ ମନ ଭିତରେ ସେହି କାମନାଗ୍ନି ଧିକିଧିକି ହୋଇ ଚେଇଁଉଠେ। ସେ ଛୋଟା ଜାନୁଆରଟିଏ। ଚାଲି ପାରୁନି। ଆଖି ବି ନାହିଁ। ଦେଖି ପାରୁନି। କିନ୍ତୁ ତା' ପଛେ ପଛେ ଘୁଷୁରି ଘୁଷୁରି ଚାଲିପାରେ। ଝାଳର ବାସ୍ନାକୁ ଶୁଙ୍ଘି ଶୁଙ୍ଘି ପ୍ରତାରଣା ଭିତରେ ଚାଲେ। କିନ୍ତୁ "ଡ଼େଣା ମୋର ଆଦୌ ଲୋଡ଼ା ନାହିଁ।/ମୁଁ ବେଶ୍ ଆରାମ କରେଁ ମୋ ଶୋଇବା ଘରର ନଦୀରେ।" ଏହା ହିଁ ତାର ସାମ୍ପ୍ରତିକ ସଂସ୍ଥିତି।(୧୩) ଦେହରୁ ନାଡ଼ୀ ହଜିଗଲାଣି। ଯକୃତ୍ ଅଯୋଗ୍ୟ ହେଲାଣି। ଅବାଧ ରକ୍ତ ଚାପ। ଅଣ୍ଟା ଦରଜ। ମୁଣ୍ଡ ଝାଇଁ ଝାଇଁ ମାରୁଛି। ଅଥଚ ଏହି ବସନ୍ତ ଋତୁରେ ସେ ନାୟିକାକୁ ବେଣୀ ବାନ୍ଧୁଥିବା ଅବସ୍ଥାରେ ଦେଖିବା ପାଇଁ ଉନ୍ମୁଖ। 'ତମେ' ସତ୍ତାଟି ଏଠି ଖୁବ୍ ସାଧାରଣ ଯୁବତୀଟିଏ। ପ୍ରେମିକ ସହିତ ବହୁତଥର ସିନେମା ଯାଏ। ହାତ ଧରାଧରି ହୋଇ ବୁଲେ। ତା' ସ୍ୱାମୀର ମୃତ୍ୟୁରେ ହୁଏତ ଏହି ସବୁ କଥା ତା' ସ୍ମୃତିକୁ ଆବୁରି ବସିବ। କିନ୍ତୁ ନାୟକ କହେ ଯଦି ସେ ମରିଯାଏ ତେବେ ନାୟିକା ବା ପତ୍ନୀ ବୈଧବ୍ୟ ଲୁହରେ ଆକ୍ରାନ୍ତ ହେବାର ଆବଶ୍ୟକତା ନାହିଁ। ଏଠି 'ତମେ' କେବଳ ଦେହ ସତ୍ତାଟିଏ। ଦେହକୁ ବାଦ ଦେଲେ ସୌନ୍ଦର୍ଯ୍ୟ ନାହିଁ, ରୂପ ନାହିଁ, କିଛି ନାହିଁ ଯେମିତି-

"ତମ ଇନ୍ଦ୍ରଧନୁ ଦେହେ ମୁଁ ଗୋଟିଏ ରଙ୍ଗ ହୋଇପାରେ
କିନ୍ତୁ ତମେ ଯେତେବେଳେ ସେ ରଙ୍ଗର ଶାଢ଼ୀରେ ବାହାର
ସେ ଋତୁ ବସନ୍ତ ଋତୁ, ଏବଂ ଆମେ ଦୁହେଁ ଯେତେବେଳେ
ସେ ରଙ୍ଗର ମଶାଣିରେ ଠିଆ ହେଉ, ସେତେବେଳେ କ'ଣ
ଜଣାଯାଏ ନାହିଁ ଆମେ ସାଥି ବୋଲି ବହୁତ ଜନ୍ମର ?"(୧୪)

ନାୟିକାର ପ୍ରୀତିରେ ଶ୍ରୀରାଧା ପ୍ରୀତିର ଐକାନ୍ତିକତା ଅଲଭ୍ୟ। ନାୟିକା ଜାଣେ ନାୟକ ନପୁଂସକ। ତଥାପି ତା' ସିନ୍ଦୂର ଦାଗ ତା' ଢ଼ଣ ଢ଼ଣ ଲୋଚାକୋଚା ପଞ୍ଜାବୀରେ ଲାଗେ। ନାୟିକାର ଅସଲ ରୂପ ବିବର୍ଣ୍ଣ ଓ ହୃଦୟ ମୃତ। ଏବେ ଯାହା ପଡ଼ିଛି ତାହା ମୂର୍ଚ୍ଛାର ମାତ୍ର। ତେଣୁ ମୂର୍ଚ୍ଛାର କହେ, "ଶ୍ୟାମ ପଦଧୂଳି ବୋଜ ମୋର ଶିର----"(୧୫) ଏଠାରେ ବ୍ୟଞ୍ଜନାତ୍ମକ ତଥା ବ୍ୟଙ୍ଗାତ୍ମକ ଭଙ୍ଗୀରେ କାମନାଦଗ୍ଧ ନାରୀର ଯୌନ ଲିପ୍ସା ଓ ମିଥ୍ୟା ସତୀତ୍ୱର ପ୍ରତୀକିତ ରୂପ ହିଁ ଅନୁମେୟ। ଏହି ନାରୀଟିଠାରେ କେତେବେଳେ ବସନ୍ତଋତୁ ମଥା ପିଟୁଥାଏ ପୁଣି କେତେବେଳେ ବାଘ ହାଉଁ ହାଉଁ ଡ଼ାକୁଥାଏ। ପୁଣି ତାକୁ ଏକ ବ୍ୟଙ୍ଗାତ୍ମକ ଦୃଷ୍ଟିରେ ସେ କେଉଁ ଅପଦେବୀ ଭାବରେ ଚିତ୍ରି ବସନ୍ତି-

"ରୁଦ୍ରାକ୍ଷର ମାଳ ଧରି ଏକ ହାତେ ଅନ୍ୟ ହାତେ ମାଗୋ
ଭକ୍ତଙ୍କୁ ଅଭୟ ଦେଉ। କି ସୁନ୍ଦର ଦରହାସ ତୋର !
ତତେ ନମସ୍କାର ମାଗୋ ଏବଂ ତୋର ନାଟ ମନ୍ଦିରରେ
ନାଚୁଥିବା ବେଶ୍ୟା ଏବଂ କୁମାରୀଙ୍କୁ ମୋର ନମସ୍କାର।"(୧୬)

ତା'ରି ସ୍ତନରେ ସକାଳର ବିସ୍ଫୋରଣ। କାଖତଳେ ନିଛାଟିଆ ଦି'ପହର ଉଙ୍କିମାରେ। ସେ ହସିହସି ଦରବୁଢ଼ା ମାନଙ୍କ ସହିତ କଥା କହିପାରେ।(୧୭) କବି ଗାର୍ହସ୍ଥ୍ୟ ଜୀବନ ଜଞ୍ଜାଳରେ ବନ୍ଦୀ। ପତିପତ୍ନୀ ଏପରି ଏକ ଅବସ୍ଥାରେ ବର୍ତ୍ତମାନ ଯେ ସେମାନଙ୍କର ଜୀବନ ନାହିଁ। ସ୍ୱାମୀ ଥାଉ ଥାଉ ପତ୍ନୀ ବିଧବା ହେଉଛି। ସେ କେବଳ କଙ୍କାଳ ଜୀବନ

ମାତ୍ର। ଜୀବନର ଯେଉଁ ସ୍ପନ୍ଦନ, ଆବେଗ ଓ ଗତିଶୀଳତା ସେଥିରେ ସ୍ଥବିରତା ଆଚ୍ଛନ୍ନ ହୋଇଯାଇଛି। ଏହାହିଁ ଆଜିର ମଧ୍ୟବିତ୍ତ ପରିବାରର ଦାମ୍ପତ୍ୟ ଜୀବନ। ଉଷ୍ଣତା ସ୍ଥାନରେ ହିମକାକରର ରାଜୁତି। ପତ୍ନୀଙ୍କର କପାଳରୁ ବୁନ୍ଦାବୁନ୍ଦା ଝାଳକୁ କାକର-ପବନ ପୋଛିଦିଏ। ସ୍ୱାମୀ କେବଳ ଏକ ଅସହାୟ, ବିଭଙ୍ଗ ସତ୍ତାକୁ ଆଦରି ଜୀବନ୍ମୃତ ଅବସ୍ଥାରେ ହିଁ ପତିତ। "ଆମେ ଦୁହେଁ ପରସ୍ପରେ ଚାହିଁଲୁ, ତମେ ମୋ / ସୁନ୍ଦରୀ ବିଧବା ଏବଂ ମୁଁ ତମର/ସ୍ୱାମୀର କଙ୍କାଳ।"(୧୮) ଅନେକ ଦିନ ପରେ ନାୟିକା ସହିତ ସାକ୍ଷାତ। ସାଥିରେ ପିଲାଛୁଆ ମାନଙ୍କର ସମାବେଶ। ଏଣିକି ଆଉ କେଉଁଠି ପ୍ରାୟ ଖାଲିଜାଗା ଟିକେ ନାହିଁ ଯେଉଁ ନିରୋଳା ନିର୍ଜନ ସ୍ଥାନକୁ ନାୟିକା ନାୟକର ହାତଧରି ଟାଣିନେବ। ହସ ଭିତରେ ଜୀର୍ଣ୍ଣ ପାଉଁଶିଆ ଅତୀତ କି ରକ୍ତହୀନ ବଳକା ଆୟୁଷ ନିଶ୍ଚିହ୍ନ ହୋଇଯିବ। କିନ୍ତୁ ସବୁକିଛି ସେମିତି ରହିଗଲା। ଯାହା ଦେବାର ଥିଲା ଆଉ ଦେଇ ହେଲାନି। କହିବାର କଥା ବି କହି ହେଲାନି। "ଆଜି ଖାଲି ଦେଇପାରୁଁ / କପେ ଚାହା, ବା ପିଲାମାନଙ୍କୁ / ବିସ୍କୁଟ୍----।"(୧୯) ଏବେ ନାୟିକାକୁ ଅନୁଭବ କରିବାକୁ ହେବ ଯେ, ଯାହା ସାଧୁସନ୍ଥମାନେ କହିଥିଲେ ଜୀବନ ଯେତିକି ପ୍ରମୋଦ ଦିଏ ତା'ଠୁ ବି ଅଧିକ ଅସନ୍ତୋଷ ଦିଏ। "କିନ୍ତୁ ଜାଣିବାର ନିର୍ଯ୍ୟାତନା ଓ ତିକ୍ତତା ତମର ଓ କେବଳ ତମର।"(୨୦)

କବି ପ୍ରଥମତଃ ସର୍ବାନ୍ତଃକରଣରେ ଜୀବନ ପ୍ରେମୀ। ଜୀବନକୁ ଭଲପାଇ ନ ଶିଖିଥିଲେ କବିତା ହୁଏନି। ତେଣୁ ଏହି କବିତା ହିଁ ଜୀବନପ୍ରୀତିର ପରିପ୍ରକାଶ। ଯିଏ ଜୀବନକୁ ଭଲପାଏ ଜୀବନର ଦୁର୍ଦ୍ଦିନରେ ସେହିଁ ମୂହ୍ୟମାଣ ହୋଇ ଉଠେ। ସାଂପ୍ରତିକ ଜୀବନର ବନ୍ଧ୍ୟା ଧୂସରତା, ଆଧ୍ୟାତ୍ମିକ ପଙ୍ଗୁତା, ନିରର୍ଥକତା ହିଁ ତାକୁ ମୃତ୍ୟୁମୁଖୀ କରେ। ଏଗୁଡ଼ିକତ ନିଜେ ନିଜେ ମୃତ୍ୟୁ। ଆକାଶରେ ଯେତେବେଳେ ଜରିର ଜହ୍ନ, ଗୋଲାପ ଗଛ ଯେତେବେଳେ ଅଧା ଶୁଖିଲା ଏବଂ ଦିନସାରା ଯେତେବେଳେ ଖାଲି ଖରା, ସେତେବେଳେ ଜୀବନ ପ୍ରେମୀ କାବ୍ୟପୁରୁଷଟି ମୃତ୍ୟୁ ଅନୁରାଗୀ ହେବନିତ ଆଉ କ'ଣ? ଇଲିଅଟଙ୍କ ପାଇଁ ଏପ୍ରିଲ୍ ନିର୍ମମ ନିଷ୍ଠୁର। ଗୁରୁବାବୁଙ୍କ ପାଇଁ ବି ବର୍ଷାଋତୁ ଅନୁରୂପ। ରମାକାନ୍ତଙ୍କ ପାଇଁ ବସନ୍ତଋତୁ ଠିକ ସେହିପରି। ଚତୁର୍ଦ୍ଦିଗରେ ନପୁଂଷକତ୍ୱର ଆବହାୱା। ଅସତୀର ବିହରଣ। ଜୀବନ ବିବର୍ଣ୍ଣ ଧୂସର ପ୍ରାନ୍ତର।

ଯେଉଁ ନାରୀ ସତ୍ତାଟି କାମନାଗ୍ନିର ପ୍ରତିଭୂ ଭାବରେ ପୌରୁଷହୀନତାକୁ ବାରମ୍ବାର ଉସ୍କେଇ ଉସ୍କେଇ ନିଷ୍ଫଳତା ହିଁ ଲାଭ କରେ ସେ ପୁଣି ଅନେକ ସମୟରେ ମହାକାଳ ବା ମୃତ୍ୟୁ ରୂପରେ ଉଦ୍‌ଭାସିତ ହୋଇ ଉଠେ। ନାରୀ ଆଖିରେ ଜ୍ୟୋତ୍ସ୍ନାର ସ୍ନିଗ୍ଧତା ନାହିଁ। ଅଛି ଟାଣ ଖରା। ଦି' ପହରର ଖରା। ତା' ହାତରେ କିଶୋରୀର ପେଲବତା ନାହିଁ ବରଂ କାଠ ହାତ ଓ ରବର ଚମଡ଼ା। ପୋଡ଼ାଧୂଆଁ ତାଠୁଁ ନିର୍ଗତ ହୁଏ। ସେହି ନାରୀ ମୃତ୍ୟୁ ରୂପରେ ପ୍ରତି ମୁହୂର୍ତ୍ତରେ କାବ୍ୟପୁରୁଷକୁ ଆକ୍ରାନ୍ତ କରେ। ଶୋଇବା ଘରର ବିଛଣାରେ କାବ୍ୟପୁରୁଷ ନିସ୍ତେଜ ଭାବରେ ପଡ଼ିରହେ। କାମନାଗ୍ନିରେ ଜଳୁଥିବା ନାରୀଟି ତା'ର ଅସହାୟତାକୁ--ତାର ନିପାରିଲା ପଣକୁ ଦେଖି ତାଛଲ୍ୟ ପ୍ରକାଶ କରେ। ନାରୀର ଖୋଲା ପେଟରେ ପଡ଼ି ଦାଉଦାଉ ହେଉଥିବା ଚନ୍ଦ୍ରକିରଣ ଭିତରେ ପେଚାର ଉପସ୍ଥିତିକୁ ସେ ଅନୁଭବ କରେ। "ମୁଁ ତାକୁ ଚାହିଁଲି ପୁଣି, ତା' ଜଙ୍ଘର ଡ଼େଣାରେ କୁଆଡ଼େ / ଉଡ଼ିବାର ଚେଷ୍ଟା ମୋର ମରିବାକୁ କୁତୁକୁତୁ କରେ।"(୨୧) ସେହି 'ତମେ' ସତ୍ତାଟି ନିଜେ ବି

ମୃତ୍ୟୁ ପାଲଟିଯାଏ। ଏ ଜଗତର ପ୍ରତିକୂଳ ବାତାବରଣ ଭିତରେ ସେ ଅବାଧ ଯାତାୟତ କରିପାରେ। ଟ୍ରାଫିକ୍ ଆଲୁଅ ଲାଲ୍ ହୋଇ ଜଳୁଥିଲେ ବି ସେ ରାସ୍ତା ପାରହୁଏ ବିନା ଦ୍ୱିଧାରେ। ଶୀତଦିନ ରାତି ଅଧରେ ପାତଳା ପଟେଇ ଖଣ୍ଡେ ପିନ୍ଧି ସେ ପ୍ରାତଃ ଭ୍ରମଣରେ ବାହାରି ପାରେ। ଯୌବନଦୀପ୍ତ ସୁଠାମ ହାତରେ ବାଡ଼ି ଖଣ୍ଡେ ବି ଧରିପାରେ। କାବ୍ୟପୁରୁଷର ସ୍ଥିତି ଏହି ଜରାଜୀର୍ଣ୍ଣ ସହରର ଧ୍ୱଂସାବଶେଷରେ। ଏ ପର୍ଯ୍ୟନ୍ତ ଜନ୍ମ ନ ହୋଇଥିବା ପର୍ଯ୍ୟଟକମାନଙ୍କର ସେ ଗାଇଡ୍। ତେଣୁ ଏହି ଅନିଶ୍ଚିତତା, ଅସଂହତି ଓ ଅସଂପୃକ୍ତି ଭିତରେ ସେ ମୃତ୍ୟୁ ପ୍ରତି ବରଂ ବେଶୀ ଆଶାୟୀ, ତାଙ୍କର ବିଶ୍ୱାସ- "ମୁଁ ତୁମକୁ ଛୁଇଁପାରେ ନାହିଁ କିମ୍ବା / ଦେଖିପାରେ ନାହିଁ, / କିନ୍ତୁ ଜାଣେ ତମେ ଆସ / ମୋ' ପାଉଣା ମତେ ଦେବା ପାଇଁ।"(୨୨)

କାବ୍ୟନାୟକ ଶୈଶବରେ ଭଲପାଇଥିବା ଝିଅଟି କ'ଣ ମରିଯାଇଛି? ଅଥଚ ଦିନେ ଜୀବନର ମଧ୍ୟାହ୍ନର ଉତ୍ତୀର୍ଣ୍ଣକାଳରେ ବଜାରରେ ତା' ସହିତ ଦେଖାହୁଏ। ସେତେବେଳକୁ ଆଉ କିଛି ନ ଥିଲା; ତା' ଡ଼ାହାଣ ହାତରେ ସଉଦାର ଝୁଲି। ଗୋଲଗାଲ ବାଆଁ ହାତରେ ନମସ୍କାର ବ୍ୟତୀତ ଆଉ କିଛି ନଥିଲା। ଘରକୁ ଫେରି ଆସିଲା ପରେ ବାରମ୍ବାର ତାଙ୍କୁ ଆକ୍ରାନ୍ତ କରୁଥିଲା ସେହି ନାରୀସତ୍ତାଟି ଯେମିତି ଡ଼ାଫୋଡ଼ିଲ୍‌ସ ଅନୁରଣିତ ହେଉଥିଲା ୱାର୍ଡ଼ସୱାର୍ଥଙ୍କ ମନଶ୍ଚକ୍ଷୁ ଓ ମନଶ୍ଚୃତିରେ। ସେ ଛାଡ଼ିଦେଇ ଚାଲିଯିବା ଦିନୁ 'ଘରସାରା ପୂର୍ଣ୍ଣ ହୁଏ ଏକ ବାସ୍ନା / ଯାହା ତା' ଦେହରେ / ତା' ମାଆ ଲଗାଇଥିଲେ / କେଉଁଠାରେ? ହାସ୍ପାତାଳେ? ଅଥବା ବେଦୀରେ?"(୨୩) ନାରୀ ସତ୍ତାଟିର ଜୀବନ ଓ ମୃତ୍ୟୁର ଦ୍ୱନ୍ଦ୍ୱରେ କବି ପ୍ରଶ୍ନାତୁର। ହାସ୍ପାତାଳ ଭିତରେ ତାର ହୁଏତ ମୃତ୍ୟୁ ହୋଇ ପାରିଥାଏ। ବିବାହ ବେଦୀରେ ତା' ବାସ୍ନା ହୁଏତ ପ୍ରସରିତ ହେଉଥାଏ। ଦୁଇଟିଯାକ ଘଟଣା ସଂଜାତ ପ୍ରତିକ୍ରିୟା କବିପାଇଁ ପ୍ରାୟତଃ ସମାନ। ବିଚ୍ଛେଦ ହିଁ ମୃତ୍ୟୁ। ଝିଅଟିର ମୃତ୍ୟୁର ବାସ୍ନା ଓ ଅନ୍ୟତ୍ର ବିବାହ ହୋଇଯାଇ ତାଙ୍କଠୁଁ ବିଚ୍ଛେଦ ହୋଇଯାଇଥିବା ରୂପକ ମୃତ୍ୟୁର ବାସ୍ନା କ'ଣ ଏକା ନୁହେଁ!! କାବ୍ୟନାୟକ ମୃତ୍ୟୁ ପ୍ରତି ବେଶ୍ ସଚେତନ। ସେ ଦେଶରୁ ଦେଶାନ୍ତର ପରିକ୍ରମା କରେ। ମରଭୂମିଠୁ ପାହାଡ଼ ପର୍ବତମାଳା ଅତିକ୍ରମ କରେ। ନାରୀ ସମ୍ଭୋଗ ଜନିତ ଅନିବାର୍ଯ୍ୟତାକୁ ଅନୁଭବ କରେ। କାବ୍ୟନାୟିକା ତାକୁ ଆଲିଙ୍ଗନ କରେ। ତା'ର ଛାତିରେ ସେ ଲୁଚିଯାଏ। ବୁଡ଼ିଯାଏ। ଏହି ସମୟରେ ହଠାତ୍ ଭୂମିକମ୍ପ ଆରମ୍ଭ ହୁଏ। ଶରୀରର ସବୁ କଳକବ୍‌ଜା ଭାଙ୍ଗିରୁଜି ଧୂଳିସାତ୍ ହୋଇଯାଏ। ସବୁ ଅନୁଷ୍ଠାନ ଭୁଷୁଡ଼ି ପଡ଼େ। ତା'ରି ହସ ଭିତରେ କାବ୍ୟପୁରୁଷ ଶୁଣିପାରେ ଏକ ସନ୍ତୁଷ୍ଟ ଅଥଚ ଭୋକିଲା ମନର ଆର୍ତ୍ତନାଦ।

"ମୁଁ ଜାଣିଛି ଏହା ଅଟେ ଅନିବାର୍ଯ୍ୟ
ତମେ ଥିବ ମୋର ଅପେକ୍ଷାରେ
ମୋ ପାଇଁ ଉଦ୍ଦିଷ୍ଟ ଏକ ଚକ୍‌ଚକ୍ ପାର୍ସାର ଇସ୍ପାତେ
ଅସରନ୍ତି ସମ୍ଭୋଗର ବାଧ୍ୟବାଧକତା
ଆଖିରେ ଓଠରେ ଏବଂ ସମଗ୍ର ଦେହରେ।"(୨୪)

ତା'ରି ଜଙ୍ଘରେ ପଳାତକ ସମୟର ବିଷ। ଦେହରେ ସମସ୍ତ ଋତୁର ସମାବେଶ। ସେ ଏକ ଜ୍ୟେଷ୍ଠ ମାସ। ତାର ପ୍ରଚଣ୍ଡ ରୌଦ୍ରରେ ନିର୍ଦ୍ଦୋଷ ଘାସ ବି ଜଳିଯାଏ।

ସେ ବି କାଳିନ୍ଦୀ ହ୍ରଦର କଳା ଚକଚ୍‌କ କୁଣ୍ଡଳାକୃତି ସର୍ପର ହଳାହଳ, ଯିଏ ସ୍ତବ୍ଧ କରିଦେଇ ପାରେ ସମୁଦ୍ର ଗର୍ଜନ ଓ କୋଇଲିର ଗୀତ। ତଥାପି ତାର ନାଁ ଧରି ଡ଼ାକିବାକୁ ଇଚ୍ଛାଥାଏ। କିନ୍ତୁ, ''ବେଳେବେଳେ ଖୁବ୍ ଡ଼ରମାଡ଼େ, / ତମକୁ ଉଠାଇବାକୁ ଗଲାବେଳେ ହାତ ଥରେ, / ସ୍ୱର ପଡ଼ିଯାଏ...(୨୫) ସେ ବି ଏକ ଅପଦେବୀର ଗୁଣରେ ବିଭୂଷିତା। ମର୍ ବୋଲି ଅଭିଶାପ ଦେଲାମାତ୍ରେ କାବ୍ୟନାୟକର ମୃତ୍ୟୁ ଘଟେ। ଦେହ ପୋଡ଼ି କଳା ପଡ଼ିଯାଏ। ଚମ ଢ଼ିଲା ହୋଇଯାଏ। ହାତର ଇଙ୍ଗିତରେ ବାସୀଫୁଲ ପରି ଦେହରୁ ମାଂସ ଝଡ଼ି ଯାଏ। ତା'ର କଳାତୁଣ୍ଡ କଳାସାପ ବୁଦା ଉହାଡ଼ରେ ଖାଲି ପାଦକୁ ଅପେକ୍ଷା କରି ବସିଥାଏ ଚୋଟ ମାରିବା ପାଇଁ। ତା କଣ୍ଠର ଶବ୍ଦମାନେ ଆତତାୟୀ ପରି ପଥର ପଛରେ ଲୁଚି ରହିଥାନ୍ତି ଆକ୍ରମଣ ପାଇଁ। ତା'ର ଘୃଣା ବି ସଡ଼କ ବାଟରେ ତସ୍କର, ପ୍ରେତାତ୍ମା ଓ ବୃଶ୍ଚିକ ରୂପରେ ଜଗିବସିଥାଁଏ ଜୀବନ ନେବାକୁ। ମୃତ୍ୟୁ ପାଇଁ କାବ୍ୟପୁରୁଷ ଆଉ ବ୍ୟଥିତ ନୁହେଁ। ମର୍ମାହତ ନୁହେଁ। ସେ ଜାଣେ ଜୀବନର ଏ ଲୀଳାଖେଳା ଅଢ଼େଇଦିନ ପାଇଁ, ''ଶୋଚନା ଏତିକି / ତମର ମୁହଁରେ ଏବଂ ତମର ଇଚ୍ଛାରେ / ମୃତ୍ୟୁ ହେଲା ସାକାର।''(୨୬) ତାକୁ ବଞ୍ଚେଇବାକୁ ଯାଇ, ତାକୁ ଭଲ ପାଇବାକୁ ଯାଇ ସେ କେତେ ଆୟାସ ନ କରିଛି। କେତେ ସତର୍କତା ଅବଲମ୍ବନ ନ କରିଛି। କିନ୍ତୁ ପରିଣାମରେ ଦୁଃଖ ଏତିକି ଯେ ତା'ରି ଅଭିଶାପରେ ହିଁ ନାୟକର ମୃତ୍ୟୁ। ତଥାପି ଦୁଃସ୍ୱପ୍ନରେ ସେଇ ନାରୀଟି କମ ହଟହଟା କରେନି। ପରିଶେଷରେ ସକାଳର ଆଲୋକ ହିଁ ଶୂନ୍ୟଗର୍ଭ ଅନ୍ଧକାର ଭିତରେ ଲୁଚିଯାଏ। ମୁଖ୍ୟତଃ ଶ୍ରୀ ରଥ ଯେତେବେଳେ ପ୍ରେମ କବିତାଟିଏ ଲେଖିବାକୁ ସଚେତନ ଭାବେ ମନସ୍ଥ ହୁଅନ୍ତି, ଶେଷରେ ତାହା ମୃତ୍ୟୁ ଓ ନୈରାଶ୍ୟଗ୍ରସ୍ତ ହୋଇଉଠେ, ଏହାର ଠିକ ବିପରୀତ କ୍ରିୟା ବି ବେଳେବେଳେ ଘଟେ।(୨୭)

ଏଣିକି ଦୁର୍ଗାଙ୍କର ଖଡ଼୍ଗ ଖର୍ପର ଅଗ୍ରରେ ମହିଷାସୁର। ତା'ର ନାହିଁ ଗତ୍ୟନ୍ତର। ସେ ତା'ର ଦେହକୁ ନିଃଶ୍ୱାସ ଫେରେଇ ନିଏ। ଅଙ୍ଗ ପ୍ରତ୍ୟଙ୍ଗରୁ ରକ୍ତ ଓ କପାଳରୁ ଝାଳକୁ ବି ଲେଉଟାଇ ନିଏ। ମହିଷାସୁର ଅନୁଭବ କରେ ଯେ ତା'ର ପିଲାଦିନ ସକାଳର ଖରାପରି ନରମ। ତା'ର ଯୌବନ ମରୁଭୂମି ପରି ନିଷ୍ଫଳ, ଅସହାୟ। ମଇଳା କେନାଲ୍ ପରି ତା'ର ଧମନୀ। ଅଶୁଭ ରାତ୍ରିପରି ଭାଗ୍ୟ। ଏବଂ ଶୁଷ୍କ-ମୃତ ସ୍ୱପ୍ନମାନଙ୍କର ଉଭିଦକୁ ସେ ଟେକିଦିଏ।(୨୮) ତା'ର ସକଳ ଦୁଷ୍କୃତିକୁ ସମର୍ପି ଦିଏ। ନାୟିକା ସହିତ ଭେଟହୁଏ ଭଙ୍ଗାଘରର ଛାଇରେ। ଅନ୍ଧାର ଓ ନିଛାଟିଆ କାକର ଗଳିରେ; ବସନ୍ତ ଋତୁରେ ନୁହେଁ କି ଉପବନରେ ନୁହେଁ। ତା'ର ଗହଳ ବାଳକୁ ଆଉଁଷିଲା ବେଳେ ହାତ କୋଳ ମାରିଯାଏ। ତା'ର ବାଳ ଏକ ବିସ୍ତୀର୍ଣ୍ଣ ତୁଷାରାବୃତ ନିର୍ମମ ମୁଲକ। ତାହା ଏକ ଜଳନ୍ତା ବଣ। ସେହି ଜଳନ୍ତା ନିଆଁ ଭିତରେ ଚଳତ୍‌ଶକ୍ତିହୀନ ନିପାରିଲା ବୃକ୍ଷଟିଏ ଭଳି କାବ୍ୟନାୟକର ଭବିଷ୍ୟତ ଗଦାଏ ଅଙ୍ଗାରରେ ପରିଣତ ହୋଇଯାଏ। ତା'ର ସ୍ୱର ଶୁଭେ ବୋମାବର୍ଷୀ ବ୍ୟୋମଯାନ, ଟ୍ୟାଙ୍କ ଆସିବା ଓ ସୈନ୍ୟ ଚାଲିବାର ଶବ୍ଦ ଭିତରେ।

''ତମେ ଅଂଶ ସେହି ଘୋର ଆତଙ୍କର ଯାହା
ଇତିହାସ ଆଣୁଥାଏ ଅଳ୍ପ ଅଳ୍ପ ବ୍ୟବଧାନ ପରେ,
ପୁରୁଣା ଆଘାତ ସବୁ ଶୁଖିବା ଆଗରୁ
ନୂଆ ନୂଆ ଆଘାତରେ ଜର୍ଜରିତ କରେ।''(୨୯)

ସେଇ ନାରୀଟି ପୁଣି କେତେବେଳେ ରାତିଅଧ ରେଲଗାଡ଼ି ପରି ଧସେଇ ପଶେ। ତା'ର ଚକତଳେ ନାୟକର ବେକ କଟିଯାଏ। ସେ ଖାଲି ମାଦଳ ପରି ଗଡୁଥାଏ। ସମୁଦ୍ରର ଢେଉ ହୋଇ ମାଡ଼ି ଆସିଲାବେଳେ ସମୁଦ୍ରକୂଳର ଅଂସଖ୍ୟ ବାଲିର ଘରକୁ ଧୋଇ ଧାଇ ସଫା କରିଦିଏ।(୩୦) ତାକୁ ସେ କ'ଣ ବୋଲି ସମ୍ବୋଧନ କରିବେ କୌଣସି ସିଦ୍ଧାନ୍ତରେ ପହଞ୍ଚି ପାରନ୍ତି ନାହିଁ। ସାରା ଜୀବନରେ ନେପଥ୍ୟରେ ସେ ଆତଯାତ ହୋଇଛି। ତା' ଚଲାବାଟରେ ତା' ଛାଇ ପଡ଼ିଯାଏ। "ବେଳେବେଳେ ଚାହୁଁ ଚାହୁଁ / ମେଘ ଘୋଟି ଆସେ ଆକାଶରେ। / ଚାହୁଁ ଚାହୁଁ ମାଡ଼ିଆସେ / ପୂର୍ବପର ସଂଗତି ନଥାଇ / ଧୂଳିଝଡ଼, ମୋ' ଦେହର ସବୁ / ସଡ଼କରୁ ବତୀ ଲିଭିଯାଇ / ନିଃଶବ୍ଦ ଅନ୍ଧାର ଘୋଟେ....।"(୩୧) ମୃତ୍ୟୁ ରୂପିଣୀ ନାୟିକା ପ୍ରତି ତଥାପି କାବ୍ୟପୁରୁଷର ଅନୁରକ୍ତି ଅସରନ୍ତି। ସେ ତ ଜୀବନକୁ ଭଲ ପାଆନ୍ତି। ଜୀବନ ସଂପ୍ରୀତିରୁ ପ୍ରେମାନୁସିକ୍ତ। ସେଥିରୁ ମୃତ୍ୟୁ ପ୍ରତି ଅନୁରକ୍ତି-- "ମୁଁ ତମର ଅପେକ୍ଷାରେ ରହିଥିବି, ମୋର / ଅନ୍ତରଙ୍ଗ ଆତତାୟୀ...." ଏବଂ ଶେଷକୁ ନୂତନ ପୃଥିବୀଟିଏ ତିଆରି ହୋଇଯିବ।(୩୨)

କବି ବେଶ୍ ସ୍ୱପ୍ନ ପ୍ରବଣ। ବାସ୍ତବ ଜୀବନର କଷାଘାତରେ, ଦାବ ଦହନରେ ସେ ଦରସିଝା। ପ୍ରେମ ପାଇଁ ପ୍ରାଣ ଉଚ୍ଛଳ। କିନ୍ତୁ କାହିଁ? ଘରସାରା ତା'ର ମଲା ମୂଷାଙ୍କର ଶବ। ପଚା ଗନ୍ଧ। ତା' ଘର ଆକାଶରେ ଆଶାୟୀ କୁଆପଲଙ୍କର ଚକ୍କର। ତଥାପି ସେ ନାୟିକାକୁ କଥା ଦିଅନ୍ତି. କାହାକୁ ଭୟ ନ କରିବାକୁ। ସେ ଆତ୍ମିକ ଆହ୍ୱାନ କରନ୍ତି ହାଡ଼ ଓ ପାଉଁଶର ଉଦ୍‌ଭ୍ରାନ୍ତ ଜାହାଜ ଭିତରୁ ଉଠି ଆସିବାକୁ। ସେ ବିଛଣା ଚାଦର ସଫା ରଖିଛି। ଅର୍ଜନ ଯଥେଷ୍ଟ ରହିଛି। ସ୍ୱର୍ଗର ଚନ୍ଦ୍ର ଆଣି ଦେଇପାରିବ। ସେମାନେ ମଲାମୂଷାକୁ ଫିଙ୍ଗିଦେଇ ବଗିଚା ବୁଲିବେ। ତା'ର ହାତଙ୍କ ବୈଶାଖରେ ସେ ବର୍ଷାପରି ଖସିପଡୁ। ଅନ୍ଧାର ଭିତରେ ଦୀପ ପରି ଜଳିଉଠୁ। ଜୀବନ ପ୍ରତି ସଂପ୍ରୀତି ନଥିଲେ ଏତେ କଦର୍ଥନା ଭିତରେ ପୁଣି ଏ ଆତ୍ମିକ ଆହ୍ୱାନ ଆସନ୍ତା ନାହିଁ। ସେହି ସ୍ୱପ୍ନରେ ସେ ବି ଦେଖେ, ସେମାନେ ହାତ ଧରାଧରି ହୋଇ ଭଙ୍ଗା କୂଅର ତଣ୍ଡତରା ନିକଟରେ ଅସହାୟ ଭାବରେ ଝୁଣ୍ଟି ପଡ଼ନ୍ତି। ତଥାପି, "ତମେ ହେବ ପାଗଳୀ ଓ ମୁଁ ତମର ପାଗଳ ପ୍ରହରୀ। / ତାଙ୍କ ସଙ୍ଗେ ତମେ ଫେରିଯିବା ଆଗୁଁ ରଖିବ ମନରେ / ପ୍ରାୟ ଦେଢ଼ମାସ ଯାଏଁ ମୁଁ ରହିବି ଏହି ସହରରେ।"(୩୩) ହୃଦୟ ଭିତରୁ ପ୍ରେମର ଫଲଗୁ ତଥାପି ଶୁଖୁନାହିଁ। ବରଂ, ପରବର୍ତ୍ତୀ ପର୍ଯ୍ୟାୟରେ ଏହା ଦେହରୁ ଦେହାତୀତ ସ୍ତରକୁ ଅତିକ୍ରମି ଯାଇଥିବାର ଲକ୍ଷଣୀୟ। ଏଣିକି ଦେହ ପାଇଁ ଆଉ ବ୍ୟସ୍ତ ହେବାର ନାହିଁ। ଶାଢ଼ୀ ତଳେ ଲୁକ୍କାୟିତ ଧନୁ ଏବଂ ଶର ବା ତା'ର ଭର୍ତ୍ସନା କାବ୍ୟପୁରୁଷକୁ ଆତଙ୍କିତ କରିପାରେ ନାହିଁ। ପର୍ବତ ପରି ଧୈର୍ଯ୍ୟ ଓ ସାହସକୁ ସେ ବାନ୍ଧି ଧରେ। ଶତାବ୍ଦୀମାନେ ଫୁଲ ପାଲଟି ଯାଆନ୍ତି। ଫୁଲପତ୍ରରେ ହଂସ ଚହଟି ଉଠେ। ପରସ୍ପର ଖୁବ୍ ଆଶାୟୀ। ହୁଏତ ଆଜି ନ ହେଲେ ବି କେତେ ସମ୍ବତ୍ସର ପରେ ପୁଣି ସେମାନଙ୍କର ସାକ୍ଷାତ ହେବ। ମିଳନ ହେବ। ଦେହ ଆଉ କାମନାର ନୁହେଁ। "ତାରାମାନେ ଝୁଲୁଥାନ୍ତି ଝରକା ପାଖରେ,/ଯେଉଁଠି ତମର ଦେହ ମିଶିଯାଏ ଦିଗ୍‌ବଳୟ ଡେଇଁ/ବ୍ୟାପିଥିବା କରୁଣାର ଶ୍ୱେତ ଆଲୋକରେ।"(୩୪)

ନାୟକ ତାର ନିୟତି ସମ୍ପର୍କରେ ଯଥେଷ୍ଟ ସଚେତନ। ତା'ର ଭାଗ୍ୟ ଶାଗୁଣାର,

ମାଛର, ବାହାର, ଯିଏ ମୁର୍ଦ୍ଦାର ଖାଏ, ପାଣିତଳେ ରହେ ଓ ଘୋର ଅରଣ୍ୟ ଭିତରେ ବୁଲେ। ଏହି ଅଧଃପତନ ମାନଙ୍କ ଭିତରେ ସେ ବୁଡ଼ି ରହିଥିଲା ବେଳେ ତା'ର ଭଲ ପାଇବାଟା ଆହୁରି ତୀବ୍ର ହୋଇ ଉଠେ। ଏଇ ଦୂରେଇ ଯିବା ଭିତରେ ପ୍ରେମର ଦ୍ୟୁତି ଉଦ୍ଦୀପ୍ତ ହୋଇ ଉଠେ ଏବଂ ଆଶା ରଖେ, "ତମର ନିକଟବର୍ତ୍ତୀ ହେବି କେଉଁ ଜନ୍ମାନ୍ତରରେ।"(୩୫) ବିନା ପ୍ରଶ୍ନରେ ନାୟିକାକୁ ନିଜର ଜୀବନକୁ ସମର୍ପି ଦିଅନ୍ତି ଠିକ୍ ମୃତ୍ୟୁ ହାତରେ ସମର୍ପି ଦେଲାପରି। ନାୟିକା ଦେହରେ ଆଉ ମୃତ୍ୟୁର କଦର୍ଯ୍ୟ ଚେହେରା ନାହିଁ। ଭୟଙ୍କରୀ ରୂପ ନାହିଁ। ଏବେ ତା'ର ଆକାଶ ନୀଳବର୍ଣ୍ଣ। କଅଁଳ ଖରା, ଅଳ୍ପ ଧଳା ଧଳା ମେଘ, ମନଖୋଲା ହସ ନିର୍ବାସିତ ଲୋକଙ୍କ ମୁହଁରେ, ସବୁଆଡ଼େ ଫୁଲ, ଗୋଡ଼ିମାଟି ବି ମାଣିକ୍ୟ, ଶଢ଼ା ଶବ ଉଠି ଦେହରୁ କାଦୁଅ ଝାଡ଼ିଦିଏ, ମିଛକଥା ପୋଡ଼ି ଅଙ୍ଗାର ହୋଇଯାଏ, ସେ ଏକ ନିଃଶ୍ୱାସ ଭାବରେ ତା' ଭିତରକୁ ଟାଣି ହୋଇଯାଏ। ସେତେବେଳେ ଆଉ ମୃତ୍ୟୁର ଭୟ ନାହିଁ। ଅମଙ୍ଗଳର ସୂଚନା ନାହିଁ। ସ୍ୱପ୍ନ ସତ୍ୟ ହୋଇଯାଏ। ମରୁଭୂମିରେ ଶ୍ୟାମଳିମା ଖେଳିଯାଏ। ଅନାଥାଶ୍ରମରୁ ପିଲାମାନେ ଚାଲିଯାନ୍ତି। ଜେଲଖାନାରୁ ବନ୍ଦୀମାନେ ମୁକ୍ତ ହୋଇ ଯାଆନ୍ତି। ଧଳାବାଳ କଳା ପାଲଟିଯାଏ। ଦେହରୁ ବି କ୍ଷତ ହଜିଯାଏ। "ମୁଁ ଏକ ଜାହାଜ ପରି ଭାସିଯାଏ ତମ / ଥଳକୂଳ ହୀନ ଅନ୍ତରଙ୍ଗ ସମୁଦ୍ରରେ।"(୩୬)

ଶ୍ରୀ ରଥଙ୍କର 'ଶ୍ରୀରାଧା' ରେ ଯେଉଁ ନିଷ୍କାମ ପ୍ରୀତିର ପରିପ୍ରକାଶ ଘଟିଛି ତାହାର ଆଦ୍ୟ ଉନ୍ମେଷ ଘଟିଥିଲା 'ସଚିତ୍ର ଅନ୍ଧାର'ରେ, ଯଦିଓ ପ୍ରାକ୍ ସୂଚନା 'ସପ୍ତମଋତୁ'ରୁ ଆରମ୍ଭ ହୋଇଥିଲା। ଦେହାତୀତର ସନ୍ଧାନରେ କାବ୍ୟପୁରୁଷ ଉଦ୍ୟତ। ଦେହର ସ୍ୱୀକୃତି ରହୁଛି। "ତମେ ମୋର ବୋଲି/କହିବାକୁ ଶଙ୍କା ଲାଗେ, କିନ୍ତୁ ତମ ବ୍ୟତିରେକେ କିଛି / ନାହିଁ, ମୁଁ ବି ନିଜେ ନାହିଁ / ତମ ଦୁଇ ଆଖିଙ୍କର ସ୍ୱୀକୃତି ବାହାରେ।" ତା'ପାଖରେ ଆକାଶ ଶେଷ ହୁଏ, ତା' ନାଭି ମଣ୍ଡଳରେ ଚନ୍ଦ୍ରସୂର୍ଯ୍ୟ ଝଲସି ଉଠନ୍ତି। ଆନ୍ତରିକତାର ସ୍ୱରଟିଏ ଏମିତି :

"ମୁଁ ତମକୁ ଛୁଏଁ, ମେଘ ଫାଟିଯାଇ
ବର୍ଷାହେଉ, ବର୍ଷା ପଡ଼ିବାର
ମୁହୂର୍ତ୍ତରେ ତମେ ଆସ ମୋ' ପାଖକୁ, ମୁଁ ତମ କାନରେ
ମୋ ଦୁଃଖର ଶତାବ୍ଦୀଙ୍କ ଖବର କହିବି
ଦେବୀମାନେ ବୁଝିବା ଭାଷାରେ।"(୩୭)

ଦେହ ସହିତ କାରବାର ଅନେକ ଦିନରୁ ସରିଗଲାଣି। ଏବେ ଖାଲି ସେଗୁଡ଼ିକ ସ୍ମୃତିର ସମ୍ବଳ ଭାବରେ ଝାପ୍‌ସା ମନେ ପଡୁଛି। ମୃତ୍ୟୁର ପୋଡ଼ାତେଲ, ପୋଡ଼ା ରବରର ଗନ୍ଧ; ଚମଡ଼ା, ହାଡ଼ମାଳ ବାଷ୍ପ ହୋଇଯିବାର ସମୟ। ଭଲ ପାଇବାଠୁଁ ପଛଘୁଞ୍ଚା ଦେବାର କାଳ, ଚୁମ୍ବନ-ଆଲିଙ୍ଗନ- ଏସବୁ ମନେ ପଡ଼ି ବି କିଛି ମନେ ପଡୁନି। "ତମେ ମନେ ପଡ଼ ନାହିଁ ଖାଲି ଯାହା ମୋ' ଆଲିଙ୍ଗନର / ନକ୍‌ସାରେ ରହିଛି ନକ୍‌ସା ତମ ଶରୀରର"(୩୮) ପୁଣି କେତେବେଳେ ସେହି ନାରୀଟି ବନ୍ଧୁ ଭାବରେ ପ୍ରତିଭାତ ହୁଏ। ମୃତ୍ୟୁର ଭୟରେ ଜଡ଼ସଡ଼ ହେଉଥିବା ଲୋକଟିକୁ ସେ ମୃତ୍ୟୁ ଭୟରୁ ରକ୍ଷା କରେ। ଭାଗ୍ୟର ଭଙ୍ଗା ଟୁକୁଡ଼ାକୁ ଯୋଡ଼ିବାରେ ତା'ର ସାହସ ଆସେ। ତା'ର ବାହୁ ବନ୍ଧନରେ ଏଣିକି ସେ

ମତୁଆଲା ହୋଇ ଉଠେ ଓ ନିଜକୁ ତଥା ତାକୁ ଚାହିଁବାର ଜୋର୍ ତା' ଆତ୍ମା ଭିତରେ ଧୀରେ ଧୀରେ ଆସିଯାଏ।(୩୯) ଏମିତିବି ଦିନଥିଲା ମୃତ୍ୟୁ ତା'ର ରୂପ ନେଇ ଆସି ତା'ର ଗଳା ଚିପୁଥିଲା। ବାଘପରି ଝାମ୍ପ ଦେଉଥିଲା ତା' ଦେହକୁ। ହାଉଁ ହାଉଁ ହେଉଥିଲା। ଏବେ କିନ୍ତୁ କାବ୍ୟପୁରୁଷ ଅଳି କରେ, "ସେ ନ ଆସୁ ତମ ରୂପ ଧରି / ସେ ଯଦି ଆସିବ ତମ ରୂପ ଧରି ତେବେ କାହାକୁ ସେ ମାରିବ କିପରି ?"(୪୦) ମଲାମଣିଷ ଜୀଇଁ ଉଠିବେ ତା' ସ୍ପର୍ଶରେ। ପ୍ରେମର ଏହି ଜାଦୁକରୀ କ୍ରିୟା ଦେହର ଚୌହଦୀ ଭିତରେ ସଂଚରିତ ନୁହେଁ ଏହା ଅତିକ୍ରମି ଯାଉଛି ଦେହୋତ୍ତର ଭାବ ସତ୍ତା ନିକଟକୁ। ସେଠି ବିଦେହ ନଗରରେ କେବଳ ବିଦେହୀ ସତ୍ତାର ଚୈତନିକ ସଂଯୋଗ। ନିତ୍ୟ ରତି। ଅଦୃଶ୍ୟ ଶୃଙ୍ଗାର।

'ସଚ୍ଛିଦ୍ର ଅନ୍ଧାର'ରୁ 'ଶ୍ରୀରାଧା'କୁ ଦୃଷ୍ଟି ଦେଲେ ଏହି ଦେହାତୀତ ପ୍ରୀତିର ଘନବନ୍ଧ ରୂପକୁ ଲକ୍ଷ୍ୟ କରାଯାଇ ପାରେ। ଶ୍ରୀକୃଷ୍ଣଙ୍କର ମୃତ୍ୟୁ ସମ୍ବାଦ ଶୁଣିଲା ପରେ ଶ୍ରୀରାଧା ଆଉ ଉଦ୍‌ବିଗ୍ନ ହୋଇ ନାହାନ୍ତି। ପରିବାର, ଜ୍ଞାତି କୁଟୁମ୍ବ ସମସ୍ତେ ହୁଏତ ମୂହ୍ୟମାଣ। ଦୁଃଖାକ୍ରାନ୍ତ। ଚିତାଗ୍ନିରେ ସେମାନଙ୍କର ସବୁ ସମ୍ପର୍କ ଜଳିଗଲା ପରି ସେମାନେ ଅନୁଭବ କରନ୍ତି। ତମର ସ୍ମୃତିଚାରଣ କରି ତୁମେ ନଥିବାର ଶୂନ୍ୟ ସ୍ଥାନକୁ ପୂରଣ କରୁଥିବେ। "ମୁଁ କିନ୍ତୁ ପାରୁନି ଆଉ / ରୋକି ମୋର ସୁଖ ସନ୍ତୋଷକୁ/ତମେ ଯଦି ତାଙ୍କ ପାଇଁ ନମରି ଥାନ୍ତ ମୁଁ / ଗୋଟାପଣେ ପାଇଥାନ୍ତି କିପରି ତମକୁ ?"(୪୧) ଏଠି ସ୍ୱାଭାବିକ ଭାବେ ବାହ୍ୟତଃ ମନରେ ପ୍ରଶ୍ନଟିଏ ଆସେ, ଏ 'ତମେ' କିଏ ? ମୁଖ୍ୟତଃ ଆଲୋଚନା ପର୍ଯ୍ୟାୟରେ ଏଯାବତ୍ ଏହି 'ତମେ' ସତ୍ତାକୁ ନାରୀଟିଏ ଭାବରେ ନିର୍ଣ୍ଣିତ କରାହୋଇଛି। କିନ୍ତୁ ପ୍ରଶ୍ନ ହୁଏ ଏଠି 'ତମେ' ତ ଶ୍ରୀରାଧା ନୁହନ୍ତି--ଶ୍ରୀକୃଷ୍ଣ। ଏଠି ଶ୍ରୀରାଧା ପ୍ରଥମ ପୁରୁଷ। ତେଣୁ 'ପୁଂ' ସତ୍ତାକୁ ସ୍ତ୍ରୀ ଭାବରେ ଗ୍ରହଣ କରାଯିବ କି ? ଏହା ଆଦୌ ଏକ ଦୁରୂହ ବ୍ୟାପାର ନୁହେଁ। ଏହାତ ବୈଷ୍ଣବଶାସ୍ତ୍ର ସିଦ୍ଧ। କବି ଶ୍ରୀ ରଥ ନିଜେ ସ୍ୱୀକାର କରନ୍ତି- "ନାରୀ ଭାବ ଓ ପୁରୁଷ ଭାବ ଆସକ୍ତିର ଚରମ ଅବସ୍ଥାରେ ଏକ ଓ ଅଭିନ୍ନ ହୋଇଯାଆନ୍ତିନି କି ? 'ଶ୍ରୀରାଧା'ରେ ମୁଁ ଏପରି ଏକ ଆସକ୍ତି ବର୍ଣ୍ଣନା କରିବାକୁ ଚେଷ୍ଟା କରୁଛି। ସେଥିରେ ଭଲ ପାଉଥିବା ବ୍ୟକ୍ତିଟି ଯାହାକୁ ସେ ଭଲ ପାଉଛି ତା'ସହିତ ଏକାକାର ହୋଇଯିବାକୁ ଚାହୁଁଛି, କିନ୍ତୁ ସେ ଲକ୍ଷ୍ୟ ସୁଦୂରପରାହତ। ଏକଥା ଜାଣି ମଧ୍ୟ ସେ ଲକ୍ଷ୍ୟରୁ ନିବୃତ୍ତ ହେଉ ନାହିଁ।"(୪୨) ତେଣୁ ଶ୍ରୀରାଧା-ଶ୍ରୀକୃଷ୍ଣଙ୍କର ପ୍ରୀତି କ୍ଷେତ୍ରରେ ଆଉ ଲିଙ୍ଗଭେଦର ଆବଶ୍ୟକତା ନାହିଁ। ପ୍ରାରମ୍ଭିକ ପର୍ଯ୍ୟାୟରୁ ଯେଉଁ ନାରୀ ସତ୍ତାଟି 'ତମେ' (ବା ପୁରୁଷ ?) ବିବିଧ ରୂପ ନେଇ କବିତା ଲିପିରେ ପ୍ରକାଶ ଲୋଡ଼ିଥିଲା, 'ଶ୍ରୀରାଧା'ରେ ବି ତାହା ଅନୁରୂପ ଭାବେ 'ତମେ' ରୂପ ପରିଗ୍ରହ କରି ପ୍ରେମର ଏକ ମହାଦ୍ୟୁତିକୁ ପରିସ୍ଫୁଟ କରାଏ। ଦୀର୍ଘ ଚାଳିଶ ବର୍ଷ ଧରି ସେ ଅନେକ କବିତା ଲେଖିଥିଲେ ମଧ୍ୟ, "ଏବେ ଲାଗୁଛି ଯେ ଏତେବର୍ଷ ଧରି ମୁଁ ଗୋଟିଏ ହିଁ କବିତା ଲେଖୁଛି ଏବଂ ଯେତେଦିନ ପର୍ଯ୍ୟନ୍ତ ଲେଖୁଥିବି ସେଇ ଗୋଟିକ କବିତାରେ କେତୋଟି ପଂକ୍ତି ଯୋଡ଼ି ଚାଲିଥିବି।"(୪୩) ତେଣୁ 'କେତେଦିନର' ଠାରୁ 'ଶ୍ରୀରାଧା' ଓ 'ଶ୍ରୀ ପଳାତକ' ଯାଏ ସମସ୍ତ କବିତା ଏକ ଅଖଣ୍ଡ କବିତା। 'ଶ୍ରୀରାଧା'ରେ ପ୍ରଥମ ପୁରୁଷ ଶ୍ରୀରାଧା। 'ତମେ' ସତ୍ତାଟି ଶ୍ରୀକୃଷ୍ଣ। 'ଶ୍ରୀପଳାତକ'ରେ ତମେ ସତ୍ତାଟି ପୁଣି ସାଧାରଣତଃ ନାରୀ।

"ମୁଁ ତମକୁ ଏତେ ବେଶି ଭଲପାଏ ଯେ ଏ ତୀବ୍ରତର
ଯନ୍ତ୍ରଣା କିପରି ଦେବି ? ତେଣୁ ଯେତେବେଳେ
ତମେ କହ ମୁଁ ତମର ଭଲ ପାଇବାକୁ
ବୁଝିପାରୁ ନାହିଁ ଚୁପ୍ ରହେ ସେତେବେଳେ।
ସେତେବେଳେ କିନ୍ତୁ ଭାବେ ଦିନେନା ଦିନେତ
ତମେ ବୁଝିପାରିବ ଯେ ମୁଁ ତମକୁ ପୂରା ବୁଝିଥିଲି,
ପୂରା ବୁଝିଥିବା ଯୋଗୁଁ ତମେ ଯେତେବେଳେ
କହୁଥିଲ ମୁଁ ତମକୁ ବୁଝିପାରୁ ନାହିଁ
ବୁଝି ନ ପାରିବା ଭଳି ଚୁପ୍ ରହୁଥିଲି।"(୪୪)

ଦେହ ମଧ୍ୟ ଦେଇ ଦେହାତୀତର ମିଳନ ହୋଇପାରେ। ସେହି ଦେହ ସହିତ ସମ୍ମିଳିତ ହେଲାବେଳେ ବା କାମ ଭିତରେ ପ୍ରେମର ସଙ୍କେତ ନଥିଲେ ତାହା ନିରର୍ଥକ। କ୍ଷଣିକ ପାର୍ଥିବାନନ୍ଦ ପ୍ରାପ୍ତି ହୋଇପାରେ କିନ୍ତୁ ଦିବ୍ୟାନନ୍ଦ ଅସମ୍ଭବ। ଏ ବିଷୟରେ ଏରିକ୍ ଫ୍ରମ୍ ସୁନ୍ଦର କଥାଟିଏ କହନ୍ତି :

"But in many individuals in whom separateness is not relieved in other ways, the search for the sexual orgasm assumes a function which makes it not very different from alcoholism and drug addiction,-----it results in an ever increasing sense of separateness, since the sexual act without love never bridges the gap between two human beings, except momentarily." (୪୫)

ଇନ୍ଦ୍ରିୟର ପାଚେରୀ ଡେଇଁ ପ୍ରୀତି ଯେତେବେଳେ ଅନ୍ୟଲୋକକୁ ଯାତ୍ରା କରେ ସେଠି ଆଉ ଦେହାସକ୍ତ ମଣିଷଟିର ଦେହ ପ୍ରତି ଚେତନା ନଥାଏ। ଦୃଷ୍ଟି ବି ନଥାଏ। ଏକ ରହସ୍ୟ ବିଜଡ଼ିତ ଇଲାକାରେ ନାୟକ ନାୟିକା ବିଳସି ଉଠନ୍ତି। ଯଦିଓ ଏଠାକାର ସକଳ ସ୍ମୃତି ବେଳେବେଳେ ନାୟକକୁ ଆକ୍ରାନ୍ତ କରେ, ସ୍ୱପ୍ନ ଦେଖାଏ, ତଥାପି ସେ ଆଉ ଏଥିପାଇଁ ଖୁବ୍ ବ୍ୟସ୍ତ ନୁହେଁ; ବରଂ, 'ଏଇଟା ହିଁ ସତ୍ୟର ସାରାଂଶ'। ସମସ୍ତ ଝଡ଼କୁ ନାୟିକା ଅତିକ୍ରମି ଯାଏ। ଝଡ଼ ସତ୍ତ୍ୱେ ବି ସେ ଉର୍ଦ୍ଧ୍ୱଗାମୀ ହୁଏ ଅନ୍ୟ ଏକ ପୃଥିବୀକୁ --

"ସେ ଏକ ପୃଥକ୍ ପୃଥ୍ୱୀ, ତମେ କିନ୍ତୁ ସେଠି ବୁଲୁଥିଲ
ଅସ୍ତିତ୍ୱର ଚାରିପାଖେ ଧରି ଏକ ଉଜ୍ଜ୍ୱଳ ରଶ୍ମିର
ପ୍ରଭା, ଯା'ର ସମାନ୍ତର କଦାପି ମୁଁ ଦେଖିନି ଜୀବନେ।"(୪୬)

'ଇଶନ' କବିତାରେ ପୁରୁଷର ଅସମର୍ଥତା ପ୍ରକାଶ ପାଇଥିବା ସ୍ଥଳେ 'ଜହ୍ନରାତି' କବିତାରେ ବାସ୍ତବତାକୁ ସମ୍ମୁଖୀନ ହେବାର ପ୍ରତ୍ୟୟ ନାହିଁ। ସେ ସେହି ସ୍ୱପ୍ନପୁରରେ, ଚନ୍ଦ୍ରାଲୋକରେ ଅପେକ୍ଷା କରିବ ପ୍ରାଣର ବିହଙ୍ଗମ ପାଇଁ, ଯେଉଁଠାରେ ଓହ୍ଲାଇଲେ ତାଙ୍କ ଆଲିଙ୍ଗନକୁ ପାଉଥାଏ। ଏହି ଯେଉଁ 'ତମେ' ବାରମ୍ବାର କବିଙ୍କୁ ଆକ୍ରାନ୍ତ କରିଛି ସେ ତାକୁ କି ସମ୍ବୋଧନ କରିବେ ? କବି ମନରେ ପ୍ରଶ୍ନ- "ମୁଁ ତମକୁ କ'ଣ ବୋଲି ଡ଼ାକିବି ? ତମେ କଣ ଅଟ / ମୋ ପ୍ରେମ ? ମୋ ଜନ୍ମଭୂମି ? ମୋ ପରମେଶ୍ୱର ?"(୪୭) ଏହା ହିଁ ସତ୍ୟ ପୁଣି ଏହାହିଁ ସତ୍ୟ ନୁହେଁ। ସେ ପ୍ରେମ ହୋଇପାରେ, ଜନ୍ମଭୂମି ହୋଇପାରେ,

ପରମେଶ୍ୱର ହୋଇପାରେ, ମୃତ୍ୟୁ ହୋଇପାରେ, ନିଜେ କବିପୁରୁଷ ହୋଇପାରେ ବା ଏକ ଅଜ୍ଞାତ ଅବର୍ତ୍ତମାନ ସତ୍ତା ହୋଇପାରେ।

ନାୟିକାର ଦେହର ସଡ଼କ ମୋଡ଼ରେ ମହୁର ସୁରେଇ। ନାୟକ ବି ତାକୁ ବେଳେବେଳେ ଘୃଣାକରେ। ହତ୍ୟା କରେ। ପୁଣି ତାର ଅସ୍ଥି ଧରି ସେ ଫେରି ଆସେ ବଦ୍ରିନାଥ, ହରଦ୍ୱାର, ଗୟା, ପୁରୀ, ରାମେଶ୍ୱର ତୀର୍ଥ କରିଯିବ। "ମୁଁ କିନ୍ତୁ ଭୟାଳୁ ଖୁବ୍ କାଳେ ମୋର ନିଃସଙ୍ଗ ଭ୍ରମଣ / ବେଳେ ତମ ଖିଲଖିଲ୍ ହସୁଥିବା ଯୌବନକୁ ହଠାତ୍ ଭେଟିବି।"(୪୮) ଦୈହିକ ସତ୍ତାଟିର କ୍ରମଶଃ ବିଲୟ ଘଟେ। ସମୟ ଭିତରେ ତା'ର ସତ୍ତା ଅଦୃଶ୍ୟ। ଖାଲି ଅନ୍ତରଙ୍ଗ ଅନ୍ତର୍ନିହିତ ଚେତନାର ସ୍ତର। ସେହି ନାରୀଟିହିଁ କାବ୍ୟପୁରୁଷର ସବୁ ସୁକୃତ ଦୁଷ୍କୃତକୁ ବିଚ୍ଛିନ୍ନ କରେ। ଏଣିକି ହସ ଯାହା କାନ୍ଦ ତାହା। ଉଲ୍ଲାସ ଯାହା ହତାଶା ତାହା / "ଯୁଆଡ଼େ ଚାହିଁଲେ ସେଠାରେ ଦିଶେ ଆରମ୍ଭ ତମର।"(୪୯) ସ୍ୱପ୍ନର ଝାପ୍ସା କୋଠରୀରେ ସେ ବସି ରହି ଖୁବ୍ ଜଣାଶୁଣା ପରିଚିତ ସ୍ୱରରେ ଖବର ପଠାଇଲେ ବି ସେ ଭାଷା ବୁଝିପାରେନି। ରବୀନ୍ଦ୍ରନାଥଙ୍କ ପରି ସେ ଆଜି ଅପେକ୍ଷାରତ ତାଙ୍କରି ପାଇଁ। ସ୍ୱପ୍ନରେ ପଛକେ ହେଉ ଥରେ ଦେଖା ହୋଇଗଲେ ଆଉ କିଛି ଲୋଡ଼ା ନାହିଁ। ଏଣିକି ସେ ଯେଉଁ ଭାଷା କହିବ ତାହା ଅବୋଧ ନୁହେଁ।

"ଶୁଣିଲାଣି ତମେ ଯାହା କହିବ ଏଥର।
ତମ ନୀରବତା ଅତି ସଂକ୍ଷିପ୍ତ, ଯେପରି
ଅବଶିଷ୍ଟ ପରମାୟୁ ମୋର।
ତରାଙ୍କଠୁଁ ମୁଁ ଶିଖିଛି ଅପେକ୍ଷା କରିବା।
ଦେଖ ମୋର ଆଖି ଆଉ ମରୁଭୂମି ନୁହେଁ।

\+ \+ \+

ମୁଁ ଅପେକ୍ଷା କରିଅଛି କେତେବେଳେ ତମେ
ମୃତ୍ୟୁକୁ ଇସାରା ଦେବ, ତମର ପଟୋର
ଯୋଜନ ଯୋଜନ ବ୍ୟାପି ଆକାଶର ଆନନ୍ଦ ସହିତ
ମୋ' ସମୟ ହେବ ଏକାକାର।"(୫୦)

କାବ୍ୟନାୟିକା ଏକ ପରମ ସତ୍ତାରେ ରୂପାନ୍ତରିତ ସୁନ୍ଦର ଫୁଲଟିଏ। ନାୟକର ଭାଗ୍ୟ କିନ୍ତୁ ମୃଣ୍ମୟ। ଭାଗ୍ୟ ତାର ବିମର୍ଷ। କିନ୍ତୁ ତା'ର ମହକରେ ସେ ମହକି ଉଠିଛି। ସେ ଦେଇଥିବା ପରମ ସୁଖର ଅପାର୍ଥିବ କରଜକୁ 'ଶୁଝୁଅଛି ସୁବାସିତ ରକ୍ତର ରଙ୍ଗରେ।' ସେ ବିଶାଳ-ପଣ ନିକଟରେ ଏ କ୍ଷୁଦ୍ର ପ୍ରାଣ ନିଜକୁ ଅସମର୍ଥ ମଣେ। ତାର ଦିନ ଛନ୍ଦାକାର, ରାତ୍ରି ଅଛକେ ସରିଯାଏ। ତା' ପାଇଁ ଅର୍ଥହୀନ ମାଳମାଳ ଶବ୍ଦ। ପବନ ନଥିବା କଣା ବେଲୁନ୍ ପରି ତା'ର ଝୁଲନ୍ତ ଅବସ୍ଥା। ନାୟିକା କିନ୍ତୁ ରହସ୍ୟମୟ ସୁନ୍ଦରପଣର ଚିରସ୍ଥାୟୀ ମୁହୂର୍ତ୍ତରେ ଅବସ୍ଥାପିତ। ସେ ମୁହୂର୍ତ୍ତ ହିଁ ସୁବାସିତ। "ପତ୍ର ଝଡ଼ିଯାଇଥିବା ଗଛଙ୍କର, ଫୁଟିବାକୁ ବାକୀଥିବା ଫୁଲ / ମାନଙ୍କର ପ୍ରତିଜ୍ଞାର ବାସ୍ନା ମହକୁଛି। / ମୁଁ କ୍ଷତବିକ୍ଷତ ହୋଇ ପୂର୍ବ ନିରୂପିତ / ବିଚ୍ଛେଦ ଓ ବାର୍ଦ୍ଧକ୍ୟକୁ ଲେଉଟି ଆସୁଛି।"(୫୧)

ପୁଣି ପରମୁହୂର୍ତ୍ତରେ ନାୟକ ତାର ବାର୍ଦ୍ଧକ୍ୟ, ବସାଘର, ଭାଗ୍ୟରେ ଲେଖାଥିବା ବାରମ୍ବାର ମୃତ୍ୟୁ ଓ ଜନ୍ମ ସବୁକିଛି ଭୁଲିବସେ। "ତମ ପ୍ରେମେ ପଡ଼ିଗଲେ ଫେରିବାକୁ

ହୁଏ / ସବୁ ଯାତ୍ରା ଆରମ୍ଭର ପୂର୍ବ ଅବସ୍ଥାକୁ।''(୫୨) ସେ ହିଁ ତିନିକାଳର ସମାହାର। ସବୁ ଋତୁ ମାନଙ୍କର ପ୍ରବେଶ ପ୍ରସ୍ଥାନର ଏକମାତ୍ର ଦ୍ୱାର। ସବୁର ସେହିଁ ମୂଳ। ନାୟକ ଏକ ବିସ୍ମୟ ବିମୂଢ଼ ଅବସ୍ଥାରେ ପହଞ୍ଚିଯାଏ। ସେ ସହଜରେ ଜାଣି ପାରେନି ସେହି ଭୂମା ସତ୍ତାକୁ। ତାକୁ ଲାଗେ ଏତେକି ସେ ଏକ ଗତି।

''ଗତି ଛଡ଼ା ଆଉ କିଛି ନୁହଁ,
ବେଳେବେଳେ ସିନା ଶାଢ଼ୀ ପିନ୍ଧିଥିଲା ପରି
ମୋ ଆଖିକୁ ତମେ ଦେଖାଯାଅ,
ଅନେକ ସମୟେ କିନ୍ତୁ
ତମେ ଏକ ଅଶରୀରୀ ଅଧୈର୍ଯ୍ୟତା, ତମେ
ଆଖିକୁ ନ ଦିଶୁଥିବା ଜାହାଜ ଯାଉଛ
ଶ୍ୱାସରୁଦ୍ଧ ଶବ୍ଦଙ୍କର ମାଲମତା ନେଇ
ଦିନସାରା ରାତିସାରା ପବନ ବେଗରେ।''(୫୩)

ଦେହ ଭିତରେ ଯେତେ ଖେଳିଲେବି, ଜଗତକୁ ଯେତେ ଆଉଁଷିଲେବି ଲାଗେ, ସତେକି ପୁଣି କ'ଣ ବାକୀ ରହିଗଲା। ସେହିଁ ତାର ଆରମ୍ଭ। ତାକୁ ନ ଭେଟିବା ପର୍ଯ୍ୟନ୍ତ ତା'ର ମୃତ୍ୟୁ ନାହିଁ। ''ଆରମ୍ଭ ଜାଗାକୁ ଫେରି ନ ଆସିବା ଯାଏଁ/ବୁଲାବୁଲି ଶେଷ ହେଲା ବୋଲି କହିହେବ?''(୫୪) ସେମାନଙ୍କର ମିଳନର ସମୟ ହୁଏତ ଆସିଛି। ଏ ଯେଉଁ ରାତି ଆସିଛି ତାହା ଅନ୍ୟଦିନ ପରି ନୁହେଁ। ଏ ରାତି ଦିନାନ୍ତ ପରେ ଆସିନି କି ସକାଳକୁ ମଧ୍ୟ ସରିଯିବନି। ତାର ଛଦ୍ମବେଶ ଫିଙ୍ଗି ଦେଇଛି ''ମୁଁ ଦେଖୁଛି ତମେ ଆସ ବିଭିନ୍ନ ଦିଗରୁ / ଝୁଲି ଝୁଲି ମୋ' ପରମାୟୁକୁ।''(୫୫) ପ୍ରାଣର କି ବ୍ୟାକୁଳତା ସେହି ଅସୀମ ଅଜ୍ଞାନ 'ତମେ' ସହିତ ବିଲୀନ ହେବାରେ !!

ଶ୍ରୀରାଧାରେ ସେହି ଦିବ୍ୟ ପ୍ରେମ ହିଁ ରହସ୍ୟମୟ ହୋଇ ଉଠିଛି। ତେଣୁ ତ କୁହାଯାଇଛି ପ୍ରେମ ହିଁ ଈଶ୍ୱର। ଈଶ୍ୱର ଅନ୍ୱେଷା ଯେପରି ଏକ ଭିନ୍ନ ଜଗତର କଥା। ପ୍ରେମ ବି ଅନୁରୂପ ଭାବେ ଏକ ପୃଥକ୍ ପୃଥିବୀର ଭାଷା। ଶ୍ରୀରାଧାର ମାନସିକ ଚେତନ ସ୍ତରକୁ ଦେଖାଯାଉ --

''ଏ ଦେହ ଭିତର ଖୁବ୍ ନୀରବ ଯେହେତୁ
ଏ ଦେହ ଭିତରେ ଖୁବ୍ କୋଳାହଳ ଅଛି।
ଅଂସଖ୍ୟ ଚିତ୍କାର ଅଛି, କିନ୍ତୁ ପରବର୍ତ୍ତୀ
ଚିତ୍କାରରେ ସବୁବେଳେ ସ୍ତବ୍ଧ ହୋଇଯାଏ
ପରବର୍ତ୍ତୀ ଚିତ୍କାର ଓ ତମ କଥା ପାଇଁ
ଏ ଦେହରେ ଆପେ ଆପେ ଜାଗା ହୋଇଯାଏ।''(୫୬)

ଏହି ପରସ୍ପର ବିରୋଧୀ ଭାବ ସହିତ ଏକ ପ୍ରେମସିକ୍ତ ହୃଦୟର ପ୍ରେମର ନିଗୂଢ଼ତମ ରହସ୍ୟମୟ ଚେତନାକୁ ପ୍ରତୀକିତ କରେ ନାହିଁ କି? ଶ୍ରୀରାଧା କୃଷ୍ଣଚନ୍ଦ୍ରଙ୍କୁ ଯେଉଁ ଭାବରେ ଆଗରୁ ଜାଣିଥିଲେ ସେ କେବଳ ସେତିକି ନୁହନ୍ତି। ସେ ଅଶରୀରୀ, ଅଥଚ ତାଙ୍କ ପାଖେ ପାଖେ ଥାନ୍ତି। କେତେବେଳେ ତାଙ୍କର ଦାସାନୁଦାସ ତ ପୁଣି କେତେବେଳେ ନିର୍ଦ୍ଦୟ ସଂହାରକାରୀ। ସେହି ଅଜ୍ଞେୟ ସତ୍ତାର ଅନୁସନ୍ଧାନରେ ଯୁଗଯୁଗ ଧରି କାବ୍ୟପୁରୁଷ

ଉଦ୍ୟମରତ। କିନ୍ତୁ ଏଠି ଶ୍ରୀରାଧା ତାଙ୍କୁ କାୟତଃ ପାଇବାପାଇଁ ପ୍ରସ୍ତୁତ ନୁହନ୍ତି। ସାରାରାତି ବିତେଇଲେ ବି ସେ ତାଙ୍କୁ ଛୁଅନ୍ତି ନାହିଁ। କାଳେ ସେ ତାଙ୍କ ସହିତ ମିଶିଯିବେ। "କାଳେ ଜନ୍ମଜନ୍ମ ତମକୁ ଲୋଡ଼ିଲା କର୍ମଫଳ ସରିଯିବ/କାଳେ ମୋ ଚେ଼ତନା ବାହାରେ ତମର କେଉଁ ରୂପ ରହିଯବ।"(୫୭) ପୂର୍ଣତାରେ ହୁଏତ ବିଘ୍ନ ଘଟିପାରେ। ତେଣୁ ଏକ ସର୍ବାନ୍ତଃକରଣ ପ୍ରାପ୍ତି ହିଁ ତାଙ୍କର କାମ୍ୟ, ଯାହା ଚିରଦିନ ପାଇଁ ଅପୂର୍ଣ୍ଣ ରହିଯିବ ଓ ଜୀବନ ଗଲେ ବି ଏ ଲୋଡ଼ିଲା ପଣ, ଏ ଅନ୍ୱେଷଣର ପରିସମାପ୍ତି ଘଟିବ ନାହିଁ, ଏହାହିଁ ସେହି ରହସ୍ୟମୟ ଚେ଼ତନାର ରୂପ। ଦିଶି ନ ଦିଶିଲା ପରି। ପାଇ ନ ପାଇଲା ପରି। ଏଥିରୁ ମୁକ୍ତି ନାହିଁ। ସାରା ଜୀବନ ହିଁ ତାକୁ ଧୁନ୍ଦିବାକୁ ହେବ। ଖୋଜିବାକୁ ହେବ। କିଛିଟା ଅବୋଧତା ଓ ଅପ୍ରାପ୍ତିକୁ ସେ ସମ୍ବଳ କରି ବାରମ୍ବାର ଜୀବନ ବିତାଉଥିବ।

ଏହି ରହସ୍ୟମୟ ଚେ଼ତନା ପ୍ରକୃତି ଓ ପୁରୁଷ ଭାବରେ 'ଜହ୍ନରାତି' କବିତାରେ ଯେପରି ପ୍ରତୀକିତ ହୋଇଥିଲା ତା'ର ଭିନ୍ନ ରୂପ ଅନ୍ୟାନ୍ୟ କବିତା ମାନଙ୍କରେ ଲକ୍ଷଣୀୟ। କାବ୍ୟପୁରୁଷ ପ୍ରକୃତି ଭିତରେ ସେହି ରହସ୍ୟମୟ ସତ୍ତାକୁ ସନ୍ଦର୍ଶନ କରିଛି ଏବଂ ତା' ସହିତ ନିଜର ବିବିଧ ଭାବକୁ ସଂଯୋଜିତ କରିବାରେ ମଧ୍ୟ ପ୍ରୟାସୀ ହୋଇଛି। ସେହି ପ୍ରେମ କେତେବେଳେ ଅରୁନ୍ଧତୀ ତାରା ପରି ପବିତ୍ର ଭାବରେ ଉଦ୍‌ଭାସି ଉଠିଛି ଏବଂ ସେହି ପ୍ରୀତି ସହିତ ପୁରୁଷ ଅଦୃଶ୍ୟ ହୋଇଯିବାକୁ ବା ନିଜକୁ ଜାଳି ଦେବାକୁ ଆଶାୟୀ।(୫୮) ପ୍ରକୃତି ସହିତ ନାୟିକାର ସ୍ଥିତାବସ୍ଥାକୁ ତର୍କଣା କରାଯାଇଛି। "ଦିଗ୍‌ବଳୟ ଯାଏ ଲମ୍ବିଥିବା ଏ ଧୂସର ପ୍ରାନ୍ତର କି ତମ ଛାତି?/ଧୂସର ଓ ହଳଦିଆ ରଙ୍ଗମିଶା, ବସ୍ତୁତଃ ମଳିନ/ଧଳା ଦିଗ୍‌ବଳୟ କଣ ତମ ବେକ----"।(୫୯) ନାରୀର କାମନାଦଗ୍ଧ ମହଳଣ ରୂପର ଏହା ଏକ ପ୍ରତୀକିତ ରୂପ। ଏହି ଚେ଼ତନାର ଏକ ଉତ୍ତରିତ ଭାବ ସଚ୍ଛିଦ୍ର ଅନ୍ଧାରରେ ଅନୁଭବ୍ୟ- "ଏବେ ମୁଁ ଖାଲି ପବନ,/ଆଉଁଷି ନ ପାରି ତମ ଗହଳ ବାଳକୁ/ଆଉଁଷୁଛି ସୂର୍ଯ୍ୟଚନ୍ଦ୍ର ଧାନକେଣ୍ଡା ସମୁଦ୍ର ଫେଣକୁ।"(୬୦)

ଅବଶ୍ୟ ଏ ପର୍ଯ୍ୟାୟରେ ଯାହା ଆଲୋଚନା ହେବାକୁ ଯାଉଛି ତାହାକୁ କେହି ପୁନରାବୃତ୍ତି ବୋଲି ଅଭିଯୋଗ କରିପାରନ୍ତି, କାରଣ ରମାକାନ୍ତଙ୍କ କବିତାରେ ଯେଉଁ 'ତମେ' - ତାହା ରମାକାନ୍ତଙ୍କ ବ୍ୟକ୍ତିସତ୍ତା ବୋଲି ନିରୂପଣ କରାଯାଉଛି। ଏ କଥା ସତ ଯେ କବି ଯାହା ପ୍ରକାଶ କରେ ତାହା ଯେ ତା' ବ୍ୟକ୍ତିସତ୍ତାର ଅନ୍ତର୍ନିହିତ ଭାବ-ଅନୁଭୂତି ଓ ଚେ଼ତନାର ବାହ୍ୟ ପରିପ୍ରକାଶ ଏକଥା ଅନସ୍ୱୀକାର୍ଯ୍ୟ, ଯାହାକୁ ଚେ଼ତନାର ସମନ୍ୱୟ (unification of sensibility) ବୋଲି କୁହାଯାଇଛି। ଏହି ପରିପ୍ରେକ୍ଷୀରେ କାବ୍ୟପୁରୁଷ ଯେଉଁଠି ଉଦ୍‌ବୁଦ୍ଧ ଏବଂ ଚିହ୍ନା ଚିହ୍ନା, ସେ ସମ୍ପର୍କରେ କିଞ୍ଚିତ୍ ଦୃକ୍‌ପାତ କରାଯାଉ। ତାହା 'ତମେ' ରୂପରେ ପ୍ରକାଶିତ ବା ସମ୍ବୋଧିତ ହୋଇଥିଲେ ହେଁ ଏହା ଯେ କବିର କାବ୍ୟପୁରୁଷ ଏକଥା ଲକ୍ଷ୍ୟ କରାଯାଇପାରେ। କୃତ୍ରିମ ଜୀବନଯାତ୍ରା ଓ ଆବହାଓ୍ୱା ଭିତରେ ସେ ନୟାନ୍ତ। କୃତ୍ରିମ ରେଶମ ପୋଷାକ ପିନ୍ଧିପିନ୍ଧି ଓ ରେଷ୍ଟୋରାର ଗୀତ ଶୁଣି ଶୁଣି ତାର ଅରୁଚି ଆସିଲାଣି। କାବ୍ୟପୁରୁଷ ନିଜକୁ 'ତମେ' ରୂପରେ ପ୍ରକାଶିତ କରିଛି ଏବଂ ନିଜକୁ ସେଥିରୁ ମୁକ୍ତି ପାଇଁ ପରିତ୍ରାଣ ଖୋଜିଛି। ସମୁଦ୍ରକୁ ଗଲେ ହୁଏତ ଏଥିରୁ ମୁକ୍ତି ମିଳିବ। "ସମୁଦ୍ର କୂଳକୁ ଆସ ଧୈର୍ଯ୍ୟ ଧରି, ସମୁଦ୍ର ତମର/କ୍ଷତିତ କରିବ ନାହିଁ, ବରଂ ଦେବ ପ୍ରଚୁର ଆରାମ।"(୬୧) ଏବଂ ସେଠି ପବିତ୍ର ପ୍ରକୃତି ବା ମହାକାଳରେ ଲୀନ ହୋଇ ପରମାନନ୍ଦ

ପ୍ରାପ୍ତି ହେବ।

ସମସ୍ତଙ୍କ ପରି ସେ ବି ଘରଟିଏ ଖୋଜେ। କିନ୍ତୁ ଘର କାହିଁ? ସବୁ ଘରେ ଧୋବ ଶାଢ଼ୀ ପିନ୍ଧା ବିଧବ୍। ସବୁ ଘରେ ଆତ୍ମହତ୍ୟାକାରୀ। ତେଣୁ, 'ତମେ ଯେଉଁ ଘର ଖୋଜ ଏ ଘର ସେ ନୁହେଁ।' କାବ୍ୟପୁରୁଷ ଏକଥା ଭଲ ଭାବରେ ଜାଣେ ଯେ ଆଜି ଏଇ ବନ୍ଧ୍ୟା, ଧୂସର ନିଃସଙ୍ଗ ଜୀବନ ପଥରେ 'ବୈକୁଣ୍ଠ ସମାନ' ଘରଟିଏ ମିଳିବା ଅସମ୍ଭବ। ତାର ଅସଂଖ୍ୟ ଟୁକୁଡ଼ା ବି ଏଣେତେଣେ ବିକ୍ଷିପ୍ତାବସ୍ଥାରେ ପତିତ। ତାର ନିଜର ନାଁ ନାହିଁ। ମୁହଁ ନାହିଁ। ଖଣ୍ଡିତାଂଶ ମାତ୍ର। ସବୁ ଚିହ୍ନା ଲୋକ, ସବୁ ନାରୀ ଯେ ସେହି ଟୁକୁଡ଼ାର ଅଂଶ- ତା'ର ନିଜର ଭଗ୍ନାଂଶ। କବିର ଅନୁଭୂତି--

"ମୋର ଯେତେ ଚିହ୍ନାଲୋକ ପାଲଟିଲେ ରାତି ଏବଂ
ଯେତେ ଚିହ୍ନା ନାରୀମାନେ ଦପ୍‌ଦପ୍ ତାରା ପାଲଟିଲେ।
ହେ ମୋର ଜାଗ୍ରତାବସ୍ଥା, ମୁଁ କିପରି ବାରିପାରିବି ବା
ମୋର ଛାୟାଛନ୍ନ ସ୍ୱପ୍ନମାନଙ୍କଠୁଁ ପାର୍ଥକ୍ୟ ତମର?"(୬୨)

ବ୍ୟକ୍ତିସତ୍ତାଟି ଜୀବନର ଅନେକ ଦିଗରେ ପାଦ ଦେଇଛି। କେତେବେଳେ ଭଲ ପାଇବାର ଦୀର୍ଘ ପଥକୁ ଅତିକ୍ରମ କରିଛିତ ପୁଣି କେତେବେଳେ ଭଲ ନ ପାଇବାର ପଥକୁ ବି ପରିକ୍ରମା କରିଛି। ମୁଖ୍ୟତଃ 'ସପ୍ତମଋତୁ' ପର୍ଯ୍ୟନ୍ତ ଯେଉଁ କାବ୍ୟପୁରୁଷ ଶ୍ରାନ୍ତକ୍ଳାନ୍ତ ହୋଇ ବସିଯାଇଥିଲା (୬୩), ତାହାର ଏକ ଉତ୍ତରିତ ପର୍ଯ୍ୟାୟ ଆମେ ଶ୍ରୀରାଧାରେ ଦେଖିବାକୁ ପାଉ। ସେହି କ୍ଳାନ୍ତ ନାରୀଟି ଏବେ ଆଉ ଅଧୈର୍ଯ୍ୟ ନୁହେଁ। ସେ ପ୍ରଣୟୀର ଦେହାନ୍ତରେ ବିବ୍ରତା ନୁହେଁ। ଶ୍ରୀକୃଷ୍ଣଙ୍କ ମୃତ୍ୟୁପରେ ବି --

"ସୁନ୍ଥାରେ ସିନ୍ଦୂର ମୋର
ଏବେ ଏବେ ବେଶି ଲାଲ୍ ଦିଶେ।
ଲୋକଙ୍କ ବିନୋଦ ପାଇଁ ନାଚିବା କୁଦିବା
ଛାଡ଼ିଦେଇ ଆସ ବରବେଶେ।
କନ୍ୟାପରି ମୁଁ ପିନ୍ଧିଛି
ଅଳଙ୍କାର, ପାଟପୀତାମ୍ବରୀ,
ଯେତେ ଥଟ୍ଟା ଅପଯଶ ସବୁରି ଜବାବ୍
ଦେବି ଚୂଡ଼ି ଝମ୍‌ଝମ୍ କରି।"(୬୪)

## ପାଦଟୀକା.

୧. ଚିତ୍ର ପ୍ରତିମା- ସପ୍ତମଋତୁ- ପୃ ୯୫
୨. ପ୍ରାଣ ସଙ୍ଗିନୀ- ସଚିତ୍ର ଅନ୍ଧାର- ପୃ ୩୦
୩. ସାକ୍ଷାତ-କାର-ରମାକାନ୍ତ ରଥ-ଆବର୍ତ୍ତ-୧/୫-ମାର୍ଚ୍ଚ ୧୯୮୩-ପୃ୭୭
୪. ଶ୍ରୀମଦ୍‌ଭାଗବତ- ରାସ ପଞ୍ଚାଧ୍ୟାୟୀ-୨୯ ଶ ଅଧ୍ୟାୟ- ୧ ଶ୍ଳୋକ
୫. ଶ୍ରୀମଦ୍‌ଭାଗବତ- ରାସ ପଞ୍ଚାଧ୍ୟାୟୀ- ୧୦ମ ସ୍କନ୍ଧ- ଗୋପଲୀଳା- ତ୍ରିଂଶଅଧ୍ୟାୟ
୬. ତନ୍ତ୍ରାଭିଳାଷୀର ସାଧୁସଙ୍ଗ- ପ୍ରମୋଦ କୁମାର ଚଟ୍ଟୋପାଧ୍ୟାୟ- ଗ୍ରନ୍ଥରୁ ଉଦ୍ଧୃତ
୭,୮. ପରାସ୍ତ ମୁହୂର୍ତ୍ତ-କେତେଦିନର- ପୃ ୩୩ ଓ ୩୫
୯. ଇଣ୍ଡନ- ତତ୍ରୈବ- ପୃ ୪୩

୧୦. ବାଘଶିକାର- ଅନେକକୋଠରୀ- ପୃ ୮
୧୧. Gerontion- Selected Poems- T.S. Eliot- P.31
୧୨,୧୩. ଅନନ୍ତ ଶୟନ- ଅନେକ କୋଠରୀ- ପୃ ୨୭-୨୮
୧୪. ବସନ୍ତ ଋତୁ- ସନ୍ଦିଗ୍ଧ ମୃଗୟା- ପୃ ୧୪
୧୫. ରଜାଙ୍କ ରୋମାନ୍‌ସ- ତତ୍ରୈବ- ପୃ ୧୬
୧୬. ହୃଦୟେଶ୍ୱରୀ- ତତ୍ରୈବ- ପୃ ୩୫
୧୭. ସମୟକୁ ଚାରୋଟି ଚୋରାଚାହାଣୀ- ତତ୍ରୈବ- ପୃ ୭୭
୧୮. ଗୃହସ୍ଥ- ସପ୍ତମ ଋତୁ- ପୃ- ୧୯
୧୯. ହଠାତ୍‌ଦିନେ- ତତ୍ରୈବ- ପୃ ୪୬
୨୦. ଶିଷ୍ଟାଚାର- ତତ୍ରୈବ- ପୃ ୫୩
୨୧. ପ୍ରତ୍ୟାବର୍ତ୍ତନ- ଅନେକ କୋଠରୀ- ପୃ ୨୪
୨୨,୨୩. ବିଚ୍ଛେଦର ଦୁଇଟି ମଧ୍ୟାନ୍ତର- ପୃ ୮ ଓ ୧୦
୨୪. ଶେଷ ଦିନ ଅସରନ୍ତି ଦିନ- ତତ୍ରୈବ- ପୃ ୪୧
୨୫. ଖରାପ ସମୟ ଭଲ ସମୟ- ତତ୍ରୈବ- ପୃ ୬୪
୨୬. ତମ ଭାଗ୍ୟ- ତତ୍ରୈବ- ପୃ ୯୭
୨୭. "Sometimes I have sat down to write a love poem and have ended up with a black poem dripping from death and despair, and vice-versa."-
(speech by Ramakant Rath (Sahitya Academy awards' 1978,- speeches by the award winning Authors.)
୨୮. ଦୁର୍ଗା- ସଚ୍ଛିଦ୍ର ଅନ୍ଧାର- ପୃ ୫
୨୯. କର୍ଫ୍ୟୁ- ତତ୍ରୈବ- ପୃ ୮-୯
୩୦. ବିଚ୍ଛେଦ- ତତ୍ରୈବ- ପୃ ୬୭
୩୧. ମୋ ନିଜର ପ୍ରତିବିମ୍ବ- ତତ୍ରୈବ- ପୃ ୧୧୫-୧୧୬
୩୨. ଏକାଏକା- ତତ୍ରୈବ- ପୃ ୧୨୦
୩୩. ଖସିପଡ଼ ମୋ' କୋଳକୁ- ଅନେକ କୋଠରୀ- ପୃ ୫୧
୩୪. ଗୃହସ୍ଥ- ସପ୍ତମଋତୁ- ପୃ ୨୦
୩୫. ଦୂରତ୍ୱର ତିନିଟି ଅଙ୍କନ- ତତ୍ରୈବ- ପୃ ୭୪
୩୬. ପରମାୟୁ- ସଚ୍ଛିଦ୍ର ଅନ୍ଧାର- ପୃ ୧୬
୩୭. ଏ ନଈ କୂଳରେ-. ତତ୍ରୈବ- ପୃ ୫୫
୩୮. ତମେ ଆଜି ମନେପଡ଼- ତତ୍ରୈବ- ପୃ ୮୩
୩୯. ମୋ ନିଜର ପ୍ରତିବିମ୍ବ- ତତ୍ରୈବ- ପୃ ୧୦୮
୪୦. ମୌନବ୍ରତୀର ସ୍ୱାମୀ- ତତ୍ରୈବ- ପୃ ୧୫୦
୪୧. ଶ୍ରୀରାଧା- ପୃ ୧୧୯
୪୨. ସାକ୍ଷାତକାର- ରମାକାନ୍ତ ରଥ- ଆବର୍ତ୍ତ-୧/୫, ମାର୍ଚ୍ଚ ୧୯୮୩- ପୃ ୭୮
୪୩. ତାଙ୍କ ସହ ସାକ୍ଷାତକାର- (କବି ଶ୍ରୀ ରମାକାନ୍ତ ରଥ)- ଶ୍ରୀ ହରିହର ମିଶ୍ର- କୋଣାର୍କ- ୭୬ତମ ସଂଖ୍ୟା- ୧୯୯୦- ପୃ ୭୪
୪୪. ଶ୍ରୀ ପଳାତକ- ପ୍ରତିବେଶୀ- ଶାରଦୀୟ ୧୯୮୯- ପୃ ୫-୬

୪୫. The Art of Loving- Eric From- p.18
୪୬. ଆଳାପ- କେତେଦିନର- ପୃ ୪୯
୪୭. ବିଚ୍ଛେଦର ଦୁଇଟି ମଧ୍ୟାନ୍ତର- ସପ୍ତମ ଋତୁ- ପୃ ୯
୪୮. ମୁହୂର୍ତ୍ତ ହିଁ ପୂର୍ଣ୍ଣାଙ୍ଗ ଜୀବନ- ତତ୍ରୈବ- ପୃ ୩୪
୪୯. ଚାଲଯିବା- ସଚିତ୍ର ଅନ୍ଧାର- ପୃ ୪୪
୫୦. ବିଚ୍ଛେଦ- ତତ୍ରୈବ- ପୃ ୬୭-୬୮
୫୧. ଆମେ ଦୁହେଁ- ତତ୍ରୈବ- ପୃ ୮୬
୫୨. ତମେ ହିଁ- ତତ୍ରୈବ- ପୃ ୧୦୪
୫୩. ତମେ ହିଁ- ତତ୍ରୈବ- ପୃ ୧୦୭
୫୪. ମୋ ନିଜର ପ୍ରତିବିମ୍ବ- ତତ୍ରୈବ- ପୃ ୧୧୭
୫୫. ମରୁଭୂମି- ତତ୍ରୈବ- ପୃ ୧୨୬
୫୬. ଶ୍ରୀରାଧା- ପୃ ୪୫
୫୭. ତତ୍ରୈବ- ପୃ ୬୪
୫୮. ଅରୁନ୍ଧତୀ- କେତେଦିନର- ପୃ ୪୧
୫୯. ସନ୍ଧ୍ୟା- ସନ୍ଦିଗ୍ଧ ମୃଗୟା- ପୃ ୩
୬୦. କର୍ଫ୍ୟୁ- ସଚିତ୍ର ଅନ୍ଧାର- ପୃ ୧୦
୬୧. ବୋଇତ ବନ୍ଦାଣ- କେତେଦିନର- ପୃ ୬୪
୬୨. ଦିନ କ'ଣ ରାତି କ'ଣ- ସନ୍ଦିଗ୍ଧ ମୃଗୟା- ପୃ ୫୨
୬୩. ଚିତ୍ର ପ୍ରତିମା- ସପ୍ତମ ଋତୁ- ପୃ ୯୬
୬୪. ଶ୍ରୀରାଧା- ପୃ ୧୧୮ ।

# ବୈଷ୍ଣବ କାବ୍ୟ ପରମ୍ପରାରେ "ଶ୍ରୀରାଧା"

ଶତାବ୍ଦୀ ଶତାବ୍ଦୀ ଧରି ଯେଉଁ ରାଧା ଭାରତୀୟ ଧର୍ମୀୟ ତଥା କାବ୍ୟିକ ପରମ୍ପରାରେ ଅଖଣ୍ଡ ପ୍ରାଧାନ୍ୟ ବିସ୍ତାର କରି ଚିନ୍ତା ଓ ଚେତନା ରାଜ୍ୟରେ ପ୍ରେମ ଓ ପ୍ରୀତିର ଏକ ଉତ୍ତରିତ ଭାବକୁ ଉଦ୍‌ଭାସିତ କରି ଐଶ୍ୱରୀୟ ଦୀପ୍ତିରେ ମଣ୍ଡିତ ହୋଇଥିଲେ; ଆଜି ଏ ଶତାବ୍ଦୀର ଶେଷପାଦ ବେଳକୁ ପୁଣି ଏ ରୂପରେ କାୟା ପ୍ରବେଶ କରିବା ତାତ୍ପର୍ଯ୍ୟ ସମ୍ପର୍କରେ ସଚେତନ କାବ୍ୟମୋଦି ମନରେ ପ୍ରଶ୍ନଟିଏ ଆସିବା ଅସ୍ୱାଭାବିକ କି? ଏ ଉତ୍ତରରେ କବି ନିଜେ ସ୍ୱୀକାରୋକ୍ତି ବାଢ଼ନ୍ତି, "ମୁଁ ତ ରାଧାକୁ ବୈଷ୍ଣବ ନାୟିକା ରୂପେ ଦେଖି ନାହିଁ, ଦେଖୁଛି ନିଜର ଭଲ ପାଇବାକୁ ତିଆରିବାର ଓ ତାକୁ ବଜାୟ ରଖିବାର ସାହସ ଥିବା ଜଣେ ବ୍ୟକ୍ତି ରୂପରେ। ବୈଷ୍ଣବମାନଙ୍କ ମତରେ ରାଧା ନିତ୍ୟସିଦ୍ଧା, ଅର୍ଥାତ୍ ଯେଉଁ ଗୁଣ ପାଇଁ ସେ ଆରାଧ୍ୟା ତାହା ଜନ୍ମରୁ ତାଙ୍କଠାରେ ଥିଲା ଓ ତାକୁ ହାସଲ କରିବା ପାଇଁ ତାଙ୍କୁ ପରିଶ୍ରମ କରିବାକୁ ପଡ଼ିନାହିଁ। ମୁଁ ବର୍ଣ୍ଣନା କରିଥିବା ରାଧା ଆଦୌ ସେପରି ନୁହେଁ। ସେ ଆରାଧ୍ୟା ଏଥିପାଇଁ ଯେ ସେ ନିଜର ପ୍ରାଣଶକ୍ତି ପ୍ରୟୋଗ କରି ନିଜେ ବାଛିଥିବା ଜାଗାରେ ପହଞ୍ଚିଛନ୍ତି। ନିଜେ ବାଛିଥିବା ଜାଗାରୁ ଓହରି ଆସିଥିବା

ଲୋକଙ୍କ ଗହଳିରେ ଯେତେବେଳେ ରୁଦ୍ଧି ହୋଇଗଲା ଭଳି ଲାଗେ, ରାଧାକୁ ଚାହିଁଲେ ଲାଗେ ଯେ ଦିନେ ନା ଦିନେ ନିଃଶ୍ୱାସ ନେଇ ହେବ। ସେ ଦିନ ଆଦୌ ଆସିବକି ନାହିଁ ତାହା ବଡ଼କଥା ନୁହେଁ, କିନ୍ତୁ ତାଙ୍କୁ ଚାହିଁଥିବାର, ଏପରିକି ଚାହିଁବାକୁ ଇଚ୍ଛା କରିଥିବାର ସୌଭାଗ୍ୟ କ'ଣ ଆମଭଳି ଲୋକଙ୍କ ପାଖରେ ଯଥେଷ୍ଟ ନୁହେଁ।''(୧)

କବିଙ୍କର ଏ ସ୍ୱୋକ୍ତି ତାଙ୍କ 'ଶ୍ରୀରାଧା' କାବ୍ୟରେ କେତେଦୂର ପ୍ରତିଫଳିତ ହୋଇଛି ତାହା ପ୍ରମାଣ କରିବାକୁ ଯାଇ ରାଧାଙ୍କର ଦେବୀରୂପ ଓ ମାନବୀ ଲୀଳାକୁ କାବ୍ୟ ପରମ୍ପରାରେ ବିଚାର କରାଯାଇ ପାରେ। ରାଧାଙ୍କର ପ୍ରାଚୀନତା ସମ୍ପର୍କୀୟ ଇତିହାସ ଜାଣିବାକୁ ଯାଇ ଅନେକ ସମାଲୋଚକ ପ୍ରଥମେ ମହାକବି ଜୟଦେବ କୃତ 'ଗୀତଗୋବିନ୍ଦ' (୧୨ଶ ଶତାବ୍ଦୀ) ପାଖରେ ଅଟକି ଯାଇଥାନ୍ତି। ଅବଶ୍ୟ ଏ ସମୟ ବେଳକୁ ଶ୍ରୀରାଧା କାବ୍ୟପ୍ରାଙ୍ଗଣରେ ପୂର୍ଣ୍ଣ ପ୍ରତିଷ୍ଠା ପାଇ ସାରିଲେଣି। ଏହି ଶତାବ୍ଦୀରେ ଲୀଳାଶୁକ ବିଲ୍ୱମଙ୍ଗଳ ବିରଚିତ 'କୃଷ୍ଣ କର୍ଣ୍ଣାମୃତ' ଗ୍ରନ୍ଥରେ ଶ୍ରୀରାଧାଙ୍କର ପ୍ରାଧାନ୍ୟ ରହିଛି। ଦଶମ ଶତାବ୍ଦୀର ପୂର୍ବାର୍ଦ୍ଧରେ କାଶ୍ମୀରର ମହାନ୍ ପଣ୍ଡିତ ବଲ୍ଲଭଦେବ ସଂସ୍କୃତ ମହାକାବ୍ୟ ଉପରେ ଅମୂଲ୍ୟ ଟୀକା କରିଯାଇଛନ୍ତି। 'ଶିଶୁପାଳ ବଧ' କାବ୍ୟର ଟୀକାରେ ଚତୁର୍ଥ ସର୍ଗ ୩୫ ଶ୍ଳୋକରେ ବ୍ୟବହୃତ 'ଲୋଚକ' ଶବ୍ଦର ବ୍ୟାଖ୍ୟା ପାଇଁ ଏକ ପ୍ରାଚୀନ ପଦର ଉଦ୍ଧାର କରିଛନ୍ତି ଯେଉଁଥିରେ ରାଧାଙ୍କ ସ୍ପଷ୍ଟ ଚିତ୍ର ମିଳିଥାଏ।

''ଯୋ ଗୋପୀଜନ ବଲ୍ଲଭଃ କୁଚତଟବ୍ୟାଭୋଗଲବ୍ଧାସ୍ପଦଂ
ଛାୟାବାତ୍ର ବିରକ୍ତକୋ ବହୁଗୁଣଶ୍ଚରୁ ଶ୍ଚତୁର୍ହସ୍ତକଃ।
କୃଷ୍ଣଃ ସୋଽପି ହତାଶାୟାଽପ୍ୟପହୃତଃ ସତ୍ୟଂ କୟାଽପ୍ୟଦ୍ୟମେ
କିଂ ରାଧେ ମଧୁସୂଦନୋ ନହି ନହି ପ୍ରାଣପ୍ରିୟୋ ଲୋଚକଃ।''

ନବମ ଶତାବ୍ଦୀରେ ଆନନ୍ଦ ବର୍ଦ୍ଧନଙ୍କ ଆଳଙ୍କାରିକ ଗ୍ରନ୍ଥ 'ଧ୍ୱନ୍ୟାଲୋକ'ରେ ବହୁପ୍ରାଚୀନ କାବ୍ୟର ଉଦାହରଣ ରହିଛି। ଗୋଟିଏ ଶ୍ଳୋକରୁ ରାଧାଙ୍କର ପରିଚୟ ସମ୍ପର୍କରେ ସୂଚନା ଦିଆଯାଇପାରେ--

''ତୋଷାଂ ଗୋପବଧବିଳାସସୁହୃଦାଂ ରାଧାରହଃ ସାକ୍ଷିଣାଂ
କ୍ଷେମଂ ଭଦ୍ର କଳିନ୍ଦ ଶୈଳତନୟା ତୀରେ ଲତାବେଶ୍ମବନାମ୍।
ବିଚ୍ଛିନ୍ନେ ସ୍ମରତଳ୍ପକଳ୍ପନମୃଦୁଚ୍ଛେଦୋପଯୋଗେଽଧୁନା
ତେ ଜାନେ ଜରଠୀ ଭବନ୍ତି ବିଗଳନ୍ନୀଳତ୍ୱିଷଃ ପଲ୍ଲବାଃ।''

ସେହିପରି ଅଷ୍ଟମ ଶତାବ୍ଦୀର ଭଟ୍ଟନାରାୟଣଙ୍କ 'ବେଣୀ ସଂହାର' ନାଟକର 'ନାନ୍ଦୀ'ରେ (୨), ପଞ୍ଚମ ଶତାବ୍ଦୀର 'ପଞ୍ଚତନ୍ତ୍ର'ର ଏକ କାହାଣୀରେ (୩), ଏବଂ ଚତୁର୍ଥ ଶତାବ୍ଦୀର ହାଲ (ଶାଳିବାହନ)ଙ୍କର ପ୍ରାକୃତ ରଚନା 'ଗାହା ସତସଇ' (ଗାଥା ସପ୍ତଶତୀ)ରେ (୪) ରାଧାଙ୍କର ନାମୋଲ୍ଲେଖ ରହିଛି। ବିସ୍ମୟର କଥା ଯେ ଭାଗବତରେ କୃଷ୍ଣଲୀଳା ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଥିଲେ ହେଁ ରାଧାଙ୍କ ନାମୋଲ୍ଲେଖ ନାହିଁ । ବର୍ଣ୍ଣିତ ଅଛି ରାସଲୀଳାରେ ନିମଗ୍ନ ଥିଲାବେଳେ ଶ୍ରୀକୃଷ୍ଣ ଜଣେକା ଗୋପୀଙ୍କୁ ସାଙ୍ଗରେ ଧରି ସେଠୁ ଅନ୍ତର୍ହିତ ହୋଇଯାଆନ୍ତି। ଏଥିରେ ବ୍ୟଥିତା ହୋଇ ଅନ୍ୟ ଗୋପାଙ୍ଗନାମାନେ ତାଙ୍କୁ ଅନ୍ୱେଷଣ କରନ୍ତି। ଖୋଜି ଖୋଜି ଯମୁନାର ବିମଳ ବାଲୁକା ରାଶି ଭିତରେ କେବଳ ଶ୍ରୀକୃଷ୍ଣଙ୍କ ପାଦ ଚିହ୍ନ ନୁହେଁ କୌଣସି ବ୍ରଜାଙ୍ଗନାର ପାଦଚିହ୍ନ ମଧ୍ୟ ଦେଖନ୍ତି। ତା'ର ସୌଭାଗ୍ୟର ପ୍ରଶଂସା କରି

ଗୋପାଙ୍ଗନାମାନେ କହନ୍ତି :

"ଅନୟା ରାଧିତୋ ନୂନଂ ଭଗବାନ୍ ହରୀରୀଶ୍ୱରଃ
ଯନ୍ନୋ ବିହାୟ ଗୋବିନ୍ଦଃ ପ୍ରୀତୋ ଯାମନୟଦ୍‌ରହଃ ।।"(୫)

ଏହି ଶ୍ଳୋକକୁ ବ୍ୟାଖ୍ୟା କରି କେତେକ ବୈଷ୍ଣବ ଗୋସ୍ୱାମୀମାନେ ଏଥିରେ 'ରାଧା' ଶବ୍ଦ ପ୍ରଚ୍ଛନ୍ନ ଭାବରେ ରହିଛି ବୋଲି ମତବ୍ୟକ୍ତ କରିଥାନ୍ତି। ଅନ୍ୟକେତେକ ଆଳଙ୍କାରିକ ଏହାକୁ ଆରାଧନା ଅର୍ଥରେ ଗ୍ରହଣ କରି ଭାଗବତରେ ଶ୍ରୀରାଧାଙ୍କର ଅବର୍ତ୍ତମାନତାକୁ ସ୍ୱୀକାର କରନ୍ତି।

ଭାଗବତ, ବିଷ୍ଣୁ ପୁରାଣ, ହରିବଂଶ ଓ ମହାଭାରତରେ ରାଧାଙ୍କ ନାମ ନାହିଁ। ରାଧାଙ୍କୁ ପ୍ରଥମେ ବ୍ରହ୍ମବୈବର୍ତ୍ତ ପୁରାଣରେ ଦେଖିବାକୁ ମିଳେ ବୋଲି ବଙ୍କିମ ଚନ୍ଦ୍ର ପ୍ରମାଣ କରିଛନ୍ତି। ବ୍ରହ୍ମବୈବର୍ତ୍ତକାର ସମ୍ପୂର୍ଣ୍ଣ ନୂତନ ବୈଷ୍ଣବ ଧର୍ମ ସୃଷ୍ଟି କରି ଅଛନ୍ତି। ସେ ବୈଷ୍ଣବଧର୍ମର ନାମଗନ୍ଧ ମାତ୍ର ବିଷ୍ଣୁ ବା ଭାଗବତ ବା ଅନ୍ୟପୁରାଣରେ ନାହିଁ। ରାଧା ମଧ୍ୟ ଏହି ନୂତନ ବୈଷ୍ଣବ ଧର୍ମର କେନ୍ଦ୍ର ସ୍ୱରୂପ। କବି ଜୟଦେବ ଗୀତଗୋବିନ୍ଦ କାବ୍ୟରେ ଏହି ନୂତନ ବୈଷ୍ଣବଧର୍ମ ଅବଲମ୍ବନ କରି ଗୋବିନ୍ଦ ଗୀତି ରଚନା କରିଛନ୍ତି। ତାଙ୍କରି ଦୃଷ୍ଟାନ୍ତ ଅନୁସରଣ କରି ବିଦ୍ୟାପତି ଓ ଚଣ୍ଡୀଦାସ ପ୍ରଭୃତି ବଙ୍ଗୀୟ ବୈଷ୍ଣବଗଣ କୃଷ୍ଣସଙ୍ଗୀତ ରଚନା କରିଛନ୍ତି। ଏହି ଧର୍ମ ଅବଲମ୍ବନ କରି ଶ୍ରୀଚୈତନ୍ୟଦେବ କାନ୍ତରସାଶ୍ରିତ ଅଭିନବ ଭକ୍ତିବାଦ ପ୍ରଚାର କରିଛନ୍ତି।(୬)

ସାଂଖ୍ୟର ସ୍ଥୂଳକଥା ଏହି ଜଡ଼ଜଗତ ବା ଜଡ଼ ଜଗନ୍ମୟୀ ଶକ୍ତି, ପରମାତ୍ମାଠାରୁ ସମ୍ପୂର୍ଣ୍ଣରୂପେ ପୃଥକ୍। ପରମାତ୍ମା ବା ପୁରୁଷ ସମ୍ପୂର୍ଣ୍ଣରୂପେ ସଙ୍ଗଶୂନ୍ୟ। ସେ କିଛି କରନ୍ତି ନାହିଁ ଏବଂ ଜଗତ ସଙ୍ଗେ ତାଙ୍କର କୌଣସି ସମ୍ପର୍କ ନାହିଁ। ଜଡ଼-ଜଗତ ଏବଂ ଜଡ଼ଜଗନ୍ମୟୀ ଶକ୍ତିକୁ ଏମାନେ 'ପ୍ରକୃତି' ନାମ ଦେଇ ଅଛନ୍ତି। ଏହି ପ୍ରକୃତି ହିଁ ସର୍ବସୃଷ୍ଟିକାରିଣୀ, ସର୍ବସଞ୍ଚାରିଣୀ ଏବଂ ସର୍ବସଂହାରିଣୀ। ଏହି ପ୍ରକୃତି-ପୁରୁଷ ତତ୍ତ୍ୱରୁ ପ୍ରକୃତି-ପ୍ରଧାନ ତାନ୍ତ୍ରିକ ଧର୍ମର ଉତ୍ପତ୍ତି। ଏହି ତାନ୍ତ୍ରିକ ଧର୍ମରେ ପ୍ରକୃତି ପୁରୁଷଙ୍କର ଏକତ୍ୱ ଅଥବା ଅତି ଘନିଷ୍ଠ ସମ୍ବନ୍ଧ ସମ୍ପାଦିତ ହେବାରୁ ପ୍ରକୃତି ପ୍ରଧାନ ବୋଲି ଏହି ଧର୍ମ ଲୋକ ରଞ୍ଜନ ହୋଇଥିଲା। ଯେଉଁମାନେ ବୈଷ୍ଣବମାନଙ୍କର ଅଦ୍ୱୈତବାଦରେ ଅସନ୍ତୁଷ୍ଟ, ସେମାନେ ତାନ୍ତ୍ରିକ ଧର୍ମର ଆଶ୍ରୟ ଗ୍ରହଣ କରିଥିଲେ। ସେହି ତାନ୍ତ୍ରିକ ଧର୍ମର ସାରାଂଶ ଏହି ବୈଷ୍ଣବଧର୍ମରେ ସଂଲଗ୍ନ କରି ବୈଷ୍ଣବ ଧର୍ମକୁ ପୁନରୁଜ୍ଜ୍ୱଳ କରିବା ପାଇଁ ବ୍ରହ୍ମବୈବର୍ତ୍ତକାର ଏହି ଅଭିନବ ବୈଷ୍ଣବଧର୍ମର ପ୍ରଚାର କରିଅଛନ୍ତି ଅଥବା ବୈଷ୍ଣବଧର୍ମର ପୁନଃସଂସ୍କାର କରିଅଛନ୍ତି। ତାଙ୍କଦ୍ୱାରା ସୃଷ୍ଟ ରାଧା ସେହି ସାଂଖ୍ୟମାନଙ୍କର ମୂଳ ପ୍ରକୃତି ସ୍ଥାନୀୟା। ବ୍ରହ୍ମବୈବର୍ତ୍ତ ପୁରାଣର ବ୍ରହ୍ମଖଣ୍ଡରେ କୃଷ୍ଣ ମୂଳ ପ୍ରକୃତିକୁ ସୃଷ୍ଟିକରି ତତ୍‌ପରେ ରାଧାଙ୍କୁ ସୃଷ୍ଟି କରିଅଛନ୍ତି ବୋଲି ବର୍ଣ୍ଣିତ ଥିବା ସ୍ଥଳେ ଶ୍ରୀକୃଷ୍ଣ ଜନ୍ମ ଖଣ୍ଡରେ ଦେଖାଯାଏ ଯେ କୃଷ୍ଣ ସ୍ୱୟଂ ହିଁ ରାଧାଙ୍କୁ ପୁନଃ ପୁନଃ ମୂଳପ୍ରକୃତି ବୋଲି ସମ୍ବୋଧନ କରିଛନ୍ତି। ଯଥା- "ସମାର୍ଦ୍ଧାଂଶ ସ୍ୱରୂପା ତ୍ୱଂ ମୂଳ ପ୍ରକୃତିରିଶ୍ୱରୀ।" ପରମାତ୍ମା-ପ୍ରକୃତି ବା ରାଧାକୃଷ୍ଣଙ୍କ ଅଭିନବ ସମ୍ବନ୍ଧ ପ୍ରକଟିତ ହୋଇଛି।

"ଯଥା ତ୍ୱଂଚ ତଥାହଂଚ ଭେଦୋହି ନାମୟୋର୍ଦ୍ଧ୍ରୁବଂ।୫୭।
ଯଥା କ୍ଷୀରେ ଚ ଧାବଲ୍ୟଂ ଯଥାଗ୍ନୌ ଦାହିକା ସତି।

ଯଥା ପୃଥ୍ୱ୍ୟାଂ ଗନ୍ଧଶ୍ଚ ତଥାହଂ ତ୍ୱୟିସନ୍ତତମ୍।୫୮।
(ଶ୍ରୀକୃଷ୍ଣ ଜନ୍ମଖଣ୍ଡ- ୧୫ ଅଧ୍ୟାୟ)

ଅର୍ଥାତ୍, ତୁମେ ଯେଉଁଠାରେ ମୁଁ ମଧ୍ୟ ସେହିଠାରେ। ଆମ୍ଭମାନଙ୍କ ମଧ୍ୟରେ ନିଶ୍ଚିତରେ କୌଣସି ପ୍ରଭେଦ ନାହିଁ। ଦୁଗ୍ଧରେ ଯେପରି ଧବଳତା, ଅଗ୍ନିରେ ଯେପରି ଦାହିକା ଶକ୍ତି, ପୃଥିବୀରେ ଯେପରି ଗନ୍ଧ, ସେହିପରି ମୁଁ ତୁମ୍ଭ ପାଖରେ ସବୁବେଳେ ରହିଛି। ପୁନଶ୍ଚ, ଶ୍ରୀକୃଷ୍ଣ ରାଧା ବ୍ୟତିରେକେ ଶ୍ରୀହୀନ, ସୃଷ୍ଟିହୀନ ବୋଲି ମନେ କରନ୍ତି। ଶ୍ରୀରାଧା ତୁଷ୍ଟି, ପୁଷ୍ଟି, କ୍ଷମା, ଲଜ୍ଜା, ପରାଜୟ, ଶୁଦ୍ଧ ନିଦ୍ରା, ତନ୍ଦ୍ରା, ମୂର୍ଚ୍ଛିରୂପା, ଭକ୍ତିରୂପା, ଜୀବର ଦୁଃଖ ରୂପିଣୀ ବୋଲି ବର୍ଣ୍ଣନା ଅଛି। ଶ୍ରୀକୃଷ୍ଣ ମଧ୍ୟ କହନ୍ତି ଯେ, ତୁମ୍ଭେ ସର୍ବଦା ମୋର ଆଧାର ଓ ମୁଁ ତୁମର ଆତ୍ମା। ତୁମେ ଯେଉଁଠି ମୁଁ ସେଠି। ମୁଁ ପୁରୁଷ ତମେ ପ୍ରକୃତି। ହେ ଦେବି, ଦୁଇଟିରୁ ଗୋଟିକର ଅଭାବରେ ସୃଷ୍ଟି ହୁଏ ନାହିଁ।

''ଯଥା ତ୍ୱଂଚ ତଥାହଂଚ ସମୌ ପ୍ରକୃତିପୁରୁଷୌ
ନହି ସୃଷ୍ଟିଭବେଦ୍ଦେବି ଦ୍ୱୟୋରେକତରଂ ବିନା।''
(ଶ୍ରୀକୃଷ୍ଣ ଜନ୍ମଖଣ୍ଡ- ୬୭ ଅଧ୍ୟାୟ- ପଦ ୮୧)

କିନ୍ତୁ 'ଦେବୀ ଭାଗବତ'ରେ କଥିତ ଅଛି ଯେ 'ଶ୍ରୀରାଧା'ଙ୍କ ଠାରୁ ଜଗତ୍‌ପୁରୁଷ ଶ୍ରୀ ଭଗବାନ କୃଷ୍ଣ ବାଳକ ରୂପରେ ଜାତ। ସେହି ବାଳକର ପ୍ରତ୍ୟେକ ଲୋମ କୂପରେ ଅସଂଖ୍ୟ ବ୍ରହ୍ମାଣ୍ଡର ସଭା ରହିଛି। ପ୍ରତ୍ୟେକ ବ୍ରହ୍ମାଣ୍ଡରେ ବ୍ରହ୍ମା-ବିଷ୍ଣୁ-ଶିବ ବିରାଜମାନ। ତେଣୁ ବୈଷ୍ଣବମାନେ ପ୍ରଥମେ ରାଧାର୍ଚ୍ଚନା କରିଥାନ୍ତି--

''କୃଷ୍ଣାର୍ଚ୍ଚାୟାଂ ନାଧିକାରେ ଯତୋ ରାଧାର୍ଚ୍ଚନଂବିନା।
ବୈଷ୍ଣବୈଃ ସକଲୈସ୍ତସ୍ମାତ୍ କର୍ତ୍ତବ୍ୟଂ ରାଧିକର୍ଚ୍ଚନମ୍।
କୃଷ୍ଣ ପ୍ରାଣାଧିକା ଦେବୀ ତଦଧୀନୋ ବିଭିଯିତଃ।
ରାସେଶ୍ୱରୀ ତସ୍ୟ ନିତ୍ୟଂ ତୟା ବିନା ନ ତିଷ୍ଠତି।''
(ଦେବୀ ଭାଗବତ- ୯/୫୦)

ପୁନଶ୍ଚ ରୂପଗୋସ୍ୱାମୀ ତାଙ୍କର 'ଉଜ୍ଜ୍ୱଳ ନୀଳମଣି'ରେ ତନ୍ତ୍ରରେ ରାଧା ବର୍ତ୍ତମାନ ବୋଲି ମତବ୍ୟକ୍ତ କରନ୍ତି। ଜୀବ ଗୋସ୍ୱାମୀ ତଥା କୃଷ୍ଣଦାସ କବିରାଜ 'ବୃହତ୍ ଗୌତମୀୟ ତନ୍ତ୍ର' ଶାସ୍ତ୍ରରେ ରାଧାଙ୍କ ଉଲ୍ଲେଖ ଅଛି ବୋଲି ଖୋଜି ବାହାର କରିଛନ୍ତି--

''ଦେବୀ କୃଷ୍ଣମୟୀ ପ୍ରୋକ୍ତା ରାଧିକା ପରଦେବତା।
ସର୍ବ ଲକ୍ଷ୍ମୀମୟୀ ସର୍ବ କାନ୍ତିଃ ସମ୍ମୋହିନୀ ପରା।''(୮)

ଏତଦ୍‌ବ୍ୟତୀତ 'ରାଧୋପନିଷଦ' ଓ 'ରାଧିକାତାପନୀୟୋପନିଷଦ' ନାମକ ଦୁଇଟି ଉପନିଷଦରେ ଶ୍ରୀରାଧା ଶ୍ରୀକୃଷ୍ଣଙ୍କର ପରମ ଅନ୍ତରଙ୍ଗ ଭୂତା ହ୍ଲାଦିନୀ ଶକ୍ତି ବୋଲି ବର୍ଣ୍ଣିତ।

''ଯସ୍ୟାରେଣୁଂ ପାଦୟୋର୍ବିଶ୍ୱଭର୍ତ୍ତା
ଧରତେ ମୂର୍ଦ୍ଧ୍ନିରହସି ପ୍ରେମଯୁକ୍ତ।
ସ୍ରସ୍ତବେଣୁଃ କବରୀ ନ ସ୍ମରେଦ୍ୟ
ତଲ୍ଲୀନଃ କୃଷ୍ଣଃ କ୍ରୀତବତ୍ତାଂ ନମାମଃ।''(୯)

ଅର୍ଥାତ୍, ବିଶ୍ୱଭର୍ତ୍ତା ଶ୍ରୀକୃଷ୍ଣଚନ୍ଦ୍ର ଏକାନ୍ତରେ ପ୍ରେମାସିକ୍ତ ହୋଇ ଯାହାଙ୍କର ପାଦଧୂଳି ଆପଣାର ମସ୍ତକରେ ଧାରଣ କରନ୍ତି, ଯାହାଙ୍କର ପ୍ରେମରେ ନିମଗ୍ନ ହେଲାପରେ ହାତରୁ ବଂଶୀ ଖସିପଡ଼େ, ଏବଂ ଖସି ପଡ଼ୁଥିବା କବରୀ ସଂପର୍କରେ ସଚେତନ ନୁହନ୍ତି ତଥା କ୍ରୀତଦାସ ପରି ଶ୍ରୀକୃଷ୍ଣ ଯାହାଙ୍କର ସେବାରତ ଥାନ୍ତି ସେହି ରାଧାଙ୍କୁ ଆମେ ପ୍ରଣାମ କରୁଛୁ। ଏହି ଉପନିଷଦର ସମୟସୀମା ପ୍ରାୟତଃ ୧୭ଶ ଶତାବ୍ଦୀ ପରବର୍ତ୍ତୀ କାଳ, କାରଣ ଯଦି ଏହା ଅତି ପ୍ରାଚୀନ ହୋଇଥାନ୍ତା ତେବେ ଗୌଡ଼ୀୟ ଗୋସ୍ୱାମୀମାନେ ସେମାନଙ୍କ ଗ୍ରନ୍ଥମାନଙ୍କରେ ଏହାର ସଙ୍କେତ ଦେଇପାରିଥାନ୍ତେ।(୧୦) ଯଜୁର୍ବେଦରେ ପୁରୁଷର ଦୁଇଟି ସ୍ତ୍ରୀ- 'ଶ୍ରୀ' ଓ 'ଲକ୍ଷ୍ମୀ'। ଉବ୍ବଟ ନିଜର ଟୀକାରେ 'ଶ୍ରୀ'କୁ ସମ୍ପତ୍ତି ଓ 'ଲକ୍ଷ୍ମୀ'କୁ ସୌନ୍ଦର୍ଯ୍ୟ ଭାବରେ ଗ୍ରହଣ କରିଥିବା ସ୍ଥଳେ ହରିବ୍ୟାସଦେବ 'ବେଦାନ୍ତ କାମଧେନୁ'ର ଟୀକା ଗ୍ରନ୍ଥ 'ସିଦ୍ଧାନ୍ତ ରତ୍ନାବଳୀ'ରେ 'ଶ୍ରୀ'କୁ 'ରାଧା' ଭାବରେ ଗ୍ରହଣ କରନ୍ତି। କିନ୍ତୁ ଆଧୁନିକ ହିନ୍ଦୀ ସାହିତ୍ୟ ସମୀକ୍ଷକ ପଣ୍ଡିତ ବଳଦେବ ଉପାଧ୍ୟାୟଙ୍କ ମତରେ, ରାଧାଙ୍କୁ କୃଷ୍ଣପ୍ରିୟା ଭାବରେ ସ୍ୱୀକୃତି ପ୍ରଦାନ କରୁଥିବା ପ୍ରଥମ ଗ୍ରନ୍ଥ ହାଲଙ୍କର 'ଗାଥା ସପ୍ତଶତୀ' (ପ୍ରଥମ ଶତାବ୍ଦୀ)। ଅବଶ୍ୟ 'ବିଷ୍ଣୁପୁରାଣ' ତଥା 'ଶ୍ରୀମଦ୍ଭାଗବତ' 'ଗାଥା ସପ୍ତଶତୀ' ଠାରୁ ପ୍ରାଚୀନ ହେଲେ ମଧ୍ୟ ଏଥିରେ କୌଣସି 'ବିଶିଷ୍ଟାଗୋପୀ' ଉଲ୍ଲେଖ ଥିବା ସ୍ଥଳେ ସ୍ପଷ୍ଟଭାବେ ରାଧାନାମ ଉଲ୍ଲେଖ ନାହିଁ। ଭାଗବତର 'ଅନୟାରାଧିତୋନୂନଂ' ଶ୍ଳୋକ ଭିତରେ ରାଧାନାମ ବାହାର କରିବା କେବଳ ଗୌଡ଼ୀୟ ଗୋସ୍ୱାମୀମାନଙ୍କର ଏକ ବିଳାସ ମାତ୍ର। ଭାଗବତର ପ୍ରାଚୀନତମ ଟୀକାକାର ଶ୍ରୀଧର ଗୋସ୍ୱାମୀ ନିଜର ଟୀକାରେ ଏହି ଗୂଢ଼ ସଙ୍କେତର କୌଣସି ଇଙ୍ଗିତ ଦେଇ ନାହାନ୍ତି। 'ଚୈତନ୍ୟ ଚରିତାମୃତ'ରେ ବର୍ଣ୍ଣିତ ଅଛି ନିଜେ ମହାପ୍ରଭୁ ଶ୍ରୀ ଚୈତନ୍ୟ ଶ୍ରୀଧର ଗୋସ୍ୱାମୀଙ୍କ ଟୀକାକୁ ଶ୍ରଦ୍ଧା କରୁଥିଲେ ଏବଂ ତାଙ୍କୁ ଅନୁସରଣ କରିବାକୁ ନିର୍ଦ୍ଦେଶ ଦେଉଥିଲେ। ଜୀବଗୋସ୍ୱାମୀ ମଧ୍ୟ ବୈଷ୍ଣବତତ୍ତ୍ୱ ବ୍ୟାଖ୍ୟାରେ ଶ୍ରୀଧର ଗୋସ୍ୱାମୀଙ୍କଠାରେ ଯଥେଷ୍ଟ ଋଣୀ। ଶ୍ରୀ ସନାତନ ଗୋସ୍ୱାମୀ ଭାଗବତର ଉପରୋକ୍ତ ପଂକ୍ତିରୁ ରାଧାଙ୍କ ଠାବ କରିବାଟା ସମ୍ପୂର୍ଣ୍ଣ ନବୀନ, ତାଙ୍କର ଅନୁଗମନ ଜୀବଗୋସ୍ୱାମୀ ଆଦି ଗୋସ୍ୱାମୀମାନେ ଆଦର ସହକାରେ କରିଥିଲେ ମଧ୍ୟ ତାହାର କୌଣସି ଐତିହାସିକ ତଥ୍ୟ ନାହିଁ।(୧୧)

ଉପରୋକ୍ତ ଆଲୋଚନାର ନିଷ୍କର୍ଷରେ ଏହା ଅନୁମିତ ହୁଏ ଯେ ରାଧା ପ୍ରାଚୀନକାଳରୁ ଶାସ୍ତ୍ରମାନଙ୍କରେ ଈଷତ୍ ମୁଖ ପ୍ରଦର୍ଶନ କରିଥିଲେ ମଧ୍ୟ ପ୍ରାୟତଃ ଦ୍ୱାଦଶ ଶତାବ୍ଦୀ ପରେ ଧର୍ମଶାସ୍ତ୍ର ତଥା ସାହିତ୍ୟରେ ଅଖଣ୍ଡ ପ୍ରାଧାନ୍ୟ ବିସ୍ତାର କରି ଷୋଡ଼ଶ-ସପ୍ତଦଶ ଶତାବ୍ଦୀ ପର୍ଯ୍ୟନ୍ତ ଭାରତୀୟ କାବ୍ୟ ପରମ୍ପରାର ଅଧିଷ୍ଠାତ୍ରୀ ଦେବୀ ଭାବରେ ପ୍ରତିଭାତ ହୋଇଛନ୍ତି। ଏହି ପରିପ୍ରେକ୍ଷୀରେ ପ୍ରସିଦ୍ଧ ବଙ୍ଗୀୟ ସମାଲୋଚକ ଶ୍ରୀ ଶଶିଭୂଷଣ ଦାସଗୁପ୍ତଙ୍କ ଉକ୍ତି ପ୍ରଣିଧାନ୍ୟ-- ''ଦ୍ୱାଦଶ ଶତକର ପୂର୍ବ ପର୍ଯ୍ୟନ୍ତ ବିଷ୍ଣୁଶକ୍ତି ସମ୍ବନ୍ଧେ ଯାହା କିଛି ବିଶ୍ୱାସ, ଚିନ୍ତା ଓ ମତାମତ, ସେଇ ଉର୍ବର ଭୂମିର ଉପରେ ଯେନ ଉପ୍ତ ହଇଯାଛିଲ ଏଇ ଅନନ୍ତ ବିଚିତ୍ର ମଧୁର ରାଧାର ବୀଜ, ସେଇ ବୀଜ ପୁରାତନ ଭୂମି ହଇତେ ଉପଜୀବ୍ୟ ସଂଗ୍ରହ କରିୟା ଆପନାର ନବଧର୍ମେ ନିତ୍ୟନବ ସୌନ୍ଦର୍ଯ୍ୟେ ଓ ମାଧୁର୍ଯ୍ୟେ ପ୍ରକାଶ ଲାଭ କରିୟା ଗୋଡ଼ୀୟ ବୈଷ୍ଣବଧର୍ମେ ପୂର୍ଣ୍ଣ ପ୍ରସ୍ଫୁଟିତ ହଇୟା ଉଠିଲା।''(୧୨) ଜୟଦେବଙ୍କ ପରେ ଶ୍ରୀଧର ଦାସ, ଚଣ୍ଡୀଦାସ, ବିଦ୍ୟାପତି, ଜ୍ଞାନଦାସ, ସୁରଦାସ, ଓ ମୀରାବାଈ

ପ୍ରଭୃତିଙ୍କ କାବ୍ୟ କବିତାରେ ଶ୍ରୀରାଧାଙ୍କର ମହାଭାବ ସ୍ୱରୂପ ସହିତ ଦିବ୍ୟପ୍ରେମର ବର୍ଣ୍ଣନା ବିଳାସ କ୍ରମଃ ଗତିଶୀଳତା ଲାଭ କରିଛି। ଷୋଡ଼ଶ ଶତାବ୍ଦୀରେ ରାୟରାମାନନ୍ଦ ଓ ଶ୍ରୀ ଚୈତନ୍ୟଙ୍କ ଆବିର୍ଭାବ ହିଁ ରାଧାବାଦର ବିସ୍ତୃତି ଲାଭ କରିବାରେ ସହାୟ ହୁଏ। ରାଧା ଓ କୃଷ୍ଣଙ୍କ ପ୍ରୀତି ଅପ୍ରାକୃତ। ଲୌକିକ ସ୍ତରରେ ତାହା ଉପଲବ୍‌ଧିର ସୀମାତିକ୍ରମ କରିଯାଏ। ରାଧାଙ୍କର ହ୍ଲାଦିନୀ ଶକ୍ତି ଓ ମହାଭାବ ସମ୍ପର୍କରେ କୁହାଯାଇଛି--

''ହ୍ଲାଦିନୀର ସାରଅଂଶ ତାର ପ୍ରେମନାମ
ଆନନ୍ଦ ଚିନ୍ମୟ ରସ ପ୍ରେମେର ଆଖ୍ୟାନ।
ପ୍ରେମେର ପରମସାର ମହାଭାବଜାନି
ସେଇ ମହାଭାବ ରୂପ ରାଧାଠାକୁରାଣୀ।''(୧୩)

ମଧ୍ୟଯୁଗୀୟ ବୈଷ୍ଣବ ସମ୍ପ୍ରଦାୟ ମଧ୍ୟରେ ନିମ୍ବାର୍କ ସମ୍ପ୍ରଦାୟ ପ୍ରାଚୀନତମ ବୋଲି ସମାଲୋଚକମାନେ ମତ ପ୍ରଦାନ କରିଥାନ୍ତି। ରାଧା ଏହି ସମ୍ପ୍ରଦାୟ ମାଧ୍ୟମରେ ପ୍ରଥମେ ଧାର୍ମିକ ମାନ୍ୟତାପ୍ରାପ୍ତ ହୋଇଛନ୍ତି ବୋଲି ଅନୁମାନ କରାଯାଇପାରେ। ଆଚାର୍ଯ୍ୟ ନିମ୍ବାର୍କ 'ବେଦାନ୍ତ କାମଧେନୁ' (ଦଶଶ୍ଳୋକୀ) ସିଦ୍ଧ ସ୍ତୋତ୍ରରେ ଭଗବାନ ଶ୍ରୀକୃଷ୍ଣଙ୍କ ବାମ ଅଙ୍ଗରେ ବିରାଜିତ ବୃଷଭାନୁ ନନ୍ଦିନୀ ଶ୍ରୀରାଧାଙ୍କୁ ସ୍ମରଣ କରନ୍ତି--

''ଅଙ୍ଗେ ତୁ ବାମେ ବୃଷଭାନୁଜାଂମୁଦା
ବିରାଜମାନା ମନୁରୂପ ସୌଭଗାମ୍।
ସଖୀ ସହସ୍ରୈଃ ପରିସେବିତାଂ ସଦା
ସ୍ମରେମ ଦେବୀ ସକଳେଷ୍ଟକାମଦାମ୍।''

ଏହି ସମ୍ପ୍ରଦାୟର ଶ୍ରୀ ଭଟ୍ଟଦେବ 'ମହାବାଦୀ'ରେ ଶ୍ରୀରାଧାଙ୍କ ପଦନୂପୁର ଧ୍ୱନିରେ ଶବ୍ଦବ୍ରହ୍ମ ସୃଷ୍ଟି ହେଉଛି ବୋଲି ମତ ଦିଅନ୍ତି। ଏଥିରୁ ଶ୍ରୀରାଧା ଯେ ସ୍ୱୟଂ ଅଧିଷ୍ଠାତ୍ରୀ ଦେବୀ ଏବଂ ଶବ୍ଦବ୍ରହ୍ମଠାରୁ ଅଧିକ ଉଚ୍ଚତମ ତତ୍ତ୍ୱ ତାହା ପ୍ରମାଣିତ ହୁଏ।

''ଶ୍ରୀରାଧା ପଦକମଳତେଂ, ନୂପୁର କଳରବ ହୋୟ।
ନିର୍ବିକାର ବ୍ୟାପକ ଭୟୌ, ଶବ୍ଦ ବ୍ରହ୍ମ କହି ସୋୟ।''

ତାନ୍‌ସେନ୍‌ଙ୍କ ଗୁରୁ ପ୍ରସିଦ୍ଧ ସଙ୍ଗୀତଜ୍ଞ ସ୍ୱାମୀ ହରିଦାସଙ୍କ 'ସଖୀ ସମ୍ପ୍ରଦାୟ'ରେ ରାଧାଙ୍କ ଉତ୍କୃଷ୍ଟତା ତଥା ପ୍ରାଧାନ୍ୟ ସର୍ବତ୍ର ସ୍ୱୀକୃତ। ରାଧାଙ୍କର ସଖୀ ହୋଇ ତାଙ୍କର ସେବାକରି ଏବଂ ଶ୍ରୀକୃଷ୍ଣଙ୍କର ଚିତ୍ତରଞ୍ଜନ କରିବା ଭକ୍ତର କର୍ତ୍ତବ୍ୟ। ସଖୀର ରାସକେଳିରେ ଅଂଶୀଦାର ହେବାର ଅଧିକାର ନାହିଁ କି ତାର ମଧ୍ୟ ଅଭିଳାଷ ନାହିଁ। କେବଳ ସଖୀ ଭାବରେ ଆନନ୍ଦ ପ୍ରାପ୍ତି -- ଏହା ହେଉଛି ବଲ୍ଲଭାଚାର୍ଯ୍ୟଙ୍କ ମତ।

ଏହି ବିବିଧ ଶାସ୍ତ୍ରରେ ରାଧାବାଦର ଯେଉଁ ତାତ୍ତ୍ୱିକ ବ୍ୟାଖ୍ୟା କରାଯାଇଛି ସମୟାନ୍ତରରେ ତାହା ଅଲୌକିକ ଓ ଲୌକିକ ସ୍ତରରେ ଦିବ୍ୟ ଓ ଅଦିବ୍ୟ ପ୍ରୀତିରେ ରୂପାନ୍ତରିତ ହୋଇଛି। ପୂର୍ବରୁ କୁହାଯାଇଛି ଯେ ଦ୍ୱାଦଶ ଶତାବ୍ଦୀ ବେଳକୁ ରାଧା ମୁଖ୍ୟତଃ ଭାରତୀୟ କାବ୍ୟରେ ପ୍ରସିଦ୍ଧି ଲାଭ କରିଛନ୍ତି ଏବଂ ରାଧାଙ୍କର ଦିବ୍ୟାଦିବ୍ୟ ପ୍ରୀତିର କଳାତ୍ମକ କାବ୍ୟିକ ପ୍ରସ୍ଫୁଟନ ଘଟିଛି ଜୟଦେବଙ୍କ ଗୀତଗୋବିନ୍ଦରେ। ଚନ୍ଦ୍ରସେଣା ରାଧାଙ୍କର ପତିଭାବରେ ସାଧାରଣତଃ ବିଦିତ ହେଲେ ମଧ୍ୟ ବ୍ରହ୍ମବୈବର୍ତ୍ତ ପୁରାଣ ଓ ଗୀତଗୋବିନ୍ଦରେ ତାଙ୍କର କୌଣସି ଉଲ୍ଲେଖ

ନାହିଁ। ବ୍ରହ୍ମବୈବର୍ତ୍ତ ଅନୁସାରେ ରାଧା ଶ୍ରୀଦାମ କର୍ତ୍ତୃକ ଅଭିଶାପଗ୍ରସ୍ତ ହୋଇ ଶ୍ରୀକୃଷ୍ଣଙ୍କ କେତେବର୍ଷ ପୂର୍ବରୁ ପୃଥିବୀକୁ ଆସିଥିଲେ। ତେଣୁ କୃଷ୍ଣ ରାଧାଙ୍କ ଅପେକ୍ଷା ବୟସରେ କନିଷ୍ଠ ଥିଲେ। ରାଧା ଯେତେବେଳେ ଯୌବନୋନ୍ମତା, କୃଷ୍ଣ ସେତେବେଳେ ଶିଶୁ ମାତ୍ର। ଏକଦା କୃଷ୍ଣଙ୍କ ସହିତ ନନ୍ଦ ବୃନ୍ଦାବନକୁ ଯାଇଥିଲେ। ସେଠାରେ ଭାଣ୍ଡୀର ବନରେ ଗୋରୁ ଚରାଉଥିଲେ। ଶ୍ରୀକୃଷ୍ଣଙ୍କ ମାୟାରେ ହଠାତ୍ ଆକାଶ ମେଘାଚ୍ଛନ୍ନ ହେଲା। ଝଞ୍ଜାବାତ, ବଜ୍ରନାଦରେ ବନଭୂମି ପ୍ରକମ୍ପିତ ହେଲା। ନନ୍ଦ ଭୟଭୀତ ହୋଇ କୃଷ୍ଣଙ୍କ ପାଇଁ ବ୍ୟସ୍ତ ହେଲେ। ନନ୍ଦ ବ୍ୟସ୍ତ ହେବା ସମୟରେ ରାଧା ଉପସ୍ଥିତ ହେଲେ। ନନ୍ଦ ରାଧାଙ୍କ ଅପୂର୍ବ ରୂପଲାବଣ୍ୟରେ ବିସ୍ମିତ ହୋଇ କୃଷ୍ଣଙ୍କୁ ରାଧାଙ୍କୁ ସମର୍ପଣ କରି କହିଲେ, ମୁଁ ଗର୍ଗଙ୍କ ମୁଖରୁ ଶୁଣିଛି ତୁମ୍ଭେ ଲକ୍ଷ୍ମୀଙ୍କଠାରୁ ହରିଙ୍କର ଅଧିକ ପ୍ରିୟ। ଏ ପରମ ନିର୍ଗୁଣ ଅଚ୍ୟୁତ ମହାବିଷ୍ଣୁ। ମୁଁ ମାନବ ମାତ୍ର। ବିଷ୍ଣୁ ମାୟାରେ ମୁଁ ମୋହିତ। ରାଧା କୃଷ୍ଣଙ୍କୁ କୋଳକରି ନେଇ ଦୂରରେ ରାସମଣ୍ଡଳ ସ୍ମରଣ କଲେ। ପ୍ରକୃତି ଶାନ୍ତ ହେଲା ଏବଂ କୃଷ୍ଣ କିଶୋର ମୂର୍ତ୍ତି ଧାରଣ କଲେ। ଏହି ସମୟରେ ବ୍ରହ୍ମା ଉପସ୍ଥିତ ହୋଇ କନ୍ୟାପିତା ଭାବରେ ରାଧା-କୃଷ୍ଣଙ୍କର ବିବାହ କାର୍ଯ୍ୟ ସମାପନ କଲେ।

"ଏକଦା କୃଷ୍ଣ ସହିତୋ ନନ୍ଦୋ ବୃନ୍ଦାବନଂ ଯଯୌ।
ତତ୍ରୋପବନଭାଣ୍ଡୀରେ ଚାରୟମାସ ଗୋକୁଳଂ ॥୧॥

\+ + +

ଏତସ୍ମିନ୍ନନ୍ତରେ କୃଷ୍ଣୋ ମାୟାବାଳକ ବିଗ୍ରହଃ।
ଚକାର ମାୟୟା କସ୍ମାମେଘାଚ୍ଛନ୍ନଂ ନଭୋମୁନେ ॥୩॥

\+ + +

କଥଂ ଯାସ୍ୟାମି ଗୋବତ୍ସଂ ବିହାୟ ସ୍ୱଶ୍ରମଂ ପ୍ରତି।
ଗୃହଂ ଯଦି ନ ଯାସ୍ୟାମି ଭବିତା ବାଳକସ୍ୟ କିମ୍ ॥୬॥

\+ + +

ଏତସ୍ମିନ୍ନନ୍ତରେ ରାଧା ଜଗାମ କୃଷ୍ଣ ସନ୍ନିଧିମ୍ ॥"
(ବ୍ରହ୍ମବୈବର୍ତ୍ତ ପୁରାଣମ୍- ଶ୍ରୀକୃଷ୍ଣ ଜନ୍ମଖଣ୍ଡ- ୧୫ଶ ଅଧ୍ୟାୟ)

ବ୍ରହ୍ମବୈବର୍ତ୍ତକାରଙ୍କ ମତକୁ ଗୀତଗୋବିନ୍ଦକାର ପ୍ରଥମ ଶ୍ଳୋକରେ ରାଧାକୃଷ୍ଣଙ୍କ ବିବାହ ସମ୍ପର୍କକୁ ଗ୍ରହଣ କରିଛନ୍ତି। ପ୍ରଥମ ଶ୍ଳୋକଟି ଭାବ ପ୍ରକାଶରେ ପୂର୍ଣ୍ଣତା ଓ ପରିଚ୍ଛନ୍ନତାକୁ ଗ୍ରହଣ କରିପାରି ନାହିଁ। ସମାଲୋଚକଙ୍କ ମତରେ ନାୟକ-ନାୟିକାଙ୍କର ଯେଉଁ ଅବସ୍ଥା ସମ୍ପର୍କରେ କବି ବର୍ଣ୍ଣନା କରିବାକୁ ଚାହିଁଛନ୍ତି ତାହା ଠିକ ଭାବରେ କହିପାରି ନାହାନ୍ତି। ଟୀକାକାରଙ୍କ ମତରେ ଏହା ରାଧିକା-ସଖୀଙ୍କ ଉକ୍ତି ବୋଲି କଥିତ ହେଲେ ମଧ୍ୟ ବଙ୍କିମଚନ୍ଦ୍ର ଏହା ବ୍ରହ୍ମବୈବର୍ତ୍ତ ପୁରାଣାନୁଶ୍ରିତ ବୋଲି ମତ ପୋଷଣ କରିଥାନ୍ତି। (୧୪) ଶ୍ଳୋକଟି ଏହିପରି --

"ମେଘୈର୍ମେଦୁରମମ୍ବରଂ ବନଭୂବଃ ଶ୍ୟାମାସ୍ତମାଳ ଦ୍ରୁମୈ-
ର୍ନକ୍ତଂ ଭୀରୁରୟଂ ତ୍ୱମେବ ତଦିମଂରାଧେ ଗୃହଂ ପ୍ରାପୟ
ଇତ୍ଥଂ ନନ୍ଦଃନିଦେଶତ ଶ୍ଚଳିତୟୋଃ ପ୍ରତ୍ୟଧ୍ୱ କୁଞ୍ଜଦ୍ରୁମଂ-
ରାଧା ମାଧବୟୋର୍ଜୟନ୍ତି ଯମୁନାକୂଳେରହଃ କେଳୟଃ।"

ଅର୍ଥାତ୍ ହେ ରାଧେ! ଆକାଶ ମେଘରେ ସ୍ନିଗ୍ଧ ହୋଇଛି। ତମାଳ ଦ୍ରୁମଦ୍ୱାରା ବନଭୂମି ଅନ୍ଧକାର ହୋଇଛି। ଅତଏବ ତୁମେ ହିଁ ଏହାକୁ ଘରକୁ ନେଇଯାଅ। ନନ୍ଦ ଏହି ପ୍ରକାର ଯାହାଙ୍କୁ ଆଦେଶ ଦେଇଥିଲେ ଓ ଯମୁନାକୂଳର କୁଞ୍ଜ ଦ୍ରୁମାଭିମୁଖରେ ଯେଉଁ ରାଧାମାଧବ କେଳି ରଚନା କରିଥିଲେ ତାଙ୍କର ଜୟ ହେଉ।

ଏହି ଆଲୋଚନା ପରେ ମନରେ ସ୍ୱତଃ ପ୍ରଶ୍ନଟିଏ ଆସେ, ଯଦି ରାଧା-କୃଷ୍ଣ ବିବାହିତ-- ସ୍ୱୀକାୟା, ତେବେ ସେମାନଙ୍କ ପ୍ରୀତି ପଥରେ ଏତେ ବାଧା କାହିଁକି? କାହିଁକି ଏତେ କଦର୍ଥନା? ସହଜିଆ ବୈଷ୍ଣବମାନଙ୍କ ମତରେ ଗୀତଗୋବିନ୍ଦକାର ଜୟଦେବ 'ଆଦିରସିକ' ବୋଲି ଅଭିହିତ ହୋଇଥିଲେ ହେଁ ଜୟଦେବ ପ୍ରକୃତରେ ସେପରି ସହଜିଆ ନଥିଲେ ବା 'ଗୀତଗୋବିନ୍ଦ'ରେ ପରକୀୟା ପ୍ରୀତିର ସୂଚନା ଥିଲେ ମଧ ରାଧା ସେଥିରେ ଶ୍ରୀକୃଷ୍ଣଙ୍କର ଚିରନ୍ତନୀ ପ୍ରେମିକା ରୂପେ ବର୍ଣ୍ଣିତା ହୋଇଥିବାରୁ ନନ୍ଦନଶାସ୍ତ୍ର ମତରେ ସ୍ୱୀୟା ରୂପେ ଗୃହୀତା ହୋଇଛନ୍ତି। 'ସାହିତ୍ୟ ଦର୍ପଣ'ରେ କୁଳଜାମାନଙ୍କର ଅଭିସାର ଅନୁମୋଦନ ଲାଭ କରିଛି।(୧୫) ମୁଖ୍ୟତଃ 'ବ୍ରହ୍ମବୈବର୍ତ୍ତ ପୁରାଣ' ଓ 'ଗୀତଗୋବିନ୍ଦ' କାବ୍ୟରେ ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କୁ ବିବାହିତ ଭାବରେ ବର୍ଣ୍ଣନା କରାଯାଇଥିଲେ ମଧ ପରବର୍ତ୍ତୀ କ୍ଷେତ୍ରରେ ଶ୍ରୀରାଧା ଚନ୍ଦ୍ରସେଣାର ପତ୍ନୀ ଏବଂ ସେ ଯେ ପରକୀୟା କୃଷ୍ଣ ପ୍ରୀତି କାମିନୀ ଏକଥା ଲକ୍ଷଣୀୟ। 'ଗୀତଗୋବିନ୍ଦ'ରେ ରାଧା-କୃଷ୍ଣଙ୍କର ପ୍ରୀତିର ଉଲ୍ଲଙ୍ଘ ରତି ବର୍ଣ୍ଣନା ଓ କାମ ବିଳାସର ଦୈହିକତା ବର୍ଣ୍ଣିତ ଥିଲେ ମଧ ରାଧା ମହାଭାବର ସ୍ୱରୂପା। ପ୍ରାଥମିକ-ଭାବରେ ରାଧା-କୃଷ୍ଣ ଭକ୍ତି ଆନ୍ଦୋଳନ ଭିତରୁ ଜାତ ହୋଇଥିଲେ ମଧ ତାହାର ମୁଖ୍ୟ ଭାଗରେ କାମ ହିଁ ନିର୍ଣ୍ଣିତ ହୋଇ ଆସିଛି। ଚୈତନ୍ୟଙ୍କଠାରୁ ରାଧା ପରକୀୟା ନାରୀ ଭାବରେ ପ୍ରତିଷ୍ଠା ଲାଭ କରିଥିଲେ ମଧ ଗୀତଗୋବିନ୍ଦ ଓ ବିଦ୍ୟାପତିଙ୍କ ରଚନାରେ ଶ୍ରୀରାଧା ପରକୀୟା, ପ୍ରୀତିପାଗଳିନୀ। ନିମ୍ନୋକ୍ତ ପଦରେ ଗୀତଗୋବିନ୍ଦର ଶୃଙ୍ଗାରିକତାକୁ ଅନୁଭବ କରାଯାଇପାରେ।

"ସତ୍ୟମେବାସି ଯଦି ସୁଦତି ମୟି କୋପିନୀ
ଧେହି ଖରନଖରଶାରଧାତମ୍।
ଘଟୟ ଭୁଜ ବନ୍ଧନଂ ଜନୟ ରଦ ଖଣ୍ଡନଂ
ଯେ ନ ବା ଭବତି ସୁଖଜାତମ୍।
ମୁଗ୍ଧେ ବିଧେହି ମୟି ନିର୍ଦ୍ଦୟଦନ୍ତଦଂଶ
ଦୋର୍ବଲ୍ଲିବନ୍ଧନିବିଡ଼ସ୍ତନ ପୀଡ଼ନାନି।
ଚଣ୍ଡି ତ୍ୱମେବ ମୁଦମଞ୍ଚୟ ପଞ୍ଚବାଣ
ଚଣ୍ଡାଳ କାଣ୍ଡଦଳନାଦସବଃ ପ୍ରୟାନ୍ତି।"(୧୬)

ମାନମୟୀ ଶ୍ରୀରାଧାଙ୍କୁ ଶ୍ରୀକୃଷ୍ଣ ମାନଭଞ୍ଜନ ପାଇଁ କହନ୍ତି, "ହେ ପ୍ରେୟସୀ, ଯଦି ତମେ ମୋ' ଉପରେ ପ୍ରକୃତରେ କ୍ରୁଦ୍ଧ, ତେବେ ନିଜର ମନ ଅନୁଯାୟୀ ଦଣ୍ଡ ଦିଅ। ମୁଁ ତାକୁ ଅଙ୍ଗୀକାର କରିବାକୁ ସର୍ବଦା ସମର୍ଥ। ତୀକ୍ଷ୍ଣ ନଖରୂପୀ ବାଣରେ ବିଦ୍ଧ କର। ଭୂଜରୂପୀ ଜଞ୍ଜିରରେ ମୋତେ ବାନ୍ଧିଦିଅ। ଦାନ୍ତରେ ଅଧର ଦଂଶନ କର। କୁଚରୂପୀ ପଥରକୁ ମୋ ଛାତି ଉପରେ ରଖ ଯାହାଦ୍ୱାରା ମୁଁ ଆଉ ଖସିଯାଇ ପାରିବି ନାହିଁ।" ଜୟଦେବଙ୍କ ରାଧା ପରି ବିଦ୍ୟାପତିଙ୍କ ରାଧାଙ୍କଠାରେ ଦେହର ପ୍ରାଧାନ୍ୟ ଅଧିକ। ହୃଦୟର କଥା କମ। ବିଦ୍ୟାପତିଙ୍କ ରାଧା ବିଳାସମୟୀ। ସେ ନବଯୌବନା। ପ୍ରଥମେ ଚାଞ୍ଚଲ୍ୟ,

ଚପଳତା ଥିଲେ ମଧ କ୍ରମଶଃ ଏହା ଦୂରୀଭୂତ ହୋଇ ଶେଷକୁ ସେ କୃଷ୍ଣଙ୍କ ସୁଖଦୁଃଖରେ ସମଭାଗୀ ହୋଇ ସହାନୁଭୂତିମୟୀ ହୋଇ ଯାଆନ୍ତି। ପାର୍ଥିବତାରୁ ଅପାର୍ଥିବତା ତଥା ବାସନାରୁ ପ୍ରେମ, ଚଞ୍ଚଳତାରୁ ଗାମ୍ଭୀର୍ଯ୍ୟକୁ ତାର ଉତ୍ତରଣ। ବିଦ୍ୟାପତିଙ୍କ ରାଧା ସମ୍ପର୍କରେ ଯଥାର୍ଥରେ କୁହାଯାଇଛି- "Radha is another man's wife and her liaison with K ishna, whatever its meaning in mystical allegory, is plainly adulterous in human terms. Radha is certainly not a paragon of womanly virtues detailed in Hindu texts; nor does she come close to any of the "good" or "bad" mothergoddessess of Indian mythology and religion. In her passionate craving for sexual union with her lover and in her desperate suffering in his absence, Radha is simply the personification of a 'Mahabhava', 'a great feeling' that is heedless of social proprieties and unbounded by conventions."(୧୭)

ଚଣ୍ଡିଦାସଙ୍କ ରାଧା ଏହାର ବିପରୀତ। ବଙ୍ଗୀୟ ସମାଜ ଓ ଗୌଡ଼ୀୟ ବୈଷ୍ଣବ ଜନ ସମାଜରେ ପ୍ରତିଷ୍ଠିତ ପ୍ରେମ ତଥା ସୌନ୍ଦର୍ଯ୍ୟର ପୂର୍ଣ୍ଣ ଭାବକୁ ପ୍ରକଟ କରିବା ପାଇଁ ରାଧାଙ୍କୁ ଆଦର୍ଶ ନାରୀ ଭାବରେ ଗଢ଼ା ଯାଇଛି। ତା'ଠାରେ ଗମ୍ଭୀରତା ଅଛି, ଚଞ୍ଚଳତା ନାହିଁ। ପ୍ରିୟତମ ବ୍ରଜନନ୍ଦନ ପାଇଁ ବ୍ୟାକୁଳତା ଅଛି କିନ୍ତୁ ଉଦ୍‌ବିଗ୍ନତା ନାହିଁ। ସେ କୃଷ୍ଣଗତ ପ୍ରାଣା। କୃଷ୍ଣଙ୍କ ପାଇଁ ଜୀବନ ଓ ମୃତ୍ୟୁ। ତାଙ୍କଠାରେ ଆତ୍ମସମ୍ଭୋଗ ସ୍ଥାନରେ ଆତ୍ମସମର୍ପଣର ଭାବ ଅତି ସନ୍ଧ। ସେ ନିତ୍ୟନୂତନ ପ୍ରେମମୟୀ। "ଯଦି କୁହାଯାଏ କି ବିଦ୍ୟାପତିକୀ ରାଧା କଳାକୃତି ହୈ ଔର ଚଣ୍ଡିଦାସକୀ ରାଧା ରସକୃତି ହୈ, ତୋ ଅନୁଚିତ ନ ହୋଗା। ଯହା ଅନ୍ତର ଦୋନୋଂକେ ରୂପ -- ବୈଶିଷ୍ଟ୍ୟକେ କାରଣ ପ୍ରତୀତ ହୋତା ହୈ। ଚଣ୍ଡୀଦାସ ସ୍ୱର୍ଗକେ ପକ୍ଷୀ ହେଁ ବିହ୍ନୀ ପାର୍ଥିବ ସୌନ୍ଦର୍ଯ୍ୟ ତୋ କମ୍ ହୈ, ପରନ୍ତୁ ସ୍ୱର୍ଗକୀ ଶୀତଳତା ଅଧିକ। ପର, ବିଦ୍ୟାପତି ଦିନ୍‌ଭର ପୃଥ୍ୱୀକେ ନିକଟ ସୁନ୍ଦର ସୁନ୍ଦର ସ୍ଥାନୋଂପର ମଁଡ଼ରାତେ ଔର ସାଂଝକୋ ଉପର ଉଠ୍‌କର ଅପନେ ସାଥୀକୋ ବୁଲେତେ ହେଁ।"(୧୮) ଦୁଇ କବିଙ୍କର ଦୁଇଟି ଉଦାହରଣ ଦେଲେ ଏହି ମତର ମୂଲ୍ୟାୟନ ଓ ଅନୁଭବ କରାଯାଇପାରେ।

ବିଦ୍ୟାପତିଙ୍କ ରାଧା ବ୍ରଜନନ୍ଦନଙ୍କ ସହିତ ମିଳନ ପାଇଁ ଆସିଥିଲେ। କିନ୍ତୁ ସଂକେତ ସ୍ଥଳ ଶୂନ୍ୟ ଥିଲା। ସୁମୁଖୀ ରାଧା ବିମୁଖ ହୋଇ ଚାଲିଗଲେ। ତାଙ୍କ ମନରେ ଏହି ଅଭିଳାଷ ଜାଗିଉଠିଲା କି ତୁମ ମିଠା କଥା ଶୁଣି ମୁଁ ଏଠିକି ଆସିଲି; କିନ୍ତୁ ସାରା ରାତି ନିଷ୍ଫଳଭାବେ ବିତିଗଲା। ହେ ହରି, ଶୁଣ ଶୁଣ, ରାଧାଙ୍କୁ ଛାଡ଼ି ତୁମେ କି ଲାଭ ପାଇଲ? ତୁମେ ତ ଉଚିତ କାମ ଛାଡ଼ି ଅନୁଚିତ କାମ କଲ। ରାଧା ଏଠୁ ଚାଲିଯାଇଛନ୍ତି ଶୁଣି ରାଗ କରନା। ଘନଘୋର ବର୍ଷଣମୁଖରା ରାତ୍ରି। ଚଉଦିଗ ଅନ୍ଧକାର। ପଥ ଦିଶେନି। ଏହି ଭୟଙ୍କର ପରିବେଶରେ ସେ ସର୍ପ ଉପରେ ପାଦ ଦେଇ ଏଠିକୁ ଆସିଥିଲା। ସେ କୁଳମହତ ସବୁ ଭୁଲିଯାଇ କୃଷ୍ଣପାଗଳିନୀ--

"ସୂନ ସଂକେତ ନିକେତନ ଆଇଲି ସୁମୁଖୀ ବିମୁଖୀ ଭେଲି।୧।
ମନ ମନୋରଥ ବାନୀ ଲଗଲି ରଜନୀ ନିଫଲେ ଗେଲି।୨।
ସୁନୁସୁନୁ ହେ ହରି, ରାହୀ ପରହରି କୀ ଫୂଲ ପାଓଲତୋହେ।୩।
ଉଚିତ ଛାଡ଼ି କହୁ ଅନୁଚିତ କରସି ଗେଲେନ କରିଅ କୋହେ।୪।

ବାରି ସରସି ନଦୀ ସବ ଧାରା ଧରି ଜଳଧର କୋପି।୫।
ତରୁଣ ତିମିର ଦିଗ ନ ଜାନଏ ପଦ ଅହି ସିରି ଗଏ ରୋପି।୬।
(ବିଦ୍ୟାପତି ଗୀତ ସଂଗ୍ରହ -ପଦ ୩୮)

ଚଣ୍ଡୀଦାସଙ୍କ ରାଧା କହନ୍ତି, ମୁଁ ସତୀ କି ଅସତୀ, ସାଧ୍ୱୀ କି ଦୋଚାରୁଣୀ ଏକଥା ତମେ ଭଲ ଭାବରେ ଜାଣ। ଏକଥା ତୁମକୁ ଅଛପା ନୁହେଁ। ମୁଁ ଭଲମନ୍ଦ କିଛି ଜାଣେ ନାହିଁ। ମୁଁ ଯାହା କିଛି ପାପପୁଣ୍ୟ କରିଛି ସେ ସବୁ ତୁମରି ପାଦତଳେ ସମର୍ପି ଦେଉଛି।

"ସତୀ ବା ଅସତୀ ତୋମାତେ ବିଦିତ/ ଭାଲମନ୍ଦ ନାହିଁ ଜାନି।
କହେ ଚଣ୍ଡୀଦାସ ପାପପୁଣ୍ୟ ମମ/ ତୋମାର ଚ଼ରଣ ଖାନି।"
ବା, "ତୋମାର ଚ଼ରଣେ ଆମାର ପରାଣେ /
(ବାଁଧିଲ ପ୍ରେମେର ଫାସି)
ସବ ସମର୍ପିୟା ଏକ ମନ ହୈୟା/ ନିଶ୍ଚୟ ହଇଲାମ ଦାସୀ।"
(ଚଣ୍ଡୀଦାସ ପଦାବଳୀ)

ମୁଖ୍ୟତଃ ପୃଥିବୀର ତିନିଗୋଟି ଅମର ପ୍ରେମକୁ ନେଇ ରଚ଼ିତ ରୋମାଣ୍ଟିକ୍ କାବ୍ୟ: ବେରୁଲ୍ (Beroul)ଙ୍କର 'ତ୍ରିସ୍ତାନ ଓ ଇସୋଲ୍‌ଦେ' (Tristan and Isolde) ଇଉରୋପରେ, ନିଜାମିଙ୍କ ଲଏଲା-ମଜନୁ ଇସଲାମି ଦେଶରେ ଓ ଜୟଦେବଙ୍କ ଗୀତଗୋବିନ୍ଦ ଭାରତବର୍ଷରେ ଏକ ସମୟରେ ଅର୍ଥାତ୍ ଦ୍ୱାଦଶ ଶତାବ୍ଦୀରେ ଲିଖିତ। ଏତଦ୍ ବ୍ୟତୀତ ପ୍ରାଚ୍ୟ ଓ ପାଶ୍ଚାତ୍ୟରେ ଅନେକ ପ୍ରେମଭିତ୍ତିକ କାବ୍ୟ ମହାକାବ୍ୟ ରଚ଼ିତ ହୋଇଥିଲେ ହେଁ ରାଧା-କୃଷ୍ଣଙ୍କ ପ୍ରୀତିର ଆଭିମୁଖ୍ୟ ଅନନ୍ୟ। "ଅନ୍ୟ ସବୁ କାହାଣୀରେ ପରସ୍ପରକୁ ଭଲ ପାଉଥିବା ବ୍ୟକ୍ତିଦ୍ୱୟ ଅବଶେଷରେ ମିଳିତ ହୁଅନ୍ତି, ବା ମିଳିତ ହୋଇପାରିଥାନ୍ତେ ଯଦି ଘଟଣାର ମୋଡ଼ ଟିକିଏ ଅଲଗା ହୋଇଥାନ୍ତା, ଯଦି ଅନ୍ୟମାନେ ସେମାନଙ୍କୁ ଟିକିଏ ବୁଝିଥାନ୍ତେ ବା ଖଳ ଆଚରଣରୁ ନିବୃତ୍ତ ରହିଥାନ୍ତେ। ରାଧା ଓ କୃଷ୍ଣଙ୍କ ପାଇଁ ସେପରି କିଛି ସମ୍ଭାବନା ନଥିଲା। ସେମାନେ ପରସ୍ପରକୁ ଚିହ୍ନିଲାବେଳକୁ ରାଧା ବିବାହିତା। ତା' ଛଡ଼ା ଉଭୟେ ପରସ୍ପର ସହିତ ଏପରି ଭାବେ ସଂପର୍କିତ ଯେ ଏକାଠି ଘର କରିବା ପ୍ରଶ୍ନ ଆଦୌ ଉଠୁନଥିଲା। ଅନ୍ୟମାନେ ଯେତେ ସାହାଯ୍ୟ ସହଯୋଗ କରିଥିଲେ ବି ଘଟଣା ଅନ୍ୟଥା ହୋଇପାରି ନଥାନ୍ତା। ରାଧା ନିଶ୍ଚୟ ଏ ବିଷୟରେ ଅବହିତ ଥିବେ ଏବଂ ତା' ସତ୍ତ୍ୱେ ଯଦି ଜୀବନର ଅନ୍ତିମ ଦିନ ଯାଏଁ ସେ କୃଷ୍ଣଙ୍କୁ ଭଲ ପାଇ ଚାଲିଥିଲେ ତା'ହେଲେ ଏ ଭଲ ପାଇବାରୁ କ'ଣ ମିଳିବ ନାହିଁ ତାହା ନିଶ୍ଚୟ ବୁଝି ଭଲ ପାଇ ଚାଲିଥିବେ। କୃଷ୍ଣଙ୍କ ସହିତ ଘର କରି ରହିବାର ଆଶାକୁ ସେ ଭଲ ପାଇବାର ଭିତ୍ତିରୂପେ କଦାପି ଗ୍ରହଣ କରିନଥିବେ; କିଏ ଜାଣେ, ସେ ହୁଏତ ଅନ୍ୟ ଏକ ଏବଂ ଶ୍ରେୟସ୍କର ଭିତ୍ତିଟିଏ ପାଇଥିବେ।"(୧୯) ଏହି 'ଅନ୍ୟ ଏକ ଶ୍ରେୟସ୍କର ଭିତ୍ତି' ଭୂମି ଉପରେ ହିଁ ଆମର ଆଲୋଚ୍ୟ 'ଶ୍ରୀରାଧା' ପ୍ରତିଷ୍ଠିତ ଓ ବିକଶିତ ମଧ୍ୟ।

ଭାଗବତର ଷୋଳସହସ୍ର ଗୋପନାରୀ ସିଦ୍ଧ ସାଧନାରେ ବ୍ରତୀ ନ ରହି ଦୈହିକ ଆବେଗପ୍ରବଣତା ଆଡ଼କୁ ଯେଉଁ ଉନ୍ମୁଖତା ପ୍ରକାଶ କରିଥିଲେ ସେହି ସାମଗ୍ରିକ ଗୋପୀଭାବ ଦିନେ ରାଧା ରୂପରେ ଠୁଳିଭୂତ ହେଲା ଏବଂ ସେ ହେଲେ ଗୋପୀଭାବର ଭାବମୟୀ

ମୂର୍ତ୍ତି। ବୌଦ୍ଧ ସହଜିଆ ତନ୍ତ୍ରର ସହଜସୁନ୍ଦରୀ ବା ପ୍ରଜ୍ଞାପାରମିତା ଅନେକ ସମୟାନ୍ତରରେ କ୍ରମଶଃ ରାଧାରେ ରୂପାନ୍ତରିତ ହୋଇ ଜୟଦେବଙ୍କ ହାତରେ ଆଉ ପ୍ରଜ୍ଞାପାରମିତା ନ ରହି ପ୍ରେମମୟୀ-ଲାବଣ୍ୟମୟୀ ପରକୀୟା ପ୍ରୀତି-ପ୍ରତିମାରେ ରୂପାନ୍ତରିତ ହୋଇଗଲେ, କିନ୍ତୁ ଓଡ଼ିଆ ବୈଷ୍ଣବ ସାହିତ୍ୟ-ରାଧା ପ୍ରଥମରୁ ପରକୀୟା ନୁହନ୍ତି, ବରଂ ସେ ତତ୍ତ୍ୱମୟୀ। ଚାର କବିଙ୍କ 'ଗୋପୀଚନ୍ଦନ' ଓ ଦେବଦୁର୍ଲ୍ଲଭ ଦାସଙ୍କ 'ରହସ୍ୟ ମଞ୍ଜରୀ'ରେ ରାଧା କୃଷ୍ଣଙ୍କ ସହିତ ନିତ୍ୟସମ୍ବନ୍ଧାନ୍ୱିତା। ଅର୍ଥାତ୍ ଷୋଡ଼ଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଓଡ଼ିଆ ବୈଷ୍ଣବ ସାହିତ୍ୟରେ ଜୟଦେବଙ୍କ ପ୍ରଭାବ ପ୍ରାୟ ନ ପଡ଼ିଥିବାର ଅନୁମାନ କରାଯାଇପାରେ। 'ବିଦଗ୍ଧ ଚିନ୍ତାମଣି'ରେ ଅଭିମନ୍ୟୁ ଶୁଦ୍ଧାଭକ୍ତିବାଦର ବିଶ୍ୱସ୍ତ ଅନୁସରଣରେ ରାଧା-କୃଷ୍ଣଙ୍କର ପ୍ରୀତି-ଅନୁରକ୍ତି, ପୂର୍ବରାଗ ଓ ବିରହର ଚିତ୍ର ବର୍ଣ୍ଣନା କରିଛନ୍ତି। ତେଣୁ ଅଷ୍ଟାଦଶ ଶତାବ୍ଦୀବେଳକୁ କୃଷ୍ଣଙ୍କ ସହ ରାଧାଙ୍କୁ ସଂଯୋଜିତ କରିବାର ସାହିତ୍ୟିକ ଧାରା ସ୍ୱୀକୃତି ଲାଭ କରିବା ଯୋଗୁଁ ଚକ୍ରପାଣି ପଟ୍ଟନାୟକଙ୍କର 'କୃଷ୍ଣବିଳାସ', ବ୍ରଜନାଥ ବଡ଼ଜେନାଙ୍କ 'ଶ୍ୟାମରାସୋତ୍ସବ' ଓ କବିସୂର୍ଯ୍ୟଙ୍କର 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ' ଆତ୍ମପ୍ରକାଶ କରିବାର ପଥ ସୁଗମ ହୋଇପାରିଥିଲା ବୋଲି ମନେ ହୁଏ।(୨୦)

ବିଦ୍ୟାପତି, ଚଣ୍ଡୀଦାସ, ଅଭିମନ୍ୟୁ, ବଳଦେବ ରଥଙ୍କ ଶ୍ରୀରାଧାଠାରୁ ରମାକାନ୍ତଙ୍କ ଶ୍ରୀରାଧା ଯେ ଭିନ୍ନ ଏହା କବିତ ନିଜେ ସ୍ୱୀକାର କରିଛନ୍ତି। ପାରଂପରିକ ରୀତିରେ ଆମେ ଏହି ଆଲୋଚନାରେ ଯେଉଁ ଶ୍ରୀରାଧାଙ୍କୁ ଏ ଯାବତ୍ ଦର୍ଶନ କଲୁ ତା'ର ଏକ ନୂତନ ରୂପାନ୍ତର ମାନସିକ ସ୍ତରରେ ସଂଘଟିତ ହୋଇଛି। ଶ୍ରୀରାଧା ମୁଖ୍ୟତଃ ମିଥ୍‌ଧର୍ମୀ ଏକ ଦୀର୍ଘ କବିତା। ତେଣୁ ମିଥ୍‌ର ଭାବ ନିଷ୍କର୍ଷ ଅନୁଯାୟୀ ଏଥିରେ ଶ୍ରୀରାଧାଙ୍କର ମୂଳରୂପ, ଯାହା ଆମ ସାମଗ୍ରିକ ଅବଚେତନ ସ୍ତରରେ (collective-unconscious) ରହିଛି, ତାରି ଉପରେ କବିତାଟିର ପରିକଳ୍ପନା। କିନ୍ତୁ ଏହା ଭିତରେ ସମୟାତିକ୍ରାନ୍ତ ଚେତନା ଓ ଚିନ୍ତାରେ ବିପୁଳ ପଟ ପରିବର୍ତ୍ତନ। ପାଣିପାଗ ସଂପୂର୍ଣ୍ଣ ବଦଳିଛି। ନାରୀ ଆଜି କେବଳ ଦେହଭୋଗ୍ୟା ନୁହେଁ। କ୍ରୀଡ଼ନକ ନୁହେଁ। ତାର ଚେତନା ଅଛି, ଯେମିତି ଅଛି ଅସ୍ତିତ୍ୱ। ଦୁଃଖ ଅଛି, ଯନ୍ତ୍ରଣା ଅଛି, ବେଦନା ଅଛି, ତାହା କେବଳ ପ୍ରେମ ସଂପର୍କିତ ନୁହେଁ, ବିଚ୍ଛେଦ ପାଇଁ ନୁହେଁ। ଭ୍ରଷ୍ଟ ଅଭିସାର ପାଇଁ ନୁହେଁ। ଶ୍ରୀରାଧା ଏବେ ନିଜକୁ ଚାହିଁ ପାରୁଛି। ଆତ୍ମ ଅନ୍ୱେଷାବୋଧ ତା'ର ଖୁବ୍ ପ୍ରଖର।

> "ଆମେ କ'ଣ ଜାଣିଥିଲୁ ଏତେ କଥା କହିବାକୁ ଅଛି,
> ରାତିର ସୁଗନ୍ଧ ଅଛି, ତରାମାନେ ଏଡ଼େ ଏକୁଟିଆ ?
> ଆମେ କଣ ଜାଣିଥିଲୁ ମୟୂର ମନରେ
> ଏତେ ଦୁଃଖ ଅଛି ବୋଲି, ରାସକ୍ରୀଡ଼ା ପାଇଁ
> ଏତେ ଜାଗା ଅଛି ବୋଲି ନଈକୂଳେ ଓ ନିଜ ଭିତରେ ?"(୨୧)

ସେତ ଏବେ ଖୁବ୍ ସଚେତନ। ନିଜ ଭିତରେ ଅନେକ ଜାଗା ରହିଛି। ମୟୂର, ରାତ୍ରିର ତାରା କେବଳ ପ୍ରୀତି ପାଇଁ ବିଭାବ ନୁହେଁ, ତାରାମାନେ ଭାରି ଏକୁଟିଆ। ମୟୂର ମନରେ ବି ଅନେକ ଦୁଃଖ। ମୁଖ୍ୟତଃ ରମାକାନ୍ତଙ୍କ ରାଧା କାମନା ଅପୂର୍ଣ୍ଣ ରହିଯିବା ବିଷୟରେ ଗୁରୁତ୍ୱ ଦିଅନ୍ତି ନାହିଁ। ସେ ଜାଣନ୍ତି ଯେ ଶ୍ରୀକୃଷ୍ଣଙ୍କୁ ସେ ବିବାହ କରି ଘର ସଂସାର କରିପାରିବେ ନାହିଁ। ତାଙ୍କର ଲୋଡ଼ିବାପଣ ଅନାବିଳ। ସେ କେବଳ ଲୋଡ଼ି

ଚାଲନ୍ତି। ପ୍ରାପ୍ତିର ଅକାଙ୍‌କ୍ଷା ନାହିଁ। ତେଣୁ ଶ୍ରୀରାଧା ନିଜର ବୈଶିଷ୍ଟ୍ୟକୁ ହରାଇ ବସନ୍ତି ନାହିଁ। କିନ୍ତୁ ବୈଷ୍ଣବ ତତ୍ତ୍ୱରେ ଶ୍ରୀରାଧା କୃଷ୍ଣଙ୍କର ଅଂଶ ବିଶେଷ। କୃଷ୍ଣ ହିଁ ସତ୍ୟ। 'ଏକ ବୀଜ ବେନିଫାଳ ଯୁଗଳ ଅଙ୍ଗରେ।' କୃଷ୍ଣଙ୍କଠାରୁ ରାଧାଙ୍କୁ ଅଲଗା କରାଯାଇନପାରେ। ଜଣେ କ୍ଷୀର ହେଲେ ଆଉ ଜଣେ ଧାବଲ୍ୟ। ଜଣେ ଅଗ୍ନି ହେଲେ ଆଉ ଜଣେ ଜ୍ୱଳନ। ସ୍ୱତନ୍ତ୍ର ବ୍ୟକ୍ତିସତ୍ତା ଉପରେ ପ୍ରାଧାନ୍ୟ ନାହିଁ। ରମାକାନ୍ତଙ୍କ ଶ୍ରୀରାଧାଙ୍କ ନିଃସଙ୍ଗତା ସ୍ୱୀକାର୍ଯ୍ୟ। ଏକାକୀତ୍ୱ ଓ ଅଲଗା ଭାବ ବେଶ୍ ସୁସ୍ପଷ୍ଟ। ''ରାଧା ଓ କୃଷ୍ଣ ସବୁବେଳେ ଏକ ଓ ଅଭିନ୍ନ ବୋଲି ଭାବୁଥିବା ଦୃଷ୍ଟିକୋଣ ସେମାନଙ୍କର ଏକତ୍ୱ ପ୍ରକୃତରେ ହୃଦୟଙ୍ଗମ କରିପାରେ ନାହିଁ ଯେହେତୁ ତାହା ସେମାନଙ୍କର ଅଲଗା ଅଲଗା ସ୍ଥିତିକୁ ହୃଦୟଙ୍ଗମ କରେ ନାହିଁ।''(୨୨)

ରମାକାନ୍ତଙ୍କ 'ଶ୍ରୀରାଧା' ଏକ ଆକସ୍ମିକ କାବ୍ୟିକ ବିସ୍ଫୋରଣ ନୁହେଁ। ଏହାର ବୀଜ ସଂଚ୍‌ରିତ ହୋଇଛି 'ସପ୍ତମଋତୁ'ରୁ। ''ଭଲ ପାଇବାଠୁଁ ଭଲ ନ ପାଇବା ଯାଏଁ / ଲମ୍ବା ରାସ୍ତା ଚାଲି ଚାଲି ବସିଅଛି କ୍ଳାନ୍ତ ନାରୀଟିଏ''-- ଏହି କ୍ଳାନ୍ତ ନାରୀସତ୍ତାଟି ହିଁ କାବ୍ୟପୁରୁଷ। 'କେତେଦିନର', 'ଅନେକ କୋଠରୀ', ଓ 'ସନ୍ଦିଗ୍ଧ ମୃଗୟା' ଭିତରେ ସେ ପ୍ରେମର କଦର୍ଯ୍ୟ କଦାକାର ରୂପକୁହିଁ ଦେଖିଛନ୍ତି। 'ସପ୍ତମ ଋତୁ' ବେଳକୁ ସେ କ୍ଳାନ୍ତଶ୍ରାନ୍ତ। ତଥାପି ଆଶା ମରି ଯାଇନି। ହତାଶାକୁ ସଂପୂର୍ଣ୍ଣ ଆଦରି ନେଇନି। ସେ ସ୍ରୋତଟିଏ ପରି ତା'ରି ଆଡ଼କୁ ବୋହିଯିବାରେ ଆଶାୟୀ। 'ସଚ୍ଛିଦ୍ର ଅନ୍ଧାର'ରେ କବି ଖୋଜି ପାଇଛି ଖୋଜୁଥିବା ପଦାର୍ଥଟିକୁ, ଯଦିଓ ସେଥିରେ ବେଳେବେଳେ କୁହୁଡ଼ି ଘେରି ଆସୁଛି। ସମୟକ୍ରମେ ଏହି କୁହୁଡ଼ିର ପରଦା ଆସ୍ତେ ଆସ୍ତେ ମୁକୁଳି ଆସିଛି ଏବଂ ସେହି ଚ୍ଛିଦ୍ରିତ ଅନ୍ଧକାର ଭିତରୁ ଜନ୍ମ ଲୋଡ଼ିଛି 'ଶ୍ରୀରାଧା'। ତା'ରତ କାମନା ନାହିଁ। ବାସନା ନାହିଁ। ମୃତ୍ୟୁଭୟ ବା କାହିଁକି ? କେବଳ 'ବିଶୁଦ୍ଧ ଲୋଡ଼ିବାପଣ' ଭିତରେ ସେ ଯାତାୟତ।

''ମୁଁ ଜାଣିଛି ମଲାବେଳେ ତମ ଆଖି ମୋତେ ଛଳଛଳ
ହୋଇନାହିଁ, ତମ ମୁଠା ଜମାରୁ କୋହଳ
ହୋଇନାହିଁ, ଶେଷ ଯାଏଁ ତମେ
ହସୁଥିଲ ତାଳ ଦେଇ ପକ୍ଷୀମାନଙ୍କର
କଳରବ ସାଙ୍ଗେ। ଆଉ ଅନ୍ୟ କି ଭାବରେ
ପ୍ରାଣବାୟୁ ଯାଆନ୍ତା ତମର ?
ଆଉ ଅନ୍ୟ କି ଭାବରେ ମୋର ପ୍ରାଣବାୟୁ
ରହନ୍ତା -- ଏପରି
ତମକୁ ପଚାରୁଥିବି ତମେ ମରିବାର
ବହୁଦିନ ଯାଏଁ, ଏବଂ ଝରକା ଖୋଲିଲେ
ପବନରେ ଶୁଭୁଥିବ ତମର ଉତ୍ତର ?''(୨୩)

ଶ୍ରୀକୃଷ୍ଣଙ୍କ ମୃତ୍ୟୁପରେ ଶ୍ରୀରାଧାଙ୍କ ମନରେ ଏତେ ଟିକେ ଦୁଃଖ ନାହିଁ, ହତାଶା କି ଅସନ୍ତୋଷ ବି ନାହିଁ, ବରଂ ସେ ଏବେ ଏବେ ଅଧିକ ସିନ୍ଦୂର ମାରି ସୀମନ୍ତକୁ ଦାଉଦାଉ କରି ଦେଉଛନ୍ତି। ପାଟପୀତାମ୍ବରୀ ପିନ୍ଧି ଚୂଡ଼ି ଝମ୍ ଝମ୍ କରି ପାରନ୍ତି।

''ମୁଁ କିନ୍ତୁ ପାରୁନି ଆଉ
ରୋକି ମୋର ସୁଖ ସନ୍ତୋଷକୁ।

ତମେ ଯଦି ତାଙ୍କ ପାଇଁ ନ ମରିଥାନ୍ତ ମୁଁ
ଗୋଟାପଣେ ପାଇଥାନ୍ତି କିପରି ତମକୁ ?''(୨୪)

ତେଣୁ 'ସପ୍ତମଋତୁ'ରେ ଯେଉଁ ଅରଣ୍ୟର ଯେଉଁ ଶତାବ୍ଦୀର ନୀରବ ସ୍ୱର ସେ ଶୁଣିଥିଲେ ସେ ସ୍ୱର ଈଷତ୍ ସ୍ପଷ୍ଟ ହୋଇଛି 'ସଚ୍ଛିଦ୍ର ଅନ୍ଧାର'ରେ ଏବଂ ସ୍ପଷ୍ଟତର ହୋଇଛି 'ଶ୍ରୀରାଧା'ରେ। ଏ ସ୍ୱରତ ସବୁଦିନେ ଏମିତି ଅସ୍ପଷ୍ଟ ହୋଇ ରହିବ। ସ୍ଥଳ ବିଶେଷରେ ସ୍ପଷ୍ଟତର ଟିକେ ହୋଇପାରେ। କିନ୍ତୁ ଶୀର୍ଷତମ ସୋପାନରେ ପହଞ୍ଚିପାରିବ ନାହିଁ। ପହଞ୍ଚିଗଲେ ହିଁ ଆଉ ଲୋଡ଼ିବାପଣ ରହିବ ନାହିଁ। ସଚ୍ଛିଦ୍ର ଅନ୍ଧାରରେ ଏହି ଭାବ କେମିତି ଅଙ୍କୁରିତ ହୋଇଛି ଲକ୍ଷଣୀୟ।

''ତମକୁ ମୁଁ ଯେତେବେଳେ ମୋ ପ୍ରଥମ ଦୋଦୋପାଞ୍ଚ ଚୁମା
ଦେଇ ସାରି ଫେରି ଆସୁଥିଲି,
ଛାତି ଥରୁଥାଏ କିନ୍ତୁ ଭଲ ଲାଗୁଥାଏ,
ଯେତେଦୂର ଆକ୍ଷି ପାଏ ସେତେଦୂର ଜହ୍ନ ପଡ଼ିଥାଏ,
ବାଟଯାକ କେତେଥର ଜାଣିଶୁଣି ରହିଯାଉଥିଲି
କାଳେ ତମେ ଡାକୁଥିବ ଫେରିଯିବା ପାଇଁ,
କେତେ କଥା ଭାବିବାକୁ ରହିଛି ତଥାପି
କିଛି ହେଲେ ଭାବିବାକୁ ଇଚ୍ଛାହୁଏ ନାହିଁ।''(୨୫)

ଏହାର ଏକ ବିବର୍ତ୍ତିତ ଓ ପୀନଦ୍ଧ ରୂପ ଶ୍ରୀରାଧାରେ ଚିତ୍ରିତ। ଏଠି ଶ୍ରୀରାଧା ଏକାତ୍ମ ହେବା ପାଇଁ ଆଶାୟୀ ନୁହେଁ। ସେ ସେହି ନିଃସଙ୍ଗତା ଭିତରେ, ଏକାକୀତ୍ୱ ଭିତରେ ନିଜର ବିଚ୍ଛିନ୍ନତାକୁ ଅନୁଭବ କରିବାରେ ଆଶାୟୀ। ମିଶିଗଲେ ତ ଖୋଜିବା ସରିଗଲା। ସ୍ପଷ୍ଟ ସ୍ୱରଟିଏ ଶୁଣିଦେଲା ପରେ ଆଉ ସେ ପ୍ରତି କି ଆକର୍ଷଣ ! ଏକାଠି ରାତ୍ରିଯାପନ କଲେ ବି ଶ୍ରୀରାଧା ଶ୍ରୀକୃଷ୍ଣଙ୍କୁ ଛୁଅନ୍ତିନି। ଜୟଦେବଙ୍କ ଶ୍ରୀରାଧା ପରି ସେ କୁଚଯୁଗଳ - ପଥରରେ ତାଙ୍କ ଛାତିକୁ ଚାପି ଦିଅନ୍ତିନି। ଅଧର ଅସ୍ତ୍ରରେ କ୍ଷତବିକ୍ଷତ କରନ୍ତିନି କି ବିଦ୍ୟାପତିଙ୍କ ରାଧା ପରି କାମାତୁରା ହୋଇ କହନ୍ତିନି, ଆଜି କାଲି କହି କହି ମାସ ବିତିଗଲା, ମାସ ମାସ ପରେ ବର୍ଷ ବିତିଲା। ଜୀବନ ଆଶା ମଉଳି ଯାଉଛି। ଚନ୍ଦ୍ରମା କିରଣରେ ଯେତେବେଳେ ପଦ୍ମ ଜଳି ଯାଉଛି, ସେତେବେଳେ ବସନ୍ତ ଋତୁ ଆସି କ'ଣ କରିବ ? ସୂର୍ଯ୍ୟଙ୍କ ପ୍ରଚଣ୍ଡାନଳରେ ଯେତେବେଳେ ଅଙ୍କୁର ଜଳି ଯାଉଛି, ସେତେବେଳେ ମେଘ ଆସି କ'ଣ କରିବ ? ପତ୍ର ବା କେଉଁଠୁ କଅଁଳିବ ? ବିରହ ବ୍ୟଥା ସହି ସହି ଯେତେବେଳେ ନବଯୌବନ ଝଡ଼ିଯିବ, ସେତେବେଳେ ପ୍ରାଣପତି ଆସିଲେ କି ଲାଭ ?

''ସଜନି ! କେ କହ ଆଓବ ମଧାଇ
ବିରହ ପୟୋଧିପାର କିୟେ ପାଓବ
ମଝୁମନ ନହି ପତିଆଇ।
++++
ହିମକର କିରନ ନଳିନୀ ଯଦି ଜାରବ
କି କରବ ମାଧବୀ ମାସେ,
ଅଙ୍କୁର ତପନ ତାପେ ଯଦି ଜାରବ
କି କରବ ବାରିଦ ମେହେ

ଇହ ନବ ଯୌବନ ବିରହେ ଗମାଓବ
କି କରବ ସେ ପିୟା ଲେହେ।''
(ବିଦ୍ୟାପତି ଗୀତ ସଂଗ୍ରହ)

ବରଂ ରମାକାନ୍ତଙ୍କ ଶ୍ରୀରାଧାର ମାନସିକତା ଏମିତି :

''ରାତିରେ ତମକୁ ମୁଁ ଛୁଇଁଲି ନାହିଁ
କାଳେ ଛୁଇଁଦେବାପରେ
ତମେ ଯେଉଁ ପାଣି ଯେଉଁ ପବନ ମୁଁ
ମିଶିଯିବି ତା' ଭିତରେ
କାଳେ ଜନ୍ମ ଜନ୍ମ ତମକୁ ଲୋଡ଼ିବା
କର୍ମଫଳ ସରିଯିବ,
କାଳେ ମୋ ଚେତନା ବାହାରେ ତମର
କେଉଁ ରୂପ ରହିଯିବ।
ପ୍ରାଣ ଯାଉ, ପ୍ରାଣ ରହୁ,
ପାଇ ନ ପାଇବା ନ ପାଇ ପାଇବା
ଦୁଃଖ୍ ସୁଖ ଲାଗିଥାଉ।''(୨୬)

''ସଚ୍ଛିଦ୍ର ଅନ୍ଧାର''କୁ ''ଶ୍ରୀରାଧା''ର ମୁଖବନ୍ଧ ଭାବରେ ଗ୍ରହଣ କରାଯାଇ ପାରେ। କବିଙ୍କର ପ୍ରାରମ୍ଭିକ ପର୍ଯ୍ୟାୟରୁ ଏ ଯାବତ୍ ଆକ୍ରାନ୍ତ କରି ଆସିଥିବା 'ତମେ ସରା' ପ୍ରତି କବି ସଚ୍ଛିଦ୍ର ଅନ୍ଧାରରେ ନିଜ କଥା ପ୍ରକାଶ କରିଛନ୍ତି। ଏକଥା ବାହ୍ୟ ଜଗତର କଥା ନୁହେଁ କି କଳ୍ପଲୋକର କଥା ନୁହେଁ। ଏହା ଏକ ଆତ୍ମିକ ଅନୁଭବ, ଅନ୍ତଃଚେତନାର ସ୍ୱର -- ସ୍ୱୀକାରୋକ୍ତି। 'ତମେ ହିଁ' କବିତା ପରେ ଆଉ ସେ 'ତମ' ସଂପର୍କରେ କିଛି ଲେଖିବେ ନାହିଁ ବୋଲି କହିଥିଲେ। ତାର କାରଣ ନୁହେଁ ସେ ଦେହଘଷା ହୋଇଯାଇଛି --

''ଯେତେ ଭିଡ଼ି ଧରିଲେ ବି ଧରିପାରେ ନାହିଁ,
ମୋ' ହାତ ବାହାରେ ଥିବା ତମ ସୌନ୍ଦର୍ଯ୍ୟକୁ।

କିଛି ବାକି ରହିଯାଏ, ମୁଁ ନ ଜାଣିଥିବା
ବାସ୍ନାଟିଏ, ମୋ ଅଜ୍ଞାତ ମହାଦେଶଟିଏ,
ମୁଁ ନ ଶୁଣିଥିବା କେଉଁ ପକ୍ଷୀର କାକଳି,
ସୁତରାଂ ଆଜି ଯଦି ଚୁପ୍‌ହୋଇଯାଏ
ତା' କାରଣ ନୁହେଁ ତମେ ଦେହଘଷା ହେଲ।
ଆଜି ଯଦି ଚୁପ୍ ହେଲି ଏ କବିତା ପରେ
ତା' କାରଣ ଏହା, ତମ ଝଡ଼ର ସଂପୂର୍ଣ୍ଣ
ଫସଲ ହୁଏନି ଜାଗା ମୋ' ଦୁଇ ହାତରେ।''(୨୭) 'ତମେ' (୬୧୭

ଠିକ୍ ଏହି କଥା ଶ୍ରୀ ରଥ 'ଶ୍ରୀରାଧା'ର ପୃଷ୍ଠଭୂମିରେ ଶ୍ରୀରାଧା ଚରିତ୍ର ସୃଷ୍ଟିରେ ତାଙ୍କର ଅସାମର୍ଥ୍ୟକୁ ସ୍ୱୀକାର କରନ୍ତି- ''ରାଧାଙ୍କ ବିଷୟରେ ଯାହା କହିବି ବୋଲି ଭାବିଥିଲି ତାହା କହିପାରିଲି ନାହିଁ ବୋଲି ମୁଁ ଜାଣେ। ଅଧିକାଂଶ ସମୟରେ ମୁଁ ଉପଯୁକ୍ତ ଭାଷା ପାଇପାରି ନାହିଁ। ଖାଲି ସେତିକି ନୁହେଁ, ଠିକ୍ ଯେତେବେଳେ ରାଧା ଅସାଧାରଣ ହେବାକୁ

ଆରମ୍ଭ କଲେ, ଠିକ୍ ଯେତେବେଳେ ଏକାଧାରରେ ଖୁବ୍ ସୁନ୍ଦର ଓ ଖୁବ୍ ଅନନ୍ୟସାଧାରଣ ଅର୍ଥରେ ସେ ନିଜର ସ୍ଥିତିକୁ ଅର୍ଥପୂର୍ଣ୍ଣ କରି ବସିଲେ, ଠିକ୍ ସେତେବେଳେ ଓ ଠିକ୍ ସେହି ଜାଗାରୁ ମୋର ଚିନ୍ତାଶକ୍ତି ବାରମ୍ବାର ଲେଉଟି ଆସିଲା।''(୨୮) ପ୍ରତ୍ୟେକ ଭଲ କବି ହିଁ ଠିକ୍ ଏହି କଥା ଅନୁଭବ କରିଥାନ୍ତି। ଏହା ଏକ ସୂତ୍ର ନୁହେଁ, ସଂଜ୍ଞା ନୁହେଁ। ପ୍ରକୃତ କବିପ୍ରାଣର ଏକ ଆତ୍ମିକ ଅନୁଭବ। ଏହି ରାଧାକୃଷ୍ଣଙ୍କର ଦିବ୍ୟାଦିବ୍ୟ ପ୍ରଣୟାନୁଭୂତିକୁ ଭାଷାରେ ପ୍ରକାଶ କରିବାକୁ ଯାଇ କବି ଅଭିମନ୍ୟୁ ସାମନ୍ତ ସିଂହାର ନିଜର ଅସାମର୍ଥ୍ୟ ପ୍ରତି ମଧ ବେଶ୍ ସଚେତନ ହୋଇଥିବାର ଲକ୍ଷ୍ୟ କରାଯାଏ --

"ପ୍ରଣୟ ପରିପାଟୀ ଅକଥନ
ମନ ଜାଣିଲେ ନଜାଣେ ବଚନ
ଜନ୍ମାନ୍ଧ ଜଡ଼ ବଧିର ଯେମନ୍ତ
ସୁଖୀ ହୋଏ ସ୍ୱପ୍ନେ ଦେଖି ସଂଗୀତ
ଭାବି ଭାବି ମନେ
କି କହିବ ସେ ବିବେକାନୁମାନେ।"

ମୁଖ୍ୟତଃ କବି ସ୍ୱୀକାର କରନ୍ତି ଯେ ତାଙ୍କ ଶ୍ରୀରାଧା ଅସାଧାରଣ ଅବସ୍ଥାରେ ପହଞ୍ଚି ପାରିନି। ଗତାନୁଗତିକ ଜୀବନର ସଂପର୍କକୁ କାଟିଦେବାର ପରବର୍ତ୍ତୀ ଅବସ୍ଥା ବି ନୁହେଁ। ଗତାନୁଗତିକ ଜୀବନକୁ ଅତିକ୍ରମ କରିବା ଆଗରୁ ଏବଂ ଅସାଧାରଣ ଅବସ୍ଥାରେ ପହଞ୍ଚିବା ପୂର୍ବରୁ -- ଏହି ମଝାମଝି ଏକ ଅବସ୍ଥାରେ --, ଏକ ପ୍ରକାର ଅନ୍ୟ ଜୀବନ ଭିତରେ ସେ ସ୍ଥିତା। ତେଣୁ 'ଶ୍ରୀରାଧା'ରେ ଯେଉଁ ଚିତ୍ତବୃତ୍ତି ବା ମାନସିକ ସ୍ତରର କଥା ବର୍ଣ୍ଣିତ ହୋଇଛି ତାହା ଲୋକସଂପର୍କୀୟ ନୁହେଁ କି ଲୋକୋତ୍ତର ଅବସ୍ଥା ନୁହେଁ। ସ୍ଥିତିବାଦୀ ଦର୍ଶନକେନ୍ଦ୍ରିକ ସେ ଏକ ଚରିତ୍ର। ଏହିପରି ଚରିତ୍ରର ମାନସିକ ସ୍ଥିତାବସ୍ଥା ସଂପର୍କରେ ଦାର୍ଶନିକ କିଅର୍କିଗାର୍ଡ଼ ଯେଉଁ ମତ ଦେଇଛନ୍ତି ତାହା ଶ୍ରୀରାଧାଠାରେ ଆରୋପିତ କରାଯାଇପାରେ। "ମଣିଷ ମଧ୍ୟରେ ଶାଶ୍ୱତ-ଅସୀମର ଝଲକ ରହିଛି। କିନ୍ତୁ ପ୍ରତ୍ୟକ୍ଷ ଭାବରେ ବା ପଜିଟିଭ୍ ରୂପରେ ନୁହେଁ। ଶାଶ୍ୱତ ଓ ଅସୀମ ଧ୍ରୁବ କିନ୍ତୁ ପ୍ରତ୍ୟକ୍ଷ ନୁହେଁ। କାଳାନୁଗତ ମଣିଷ ମଧ୍ୟରେ ତେଣୁ କାଳାତୀତ ଶାଶ୍ୱତ 'ନେଗେଟିଭ୍' ରୂପରେ ରହିବାକୁ ବାଧ୍ୟ। ପଜିଟିଭ୍ ଜ୍ଞାନ ଯେଉଁ ନିରାପତ୍ତା ଦିଏ, ମୁଁ ତାକୁ ସନ୍ଦେହ କରୁନାହିଁ। ତେବେ ଜୀବନ ଉପରେ ମୋର ପଜିଟିଭ୍ ଆସ୍ଥା ଶିଶୁ ସୁଲଭ। ମଣିଷ ଜାଣେନା, ପଛରେ ଜୀବନ କିପରି ଖତେଇ ହେଉଛି। ଯେଉଁ ମଣିଷ ଜାଣିଥାଏ ଯେ, ଜୀବନ ପଜିଟିଭ୍ ଓ ନେଗେଟିଭ୍ ଉଭୟଙ୍କୁ ନେଇ ଗଢ଼ା, ତା' ଭିତରେ ଦୁଇଟିଯାକ ତାଳଦେଇ ଗତି କରନ୍ତି। ସେ କିପରି ଭାବରେ ପଜିଟିଭ? ନିଜର 'ନେଗେଟିଭତ୍ୱ' ସମ୍ବନ୍ଧରେ ନିରନ୍ତର ଉପଲବ୍ଧି ହେଉଛି ତା'ର 'ପଜିଟିଭିତ୍ୱ'।+ + + + ସଂଶୟ, ନୈରାଶ୍ୟ ଓ ଉଦ୍‌ବେଗ ଦ୍ୱାରା ଚାପି ହୋଇ ଅନ୍ତର୍ମୁଖୀ ମଣିଷ ଯେଉଁ ପାତାଳରେ ଥାଏ ଓ ନିରନ୍ତର ଗଭୀରତାରେ ବଞ୍ଚିବାର ଚାପ ଫଳରେ ତାର ଅନ୍ତରାତ୍ମାରେ ସୃଷ୍ଟି ହୁଏ ଚରମ ଯନ୍ତ୍ରଣା, ତା'ର ସାଂସାରିକ ଖୋଳପାକୁ ଭାଙ୍ଗି ଦେବା ଫଳରେ, ଏକ ଭିନ୍ନ ରାଜ୍ୟର ଆଲୋକ ତାକୁ ଛୁଇଁପାରେ। ଅଗ୍ନିକାଣ୍ଡରେ ସବୁ ପୋଡ଼ିଗଲେ, ମଣିଷ ଭିତରେ ଥିବା ଶୁଦ୍ଧ ସୁବର୍ଣ୍ଣ ଟିକକ ଝଟକି ଉଠେ।"(୨୯)

ରମାକାନ୍ତଙ୍କ ରାଧା କୃଷ୍ଣଙ୍କ ସଂପର୍କରେ ଆସିଲା ବେଳକୁ ସେ ମଧ୍ୟବୟସ୍କା ଏବଂ ମାନସିକ କ୍ଷେତ୍ରରେ ଖୁବ୍ ସଚେତନ। ତାକୁ ଆଉ କହିବାକୁ ପଡ଼େନି, "କି ହେଲାରେ, କହିତ ନୁହଇ ଭାରତୀରେ / କାଲି ଯା ଦୂରରୁ ଦେଖି / କଇନା କଲା ମୋ ଆଖି / କଳା ଇନ୍ଦୀବର ଆରତିରେ" ବା, "ମଜ୍ଜି ଯିବିକି ଉଭାରତିରେ"।(୩୦) ସେ କେବଳ ପ୍ରେମ ପିତୁଳାଟିଏ ନୁହେଁ। ସମ୍ଭୋଗ ପାଇଁ ବ୍ୟସ୍ତ ନୁହେଁ। ସେ ଅଭିସାରିକା ବେଶରେ ସଜ୍ଜିତା ନୁହେଁ କି ଖଣ୍ଡିତା ବା ବିପ୍ରଲବ୍ଧା ନୁହେଁ। ସେ ବି ରାଜ ଅନ୍ତଃପୁରରେ ପରିପାଳିତ ଅସୂର୍ଯ୍ୟଂପଶ୍ୟା ଲବଣୀ ପ୍ରତିମାଟିଏ ନୁହେଁ ବରଂ ଜଣେ ଆତ୍ମସଚେତନଶୀଳ ନାରୀ ଯିଏ ନିଜର ଯନ୍ତ୍ରଣା, ଦୁଃଖ-କ୍ଲେଶରେ ଜର୍ଜରିତା ଏବଂ ଏକ ଅପ୍ରାପ୍ତ କାମନାର ଲୋଡ଼ିବା-ପଣ ଭିତରେ ସଦା ଗତିଶୀଳା। ଏକ ପାଣ୍ଡୁର ଧୂସର ବଳୟ ଭିତରେ ତା'ର ସଂସ୍ଥିତି। ଶ୍ରୀକୃଷ୍ଣଙ୍କର ଆମଗନର ବାର୍ତ୍ତା ସେ ଜାଣିପାରେ। ସବୁ ହିନସ୍ତା ଆଲୋକିତ ହୋଇ ଉଠେ।

"ଆଜିର ସକାଳ କହେ ନେଇଯିବ ମୋର
ଚେତନା ଚୈତନ୍ୟ ଜନ୍ମଜନ୍ମାନ୍ତର ପାଇଁ।
ସେ ଯେଉଁ ଭାବରେ କହେ ମୁଁ ପୁନରାବୃତ୍ତି
କରିବାକୁ ଭାଷା ପାଉ ନାହିଁ।
କିନ୍ତୁ ଏବେ ଦିଶିଲାଣି ଅଲଗା ଅଲଗା।
ନଈ, ନଈ ସେପାରିର ବଣ,
କେତେଦିନ ଯାଏଁ ଆଉ ନ ବଦଳିଥିବ
ମୋ' ପାଣ୍ଡୁର ଗଗନ ପବନ।"(୩୧)

ରାଧା ଜାଣନ୍ତି ଶ୍ରୀକୃଷ୍ଣ ସତ୍ୟ। ସେ ହିଁ ଇଶ୍ୱର। ସେ କାନ୍ଦିବା କ'ଣ ଜାଣନ୍ତି ନାହିଁ। ତେଣୁ ଲୁହର ଅର୍ଥ ତାଙ୍କ ପାଇଁ ବା କ'ଣ ହୋଇପାରେ! ରାଧା କିନ୍ତୁ କାନ୍ଦିବାରେ ଯେଉଁ ବିମଳ ଆନନ୍ଦ ଲାଭ କରନ୍ତି ତାହା କାନ୍ଦୁଥିବା ରାଧା ବ୍ୟତୀତ ଆଉ ବା କିଏ ହୃଦୟଙ୍ଗମ କରିପାରିବ? ସ୍ୱପ୍ନରେ ଥରେ ମାତ୍ର ଦେଖିଲା ପରେ ରାଧା ଧାଇଁଛନ୍ତି ତାଙ୍କରି ପାଖକୁ। ପଥରେ ଅନେକ ବାଧା ଆସିଛି। ଘରଦ୍ୱାର, ଲୋକବାକ, ଘଟଣା ଅଘଟଣା ଏପରିକି ନିଜଠାରୁ ଅର୍ଥାତ୍ ନିଜର ପାରଂପରିକ ଚେତନାଠାରୁ ସେ ଖସି ପଳାଇ ରାସ୍ତାରେ ପାଦଦେଲା ବେଳକୁ ସେଠି ମଧ୍ୟ ଅନେକ ପ୍ରତିବନ୍ଧକ। ବୟସ ଅତିକ୍ରାନ୍ତ ହୋଇଗଲାଣି। ହତାଶାରେ ଭାରାକ୍ରାନ୍ତ ହୋଇଗଲାଣି ଆଶା। ତଥାପି ସେ ଆଶାଠାରୁ ଲୁଚି ଲୁଚି ଆସୁଥିଲେ। ଫୁଲଭରା ଗଛମାନେ ହୁଏତ ଫୁଲର ଗଦାରେ ବାଟ ଅଡ଼ି ବସି ପାରନ୍ତି, ନଈ ହୁଏତ ତା'ର କୁଳୁକୁଳୁ ରାଗିଣୀରେ ତାଙ୍କୁ ମୋହିତ କରିଦେଇ ପାରେ, ନିଜ ରକ୍ତର ଯେଉଁ ଆହ୍ୱାନ, ଯେଉଁ କ୍ଷୁଧା--ଏ ସବୁକୁ ସେ ଏଡ଼େଇ ଦେଇ ସ୍ମୃତିହୀନ ଭାବରେ ଧାଇଁ ଚାଲନ୍ତି। ନିଜର ବିକଳାଙ୍ଗତାରେ ସବୁ ଯେମିତି ବିବର୍ଣ୍ଣ। ସବୁରି ଉପରେ ବିନ୍ଦୁ ବିନ୍ଦୁ ଲୁହ। ବେଳେବେଳେ ମନେ ହୁଏ ସେ ସେହି ଦୁଃଖମାନଙ୍କ ପାଖରେ ଅଟକି ଯାଆନ୍ତେ, ତାଙ୍କୁ 'ମୁଲାଏମ୍ ଅନୁଶୋଚନା'ରେ ଆଉଁଷି ଦିଅନ୍ତେ। "ତମେ କିନ୍ତୁ ତିଳେମାତ୍ର ବିଶ୍ରାମ ଦେବନି, / ଛାଡ଼ିବନି ଅନ୍ୟ କେଉଁ ବାଟରେ ଯିବାକୁ, ତମ ନିର୍ଦ୍ଦୟତା ବୋଧେ ଚାହିଁ ବସିଅଛି / ମୋର ଲହୁଲୁହାଣ ହେବାକୁ।" ଦୁର୍ବିସହ ଦୁଃଖ ଯନ୍ତ୍ରଣା ଭିତରେ ସେ ସେମିତି

ଧାଇଁ ଚାଲିଥିବେ। ଏହି ପ୍ରସଙ୍ଗରେ ଚଣ୍ଡୀଦାସଙ୍କ ଶ୍ରୀରାଧାଙ୍କ ବିରହ ଦଗ୍‌ଧ ପ୍ରାଣର ବିଳାପକୁ ଲକ୍ଷ୍ୟ କରାଯାଇପାରେ --

"ସଇ, କେ ବଲେ ପୀରତି ଭାଲ
ହାସିତେ ହାସିତେ ପୀରତି କରିୟା
କାନ୍ଦିତେ କାନ୍ଦିତେ ଜନମ ଗେଲ।
କୁଲବତୀ ହଇଆ କୁଲେ ଦାଁଡ଼ାଞା।
ଯେ ଧନୀ ପୀରତି କରେ।
ତୁଷେର ଅନଳ ଯେନ ସାଜାଇୟା
ଏମତି ପୁଡ଼ିୟା ମରେ।
ହାମ ଅଭାଗିନୀ ଦୁଖେର ଦୁଖିନୀ
ପ୍ରେମ ଛଳ ଛଳ ଆଁଖି
ଚଣ୍ଡୀଦାସ କହେ ଯେ ଗତି ହଇଲ
ପରାନେ ସଂଶୟ ଦେଖି।"
(ଚଣ୍ଡୀଦାସ ପଦାବଳୀ)

ହସି ହସି ପ୍ରୀତି କଲେ ବି କାନ୍ଦି କାନ୍ଦି ଜୀବନ ବିତୁଛି। କୁଳବତୀ ହୋଇ ମର୍ଯ୍ୟାଦାକୁ ମାନି କୁଳରେ ରହି ପ୍ରୀତି କରି ତିଳ ତିଳ ହୋଇ ତୁଷାନଳରେ ଜଳି ଯାଉଛି। ଜୀବନ ଧାରଣ କରିବା ତା ପକ୍ଷରେ ଅସମ୍ଭବ। ନୟନ ପ୍ରେମ ଛଳଛଳ। ରମାକାନ୍ତଙ୍କ ଶ୍ରୀରାଧାର ଅନୁଭବକୁ ଦେଖନ୍ତୁ --

"ତୁମେ ତ କାନ୍ଦିନ କେବେ, କିପରି ବୁଝିବ
ମୁଁ କାହିଁକି ବୁନ୍ଦେ ଲୁହ ବୋହି ବୋହି ଆସେ
ଆଜୀବନ ତମରି ପାଖକୁ ?
ତମେ ବୁଝିପାରିବନି କେତେ ଭଲଲାଗେ
ଯେବେ ଲୁହ ପୋଛି ହୋଇଯାଏ-
ପ୍ରଥମେ ପ୍ରଥମ ବୁନ୍ଦା, ତା'ପର ବୁନ୍ଦା ବି
ଶେଷ ବୁନ୍ଦା ରହିଥିବା ଯାଏଁ।"(୩୨)

ଶ୍ରୀରାଧା ଆପଣାର ନିୟତି ସଂପର୍କରେ ଯଥେଷ୍ଟ ସଚେତନ। କାମ୍ୟୁଙ୍କର ଉଭଟ ମଣିଷର ଭାଗ୍ୟ ହିଁ ତା'ର ଭାଗ୍ୟ। ନିଜର ଅସଫଳତା, ଅସାମର୍ଥ୍ୟ ଓ ଅସହାୟତା ସଂପର୍କରେ ସେ ଅବହିତ ଥିଲେ ମଧ୍ୟ ତା'ରି ଭିତରେ ତାକୁ ଗତାଗତ ହେବାକୁ ପଡ଼େ। ସେଥିରୁ ତା'ର ନିସ୍ତାର ନାହିଁ। ଗୋଡ଼ ମକ୍‌ଚିଯାଇ ଥିଲେ ବି ସେ ନାଚିବାର ପ୍ରଚେଷ୍ଟାରେ ଉଦ୍ୟତ, ଯଦିଓ ତାର ଅସମ୍ଭବ। ପଙ୍ଗୁ ହୋଇ ବି ଗିରି ଲଙ୍ଘନର ଦୁର୍ବାର ଅଭୀପ୍ସା ଭିତରେ ସେ ଖୁବ୍ ବିବର୍ଣ୍ଣ ଓ କ୍ଳାନ୍ତ, ତଥାପି ଇଚ୍ଛା ଖଣ୍ଡିଉଡ଼ା ଦେବାକୁ। ଏହି ନିରବଚ୍ଛିନ୍ନ ସଂଗ୍ରାମ ଭିତରେ ସେ ସତରେ କେତେ ଉଭଟ କେତେ ହାସ୍ୟାସ୍ପଦ ଠିକ୍ ସିସିଫସ୍ ଭଳି ନିରର୍ଥକ କାର୍ଯ୍ୟରେ ବ୍ୟାପୃତ ହେବାକୁ ବିଧିନିର୍ଦ୍ଦିଷ୍ଟ। କୌଣସି କାମନା ନ ଥାଇ ତାକୁ କୃଷ୍ଣଙ୍କ ସାଥିରେ ନୌକା ବିହାରରେ ଯିବାକୁ ପଡ଼େ। ସେଠି ସେ କିଛି କ୍ଷଣ ପାଇଁ ଆକାଶ, ସମୁଦ୍ର, ନଦୀ, କୃଷ୍ଣଚନ୍ଦ୍ର, ନୌକା ଓ ନିଜ ଭିତରେ ଛନ୍ଦି ହୋଇ

ପୁଣି ପରମୁହୂର୍ତ୍ତରେ କିଛିର ସଂଧାନ କି ସରା ବି ପାଇପାରେନା। ତଥାପି ତାକୁ ଏହି ଖେଳରେ ଧୂନ୍ଦି ହେବାକୁ ହିଁ ପଡ଼ିବ। ବାରମ୍ବାର ସେ ସେହି ନନ୍ଦକୂଳକୁ ଯାଉଥିବ। ଘରେ ଆସି ନାନା ବହଗଞ୍ଜ ସହୁଥିବ। ଦେହରେ ପ୍ରାଣ ନ ଥିଲା ଭଳି ଲାଗେ। ପାଦରେ ଯେମିତି ଅନେକ ଯୁଗର ଦଉଡ଼ି ଛନ୍ଦା ହୋଇଛି। ସେ ବନ୍ଧନକୁ ଛିନ୍ନ କରିବାର ସାମର୍ଥ୍ୟ କାହିଁ? ଭାଗ୍ୟ ବି କାହିଁ? "ପୁଣି ରାତି ହେଉଥିବ, ଘରକୁ ଫେରିବା / ବାଟରେ ନିଷ୍ପ୍ରଭ ସ୍ୱପ୍ନଙ୍କର ମୃତ ଦେହ / ଝୁଣ୍ଟୁଥିବି, କେତେବେଳ ଯାଏଁ ଶୁଣୁଥିବି / ନଈ କୂଳୁଁ କିଏ କହେ ବିଦାୟ ବିଦାୟ।"(୩୩)

ଶ୍ରୀରାଥ ତ କହି ରଖିଛନ୍ତି ଯେ ଅସାଧାରଣ ଅବସ୍ଥାରେ ନ ପହଞ୍ଚିଥିବା ବେଳର ରାଧା ହିଁ ତାଙ୍କ ଶ୍ରୀରାଧା ଏବଂ ଗତାନୁଗତିକତାର ସକଳ ବନ୍ଧନକୁ ପୂରାପୂରି ଛିଡ଼େଇ ପାରିନଥିବା ବେଳର ରାଧା ହିଁ ତାଙ୍କ ରାଧା। ତେଣୁ ସମୟହୀନତା ଓ ସମୟର ଚୌହଦୀ ଭିତରେ ସେ ଆବଦ୍ଧ। ସେଇଠି ତାଙ୍କର ସଂସ୍ଥିତି। ଶ୍ରୀକୃଷ୍ଣଙ୍କ ସହିତ ସାକ୍ଷାତ ହେଲାବେଳକୁ ସେ ତ ଜୀବନର ଅର୍ଦ୍ଧେକକାଳ ଅତିକ୍ରାନ୍ତ କରି ଆସିଛି। ଏବେ ପାର୍ଥିବ ସ୍ତରରେ ସମୟର ଅଭାବ। ମୃତ୍ୟୁ ଘନେଇ ଆସୁଛି। ଅବଶିଷ୍ଟ ଆୟୁଷ ସେତେ ପ୍ରଲମ୍ବିତ ନୁହେଁ। ଏଥିପାଇଁ ତା' ମନରେ କମ୍ ଦୁଃଖ ନାହିଁ। ବହୁତ ଆଗରୁ ଯଦି ସେମାନେ ଭେଟିଥାନ୍ତେ, ତେବେ 'ଓଠର ଉତାପ' ପାଇଁ ସେ ସମୟ ପାଖରେ ଗୋଡଭାଙ୍ଗି ଆଉ ଟିକେ ସମୟ ଭିକ୍ଷା କରିନଥାନ୍ତେ। ଏବେ ଗୋଟିଏ ରାତ୍ରିର ଲକ୍ଷ୍ୟଭ୍ରଷ୍ଟତାରେ ସେ ଯେତେ ବ୍ୟଥିତା ହେଉଛନ୍ତି, ସେମିତି ହେବାକୁ ପଡ଼ିନଥାନ୍ତା। ଯଦି ବିସ୍ତୃତ ସମୟ ଲମ୍ବିଯାଇଥାନ୍ତା ଏବଂ ହଜି ଯାଇଥିବା ସମୟ ଭିତରେ ଯଦି ସେମାନେ ଅନେକ ଆଗରୁ ମିଳିଥାନ୍ତେ, ତେବେ ବିଚ୍ଛେଦରେ ସେ ସହଜରେ ଆକ୍ରାନ୍ତ ହୋଇ ପାରନ୍ତେ ନାହିଁ। "ଆମେ କିନ୍ତୁ ପରସ୍ପରେ ଭେଟିଲୁ ବହୁତ / ଡ଼େରିରେ, ଆମର ସବୁ ପ୍ରତ୍ୟାଶାର ସର୍ବଶେଷ ବେଳ ରତରତ / ସମୟରେ, ତେଣୁ ତମେ ଥରେ ନ ଆସିଲେ / ମୋ ଆଖିରୁ ଲୁହ ନୁହେଁ ଅବଶିଷ୍ଟ ଆୟୁଷର ଖଣ୍ଡବିଖଣ୍ଡିତ / ଅହଙ୍କାର ବୋହିଯାଏ।"(୩୪) ଆଗକୁ କେବଳ ସରି ସରି ଆସୁଥିବା କ୍ଷୀଣ ସମୟ। ତା' ଭିତରେ ଶ୍ରୀକୃଷ୍ଣଙ୍କର ଆଗମନର ବି କୌଣସି ସଙ୍କେତ ନାହିଁ। ଠିକ ସ୍ଥିତିବାଦୀ ମଣିଷଟି ପରି ଶ୍ରୀରାଧା ଅନ୍ତର ଭିତରେ ଜଳୁଥିଲେ ମଧ୍ୟ ବାହାରକୁ ସେ ଆଧୁନିକ ମୁଖାପିନ୍ଧା ମଣିଷ ପରି --

"ଲୋକ ଗହଳିରେ ଯିବି, ଖଂଜି ଦେଉଥିବି
ମୋ' ଓଠରେ ଚାହିଦାନୁଯାଯୀ
ହସ ବା ଉତ୍ତରଟିଏ, ଯଦିଓ ମୁଁ ଜାଣି ସାରିଥିବି
ତମେ କେବେ ଆସିବନି ମୋ ଓଠରେ ଚୁମା
ଦେବା ପାଇଁ।"(୩୫)

ଏହି ସ୍ୱର ଆହୁରି କ୍ରମଶଃ ତୀବ୍ର ହୋଇ ଉଠିଛି। ବାରମ୍ବାର ସେ ପ୍ରତି ପଦରେ ହତାଶା ଓ ସମ୍ଭାବନାର ଭଉଁରି ଭିତରେ ଘୂର୍ଣ୍ଣାୟମାନ। କେତେବେଳେ ଆଶା ରହୁଛି ତ ସେ ଚାଲିଗଲେ ବି ପୁଣି ତାଙ୍କ ବାକୀ ଆୟୁଷ ଭିତରକୁ ପ୍ରତିଦିନ ଫେରି ଆସୁଥିବେ। ଭାବାନ୍ତରେ, 'ମୁଁ ଜାଣେ ନାଗର ବେଶେ ବାହାରିବ ନାହିଁ।' ସେ ଭୁଲି ପାରେନି କି ପାଇପାରେନି। ଏକଥା ସତ ଯେ ସେ ଜାଣନ୍ତି ତାଙ୍କର କିଛି ପାଇବାର ନାହିଁ। ତଥାପି ସେ ନ

ପାଇବାର ଲୋଡ଼ିବାପଣକୁ କିଛି ଗୋଟିଏ ଅର୍ଥକୁ ଶୂନ୍ୟତା ଭିତରେ ଖୋଜିବାରେ ଆଗ୍ରହୀ।

'ସେପରି ଦିନ ତ କେବେଁ ରହେ ନାହିଁ, ମୋର ମଧ ନାହିଁ।
ଦେଖୁ ନାହଁ ମୁଁ କିପରି ମୋର ଅତଃସାର ଶୂନ୍ୟ ଦିନ
ସ୍ୱପ୍ନରେ ବୁଲିଲା ପରି ଖାଲି ବୁଲୁଥାଏ,
କିଛି ମିଳିବାର ନାହିଁ ଜାଣି ସୁଦ୍ଧା ନିତି
ନିଦ ବାଉଳାରେ କେତେ କ'ଣ ଖୋଜୁଥାଏ,
ଦେଖୁନାହଁ ମୁଁ କିପରି ମୋର ଭସ୍ମସାତ୍
ଭବିଷ୍ୟତ ନୀଳବର୍ଣ୍ଣ କରିସାରି ତାକୁ
ଚନ୍ଦନରେ ଚିତ୍ରକରେ, କୋଳାଗ୍ରତ କରେ?
ଦେଖୁନାହଁ ମୁଁ କିପରି ହସେ କାନ୍ଦେ ରାଗେ ରୁଷେ ଆଉ
ସବୁ ରାଗ ରୁଷା ଛାଡ଼ି ଆଖି ବୁଜି ମିଶିଯାଉଅଛି
କପୋଳକଳ୍ପିତ ବାହୁ ବନ୍ଧନ ଭିତରେ?''(୩୬)

ଶ୍ରୀରାଧା ତ ଚେତନଶୀଳ ଉଦ୍‌ଭଟ ମଣିଷଟିଏ। ଜୀବନର ଅର୍ଥହୀନତା ଓ ଅସାରତା ସଂପର୍କରେ ସେ ଅବହିତ ଥିଲେ ବି ଜୀବନ ବ୍ୟତୀତ ଆଉ ତା' ପାଖରେ କିଛି ନାହିଁ। ସେ ବଞ୍ଚିବ ହିଁ ବଞ୍ଚିବ। ଗତ୍ୟନ୍ତର ନାହିଁ। ପ୍ରଥମତଃ ସେ ଆତ୍ମହତ୍ୟା କରିପାରେ ଦୁଃଖରୁ ହତାଶାରୁ ଯନ୍ତଣାରୁ ମୁକ୍ତି ପାଇଁ। କିନ୍ତୁ ସେ ଆତ୍ମହତ୍ୟାକୁ ଜୀବନର ପରାଜୟ ବୋଲି ଜାଣେ। ନିଜର ସ୍ଥିତି ସଂପର୍କରେ ସେ ବି କମ ଦୃଷ୍ଟିବଦ୍ଧ ନୁହେଁ। ''କୃଷ୍ଣଙ୍କୁ ଭଲ ପାଇବା ଯଦି ଏକ ଲଜ୍ଜାଜନକ ବ୍ୟାପାର ବୋଲି ରାଧା ଭାବୁନଥିଲେ, ଯଦି ବରଂ ସେ ଭାବୁଥିଲେ ଯେ କୃଷ୍ଣଙ୍କୁ ଭଲ ପାଇବା ତାଙ୍କ ଆତ୍ମାର ସର୍ବଶ୍ରେଷ୍ଠ ଗୌରବ, କେବଳ ଅନ୍ୟମାନଙ୍କର ସନ୍ତୋଷ ବିଧାନ ପାଇଁ ସେ ଆତ୍ମହତ୍ୟା କରିଥାନ୍ତେ ବୋଲି ଭାବିବା ମୂର୍ଖାମି ହେବ। ଅନ୍ୟମାନଙ୍କର ସନ୍ତୋଷ ବିଧାନ ପାଇଁ ଜଣେ ବଞ୍ଚି ରହିପାରେ, କିନ୍ତୁ କେବଳ ନିଜର ସନ୍ତୋଷ ପାଇଁ ହିଁ ଆତ୍ମହତ୍ୟା କରାଯାଏ। ଅନ୍ୟମାନଙ୍କର ତାଙ୍କ ପ୍ରତି ବିମୁଖତା ଓ ଅସହିଷ୍ଣୁତା ଫଳରେ ସେ ବଞ୍ଚି ରହିବାକୁ ଆହୁରି ଦୃଢ଼ପ୍ରତିଜ୍ଞ ହୋଇଥିବା ବି ସମ୍ଭବ।(୩୭)

ଆତ୍ମହତ୍ୟାର ପ୍ରଶ୍ନ ଯେତେବେଳେ ଉଠୁ ନାହିଁ, ତେଣୁ ନୈରାଶ୍ୟ ହିଁ ତାର ଧେୟ। ସେ ପ୍ରିୟଙ୍କ ସହିତ ରାତି ଯାପନ୍ତି ଏବଂ ସକାଳ ଆସିଲେ ତାକୁ ଅନେକ ଅପବାଦକୁ ସହିବାକୁ ପଡ଼ିବ; ଦାଣ୍ଡପଟ, ବାଡ଼ିପଟରେ ସେମାନେ ଜଗିବସିଥିବେ--ଏକଥା ମଧ ଜାଣନ୍ତି। ''ମତେ ପାଇଲେ ହିଁ/ ଗୋଟାପଣେ ଝୁଣିଦେବେ ମୁନିଆଁ ଦାନ୍ତରେ।'' ଯେତିକି ଅସହାୟତାର ସେ ଶିକାର ସେତିକି ସେତିକି ତାର ଗଭୀର ପ୍ରତ୍ୟୟ ଆସିଛି। ନିଜର ବ୍ୟକ୍ତି-ସ୍ୱାତନ୍ତ୍ୟ ସଂପର୍କରେ ସେ ଖୁବ୍ ସ୍ପର୍ଶକାତର। ଦେହର ଅତୃପ୍ତ ଇଚ୍ଛା ଯେତେବେଳେ ପକ୍ଷ ଝାଡ଼ୁଥିଲା, ସେତେବେଳେ ''ମୁଁ କ'ଣ ଅସଂଖ୍ୟ ଥର ଦୁଆର ମୁହଁରୁ / ଫେରିଯାଇ ନାହିଁ ବାଟ ହୁଡ଼ିବା ଭୟରେ?'' କିନ୍ତୁ ପର ମୁହୂର୍ତ୍ତରେ ସେ ଅନୁଭବ କରେ ଯେ ତା'ର ଜନ୍ମ ମୃତ୍ୟୁ ଅନ୍ୟ କେଉଁ ଅଦୃଷ୍ଟ ହାତରେ ଅଛି। ଅନ୍ୟ ଏକ ପର୍ଯ୍ୟାୟରେ ତା'ର ଯେତେବେଳେ ପ୍ରଭୂତ ଆତ୍ମବିଶ୍ୱାସ ଆସିଛି ସେତେବେଳେ ସେ ସଂସାର ପାଇଁ ଏତେ ବ୍ୟସ୍ତ ନୁହେଁ। ତାର ତ କିଛି ସଂସାରଠୁଁ ପାଇବାର ନାହିଁ। ନିଜ ହାତରେ ସେ କ'ଣ ନିଜେ ଚଢ଼ଉଦପାଥ

ନୁହେଁ କି? ବ୍ୟକ୍ତି ସତ୍ତାର ପ୍ରାଧାନ୍ୟ ଓ ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହେଲେ ହିଁ ପ୍ରକୃତ ପ୍ରୀତିର ପୂର୍ଣ୍ଣତା ଆସେ।

''x x ମୁଁ କିପରି କହିଥାନ୍ତି ତାକୁ
ଏ ପାପ ପ୍ରୀତିଠୁଁ ବରଂ ମୃତ୍ୟୁ ଶ୍ରେୟସ୍କର?
କାହିଁକି ବା କହିଥାନ୍ତି? ଯେତେବେଳେ ତ ମୁଁ
ବୁଝିଲି ଯେ ଇଚ୍ଛା କଲେ ଫିଙ୍ଗି ଦେଇ ପାରେ
ଜରାମୃତ୍ୟୁ, ପାପ ପୁଣ୍ୟ ଯାହା ଯାହା ମୋର
ଅସଫଳତାରେ ମତେ ସୀମାବଦ୍ଧ କରେ।
କାଲି ସକାଳକୁ ଯେଉଁ ଅପବାଦ ମତେ
ମିଳିବ ତା'ର କି ଅର୍ଥ ଥିବ ମୋ' ପାଖରେ?
ମୁଁ କ'ଣ ମାଗୁଛି କିଛି ସଂସାର ଠାରୁ ଯେ
ଉଠ୍ ବସ୍ ହେବି ତା'ର ନିର୍ଦ୍ଦେଶାନୁସାରେ?''(୩୮)

ସ୍ୱାମୀ ତାର ବାଳ ଝିଙ୍କି କାଛରେ ପିଟନ୍ତି ଓ ସେ କାଲି ରାତି କାହା ସାଥିରେ କଟେଇଲା ବୋଲି। ଏଥିରେ ସେ ଅନେକ ଶାରୀରିକ କଷ୍ଟ ତ ପାଇଲା, କିନ୍ତୁ ଅବିଶ୍ୱସ୍ତତାର ସଂକେତଗୁଡ଼ିକୁ ଲୁଗାଖୋଲି ଦେହରୁ ଦିନରେ ଦେଖିଲାବେଳେ-- 'ମୁଁ ଆଉ କେତେବେଳ ଚାପି ରଖିଥାନ୍ତି ହସକୁ?'

ଶ୍ରୀରାଧାଙ୍କର ନିଜର ଦୁଃଖ ହତାଶା ଭିତରେ ସେ ଯେତିକି ଯନ୍ତ୍ରଣାକ୍ତ ପ୍ରାଣପ୍ରିୟ ଶ୍ରୀକୃଷ୍ଣଙ୍କ ପାଇଁ ବି ତାଠୁ ବଳି ଅଧିକ ବ୍ୟଥିତ। ସମସ୍ତେ କହନ୍ତି ଯେ ଶ୍ରୀକୃଷ୍ଣ ଈଶ୍ୱର। ଈଶ୍ୱର ହୋଇଥିଲେ ରାଧାଙ୍କର ଆଉ କିଛି ଶୋଚନା କରିବାର ବୋଧହୁଏ ନଥାନ୍ତା। କିନ୍ତୁ ''ତମେ ଲବଣୀ ପିତୁଳାଟିଏ, ଆକ୍ଷିରେ ଆକ୍ଷିଏ/ଲୁହ ଧରି ଯାଅ ଆସ କର।'' ସେତ ମନୁଷ୍ୟର ଭାଗ୍ୟ ନେଇ ଜନ୍ମିତ। ତେଣୁ ତାଙ୍କ ଆଖିରେ ଆଖିଏ ଲୁହ ଟଳଟଳ ହେଉଥାଏ। କଣ୍ଠରେ ଶତାବ୍ଦୀ ଶତାବ୍ଦୀ ମାନଙ୍କର ହା-ହାକାର। ରାତି ଶେଷରେ ତାଙ୍କ ମୁହଁକୁ ଚାହିଁଲେ ସେ ଅଣଈଶ୍ୱର ବୋଲି ପ୍ରମାଣିତ ହୋଇଯାଆନ୍ତି। ଅନିଦ୍ରାରେ ଲାଲ୍ ଆଖି। ଗଣ୍ଡମଣ୍ଡଳରେ ଲୁହର ଚିହ୍ନ। ସେ ବି ଏଇ ପାର୍ଥିବ ସମୟ ଭିତରେ ଆବଦ୍ଧ। ସେ ବି ରାଧାଙ୍କ ପରି ଦିନେ ସମୟ ଦାନ୍ତରେ ପଡ଼ିଯିବେ। ବୟସ୍କ ହୋଇଯିବେ। ଦିନେ ବି ମୃତ୍ୟୁର ଅଧୀନ ହେବେ। ତେଣୁ ସେ ନିଜର ପ୍ରେମିକ ପାଇଁ ସୋହାଗଭରା ଆତ୍ମିକ ପ୍ରବୋଧନା ଶୁଣାନ୍ତି--

''ଆସ ଆସ ପୋଛିଦିଏଁ ତରାକୁ ନୁଆଁଇ
ଆଣି ନ ପାରିବା ଯୋଗୁଁ ହତୋତ୍ସାହ ତମ ହୃଦୟରୁ,
ତମ ଭାଗ୍ୟେ ଲେଖାଥିବା ଅସଂଖ୍ୟ ନିଷ୍ଫଳ
ରକ୍ତପାତ ମାନଙ୍କର ଛିଟିକା ଦେହରୁ।'' (୩୯)

ଈଶ୍ୱରୀ ଚେତନା ସର୍ବଦା ମାନବୀ ଚେତନା ଭିତରେ ଥାଇ ତାକୁ ସନ୍ତପ୍ତ କରେ। ସେ ଶୂନ୍ୟତାରେ ପରିଣତ ହୋଇଯାନ୍ତି ଏବଂ ଅନ୍ୟାକୁ ଦଣ୍ଡଦେଇ ଚାଲନ୍ତି। ତେଣୁ ଏହି ମୁହୂର୍ତ୍ତରେ ସେ ଏକ ଗଭୀର ମାନସିକ ଦୋଳନ ଓ ସଂଶୟ ଭିତରେ ପଡ଼ିଯାଏ। କାମନା ଓ

କାମନାର ଅପୂର୍ଣ୍ଣତା ଭିତରେ ସେ କ୍ରମଶଃ ଖୁବ୍ ନିଃସଙ୍ଗ ପାଲଟି ଯାନ୍ତି। ସେଠି ବି ଶିଖଣ୍ଡଚୂଳିଆର ସ୍ଥାନ ନାହିଁ। ଏହା ଏକ ଗଭୀର ହତାଶାବୋଧ ଓ ନୈରାଶ୍ୟ ବିଜଡ଼ିତ ଶୂନ୍ୟାବସ୍ଥା, ଯେଉଁଠି ପ୍ରେମିକର ବର୍ତ୍ତମାନତା ବି ଅସହ୍ୟ। ତା'ର ଆତ୍ମା ହିଂସ୍ର ହୋଇଉଠେ। ସେ ଜଙ୍ଗଲ ଗୋଟାକ ବୁଲି ବୁଲି ଶିକାର ଖୋଜେ। କିନ୍ତୁ ଶିକାର ନାହିଁ। ସେ ତାଙ୍କ ପାଇଁ ଆଉ କାନ୍ଦନ୍ତି। ଲୁହବି ତାଙ୍କ ପାଇଁ ନୁହେଁ। "ଏ ମୋର ନିଜର ଭାଷା କେହି ନ ଥିବାର / ରାତିରେ ନିଜର ସାଙ୍ଗେ କଥା ହେବା ପାଇଁ।" ସେ ନିଜେ ନିଜେ ହିଁ କାନ୍ଦିବାକୁ ଭଲ ପାଏ। ନିଜର ମାନସିକତାକୁ ରାଧା କହିବସେ ପ୍ରଚ୍ଛନ୍ନ ଯନ୍ତ୍ରଣାଜର୍ଜରିତ ଓ ନିଃସଙ୍ଗତାସିକ୍ତ ସ୍ୱରରେ --

"ମୋ ଆଡ଼କୁ ଚାହଁ ନାହିଁ ଗୋଲା ଚନ୍ଦନରେ
ବୋଲା ମୋର ସୁକୁମାର ପ୍ରିୟ
ନିଜର ସମସ୍ତ ଇଚ୍ଛା ବୋହିକରି ଫେରି ଆସୁଥିବା
ଲୋକ କି ଭୀଷଣ ଦିଶେ ତମେ ଜାଣ ନାହିଁ।
ସେ ଖୁବ୍ ଅର୍ଥବ ଦିଶେ, ଖୁବ୍ ହିଂସ୍ର ଦିଶେ,
ଚାହାଣିରେ ଖିନ୍‌ଭିନ୍ କରେ ପବନକୁ,
ସତେକି ପବନ କେଉଁ ଗୁମ୍ଫାରେ ଲୁଚାଉ
ରଖିଛି ତା' ପ୍ରାର୍ଥନା ସବୁକୁ।"(୪୦)

ଶ୍ରୀକୃଷ୍ଣ ବୋଧେ ଏବେ ମଥୁରାବାସୀ। ନିଃସଙ୍ଗତା, ତାଙ୍ଗଲ୍ୟ, ହତାଶା ଭିତରେ ରାଧାଙ୍କ ଜୀବନ ଯାତ୍ରା ଏଣିକି ଆହୁରି ଦୁର୍ବିସହ ଜଣାପଡ଼େ। ତା' ପାଇଁ ସତେ କି ଆଉ ଟିକେ ସ୍ଥାନ କେଉଁଠି ନାହିଁ। ସବୁ ସ୍ଥାନ ଯେମିତି ରେଖାଙ୍କିତ। ଅନ୍ଧାରରେ ବି ଲୁଚିପାରେନି। ଗଛ ତଳ ଦେଇ ଗଲେ ବି ପତ୍ରମାନେ ଭୁଟ୍‌ଭାଟ୍ ହୋଇ ତାଙ୍ଗଲ୍ୟ କରି କହନ୍ତି -- "ଉଠ, ଉଠ, ଜଣେ ଯାଇ ସାରିଛି କି ନାହିଁ / ଆସିଲାଣି ପୁଣି ଆଉ ଜଣେ।" ତା'ର ଭାଗ୍ୟଫଳ ବି ଆଉ ତା'ର ନୁହେଁ। ତାକୁ ସଂସାର ତା' ତାଲିକାଭୁକ୍ତ କରିଦିଏ। ମୃତ୍ୟୁଠାରୁ ବଳି ସାଘାତିକ ଆତଙ୍କରେ ସେ ବ୍ୟସ୍ତ। ସ୍ମୃତିହୀନ ଭାବରେ ବେଳେବେଳେ ଅବସ୍ଥିତି ଥିଲେ ବି ଏବେ କିନ୍ତୁ ବଂଶୀର ପ୍ରତିଧ୍ୱନି ସେ ଶୁଣିପାରନ୍ତି। ତାଙ୍କ ସହିତ ଭେଟ ନ ହେଲେ ଦିନ ସରୁନଥିଲା। ଏବେ କିନ୍ତୁ ତାଙ୍କ ପାଇଁ, "ବାଲି ବାଲି ଖାଲି ବାଲି। ବାଲି ପୃଥିବୀର - ଏକରଙ୍ଗୀ ଧୂଳିସାତ୍ ଆତ୍ମା, ଆଉ କ'ଣ ମନେ ଅଛି ତା'ର -- ପାଣି ମୁନ୍ଦେ ମାଗିବାର ଭାଷା ?" ତା'ପରେ, "କେତେ ଦିନୁଁ ମୁଁ ଯେପରି / ପାହାଡ଼ ଯାହାର / ଉପରେ ପଥର ଆଉ / ଭିତରେ ପଥର।"(୪୧)

ଶ୍ରୀରାଧାର ପ୍ରୀତି ସଂପର୍କରେ କୌଣସି ଏକ ବିଧିବଦ୍ଧ ଦୃଷ୍ଟିକୋଣରୁ ଆଲୋଚନା କରିବା ଅତି ଅସହଜ। ସେ ତ ଏକ ନିଃସଙ୍ଗ ପଦାତିକ। ସଂପର୍କ ରହିତ, ଅସହାୟ ବିଜନତା ଭିତରେ ଅଧିକ ସମୟ ଉଦ୍‌ଯାପିତ। "ଏପରି ସଂପର୍କ ରହିତ, ନିଃସଙ୍ଗ ଅବସ୍ଥାରେ ହିଁ ସବୁଠୁ ବେଶି ଭଲ ପାଇ ହୁଏ। ସେ ଭଲ ପାଇବାରେ ବିହ୍ୱଳ ହୋଇ ନିଜକୁ ଭୁଲିଯିବା ଘଟେ ନାହିଁ କି ମୃତ୍ୟୁକୁ ପରାଭୂତ କରିହେବ ବୋଲି ପ୍ରହେଳିକା ନଥାଏ। ସେ ଭଲ ପାଇବା ଖୁବ୍ ପ୍ରଗାଢ଼ ଯେହେତୁ ତାହା ହତାଶା ଉପରେ ପ୍ରତିଷ୍ଠିତ। ++ ଯାହା ସେ ଭଲ ପାଇବାର ଉପାଦାନ ନୁହେଁ ତା' ପାଇଁ ପରମାୟୁରେ ଜାଗା ନାହିଁ।

ପ୍ରିୟ ବ୍ୟକ୍ତିକୁ ବୁଝିବାର ଓ କ୍ଷମାଦେବାର ସାମର୍ଥ୍ୟ ବି ଯଥେଷ୍ଟ ବଢ଼ିଯାଏ କାରଣ ଅନ୍ତରାତ୍ମା ବୁଝିସାରିଥାଏ ଯେ ନିଜ ଦୃଷ୍ଟିରେ ସର୍ବତୋଃଭାବେ ସନ୍ତୋଷଜନକ ସମାଧାନଟିଏ ଖୋଜୁ ଖୋଜୁ ବେଳ ଗଡ଼ିଯିବ।''(୪୨) ଶ୍ରୀକୃଷ୍ଣ ବୃନ୍ଦାବନ ଛାଡ଼ିଲାପରେ ରାଧା ତାଙ୍କୁ ଅପବାଦ ଦେଇ ନଥିବେ, ରାଗି ନ ଥିବେ ବୋଲି କବିଙ୍କର ଦୃଢ଼ ବିଶ୍ୱାସ, କାରଣ ତାଙ୍କର କିଛି ମନୋରଥ ନଥିଲା; ତେଣୁ ବ୍ୟର୍ଥତାର ପ୍ରଶ୍ନଇ ଉଠୁ ନାହିଁ। କୃଷ୍ଣଙ୍କର ପ୍ରୟୋଜନ ବେଳେ ତାଙ୍କୁ କିଛି ସହାନୁଭୂତି ଓ ସାନ୍ନିଧ ଦେଇପାରିନଥିବା ଶୋଚନାରେ ସେ ସନ୍ତପ୍ତ ହୋଇଥିବେ। ପାଇ ନପାରିବାଠାରୁ ଦେଇ ନ ପାରିବା ଦୁଃଖ ଅଧିକ ହୁଏ। ତେଣୁ ଏହି ପୃଷ୍ଠ-ଭୂମି ଉପରେ ରାଧାଙ୍କର ପ୍ରୀତି ସବଳିତ ଓ ପ୍ରତିଷ୍ଠିତ ହୋଇଛି କହିଲେ ତ ଭୁଲ ହେବ ନାହିଁ, ପରନ୍ତୁ ସ୍ଥଳ ବିଶେଷରେ ଆମ ମନରେ ପ୍ରଶ୍ନ ଉପୁଜେ ଯେ ଶ୍ରୀରାଧାଙ୍କ ପ୍ରୀତିକୁ ଆମେ କେଉଁ ସ୍ତରରେ ମାପିବୁ? ପ୍ରାକୃତ ନା ଅପ୍ରାକୃତ? ବା ଲୌକିକ ନା ଅଲୌକିକ? ଏହି ପରିପ୍ରେକ୍ଷୀରେ ପ୍ରସିଦ୍ଧ ବୈଷ୍ଣବ କବି ବିଦ୍ୟାପତିଙ୍କ ଶ୍ରୀରାଧାଙ୍କର ଗୋଟିଏ ମୁହୂର୍ତ୍ତର ଅନୁଭବକୁ ଆମେ ରମାକାନ୍ତଙ୍କ ଶ୍ରୀରାଧା ର ଅନୁଭବ ସହିତ ମିଳେଇ ପାରିବା ଯଦିଓ ଦୁଇ ଶ୍ରୀରାଧାଙ୍କର ଅଭୀପ୍ସା ବା ଲକ୍ଷ୍ୟ ଭିନ୍ନ। ବିଦ୍ୟାପତିଙ୍କ ରାଧା ପ୍ରୀତି ପାଗଳିନୀ। ବିରହିଣୀ। କାମଦଗ୍‌ଧା ନାୟିକା। ମିଳନରେ ତାର ତୃପ୍ତି-ବାସନା। କିନ୍ତୁ ରମାକାନ୍ତଙ୍କ ଶ୍ରୀରାଧା କିଛି ନ ପାଇବାର କାମନାରେ ବି ମୁଗ୍‌ଧା।

ବିଦ୍ୟାପତିଙ୍କ ରାଧା ଜୀବନ ସାରା ପ୍ରେମ ସରୋବରରେ ବୁଡ଼ି ରହିଲେ। ନିଜର ପରିପକ୍ୱ ଅନୁଭବକୁ ସେ ଶୁଣାନ୍ତି, ହେ ସଖି, ମୋର ଅନୁଭବ କ'ଣ ପଚାରୁଛୁ? ସେ ହେଉଛି ପ୍ରୀତି। ସେ ହେଉଛି ଅନୁରାଗ ଯାହା କ୍ଷଣକ୍ଷଣକେ ନୂତନ ଭାବେ ବିଳସି ଉଠେ। ରମଣୀୟତାର ଏହି ରୂପ--'କ୍ଷଣେ କ୍ଷଣେ ଯନ୍ନବତାମୁପୈତେ।' ପ୍ରୀତିର ମଧ ଏହି ଦଶା ହୁଏ। ମୁଁ ଜୀବନ ଭରି ତା' ରୂପକୁ ଦେଖୁଛି କିନ୍ତୁ ନେତ୍ର ତୃପ୍ତ ହେଲା ନାହିଁ। ଆଖିର ତୃଷା ମେଣ୍ଟିଲା ନାହିଁ। ଏହି ମଧୁରବାଣୀ ଜୀବନ ତମାମ ଶୁଣୁଛି କିନ୍ତୁ ତାହା ଏ ପର୍ଯ୍ୟନ୍ତ କାନକୁ ଛୁଇଁ ପାରିନି। କେତେକେତେ ମଧୁଯାମିନୀ ଆନନ୍ଦରେ କଟିଛି କିନ୍ତୁ କେଳି କିପରି ହୋଇଥିଲା ଆଉ ମନେ ନାହିଁ। ଏବେ ହୃଦୟ ଖାଲି ପଡିଛି।

ସଖି! କି ପୁଛସି ଅନୁଭବ ମୋୟ।
ସେ ହୋ ପିରୀତି ଅନୁରାଗ ବଖାନତ,
ତିଲେ ତିଲେ ନୂତନ ହୋୟ।
ଜନମ ଅବଧି ହମ ରୂପ ନିହାରନୁ
ନୟନ ନ ତିରପିତ ଭେଲ।
ସେ ହୋ ମଧୁର ବୋଲ ଶ୍ରବନହିଁ ସୁନଲ
ଶ୍ରୁତିପଥେ ପରଶ ନ ଗେଲ।
\+ \+ \+ \+
କତ ବିଦଗ୍‌ଧ ଜନରସ ଅନୁମୋହେ
ଅନୁଭବ କାହୁ ନ ଦେଖି।''
(ବିଦ୍ୟାପତି ଗୀତ ସଂଗ୍ରହ)

ବିଦ୍ୟାପତିଙ୍କ ରାଧାତ ଜୀବନସାରା ପ୍ରୀତି କରିଛି ତଥାପି ଅତୃପ୍ତ। ରମାକାନ୍ତଙ୍କ ରାଧା କିନ୍ତୁ ଅନେକ ବିଳମ୍ବରେ ଭେଟିଛି, ସେତେବେଳକୁ ସମୟ ଦାଉ ସାଧିବା ଆରମ୍ଭ

କଲାଣି । ସେ ଭାବେ --

"ତେବେ କ'ଣ ଏଇ ଭଲ, ତମେ
ମୁଁ ମରିବା ଯାଏଁ ମୋର କିଛି ଦୂରେ ଥିବ,
ସବୁବେଳେ କ ନ୍ଥିବ ଛୁଅଁ ଛୁଅଁ ବୋଲି,
ଛୁଇଁବିକି ନଛୁଇଁବି ଭାବୁ ଭାବୁ ମୋର
ପ୍ରାଣବାୟୁ ଉଡ଼ିଯାଇଥିବ ?"(୪୩)

ତେଣୁ ଏହି ଲୁଚ୍‌କାଳି ଭିତରେ ତାକୁ ସାରା ଜୀବନର ଅବଶିଷ୍ଟାଂଶକୁ ଅତିବାହିତ କରିବାକୁ ପଡ଼ିବ। ପ୍ରେମର ପରାକାଷ୍ଠା, ସିଦ୍ଧି, ସୌନ୍ଦର୍ଯ୍ୟ ଓ ମହିମାକୁ ପ୍ରତିଷ୍ଠିତ କରି ଅନନ୍ତ ପ୍ରୀତିରେ ସାର୍ଥକତା ଲାଭ କରିବା ରମାକାନ୍ତଙ୍କ ଶ୍ରୀରାଧାର ଲକ୍ଷ୍ୟ ନୁହେଁ କି ଦୈହିକ ଭୋଗ ଲାଳସା ଭିତରେ ମଜ୍ଜିବାର ଇଚ୍ଛା ନାହିଁ। ସେ ଏହି ହଁ-ନାହିଁର ବୃତ୍ତ ଭିତରେ ଘୂରିଚାଲିବ ଏକ ସ୍ୱତନ୍ତ୍ର ନିଃସଙ୍ଗ ବ୍ୟକ୍ତିସତ୍ତାକୁ ନେଇ। ସେ ସମସ୍ତ ବାସ୍ତବତାକୁ ସମ୍ମୁଖୀନ କରେ ଏବଂ ବାସ୍ତବତା ଜନିତ ଦୁଃସହ ଯନ୍ତ୍ରଣା ଓ ଅସହାୟତା ଭିତରେ ତା'ର ଚୈତନିକ ଉତ୍ତରଣ ଘଟେ। ଅନୁଭବର ନୂତନ ପରିସର ଓ ପରିବେଶ ସାନ୍ଦ୍ରୀଭୂତ ହୋଇଉଠେ। ଶ୍ରୀରାଧାର ପ୍ରେମାନୁଭୂତିକୁ ଲୌକିକ-ଅଲୌକିକ, ସ୍ଥିତିବାଦ ତଥା ନୂତନ ଅନୁଭବର ସ୍ତରରେ ହୃଦୟଙ୍ଗମ କରାଯାଇ ପାରେ। ଏହି ଗ୍ରନ୍ଥରେ ସ୍ଥିତିବାଦ ସଂପର୍କରେ ଆଲୋଚନାବେଳେ କୁହାଯାଇଛି ଯେ ସ୍ଥିତିବାଦୀ ଦାର୍ଶନିକ ମହାମଣିଷ (Mass)ର ଅସ୍ତିତ୍ୱକୁ ସ୍ୱୀକାର କରେ ନାହିଁ, କାରଣ ଏଥିରେ ପ୍ରେମର ତାଙ୍କାଳିକ ପ୍ରହେଳିକା ତାକୁ ବାସ୍ତବ ସତ୍ୟରୁ ଓହରେଇ ନେଇପାରେ। ସେ ଅନୁଭୂତି ଓ ଅନୁଭବରେ ବାଧା ଉପୁଜି ପାରେ। ସେଇଥିଲାଗି କିଅର୍କଗାର୍ଡ, କାମ୍ୟୁ, ସାର୍ତ୍ରେ, କାଫ୍‌କା ଆଦି ଅସ୍ତିତ୍ୱବାଦୀମାନେ ପ୍ରେମ କରି ଜ୍ଞାତସାରରେ ତାକୁ ଅସ୍ୱୀକାର କରିଛନ୍ତି। କିଅର୍କଗାର୍ଡ ପ୍ରେମିକାକୁ ପ୍ରତ୍ୟାଖ୍ୟାନ କରି ଲୁହ ବିସର୍ଜନ କରିଥିଲେ ମଧ୍ୟ ସେ ନିଜସ୍ୱ ପୃଥିବୀରେ, ଏକାନ୍ତ ନିଃସଙ୍ଗତା ଭିତରେ ଆପଣାର ଈଶ୍ୱରଙ୍କୁ ଖୋଜିବାରେ ବ୍ରତୀ ରହିଥିଲେ। ସାର୍ତ୍ରେ ମଧ୍ୟ ବ୍ୟକ୍ତି ସ୍ୱାତନ୍ତ୍ର୍ୟକୁ ବଜାୟ ରଖି ଚାଲିଥିଲେ। ମୁଖ୍ୟତଃ ରମାକାନ୍ତଙ୍କ ପ୍ରେମ ପ୍ରାରମ୍ଭିକ ପର୍ଯ୍ୟାୟରୁ ବିଫଳତା ଲାଭ କରିଆସିଛି। 'ଶ୍ରୀରାଧା'ରେ ପ୍ରେମ ବି ଶୀର୍ଷତମ ସୋପାନରେ ପହଞ୍ଚିନି ବରଂ ସେହି ସ୍ଥିତିବାଦୀ ଦର୍ଶନ ଅନୁସାରେ ଏକ ଅନ୍ୱେଷଣ ଭିତରେ ଶେଷ ପର୍ଯ୍ୟନ୍ତ ରହି ଯାଇଛି।

ଶ୍ରୀରାଧା ଜାଣନ୍ତି ଯେ ଶ୍ରୀକୃଷ୍ଣ କେତେ ଲୌକିକ। ସେତ ଜରା - ମୃତ୍ୟୁର ସୀମାବଦ୍ଧତାର ଅଂଶୀଦାର। ସେ କେଡ଼େ ଅଧୈର୍ଯ୍ୟ, କେଡ଼େ ଶୋକାତୁର ତାହା ବି ତାଙ୍କୁ ଭଲ ଭାବରେ ଜଣା। ଏକଥା ତାଙ୍କ ବ୍ୟତିରେକେ ଆଉ ବା କିଏ ବୁଝିପାରିବ ? ପ୍ରତି ସକାଳରେ ଶ୍ରୀରାଧା ଜାଣେ ଯେ ତାକୁ ପୁଣି ତା' ଘରକୁ ତା' ମୃତ୍ୟୁ ଭିତରକୁ ଫେରିବାକୁ ହେବ, ତଥାପି ପୁଣି ରାତି ଆସିଲେ ସେ ଦିନର ସବୁ ଦୁଃଖ, ହତାଶା, ନିର୍ଯ୍ୟାତନାକୁ ପାଶୋରି ଯାଏ ଏବଂ ପ୍ରତ୍ୟେକ ରାତ୍ରିରେ ତାଙ୍କ ପାଖକୁ ଫେରିଆସେ --

"ଆସୁଥିବି ଯେ ପର୍ଯ୍ୟନ୍ତ ମୋ ବିବସ୍ତ୍ର ଦେହ
ଆଉଜାଇ ନେଇନାହିଁ ମୋ' ଜୀବନ କାଳ
ଓ ତମ ଜୀବନ କାଳ ଅନ୍ତହେବା ପରେ,
ଯେ ପର୍ଯ୍ୟନ୍ତ ମୁଁ ନିଶ୍ଚିହ୍ନ ହୋଇ ଯାଇନାହିଁ
ପୁରାପୁରି ତମ ଶୂନ୍ୟତାରେ।"(୪୪)

ପ୍ରଥମେ ଯେଉଁଦିନ ଶ୍ରୀକୃଷ୍ଣ ଶ୍ରୀରାଧାଙ୍କୁ ଛୁଇଁଦେଲେ, ସେବେଠୁ ସେ ଜାଣିଥିଲେ ଯେ --

"ଆଜି ହେଉ କାଲି ହେଉ ଦିନେ ନା ଦିନେ ମୁଁ
ତମକୁ ଅବଶ୍ୟ ଦେବି ମୋର ଅଙ୍ଗୀକାର,
ଚୁପ୍ ହୋଇଯିବି, ମୁଁ ଯାହା ହୁଅଛି
ତାହା ହୋଇଯିବି ମାତ୍ର ରାତିକ ଭିତରେ,
ତମକୁ ମୁଁ କାଳକାଳ ଢାକି ଧରିଥିବି
ବିବସନ ଅନ୍ତଃକରଣରେ।"(୪୫)

କିନ୍ତୁ ଶ୍ରୀରାଧା ଅଙ୍ଗୀକାର କଲେ ମଧ ପରବର୍ତ୍ତୀ ପର୍ଯ୍ୟାୟରେ ଶ୍ରୀକୃଷ୍ଣଙ୍କ ଆଖିରେ ଲୁହ ଜମି ଆସେ। ଚାରିଆଡ଼ ନିକାଞ୍ଚନ। 'ସେ ନିକାଞ୍ଚନତା ଈଶ୍ୱରଙ୍କୁ ଭୋଗିବାକୁ ହୁଏ।' ସେତିକି ବେଳେ ଶ୍ରୀକୃଷ୍ଣଙ୍କ ପ୍ରତି ଶ୍ରୀରାଧାଙ୍କର ଚରମ ଆସକ୍ତି ପ୍ରକାଶ ପାଇଛି। ଶରତ ଆକାଶ। ନିର୍ମଳ ଜ୍ୟୋତ୍ସ୍ନା ରାତିରେ ତାଙ୍କର ବେଣୁନାଦ ଶୁଭିଯାଏ। ତୋଫା ଆଲୁଅରେ ବି ସେ ଜମାରୁ ଦେଖା ଯାଆନ୍ତି ନାହିଁ। ସେତେବେଳକୁ 'ବୟସ ମଳିନ ହୁଏ, ଜହ୍ନ ବି ମଳିନ / ଦିଶିଲାଣି ଶେଷ ପ୍ରହରରେ।' ଶ୍ରୀକୃଷ୍ଣ କ'ଣ ପାଇଛନ୍ତି କି ନାହିଁ, ସେ ଈଶ୍ୱର କି ଅଣଈଶ୍ୱର ସେଥିରେ କିଛି ଯାଏ ଆସେ ନାହିଁ।

"ମୁଁ କେବଳ ସମସ୍ତଙ୍କ ଅଜାଣତେ ଲୁଚିଲୁଚି ଆସେ
ତମେ ଥିବା ନିରୋଳା ଜାଗାକୁ।
ତମେ ଜମା ଦିଶୁନାହଁ ଇନ୍ଦୀବର କିମ୍ବା ପଦ୍ମପରି,
ଖାଲି କେଉଁ ଏ ପର୍ଯ୍ୟନ୍ତ ତମ ଅଗୋଚର
ଆକାଙ୍କ୍ଷାରେ ଭିଡ଼ୁଛ ମୋ' ପଣତ କାନିକୁ।"(୪୬)

ଶ୍ରୀରାଧାଙ୍କର ଭଲ ପାଇବାର ପଣ କମ୍ ଆତ୍ମିକ ନୁହେଁ। ସେ ତ ସବୁବେଳେ ଦ୍ୱନ୍ଦ୍ୱଗ୍ରସ୍ତ। ଏବେ ସେ ଅନୁଭବ କରୁଛି ଯେ ତାର ହାତରେ ଆଦୌ ଜୋର ନାହିଁ। ମନରେ ବି ଦମ୍ଭ ନାହିଁ। ଅଥଚ ସେ ଦକ୍ଷିଣା ପବନ ପରି ମାଡ଼ି ଆସିଲା ମାତ୍ରେ ତା' ଦେହରେ ଶତ ରୋମାଞ୍ଚ ଖେଳିଯାଏ। ସେ ଆଜି ଆସନ୍ତୁ ବା କଳ୍ପକଳ୍ପାନ୍ତର ପରେ ଆସନ୍ତୁ ସେ କିନ୍ତୁ ନିତ୍ୟ ରୋମାଞ୍ଚିତା। ଏ ରାତି ପାହିବନି, ପକ୍ଷୀ ରାବିଲେବି।

"ନଈର ସେପାଖେ ଦିନହେଲେ ହେଉଥାଉ।
ଏଠାରେ କେବଳ ରାତି, ତମେ ଯେତେଥର
ମତେ ଛୁଅଁ ସେତେଥର ବୟଃପ୍ରାପ୍ତି ହେବା
ଉତ୍ସବରେ ମୋ ମୃତ୍ୟୁ ମୁଖର।"(୪୭)

ଏହି ରାତି ପାଇଁ ସେ ତା'ର ମାନମହତ, କୁଳ ସମ୍ଭ୍ରମ ସବୁ ଭୁଲିଯାଏ। ଅନ୍ଧାରରେ ତରଳିଯାଏ। ଶ୍ରୀକୃଷ୍ଣ ପଚାରିବା ଆଗରୁ ସେ ନିଜର ଅଙ୍ଗୀକାର ଜଣେଇ ଦିଏ। ଚକ୍‌ଚକ୍ ଅଳଙ୍କାର ପିନ୍ଧି ବାହାରି ପଡ଼େ ଯେତେବେଳେ ସାରା ସଂସାର ନିଦରେ ବିଭୋର ଥାଏ। ସେତେବେଳେ ସେ ସମୟକୁ ଫାଙ୍କିଦିଏ। ମୃତ୍ୟୁକୁ ଏଡ଼େଇ ଦିଏ। ଛୋଟ ଛୋଟ ଅନେକ ଆଶା, ଆକାଙ୍କ୍ଷା, ଏରୁଣ୍ଡିବନ୍ଧକୁ ସେ ଡେଇଁଗଲା ବେଳେ ପୂର୍ବପରି ତା' ମନରେ ଶୋଚନା ନାହିଁ। ଆତଙ୍କ ନାହିଁ। ସେ ନିଜର ଭାଗ୍ୟକୁ, ଆସ୍ପର୍ଦ୍ଧାକୁ ତୁଚ୍ଛ କରିଦିଏ। "ତମେ

ତ ଅବଶ କର, ଆମନ୍ତ୍ରଣ କର, ଚେତନାକୁ ନିତି ନୂଆ ନୂଆ ଆନନ୍ଦରେ।'' ସେତ ପୂରାପୂରି ନିଜକୁ ସମର୍ପି ଦେଇଛି। ଏ ରାତି ସରି ଆସୁଛି। ଭୋର୍ ହେବା ଆଗୁଁ ପ୍ରିୟତମ କହନ୍ତି --

''+ + ମୁଁ ତମର
ଜରା ଓ ମରଣ ପାଇଁ ତିଆରି ଦେହରେ
ଦୂରବର୍ତ୍ତୀ ସ୍ୱପ୍ନକର ପ୍ରତିଶ୍ରୁତି ଲେଖେଁ
ମୋ ଚୁମାରେ, ପୁଣି ଏଇ ଜହ୍ନ ଆଲୁଅର
ମନ୍ତ୍ରସିକ୍ତ ହଳଦୀ ପାଣିରେ।''(୪୮)

ଶ୍ରୀରାଧା ଲୌକିକ ପ୍ରୀତି କରିବସିଲେବି, ଚୁମାପାଇଁ କାଙ୍ଗାଳୁଣୀ ହେଲେ ମଧ କି ଆଲିଙ୍ଗନ ପାଇଁ ରୋମାଞ୍ଚିତ ହୋଇ ଉତ୍କଣ୍ଠା ପ୍ରକାଶ କଲେ ମଧ ତାହା ଲୌକିକ ସ୍ତରର ନୁହେଁ କି ଅଲୌକିକ ସ୍ତରର ବି ନୁହେଁ। ଶାସ୍ତ୍ରୀୟ ରାଧା ଓ ରମାକାନ୍ତଙ୍କ ରାଧା ଭିତରେ ଯେଉଁ ପ୍ରଭେଦ ରହିଛି ଏହି ପରିପ୍ରେକ୍ଷୀରେ ପୁନଶ୍ଚ ତର୍ଜମା କରାଯାଇପାରେ।

ଚଣ୍ଡୀଦାସଙ୍କ ରାଧା ଓ ରମାକାନ୍ତଙ୍କ ରାଧା ଉଭୟେ ପ୍ରୀତି ପଥରେ ପାଦ ଦେଇଛନ୍ତି। ଗୋଡ଼ ଖସିଯିବାର ଦରଜକୁ ବି ସହିଛନ୍ତି। ଚଣ୍ଡୀଦାସଙ୍କ ରାଧା ଭାଗ୍ୟକୁ ନିନ୍ଦିଛି। କପାଳରେ ହାତ ଦେଇଛି। ତା' ପାଇଁ ଆଉ ଚାରା କ'ଣ ଅଛି? ମାନ ମହତ ସବୁ ହରେଇ ସାରିଛି। ଜନୈକା ସଖୀକି କହନ୍ତି, ମୁଁ କାହାକୁ ବା ଦୋଷ ଦେବି? ସବୁ ଦୋଷତ ମୋର। ଅଜାଣତରେ ତ ପ୍ରୀତି କଲି। ଅମୃତ ସମୁଦ୍ର ଯେ ବିଷତୁଲ୍ୟ ହେବ ତାହାଥିଲା ତାର ଆଗୋଚର।

''ବନ୍ଧୁ, କାହାରେ ବା ଦିବୋ ଦୋଷ।
ନା ଜାନିଯା ଯଦି କରେଛି ପୀରତି କାହାରେ କରିବ ରୋଷ।
ସୁଧାର ସମୁଦ୍ର ସମୁକେ ଦେଖିଯା ଆଇନୁ ଆପନ ସୁଖେ।
କେ ଜାନେ ଖାଇଲେ ଗରଳ ହଇବେ ପଇବେ ଏତେକ ଦୁଖେ।
ସୋ ଯଦି ଜାନିତାଂଗ ଅଛ ଇଙ୍ଗିତେ ତବ କି ଏମନ କରି।''
(ଚଣ୍ଡୀଦାସ ପଦାବଳୀ)

ଏ ପ୍ରକାର ବିଷମ ପରିଣତିର ଯଦି ସେ ସାମାନ୍ୟ ଇଙ୍ଗିତ ପାଇଥାନ୍ତେ ତେବେ ହୁଏତ ଏ ପ୍ରକାର ପ୍ରୀତି ଜନିତ ଦାରୁଣ ଯନ୍ତ୍ରଣା ଭୋଗ କରିବାର ଭୁଲ୍ କରି ବସିନଥାନ୍ତେ। ପରୋକ୍ଷରେ ରମାକାନ୍ତଙ୍କ ଶ୍ରୀରାଧା ଏକ ଭିନ୍ନ ମାନସିକତାର ପ୍ରତିଭୂ। ସେ ଜୋର ଦେଇ କହନ୍ତି, ''ତମକୁ ବାଛିଲି। ଶୁଣ ମନ ଦେଇ ଶୁଣ -- କାହାରି ଇଚ୍ଛାରେ ନୁହେଁ ମୋ ଇଚ୍ଛାରେ ତମକୁ ବାଛିଲି, / ତମକୁ ରଖିବା ପାଇଁ ଜୀବନର ପ୍ରତି ମୁହୂର୍ତ୍ତରୁ ଅନ୍ୟ ସବୁ ଭାଗ୍ୟ କାଢ଼ିଦେଲି।'' ଏ ପ୍ରୀତି ନିର୍ବାଚନରେ କିଛି ବାଧବାଧକତା ନଥିଲା। ''ତମକୁ ବାଛିବା ପରେ ତମେ ମୋର ସବୁ ଚାହିଦାର ଶ୍ୟାମଳ ସାରାଂଶ ହେଲ।'' ବିଚ୍ଛେଦର ରାତି ଅସନ୍ତୋଷରେ କଟେ। ମିଳନ ରାତି କୁଞ୍ଜବନରେ ମହକି ଉଠେ। ସେ ଯଦି ଫାଙ୍କିଦେଇ ଆଉ କାହା ସମୟକୁ କୃତାର୍ଥ କରନ୍ତି? ଏବଂ ଶ୍ରୀକୃଷ୍ଣ ତାହା କରିବେ ବୋଲି ଶ୍ରୀରାଧା ଭଲ ଭାବରେ ଜାଣନ୍ତି, ତଥାପି ସେଥିପ୍ରତି ଶୋଚନା ନାହିଁ, ଈର୍ଷା ନାହିଁ। ବରଂ ସେ ଯାହା କରିଛନ୍ତି ଠିକ୍ କରିଛନ୍ତି ଏବଂ ଏକ ଆତ୍ମନିଷ୍ଠ ବ୍ୟକ୍ତି-ସ୍ୱାତନ୍ତ୍ର୍ୟକୁ ବଜାୟ ରଖି ନିର୍ବିକଳ୍ପ ଭାବରେ ସେ ଉଚ୍ଚାରଣ କରି ପାରନ୍ତି --

"ଜାଣେ ଦିନେ ମୋ ସମୟ ସ୍ତବ୍ଧ ହେବ, ତାହା ବୋଲି କ'ଣ
ମିଛ ମଣି ରହିଯିବି ଯାହା ବାଛିଥିଲି,
ବାଛିବା ବେଳରେ ଯାହା ଯାହା ସାକ୍ଷୀଥିଲେ ?
କେଉଁଠି ରହିବି ଅବା ତମକୁ ମୋ' ଲୋଡ଼ିବାପଣର
ଭୂତ ଭବିଷ୍ୟତ ବର୍ତ୍ତମାନ ଛାଡ଼ିଦେଲେ ?"(୪୯)

ଏ ପ୍ରକାର ଦମ୍ଭୋକ୍ତି ପ୍ରକାଶ କରୁଥିବା ଚରିତ୍ର ପାଖରେ ବୟସ, ଆୟୁଷ ଓ ମୃତ୍ୟୁର କିଛି ସଂଜ୍ଞା ନଥାଏ। ଆବଶ୍ୟକତା ନଥାଏ। ନିଜ ପରମାୟୁର ଅବଶିଷ୍ଟ ମୁହୂର୍ତ୍ତଗୁଡ଼ିକୁ ସେ ପ୍ରିୟତମକୁ ସମର୍ପି ଦେବାକୁ ପ୍ରସ୍ତୁତ। କେବଳ ଗୋଟିଏ ମୁହୂର୍ତ୍ତ ସେ ମାଗିଛି। ସେହି ମୁହୂର୍ତ୍ତରେ ହିଁ ତାର ସ୍ୱାତନ୍ତ୍ର୍ୟ ଜାରି ରହୁଛି। ଅବଶ୍ୟ ସେ ସ୍ୱାତନ୍ତ୍ର୍ୟରେ ଭଲ ପାଇବାଟା ଆହୁରି ନିବିଡ଼ ହୋଇ ଉଠୁଛି। "କିନ୍ତୁ ସେ ମୁହୂର୍ତ୍ତେ ଆଦ୍ୟଠାରୁ ପ୍ରାନ୍ତଯାଏଁ-ତମେ ହିଁ ଆକାଶ ପରି ବ୍ୟାପି ରହିଥାଅ।" ସେତିକିରେ ମନ ବୁଝେନି। ଆକାଶତ ମଥା ଉପରୁ କେତେ ଦୂରରେ। ମେଘ ପରି ତାର ତ୍ରିକାଳରେ ଘୋଟି ରହିବାକୁ ଇଚ୍ଛା। ମୃତ୍ୟୁ ପଥରେ ବି ସେହି ବର୍ଷା ବିନ୍ଦୁରେ ସେ ସିକ୍ତ ହେବାକୁ ଚାହାନ୍ତି। ଅନୁଭବର ସାନ୍ଦ୍ରତା ତୀବ୍ର ହୋଇ ଉଠିଛି --

"ତମେ ଆଉ କିଛି ନୁହଁ, ଖାଲି ମୋ ଚାହିଦା
ମୁତାବକ ଘନୀଭୂତ ନୀଳ,
ସବୁ ଅର୍ଦ୍ଧ ପରିଚିତ ଅପରିଚିତ ଓ
ପରିଚିତ ଆକାଙ୍କ୍ଷାର ନୀଳ ଯୋଗଫଳ।
ନୀଳ ହେଲ କାହିଁକି ନା ଅଧିକାଂଶ ବେଳେ
ନୀଳ ଶାଢ଼ୀ ପରିଧାନ ମୋର,
ନୀଳ ହେଲ କାହିଁକି ନା ମୋ ଇଚ୍ଛା ନୁହେଁ
ତମେ ହୁଅ ଅଳଗା ରଙ୍ଗର।"(୫୦)

ଶ୍ରୀକୃଷ୍ଣଙ୍କ ବିଚ୍ଛେଦରେ ସେ ବି କମ ସନ୍ତପ୍ତା ନୁହନ୍ତି। କମ ପ୍ରତୀକ୍ଷା କରି ନାହାନ୍ତି। ସେ ଏକଥା ନିଶ୍ଚିତ ଭାବରେ ଜାଣନ୍ତି ଯେ ପ୍ରିୟତମ ନିଶ୍ଚୟ ଆସିବେ। ତାଙ୍କର କଳ୍ପନାଶକ୍ତି ପ୍ରଲମ୍ବିତ ହୋଇଯାଏ। ସେ ହୁଏତ ଆସିବେ ଆସିବେ ବୋଲି ହେଉଥିବେ। ଚନ୍ଦନଟିପା ଲଗାଉଥିବେ। ହୁଏତ ଅସୁସ୍ଥ ହୋଇ ଯାଉଥିବେ। ବାଟରେ ହଠାତ୍ ନଈବଢ଼ି ଆସିଯାଇଥିବ କିମ୍ବା ତାଙ୍କୁ କିଏ ମିଛରେ କହିଦେଇଥିବ ଯେ ସେ (ମୁଁ) ଆଜି ଘରୁ ବାହାରି ପାରିବେ ନାହିଁ। କିନ୍ତୁ "ଏତେ ଚାହିଁ ରହିବାକି ମୁଁ ମରିବା ଯାଏଁ / ଖାଲି ଚାହିଁରହିବା ହିଁ ହୋଇ ରହିଯିବ ?" ବିଳମ୍ବ ଘଟିଛି। ରାଧା ଅସନ୍ତୋଷ ପ୍ରକାଶ କରିଛନ୍ତି ସତ କିନ୍ତୁ ଆକୃତିରେ ନ ହେଲେ ବି ଚେତନା ରୂପରେ ସେ ତାଙ୍କ ସହିତ ମିଳିତ ହୁଅନ୍ତି। ପ୍ରିୟତମକୁ ଭର୍ତ୍ସନା କରିଥିବାରୁ ସେ ଅନୁତପ୍ତା। ଆନ୍ତରିକତାର ସହିତ କହନ୍ତି -- "ଆହା ମୁଁ ନ ବୁଝି ପାରି ଜୀବନ ଗୋଟାକ / କେତେ ରୁଷିଲି ମୋ ଜୀବ-ଜୀବନ ଉପରେ।"

ତେଣୁ ସେହି ଜୀବ-ଜୀବନକୁ ବେଶ କରିଦେବା ପାଇଁ ତାଙ୍କର ପ୍ରବଳ ଇଚ୍ଛା। "ଚନ୍ଦନବେଶ ମୁଁ କରନ୍ତି ମୋର ହେଉଛି ମନ" -- ଏଠି କିନ୍ତୁ ଗୋଳା ଚନ୍ଦନର ପ୍ରୟୋଜନ

ନାହିଁ। ମଲ୍ଲୀମାଳ ଶ୍ୟାମକୁ ଦେଇ ମନ ତୋଷିବାର ନାହିଁ। ନିଜର ଉପାଦାନ ମାନଙ୍କରେ ସେ ପ୍ରାଣପ୍ରିୟକୁ ସଜେଇ ଦେବେ। ରଂଗେଇ ଦେବେ। ନିଜ ଦୃଷ୍ଟିରେ ଧୋଇଦେଇ ଦୀର୍ଘ ନିଶ୍ୱାସରେ ପୋଛି ଦେବେ। ସାନ୍ତ୍ୱନାର ଚନ୍ଦନ ଓ କାନ୍ଦ କାନ୍ଦ ଭାବର କୁଙ୍କୁମରେ ମଥାରେ ଫୁଲମାଳ ଖଂଜିଦେବେ। ଆଖିରେ ତାଙ୍କ ମନ ଅଂଧାରର କଜ୍ଜ୍ୱଳ ଏବଂ ମଥାରେ ବିନ୍ଦ୍ର ରକ୍ତର ବିନ୍ଦୁରେ ତିଳକଟିଏ ଖଂଜି ଦେବେ। ଚମକି ପଡ଼ିବାର ମାଣିକ୍ୟ ଖଚିତ ମୁକୁଟ, ଲଜ୍ଜାରୁଣ ସ୍ୱପ୍ନମାନଙ୍କର ଅଳତା ଏବଂ ନଦେଇ ପାରିଥିବା ଚୁମାଙ୍କର ମାଳାଟିଏ ସେ ତାଙ୍କ ଗଳାରେ ପିନ୍ଧାଇ ଦେବେ। ଶେଷରେ,

"ମୋର ଶିରା ପ୍ରଶିରାରେ ଭିଣା ଝୀନବାସ
ତମକୁ ପିନ୍ଧାଇଦେବି, ଏପରି ତମକୁ
ବେଶ କରି ସାରି ଫେରିଯିବି ମୁଁ ଯେଉଁଠୁ
ଆସିଥିଲି ପୁଣି ଥରେ ସେ ନିଷ୍ଫଳତାକୁ।"(୫୧)

ଏହି ପ୍ରକାର ଭାବନା ପ୍ରାଚୀନ ବର୍ଣ୍ଣନାରେ ରହିଥିଲେ ମଧ୍ୟ ରମାକାନ୍ତଙ୍କର ଚିତ୍ରଣ ଅଭିନବ-ଆତ୍ମିକ। ପ୍ରିୟତମର ପ୍ରୀତି ପାଇଁ, ସାନ୍ତ୍ୱନା ପାଇଁ ସେ 'କିଛିଟା ଆଶ୍ୱାସନା ଦେବା ପୂର୍ବକ ତୁଷ୍ଟି ବିଧାନ କରିବେ ଏବଂ ପୁଣି ସେଇ ନିଷ୍ଫଳତାକୁ -- ଶୂନ୍ୟକୁ ଫେରିଯିବେ। ଏହି ଶୂନ୍ୟତା କ'ଣ ସେଇ ଲୋଡ଼ିବା ପଣର ନୁହେଁ କି ? କବି ଅମରୁଙ୍କ ଭାଷାରେ

"ଦୀର୍ଘା ବନ୍ଦନମାଳିକା ବିରଚିତା ଦୃଷ୍ଟ୍ୟୈବ ନେନ୍ଦୀବରୈଃ।
ପୁଷ୍ପାନାଂ ପ୍ରକରଃ ସ୍ମିତେନ ରଚିତୋନୋକୁନ୍ଦଜାତ୍ୟାଦିଭିଃ।
ଦତ୍ତଃ ସ୍ୱେଦମୁଚା ପୟୋଧରଭରେଣାର୍ଘ୍ୟୋ ନ କୁମ୍ଭୟସ।
ସ୍ୱୈରେ ବାବୟବୈଃ ପ୍ରିୟସ୍ୟ ବିଶତସ୍ତନ୍ୱା କୃତଂ ମଙ୍ଗଳମ୍।"
(ଅମରୁ ଶତକ)

ନାୟିକା ନାୟକର ଗୃହପ୍ରବେଶ ଜନିତ ମଙ୍ଗଳକର୍ମ ଏହିପରି ନିଜର ଅବୟବ ଦ୍ୱାରା ସାଧିତ କରିବାରେ ପ୍ରୟାସୀ। ପଦ୍ମମାଳାରେ ନୁହେଁ, ନିଜ ଦୃଷ୍ଟି ଦ୍ୱାରା ରଚିତ ବନ୍ଦନମାଳାରେ; କୁନ୍ଦ-ଜାଇ ଇତ୍ୟାଦି ପୁଷ୍ପରେ ନୁହେଁ, ସ୍ମିତ ହାସ୍ୟର କୁସୁମରେ, କୁମ୍ଭଜଳରେ ନୁହେଁ, ପୟୋଧର କ୍ଷରିତ ସ୍ୱେଦଧାରାର ଅର୍ଘ୍ୟରେ। ଏହାଦ୍ୱାରା ପ୍ରାୟତଃ ପ୍ରଭାବିତ ହୋଇ କବି ବିଦ୍ୟାପତି ଅନୁରୂପ ଭାବେ ନାୟିକା ଶ୍ରୀରାଧାଙ୍କ ମୁଖରେ ଅଭୀଷ୍ଟଙ୍କ ପ୍ରତି ପ୍ରକାଶ କରିଛନ୍ତି

"ପିୟା ଯବ ଆଓବଇ ମଝୁ ଗେହେ।
ମଙ୍ଗଳ ଯତହୁଁ କରିବ ନିଜ ଦେହେ॥
କନଆ କୁମ୍ଭ କରି କୁଚଯୁଗ ରାଖି॥
ଦରପନ ଧରବ କାଜର ଦେଇ ଆଁଖି।
ବେଦି ବାନାଓବ ହମ ଅପନ ଅଙ୍ଗମେ॥
ଝାଡୁ କରବ ତାହେ ଚିକୁର ବିଛାନେ॥
କଦଲି ରୋପବ ହାମ ଗରୁଆ ନିତମ୍ବେ।
ଆମ ପଲ୍ଲବ ତାହେ କିଙ୍କିନି ସୁଝମ୍ପେ।'
(ବିଦ୍ୟାପତି ଗୀତ ସଂଗ୍ରହ)

ଅମରୁ ଓ ବିଦ୍ୟାପତିଙ୍କ ନାୟିକା କାମଦଗ୍ଧା। ସେମାନେ ପ୍ରିୟଙ୍କୁ ଅଭିନନ୍ଦନ ଜଣାନ୍ତି ଆପଣାର ଯୌବନୋଦ୍ଧତ ଅଙ୍ଗପ୍ରତ୍ୟଙ୍ଗ ଦ୍ୱାରା। ଦୈହିକ ଲାଳସା ଚରିତାର୍ଥ ହୋଇଗଲା ପରେ ଆଉ ସେ ମାଙ୍ଗଲ୍ୟ କର୍ମର କି ସ୍ଥାୟିତ୍ୱ? ରମାକାନ୍ତଙ୍କ ନାୟିକା କିନ୍ତୁ ଏମାନଙ୍କ ପରି ବାହ୍ୟିକ ଉପଚାର କରି ନାହାନ୍ତି। ସେ ତ ନିଜକୁ ଛିନ୍ନଭିନ୍ନ କରି ଦିଅନ୍ତି। ସେଠି କେବଳ ଦୀର୍ଘ ନିଃଶ୍ୱାସ, ହତାଶା, ଅନିଦ୍ରା ଓ ରକ୍ତାକ୍ତ ହେବାର ଅନୁଭବ।

ଶ୍ରୀରାଧା ତ ଅତିମାତ୍ରାରେ ସବୁପ୍ରତି ସଚେତନ। ବରଂ ଶ୍ରୀରାଧାଙ୍କ ଏହି ସ୍ଥିତାବସ୍ଥାକୁ ଆଦି ଐତିହାସିକ ଦାର୍ଶନିକ ହିରୋଡ଼ଟସ୍‌ଙ୍କ ଏକ ଉକ୍ତିରେ ଆହୁରି ଅନୁଭବ କରିହେବ--Of all men's miseries the bitterest is this, to know so much and to have control over nothing". ଶ୍ରୀରାଧା ନିଜ ଦମ୍ଭୋକ୍ତି ପ୍ରକାଶ କଲେ ମଧ୍ୟ ସେ କମ୍ ଅସହାୟା ନୁହନ୍ତି। ଏହି ଅସହାୟତାରୁ ମୁକ୍ତି ପାଇବା ପାଇଁ ପୁଣି ବେଳେବେଳେ ସେ ସର୍ବାନ୍ତଃକରଣରେ ପ୍ରାଣପ୍ରିୟ ସହିତ ମିଶିଯିବାକୁ ଚାହେଁ, ଯଦିଓ ତାହା ହୋଇନାହିଁ। ସେହି ହତାଶାର ମୂର୍ତ୍ତିମନ୍ତ ରୂପହିଁ ନିଜେ ପ୍ରିୟତମ। "ତମେ ତ ମୋ ହତାଶାର ପରିପୂର୍ଣ୍ଣ ରୂପ / ସବୁବେଳେ ସବୁଠାରେ ମୋର / ବାହୁରେ ତମର ବାହୁ ଛନ୍ଦି ନାଚୁଥିବି / ମୋ ନାଆଁ ପଛକେ ମନେ ନ ଥାଉ ତମର।"(୫୨) ଶ୍ରୀରାଧା ଜାଣନ୍ତି ଯେ କୃଷ୍ଣଚନ୍ଦ୍ର ତାଙ୍କୁ ଭଲ ପାଆନ୍ତି। ସେ ତାଙ୍କର ଐଶ୍ୱରିକ ଗୁଣ ସଂପର୍କରେ ମଧ୍ୟ ସଚେତନ, 'ତମେ ଇଚ୍ଛା କରିଥିଲେ ନକ୍ଷତ୍ରମାନେ ତ ତମ ପାଇଁ ବାଟ ଛାଡ଼ି ଘୁଞ୍ଚି ଯାଉଥାନ୍ତେ।' ଶ୍ରୀରାଧା ବି ନିଜ କ୍ଷୁଦ୍ରତା ବିଷୟରେ ଅବହିତ। ତଥାପି ପ୍ରୀତି ନିକଟରେ ଆତ୍ମବିଶ୍ୱାସ କମ୍ ନୁହେଁ।

"ଯେତେ ଥର ଇଚ୍ଛା ହେବ ସେତେଥର ଅନ୍ଧାର ଭିତରୁ
ତମକୁ ଓଟାରି ଆଣି ମୋର ଅଗଣାକୁ
ଆଜ୍ଞାଦେବି ଠିଆ ହୁଅ ଏଠି ଯେଉଁଠାରେ
ତମ ପୂରା ପ୍ରତିବିମ୍ବ ନଈରେ ପଡ଼ିବ,
କିମ୍ବା ସେଠି ଯେଉଁଠାରେ ପାହାଡ଼ ସେପାଖୁ
ଜହ୍ନ ଉଏଁ, ବା ଅନ୍ୟ ଯେଉଁଠାରେ ରାତି
ପାହି ପାରେ ନାହିଁ ମୋର ବିନାନୁମତିରେ।"(୫୩)

ବା, "ମୁଁ ଜାଣିଛି ତମେ ମତେ ଭଲ ପାଅ ତେଣୁ
ତମେ ଦିନେ ମୋ ମନରେ ଜାଗା ହେଲାଭଳି ସ୍ମୃତିଟିଏ
ରଖି ଦେଇ ମରିଯିବ, ଇଚ୍ଛା କଲେ ତା'ର
ଓଠ ଚିପି ଦେଉଥିବି, ଛାତିରେ ଆଉଜି
ଯାହା ଇଚ୍ଛା ହେବ ତାହା କହି ଯାଉଥିବି,
ମୋ' ଦେହ ଉପରୁ ତମ ଅମଳିନ ହାତ
ଠେଲି ଦେବି ଯେତେଥର ଇଚ୍ଛା ସେତେଥର।"(୫୪)

ଶ୍ରୀକୃଷ୍ଣ ସାଂଘାତିକ ଭାବେ ଆହତ ହୋଇଛନ୍ତି (ଜାରା ଶବର କର୍ତ୍ତୃକ?)। ଏ ଖବର ଶୁଣିଲା ପରେ ସେ ସେଠାକୁ ଉଡ଼ିଯିବାକୁ ଚାହାନ୍ତି। ସେହି ସମୟରେ ଶରବିଦ୍ଧ ଯନ୍ତଣାକୁ ସେ ପ୍ରାଣେ ପ୍ରାଣେ ଅନୁଭବ କରୁଥିବେ। ସେତେବେଳେ ସେ ଭୁଲିଯାଇଥିବେ ଯେ 'ନକ୍ଷତ୍ର

ମଣ୍ଡଳ ତାଙ୍କ ଆଜ୍ଞାଧୀନ'' ବୋଲି। ଛାଟିପିଟି ହୋଇ ଖୋଜିଲା ଖୋଜିଲା ଆଖିରେ ଶ୍ରୀରାଧାଙ୍କୁ ଚାହୁଁଥିବେ। ସେଠି ସେ ପହଞ୍ଚି ଯାଆନ୍ତା କି !! ''ତମର ଦେହର ପ୍ରତିକୋଣେ ରଖିଯାଚି / ତମର ସମସ୍ତଲୀଳା ଅପେକ୍ଷା ଆହୁରି / ଆଦିମ ଲୋଡ଼ିବା ଭାବ।''

କୃଷ୍ଣଚନ୍ଦ୍ରଙ୍କର ଦେହାନ୍ତ ହେଲା ପରେ ଶ୍ରୀରାଧା ଆଦୌ ବିବ୍ରତ ନୁହନ୍ତି। ସେ ବରଂ ପ୍ରୀତି ପାଇଁ ପଥ ଦୁର୍ଗମ ହୋଇଗଲା ବୋଲି ଅନୁଭବ କରନ୍ତି। କବିତାର ଶେଷ ଭାଗରେ ରାଧା ହୁଏତ କାୟିକ ଭାବରେ ତାଙ୍କ ସହିତ ମିଶି ପାରିନାହାନ୍ତି। କାୟାର ବି ପ୍ରୟୋଜନ ନାହିଁ। ସେ ଯେଉଁ ଲୋଡ଼ିବାପଣ ଭିତରେ ଯାତ୍ରାରମ୍ଭ କରିଥିଲେ ସେ ଯାତ୍ରା ତ ସେମିତି ଚାଲୁ ରହିଛି। ରହିବ। ରହିବାଟା ହିଁ ତ ଜୀବନ। ଏହାହିଁ ପ୍ରକୃତ ଅନ୍ବେଷଣ। ଆତ୍ମଜିଜ୍ଞାସା। ଜୀବନ ମରଣର ଅନୁଭବ ଠାରୁ ଏକ ଭିନ୍ନ ସରହଦର ଅନୁଭବରେ ସେ ସେମିତି ରହିଯାଇଛି।

''ଯେତେବେଳେ ମୁଁ ତମକୁ ଭିଡ଼ି ଧରିଥିବି
ମୋ ଛାତିରେ, ଯେତେବେଳେ ମୋ ସର୍ବାଙ୍ଗ ସାରା
ତମ ହାତ ବୁଲିଯାଉଥିବ,
ଯେତେବେଳେ ବାଧା ଦେବା କିମ୍ବା ପଦେ କଥା କହିବାକୁ
ମୋର ଆଉ ସାମର୍ଥ୍ୟ ନ ଥିବ,
ଯେତେବେଳେ ମରି ପାରୁନଥିବି ଅଥଚ୍
ଜୀଇଁବା ବି ପୂରା ଅସମ୍ଭବ।''୫୫

ରମାକାନ୍ତ ରଥଙ୍କ କାବ୍ୟପୁରୁଷ ତ ମୂଳରୁ ମୃତ୍ୟୁଚେତନାଗ୍ରସ୍ତ। ପ୍ରାରମ୍ଭିକ ପର୍ଯ୍ୟାୟରେ ମୃତ୍ୟୁକାତରତାରେ ଜଡ଼ସଡ଼। ତା' ପରେ ଧୀରେ ଧୀରେ ସେ ଭୟର କୋକୁଆ ରୂପଟି ଅନ୍ତର୍ହିତ ହୋଇଯାଇ ତା' ସ୍ଥାନରେ ନବନୀରଦ ଶ୍ୟାମଳ ସାରାଂଶ ହିଁ ସାର ହୁଏ। ଶ୍ରୀରାଧାରେ ଏହି ମୃତ୍ୟୁ ସଚେତନତା ଅଦ୍ଭୁତ, ଯେମିତି ତାହା ବ୍ୟତିରେକେ ଜୀବନ ନାହିଁ। ''ଜୀବନ ସହିତ ମୃତ୍ୟୁକୁ ମିଶାଇ ପାରିଲେ ଜୀବନ ସ୍ବନିଷ୍ଠ ହୁଏ। ମୃତ୍ୟୁକୁ ଢ଼ାଙ୍କି ଜୀବନ ବିତାଇବା ପରନିଷ୍ଠ ଜୀବନ। ++ ମୃତ୍ୟୁ ମଣିଷର ସୀମାବଦ୍ଧତାର ରାଜସାକ୍ଷୀ। ଜୀବନ ଓ ଜଗତର ଉଦ୍ଭଟତାର ଜ୍ବଳନ୍ତ ପ୍ରମାଣ। ++ ମଣିଷ ଐଶ୍ୱର୍ଯ୍ୟହୀନ। ତାହାର ଭିତ୍ତି ବିଶାଳ ନୁହେଁ। ତାହା ମୃତ୍ତିକାରୁ ଜାତ, ଆଦ୍ୟରୁ ପତିତ। ତାର ଧମନୀରେ ନୈରାଶ୍ୟର ରକ୍ତ। ଐଶ୍ୱର୍ଯ୍ୟହୀନ ଜଗତରେ ଛିଟିକି ପଡ଼ିଥିବା ଓ ତାର ରାଜସୀ ଭାବନା ମୃତ୍ୟୁକୁ ଗ୍ରହଣ କରିନେବାରେ ଯତ୍ ସାମାନ୍ୟ ବଡ଼ପଣ ନିହିତ।''(୫୬) ଏହି ଅସ୍ତିତ୍ୱବାଦୀ ଚେତନା ଦ୍ୱାରା ରମାକାନ୍ତଙ୍କ ଶ୍ରୀରାଧା ଆକ୍ରାନ୍ତ। ଉଦ୍ଭଟ ମଣିଷ ପରି ଶ୍ରୀରାଧା ମୃତ୍ୟୁ ସଚେତନତା ଭିତରେ ଆବଦ୍ଧ ପୁଣି ମୃତ୍ୟୁକୁ ଅସ୍ୱୀକାର କରେ; ନିୟତି ନିର୍ଦ୍ଦିଷ୍ଟତାକୁ ସ୍ୱୀକାର କଲେ ମଧ ପୁଣି ଅଗ୍ରାହ୍ୟ କରେ। ତା' ବିରୁଦ୍ଧରେ ଖଡ୍‌ଗ ଉତ୍ତୋଳନ କରେ। ଏହି ଦ୍ୱିଧାଗ୍ରସ୍ତ ଦ୍ୱୈତଚେତନା ଭିତରେ ହିଁ ରାଧାଙ୍କ ସଂସ୍ଥିତି। ତେଣୁ ଏହି ଅବସ୍ଥାକୁ ଶୂନ୍ୟତା ବା ନାସ୍ତିତ୍ୱ (Negation) କୁହାଯାଇଛି ଯାହା ଅସ୍ତିତ୍ୱବାଦର ମର୍ମକଥା। ଏଠାରେ ଜରା, ମୃତ୍ୟୁ, ପ୍ରେମ, ବିଚ୍ଛେଦ, ଆନନ୍ଦ, ଯନ୍ତ୍ରଣା, ପରମସୁଖ, ମହାଭାବ -- ଏସବୁର କିଛି ପ୍ରଭାବ ନଥାଏ। ଏପରିକି ଈଶ୍ୱରଙ୍କର ମଧ ସ୍ଥିତି ନଥାଏ। ସେତ ନିଜେ ନିଜେ ଏକ ଶୂନ୍ୟତା। ଶ୍ରୀକୃଷ୍ଣ ଆସିବାର ଖବର ଶ୍ରୀରାଧା ପାଇସାରିଲେଣି। ସେତେବେଳକୁ ସେତ

ଗୋଟାପଣେ ନିଜକୁ ହରେଇ ସାରିଲେଣି। ସେ ସଂବାଦ ଶୁଣି ପ୍ରକୃତି ଆଜି ବଦଳିଯାଇଛି --

"ସେଦିନ ସକାଳେ ସବୁ-ନଈ ଆଉ ନଈକୂଳ ବାଲି
ଗଛପତ୍ର ପାହାଡ଼ ଆକାଶ-
ଅଲଗା ଦିଶିଲେ, ସତେକି ସେମାନେ
ଅବସ୍ଥିତ କେଉଁ ଏକ ଭବିଷ୍ୟତ କାଳେ
ଯେଉଁଠାରେ ଝୁଣ୍ଟିଝୁଣ୍ଟି ଚାଲିବାର କ୍ଳେଶ ସରିଯାଏ,
ଯେଉଁଠାରେ ବିଶ୍ରାମର, ପୁନର୍ମିଳନର
ଆଲୋକିତ ସୁଖ ରହିଥାଏ। (୫୭)

ଅନ୍ତରୂପ ଭାବେ ମୀରାବାଈଙ୍କ ପଦରେ ପ୍ରେମର ଉତ୍ସୁକତା, ପ୍ରିୟମିଳନ ଜନିତ ଆତୁରତା ତଥା ପ୍ରିୟଙ୍କର ସମାଗମର ଦୃଢ଼ ନିଷ୍ଠାକୁ ସେ ଏତେ ସ୍ୱାଭାବିକ ଭାବରେ ଚିତ୍ରିତ କରିଛନ୍ତି ଯେ ସମଧର୍ମା ମନରେ ଆନନ୍ଦର ମୟୂର ନର୍ତ୍ତନଶୀଳ ହୋଇଉଠେ। ଯେତେବେଳେ ମୀରା ଶୁଣିଦେଲେ ଯେ ଆଜି ହରି ଆସିବେ, ସେତେବେଳେ ପ୍ରକୃତିର କୋଣେ କୋଣେ ଏହି ଶବ୍ଦ ଗୁଞ୍ଜରି ଉଠିଲା। ସେ ପ୍ରାସାଦ ଉପରେ ରାସ୍ତାକୁ ଚାହିଁ ରହନ୍ତି ଓ ପଚାରନ୍ତି ଆମର ମହାରାଜ କେବେ ଆସିବେ? ଧରିତ୍ରୀ ତାଙ୍କର ସ୍ୱାଗତ ଲାଗି ନବୀନା ସୁନ୍ଦର ରୂପଧାରଣ କରି ଆପଣାକୁ ସଜେଇ ରଖିଲା। ସାରା ପୃଥିବୀରେ ବ୍ୟାପ୍ତ ଅଲୌକିକ ପ୍ରେମକୁ ପରଖୁଥିବା ମୀରା ଆନନ୍ଦରେ ଗାଇ ଉଠିଲେ --

"ସୁଣ୍ୟାରୀ ମ୍ହାଣୋ ହରି ଆୱାଂଗା ଆଜ।
ମ୍ହେଲା ଚଢ଼ଚଢ଼ ଜୋବାଂ ସଜଣୀ, କବ ଆୱାଂ ମହାରାଜ।
ଦାଦୁର ମୋର ପପୈୟା ବୋଲ୍ୟାଂ କୋଇଲ୍ ମଧୁରାଂ ସାଜ।
ଉମଗ୍ୟା ଇଂଦ ଚହୁଂ ଦିସି ବରସାଂ ଦାମଣ ଛାଡ଼୍ୟାଂ ତାଜ।
ଧରତୀ ରୂପ ନୱାଂନୱାଂ ଧରୟା ଇଂଦ ମିଲଣରେ କାଜ।"

ସେଦିନ ଶ୍ରୀରାଧା ନଈକୁ ଗାଧୋଇ ଯାଇଛନ୍ତି। ପାଣି ଭିତରେ ସେ ଅନୁଭବ କରନ୍ତି ସତେ ଯେପରି ସେ ଏକ ଭିନ୍ନ ସତ୍ତା -- ତାଙ୍କ ଗୋଡ଼, ହାତ ପ୍ରଭୃତି ଅଙ୍ଗପ୍ରତ୍ୟଙ୍ଗ, ଶରୀର, ଆଶା, ହତାଶା, ସ୍ୱାମୀ, ଘରଦ୍ୱାର, ଗାଈଗୋରୁ ଇତ୍ୟାଦିଠାରୁ ସେ ଯେମିତି ଅଲଗା। ସେତ ନିଜେ ନିଜର ନୁହଁ। ତା'ର ଇତିହାସ ବି ତାର ନୁହଁ।

"ଏ ବନ୍ଧୁ ବା ମୋର ନୁହେଁ, ଯେଉଁ ମୃତ୍ୟୁ ଦିନେ
ଅବଶ୍ୟ ଆସିବ ସେ ମୃତ୍ୟୁ ବି ନୁହେଁ।
ମୁଁ ସର୍ବଦା କାଙ୍ଗାଳୁଣୀ, ଅନ୍ତରୀକ୍ଷ ଯାଏଁ
ପ୍ରସାରିତ ମୋର ଦୁଇ ସୀମାହୀନ ବାହୁଙ୍କ ଭିତରେ
ମୁଁ ଉଦ୍‌ଗ୍ରୀବ ଶୂନ୍ୟସ୍ଥାନଟିଏ।
ଖାଲି ଶୂନ୍ୟ ସ୍ଥାନଟିଏ ହୋଇ ରହିଯିବା
କାହା କାହା କପାଳେତ ଥାଏ।" (୫୮)

ଏ ଶୂନ୍ୟତା ପୁଣି ଆଉ ଏକ ଶୂନ୍ୟତାରେ ବି ଲୀନ ହୋଇଯାଉଛି। ତେଣୁ ଶ୍ରୀରାଧାଙ୍କ ଶୂନ୍ୟତା ତାଙ୍କର ପ୍ରଥମ ସ୍ପର୍ଶରେ ମୁଖରିତ ହୋଇ ଉଠେ। ଏବଂ 'ପ୍ରତ୍ୟେକ ଦିଗରୁ / ତମେ

ମତେ ଡାକୁଥିବା ପରି ଜଣାଗଲା। ମୁଁ ଯାହା ହୁଅନ୍ତି ତା'ର ଅକାଂକ୍ଷା ଭିତରୁ।' ତେଣୁ ଏହି ଯେଉଁ ରହସ୍ୟମୟ ଚେତନା ତା' ଭିତରେ ଶ୍ୟାମ କ'ଣ ମୃତ୍ୟୁ? ନା ମୃତ୍ୟୁ ଶ୍ୟାମ? ଏହି ଶୂନ୍ୟ ଚେତନା ଭିତରେ ଉଭୟ ଜୀବନ ଓ ମୃତ୍ୟୁ ଏକାକାର ହୋଇଗଲା ପରି ଲାଗେ। ଯଦିଓ ସେ ପାର୍ଥିବ ମୃତ୍ୟୁ ସଂପର୍କରେ ସଚେତନ, ତଥାପି, 'ତମେ ଯେତେଥର / ମତେ ଛୁଅଁ ସେ ତେଥର ବୟଃପ୍ରାପ୍ତି ହେବା ଉତ୍ସବରେ ମୋ' ମୃତ୍ୟୁ ମୁଖର।'' ଶ୍ରୀରାଧାଙ୍କର ଦ୍ୱୈତ ଚେତନା ଭିତରେ ମୃତ୍ୟୁ ଚେତନା ପାର୍ଥିବ ସ୍ତରରେ କମ ଚାପ ପକାଇନି। ସେ ଜାଣନ୍ତି ଯେ ତାଙ୍କର ବୟସ ଆସି ଆଖର ହେଲାଣି। ମୃତ୍ୟୁ ଓ ପ୍ରେମର କାରଣ ବୁଝାଇବାକୁ ରାଧା ତ ପୁରାପୁରି ଅକ୍ଷମ। ସଖୀ ଜଣେ ଯେତେବେଳେ ପ୍ରଶ୍ନ କରିଛି ଯେ ସେ କୃଷ୍ଣଙ୍କୁ କାହିଁ ଏତେ ଭଲ ପାଏ ବୋଲି, ସେତେବେଳେ --

''ଖାଲି ତାରା ଖୁନ୍ଦି ହୋଇଥିବା
ଆକାଶକୁ ମୁଁ ଚାହିଁ ରହିଲି।
ହଠାତ୍ କାହିଁକି ହାଡ଼ ଭିତରେ ଭିତରେ
ଖୁବ୍ ଥଣ୍ଡା ଲାଗିଲା ଓ ହଠାତ୍ କାହିଁକି
ଗୋଟାପଣେ ଥରିଗଲି ପାଟିପଡ଼ିଗଲା।
କାକର ପବନ ଯୋଗୁଁ ଜମା ନୁହେଁ, ମତେ ଲାଗିଲା ଯେ
ତାହେଲେ ଅସଂଖ୍ୟ ରାତି ଆଗରୁ ଏପରି
ରାତିଟିଏ ଆସିବ ଯେ ମୁଁ ଆଉ ନଥିବି
ତାରାମାନେ ଥିବେ କିନ୍ତୁ ଠିକ୍ ଆଜିପରି।
କିପରି ବୁଝାଇଥାନ୍ତି ଏଥିପାଇଁ, ଖାଲି ଏଥିପାଇଁ
ତମେ ଏତେ ପ୍ରିୟତମ ମୋର,
କାହାକୁ ବୁଝାଇ ହେବ ପ୍ରକୃତ କାରଣ
ଆତଙ୍କର, ଭଲ ପାଇବାର?''(୫୯)

ନୀରବତା-କୋଳାହଳ, ଉତ୍ତାପ ଓ ଶୀତଳତା ଭିତରେ ସେ ଛଟପଟ, ସେ ପ୍ରିୟତମଙ୍କ ସ୍ୱର ଶୁଣିଲା ପରେ ନୀରବତା କ'ଣ ବୋଲି ବୁଝି ପାରନ୍ତି। ଶୀତଳତା କ'ଣ ଜାଣନ୍ତି ଯେତେବେଳେ ତାଙ୍କ କପାଳକୁ ସେ ଛୁଇଁ ଦିଅନ୍ତି। 'ଚନ୍ଦନ ଓ ତୁଷାରର ସମୁଦ୍ର ଭିତରେ ମୋ ହାତ ଅଟକି ରହିଗଲା କାଲକାଳ।' ତା' ଆୟୁଷତ ଗଡ଼ି ଗଡ଼ି ଯାଏ 'ଗୋଟିଏ ଅନୁପସ୍ଥିତିରୁ ଆଉ ଏକ ଅନୁପସ୍ଥିତିକୁ' ଏବଂ ଗୋଟିଏ ଅଶ୍ରୁତପୂର୍ବ ଆର୍ତ୍ତନାଦଠାରୁ ତା'ର ନିଃସଙ୍ଗତାର ନଈ କୂଳକୁ। ତାଙ୍କର ଉପସ୍ଥିତି ସଂପର୍କରେ ଶ୍ରୀରାଧା ବେଳେବେଳେ ସନ୍ଦେହରେ ପଡ଼ିଲେବି ଏବେ ସେହି ସର୍ବବ୍ୟାପକତ୍ୱକୁ ସେ ବେଶ୍ ହୃଦୟଙ୍ଗମ କରି ପାରନ୍ତି -- ''ତମେ କ'ଣ ଉପସ୍ଥିତ ନୁହଁ ଯେତେବେଳେ / ତମର ଅନୁପସ୍ଥିତି ବ୍ୟାପି ରହିଥାଏ। ଅଚେତନ ସମୟର ଦିଗ୍‌ବିଦିଗରେ।'' (୬୦)

ରାଧା କୃଷ୍ଣଙ୍କର (ନା ମୃତ୍ୟୁର? ନା ସେଇ ରହସ୍ୟମୟ ଚେତନାର?) ରୂପକୁ ବିବିଧତାରେ ଦେଖିଲେ ବି ଠିକ କଥାଟି ଯେମିତି କହିପାରୁ ନାହାନ୍ତି। କେମିତିବା କହିହେବ? ବିପରୀତ ଭାବକୁ ସେ ହୁଏତ ସମୟେ ସମୟେ ତାଙ୍କଠାରେ ଆରୋପ କରିଛନ୍ତି -- ''ପଥରର ସୁବାସ ହେ / ହାହାକାର ପ୍ରତ୍ୟେକ ଫୁଲର। ଚନ୍ଦ୍ରର ଅସହ୍ୟ ତାପ। ଶୀତଳତା ଜ୍ୱଳନ୍ତ

ସୂର୍ଯ୍ୟର।'' କିନ୍ତୁ ପରବର୍ତ୍ତୀ କ୍ଷେତ୍ରରେ --

''ତମକୁ କିପରି କହ ବର୍ଣ୍ଣନା କରିବି ?
କିପରି ବର୍ଣ୍ଣନା କରିହେବ ନିଶାର୍ଦ୍ଧରେ
ଝରଝର ବର୍ଷା ହେବା ପରି ସ୍ମୃତିଟିଏ ?
କିପରି ବର୍ଣ୍ଣନା କରିହେବ ଜନ୍ମ ଜନ୍ମ ଧରି ଯେଉଁ
ଆଶା ଆଶାରେ ହିଁ ରହିଯାଏ ?
କେଉଁ ଶବ୍ଦ ଥିବା କେଉଁ ବାକ୍ୟରେ ନିଜକୁ
ବର୍ଣ୍ଣନା କରିବି ଯେବେ ମରିବାର ସ୍ପୃହା ଛାଡ଼ିଦେଲେ
ଅନ୍ୟ ସ୍ପୃହା ନିଜର ନଥାଏ।''(୬୧)

'ଶ୍ରୀରାଧା'ର ପୃଷ୍ଠବଂଧରେ ରମାକାନ୍ତ ରାଧାଙ୍କର ଆଉ ଏକ ସମୟର ସଂସ୍ଥିତି ସଂପର୍କରେ ଆଲୋକପାତ କରିଛନ୍ତି। କୃଷ୍ଣ ବୃନ୍ଦାବନ ଛାଡ଼ି ଚାଲିଗଲା ପରେ ରାଧା କିଛି କାଳ ତାଙ୍କ ସ୍ମୃତିରେ ଆକ୍ରାନ୍ତ ହୋଇଥିବେ। ପ୍ରକୃତି ତାଙ୍କୁ କିଛିଦିନ ପାଇଁ ସାନ୍ତ୍ୱନା ଦେଉଥିଲେ ବି କ୍ରମଶଃ ତାହା ଅବାନ୍ତର ହୋଇଯାଇଥିବ ଯେମିତି ପୂର୍ବରୁ ଗୋପବାସୀମାନେ ହୋଇ ଯାଇଥିବେ। ଏବେ ସେ ଖୁବ୍ ନିଛାଟିଆ ଏକାକୀ ହୋଇ ଯାଇଥିଲେ ବି ଦୁଃଖୀ ନଥିବେ କାରଣ ତାଙ୍କର କୌଣସି ପ୍ରାପ୍ତିର କାମନା ନଥିଲା। ଆଶା ଥିଲେ ତ ହତାଶା ଥାଏ। ତେଣୁ ସେ କ'ଣ ନିରାସକ୍ତ ଭାବରେ ଶୂନ୍ୟତା ଭିତରେ ନିର୍ଗୁଣ ହୋଇଯାଇଥିଲେ। କିମ୍ବଦନ୍ତୀ ଓ ପୁରାଣର ରାଧା ପ୍ରକୃତରେ ଦେବୀ କାରଣ ସେ ସ୍ପୃହାହୀନ ଭାବରେ, ସମୟ ବାହାରେ ସବୁକିଛି କରିପାରନ୍ତି। ସେ ଯଦି ଦେବୀ, ତେବେ ତାଙ୍କ ସଂପର୍କରେ ବର୍ଣ୍ଣନା କରିବା କବିର ସାମର୍ଥ୍ୟ ବାହାରେ। ପୃଷ୍ଠବନ୍ଧ ବର୍ଣ୍ଣିତ ଶ୍ରୀରାଧା ଓ କାବ୍ୟ ବର୍ଣ୍ଣିତ ଶ୍ରୀରାଧା ଯେ ଏକ ନୁହେଁ, ଏ କଥା କବି ନିଜେ ସ୍ୱୀକାର କରିଛନ୍ତି। ''ରମାକାନ୍ତ ତାଙ୍କର ଶ୍ରୀରାଧା ସଂକଳନର ପୃଷ୍ଠବନ୍ଧରେ ଦେଇଥିବା ମତାମତ, କବିତା ବର୍ଣ୍ଣିତ 'ଶ୍ରୀରାଧା'ଙ୍କର ସଂପୂର୍ଣ୍ଣତାକୁ ଅତିକ୍ରମ କରିଯାଉଚ଼ି ବୋଲି ମନେ ହେଉଛି। ଶ୍ରୀରାଧା କବିତା ଗୁଡ଼ିକରେ ରହିଥିବା ପ୍ରେମର ସିଦ୍ଧି ସମ୍ବନ୍ଧରେ ପୃଷ୍ଠବଂଧରେ କିଛି କୁହାଯାଇ ନାହିଁ। ଶେଷରେ ରାଧା ଶ୍ରୀକୃଷ୍ଣଙ୍କୁ ଏକ ମାନସ ଲୋକରେ ଲାଭ କରିଥିବା କଥା ମଧ୍ୟ ଏଥିରେ ବର୍ଣ୍ଣିତ ହୋଇନାହିଁ।''(୬୨) କବି ମମତା ଦାଶ ଏହି ଯେଉଁ ମତ ପ୍ରକାଶ କରିଛନ୍ତି ତାକୁ ଆହୁରି ସ୍ପଷ୍ଟ ଭାବରେ ବୁଝିହେବ କବି ଚିନ୍ତାମଣି ବେହେରାଙ୍କ ଉକ୍ତିରେ। ''++ ଶ୍ରୀରାଧାଙ୍କ ପ୍ରଣୟର ଯେଉଁ ଆଲେଖ୍ୟ ସେ ଅଙ୍କନ କରିଛନ୍ତି, ତାହା ଗୃହାଙ୍ଗନର ସଂକୀର୍ଣ୍ଣ ସୀମା ସରହଦ ଠାରୁ ସୁଦୂର ଆକାଶର ଅନନ୍ତ ନୀଳ ବିସ୍ତାର ପର୍ଯ୍ୟନ୍ତ ଯେପରି ପରିବ୍ୟାପ୍ତ, ମର୍ତ୍ତ୍ୟଲୋକର ପାର୍ଥିବପ୍ରଣୟର ହୋମଗନ୍ଧକୁ ଅତିକ୍ରମ କରି ସୁରଲୋକର ଦୈବତ ପ୍ରେମର ପାରିଜାତ ସୌରଭକୁ ଠିକ ସେହିପରି ଉତ୍ତୀର୍ଣ୍ଣ।''(୬୩)

କବି ରମାକାନ୍ତଙ୍କ ଭାଷାରେ ହିଁ ଶ୍ରୀରାଧା ଆଲୋଚନା ସଂପର୍କରେ ନିଜର ଅସାମର୍ଥ୍ୟକୁ ସୂଚେଇ ଦିଆଯାଇପାରେ।--''ଶ୍ରୀରାଧାଙ୍କ ବିଷୟରେ ଯେତେ କହିଲେ ବି ବକ୍ତବ୍ୟ ଅସମାପ୍ତ ରହିଯିବ। ଯେତେ ବେଶି କୁହାଯିବ ସେତେ ବେଶି ଲାଗିବ ଯେ ସବୁଠୁ ଗୁରୁତ୍ୱପୂର୍ଣ୍ଣ କଥା କହିହେଲା ନାହିଁ। ++ ରାଧା ତାଙ୍କ ବିଷୟରେ କୌଣସି ଆଲୋଚନାକୁ ପ୍ରଶ୍ରୟ ଦିଅନ୍ତି ନାହିଁ, ଆଲୋଚ଼ନା କରିବାକୁ ଚାହୁଁଥିବା ଲୋକକୁ ତାର ଅସାମର୍ଥ୍ୟ ଅନାୟାସରେ

ବୁଝାଇ ଦିଅନ୍ତି, ଏବଂ ତା' ସତ୍ତ୍ୱେ ଯଦି ସେ ଆଲୋଚନା କରିବା ଇଚ୍ଛା ପରିହାର ନ କରେ ତାର ଚେତନାକୁ ମହାଘୋର ଅବସାଦରେ ଆଚ୍ଛନ୍ନ କରିଦିଅନ୍ତି। ସେ ଅବସାଦ ହେଉଛି କାଳକାଳ ଧରି କଥା କହିବାର ପ୍ରଚେଷ୍ଟା ସତ୍ତ୍ୱେ କୌଣସି ଅର୍ଥପୂର୍ଣ୍ଣ ଉଚ୍ଚାରଣ ନ କରି ପାରିବାର ଅବସାଦ, ଆଜୀବନ ବୃଥାରେ କାଳକ୍ଷେପଣ କରିଥିବାର ଅବସାଦ। ସେତେବେଳେ ଲାଗେ ଯେ ସଚରାଚର ନୀରବ, ଶୂନ୍ୟଶାନ୍; ଯାହା ଯାହା କୁହାଯାଇଛି ତାହା ଅଚିରେ ଏକ ପରବର୍ତ୍ତୀ ବକ୍ତବ୍ୟଦ୍ୱାରା ନାକଚ ହୋଇଯାଇଛି ଏବଂ ନାକଚ ନ ହୋଇଥିବା କୌଣସି କଥା ରହି ନାହିଁ।''(୬୪)

## ପାଦଟୀକା

୧. କବି ଶ୍ରୀ ରମାକାନ୍ତଙ୍କ ସହ ସାକ୍ଷାତକାର - ଡଃ. ଅର୍ଚ୍ଚନା ନାୟକ - କୋଣାର୍କ ୭୬-୧୯୯୦-ପୃ ୭୦

୨. ''କାଳିନ୍ଦ୍ୟାଃ ପୁଳିନେଷୁ କେଳିକୁପିତାମୁତ୍ସୃଜ୍ୟ ରାସେ ରସଂ ଗଚ୍ଛନ୍ତୀମନୁ ଗଚ୍ଛତୋଽଶ୍ରୁକଳୁଷାଂ କଂସଦ୍ୱିଷୋ ରାଧିକାମ୍।''

୩. ''ରାଧା ନାମମେ ଭାର୍ଯ୍ୟା ଗୋପକୁଳ ପ୍ରସୂତା ପ୍ରଥମାସୀତ୍
ସା ତ୍ୱମତ୍ର ଅବତୀର୍ଣ୍ଣା ତେ-ନାହମତ୍ରାଗତଃ।''

୪. ''ମୁହମାସଏଣ ତଂ କହ୍ନ ଗୋରଅଁ ରାହିଆଏଁ ଅବଣେନ୍ତୋ।
ଏତାଣଂ ବଲ୍ଲବୀଣଂ ଅଣ୍ଣାଣାପିଗୋରଅଂ ହରସି।'' (୧/୮୯)
(ହେ କୃଷ୍ଣ! ତୁମେ ନିଜର ମୁଖ ବାୟୁ ଦ୍ୱାରା ଶ୍ରୀରାଧାଙ୍କ ମୁଖରେ ଲାଗିଥିବା ଗୋରଜ (ଧୂଳି)କୁ ସଫା କରୁଛ। ଏହି ଘଟଣାରେ, ଏହି ପ୍ରେମର ପ୍ରକାଶ ଦ୍ୱାରା ତୁମେ ଏହି ଗୋପୀ ମାନଙ୍କର ତଥା ଅନ୍ୟ ଗୋପୀମାନଙ୍କର ଗୌରବ ହରଣ କରୁଛ।)

୫. ଭାଗବତ - ୧୦/୩୦/୨୫

୬. କୃଷ୍ଣ ଚରିତ୍ର - ୧ମ ଖଣ୍ଡ - ବଙ୍କିମ ଚନ୍ଦ୍ର ଚଟ୍ଟୋପାଧ୍ୟାୟ - ଅନୁବାଦ - ଶ୍ରୀଗୋଲୋକ ପ୍ରସାଦ ରାୟ - ଓଡ଼ିଶା ସାହିତ୍ୟ ଏକାଡ଼େମୀ - ୧୯୬୦ - ପୃ.୧୮୭

୭. ତତୈବ - ପୃ ୧୯୦

୮. ଭାରତୀୟ ବାଙ୍‌ମୟମେଂ ଶ୍ରୀରାଧା - ପଣ୍ଡିତ ବଳଦେବ ଉପାଧ୍ୟାୟ - ଗୃହୀତ

୯. ରାଧିକାତାପନୀୟୋପନିଷଦ - ଶ୍ଳୋକ ୭

୧୦. ଭାରତୀୟ ବାଙ୍‌ମୟମେଂ ଶ୍ରୀରାଧା -- ପୃ୨୧

୧୧. ତତୈବ - ପୃ୨୩

୧୨. ଶ୍ରୀରାଧାର କ୍ରମ ବିକାଶ - ଶଶିଭୂଷଣ ଦାସଗୁପ୍ତ - ପୃ ୨୦୩

୧୩. ଚୈତନ୍ୟ ଚରିତାମୃତ - ୮/୨, ୧୫୯-୧୬୦ - କୃଷ୍ଣଦାସ କବିରାଜ

୧୪. କୃଷ୍ଣ ଚରିତ୍ର (୧ମ ଖଣ୍ଡ) - ପୃ ୧୮୪

୧୫. ଓଡ଼ିଶାର ଭକ୍ତକବି ଓ କୃଷ୍ଣ ସାହିତ୍ୟ - ଡଃ ରବୀନ୍ଦ୍ର କୁମାର ପ୍ରହରାଜ -- କୋଣାର୍କ -- ୫୭ ଶ ସଂଖ୍ୟା ୧୯୮୫ -- ପୃ-୪

୧୬. ଗୀତ ଗୋବିନ୍ଦ - ୨୦/୩

୧୭. The cloustered passion of Radha and Krishna- Sudhir Kakar & Jahn Munder Ross -- Sunday- 21-27 April, 1985- P.50

୧୮. ଭାରତୀୟ ବାଙ୍ମୟ ମେଂ ଶ୍ରୀରାଧା - ପୃ୨୯୮
୧୯. ପୃଷ୍ଠବଂଧ - ଶ୍ରୀରାଧା - ରମାକାନ୍ତ ରଥ - ପୃ ୧୨୪
୨୦. ଓଡ଼ିଶାର ଭକ୍ତ କବି ଓ କୃଷ୍ଣ ସାହିତ୍ୟ - ଡଃ ରବୀନ୍ଦ୍ର କୁମାର ପ୍ରହରାଜ କୋଣାର୍କ ୫୭ ଶ ସଂଖ୍ୟା - ପୃ.୪-୫
୨୧. ଶ୍ରୀରାଧା - ପୃ ୬
୨୨. ପୃଷ୍ଠବଂଧ - ଶ୍ରୀରାଧା - ପୃ ୧୨୫
୨୩. ମୌନାବତୀର ଆଗ୍ରହ - ସଚ୍ଚିଦ୍ର ଅଂଧାର -ପୃ.୧୫୩
୨୪. ଶ୍ରୀରାଧା - ପୃ.୧୧୯
୨୫. ଖାଲିଜାଗା - ସଚ୍ଚିଦ୍ର ଅଂଧାର -- ପୃ ୧୩୪
୨୬. ଶ୍ରୀରାଧା - ପୃ.୬୪
୨୭. ତମେ ହିଁ - ସଚ୍ଚିଦ୍ର ଅଂଧାର - ପୃ. ୧୧୦
୨୮. ପୃଷ୍ଠବଂଧ - ଶ୍ରୀରାଧା - ପୃ. ୧୨୨
୨୯. କିଅର୍କିଗାଦ୍-ଅସ୍ତିତ୍ୱବାଦର ମର୍ମକଥା-ଶରତ କୁମାର ମହାନ୍ତି-ପୃ. ୨୧୫
୩୦. କିଶୋର ଚନ୍ଦ୍ରାନନ୍ଦ ଚଂପୂ ବଳଦେବ ରଥ-('କ' ଗୀତ) ପୃ. ୧
୩୧. ଶ୍ରୀରାଧା-ପୃ.୨
୩୨. ଶ୍ରୀରାଧା ପୃ.୨୦
୩୩. ତତ୍ରୈବ-ପୃ.୨୮
୩୪. ତତ୍ରୈବ-୩୩
୩୫. ତତୈବ ପୃ. ୩୪.
୩୬. ଶ୍ରୀରାଧା ପୃ. ୭୨
୩୭. ପୃଷ୍ଠବଂଧ-ଶ୍ରୀରାଧା-ପୃ. ୧୩୦
୩୮. ଶ୍ରୀରାଧା - ପୃ.୫୩
୩୯. ଶ୍ରୀରାଧା - ପୃ.୮୫
୪୦. ଶ୍ରୀରାଧା - ପୃ.୫୮
୪୧. ଶ୍ରୀରାଧା - ପୃ.୧୦୩
୪୨. ଶ୍ରୀରାଧା - ପୃ.୧୩୧
୪୩. ଶ୍ରୀରାଧା - ପୃ.୧୫
୪୪. ଶ୍ରୀରାଧା - ପୃ.୧୦
୪୫. ଶ୍ରୀରାଧା - ପୃ.୧୨
୪୬. ଶ୍ରୀରାଧା - ପୃ.୧୭
୪୭. ଶ୍ରୀରାଧା - ପୃ.୨୨
୪୮. ଶ୍ରୀରାଧା - ପୃ.୩୧
୪୯. ଶ୍ରୀରାଧା - ପୃ.୪୨
୫୦. ଶ୍ରୀରାଧା - ପୃ.୪୪
୫୧. ଶ୍ରୀରାଧା - ପୃ.୮୩
୫୨. ଶ୍ରୀରାଧା - ପୃ.୯୦

୫୩. ଶ୍ରୀରାଧା - ପୃ.୧୦୯
୫୪. ଶ୍ରୀରାଧା - ପୃ.୧୦୮
୫୫. ଶ୍ରୀରାଧା - ପୃ.୧୧୯
୫୬. ହାଇଡ୍‌ଗାର-ଅସ୍ତିତ୍ୱ ବାଦର ମର୍ମକଥା - ପୃ.୩୦୨
୫୭. ଶ୍ରୀରାଧା - ପୃ.୪
୫୮. ଶ୍ରୀରାଧା - ପୃ.୪
୫୯. ଶ୍ରୀରାଧା - ପୃ.୨୯
୬୦. ଶ୍ରୀରାଧା - ପୃ.୬୭
୬୧. ଶ୍ରୀରାଧା - ପୃ.୭୪
୬୨. ରମାକାନ୍ତ ରଥଙ୍କ ଶ୍ରୀରାଧା -- ଏକ ଦୃଷ୍ଟିପାତ -- ମମତା ଦାସ କୋଣାର୍କ -- ୭୦ ତମ ସଂଖ୍ୟା-୧୯୮୯-ପୃ.୫୫
୬୩. ଆଧୁନିକ କାବ୍ୟଚେତନାର ଏକ କ୍ଲାସିକ୍ ସୃଷ୍ଟି: ଶ୍ରୀରାଧା ଚିନ୍ତାମଣି ବେହେରା -- ଝଂକାର -- ପୂଜା ସଂଖ୍ୟା ୧୯୮୯-ପୃ.୬୭୬
୬୪. ପୃଷ୍ଠବଂଧ-ଶ୍ରୀରାଧା-ପୃ. ୧୩୨

## କନୁପ୍ରିୟା ଓ ଶ୍ରୀରାଧା : ଏକ ତୁଳନା

ହିନ୍ଦୀ ସାହିତ୍ୟର ପ୍ରଖ୍ୟାତ କବି ପଦ୍ମଶ୍ରୀ ଡକ୍ଟର ଧର୍ମବୀର ଭାରତୀଙ୍କର 'କନୁପ୍ରିୟା' ଓ ରମାକାନ୍ତ ରଥଙ୍କ 'ଶ୍ରୀରାଧା'କୁ ଏକ ତୁଳନାତ୍ମକ ଦୃଷ୍ଟିଭଙ୍ଗୀରେ ପର୍ଯ୍ୟାଲୋଚ଼ନା କରିବାର ଅଭିପ୍ରାୟ ଏଇଥିପାଇଁ ଯେ ଦୁଇଟି ଦୀର୍ଘ କବିତା ବା କାବ୍ୟର ପଞ୍ଜର ଏକ। ସମ ପୃଷ୍ଠଭୂମିରେ ରାଧାଙ୍କୁ ମୁଖ୍ୟ ନାୟିକା ବା ଚରିତ୍ର ଭାବରେ ଗ୍ରହଣ କରାଯାଇ ତାଙ୍କର ମାନସିକ ସ୍ଥିତାବସ୍ଥା ଓ ଚୈତନିକ ଦ୍ୱନ୍ଦ୍ୱାତ୍ମକ ଭାବାବେଗକୁ ହିଁ ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ନିରୀକ୍ଷା କରାଯାଇଛି। ପ୍ରଥମଟିରେ ରୋମାଣ୍ଟିକ୍ ଭାବାବେଶ ପ୍ରାଧାନ୍ୟ ବିସ୍ତାର କରିଥିଲେ ହେଁ ଦ୍ୱିତୀୟଟିରେ ସ୍ଥିତିବାଦୀ ଜୀବନ ଦର୍ଶନ ପ୍ରମୁଖତା ଲାଭ କରିଛି। ମୁଖ୍ୟତଃ କାବ୍ୟ ଯୁଗର ଅବସାନ ଘଟିଥିଲା ବେଳେ ଭାରତୀୟ ସାହିତ୍ୟରେ ଯେପରି ରବୀନ୍ଦ୍ରନାଥ ଠାକୁରଙ୍କ 'ଉର୍ବଶୀ' ଓ ଶ୍ରୀ ଅରବିନ୍ଦଙ୍କ 'ସାବିତ୍ରୀ' କାବ୍ୟ ଶିଳ୍ପର ଚ଼ରମ ସ୍ଥାନରେ ଉପନୀତ ହୋଇପାରିଛନ୍ତି ସେହିପରି ଦୀନ୍‌କରଙ୍କ 'ଉର୍ବଶୀ', କୁରୁକ୍ଷେତ୍ର', ଡକ୍ଟର ଭାରତୀଙ୍କର 'କନୁପ୍ରିୟା' ଓ ଶ୍ରୀ ରଥଙ୍କ 'ଶ୍ରୀରାଧା' ଭାରତୀୟ କାବ୍ୟ ପରମ୍ପରାର ଏକ ଏକ ସମୟୋତ୍ତୀର୍ଣ୍ଣ କଳାତ୍ମକ ଅଭିବ୍ୟକ୍ତି। ପ୍ରାୟତଃ ଭାରତୀୟ କାବ୍ୟାଙ୍ଗନରୁ ଯେତେବେଳେ ଚଣ୍ଡୀଦାସ, ବିଦ୍ୟାପତି, ମୀରା ବାଈ, କବୀର, ସ୍ୱାମୀ ହରିଦାସ, ଅଭିମନ୍ୟୁ, ବନମାଳୀ, ଗୋପାଳକୃଷ୍ଣ ଓ କବିସୂର୍ଯ୍ୟଙ୍କର ବୈଷ୍ଣବ ସ୍ୱର ସ୍ତିମିତ ହୋଇଗଲା ଏବଂ ଆଧୁନିକତାର ଧ୍ୱନି ନିନାଦିତ ହେଲା; ତା'ର ଅନେକ ଦିନ ପରେ ପୁଣି 'କନୁପ୍ରିୟା'ର ଆବିର୍ଭାବ ଓ ତା'ର ଅନେକ ଦିନ ପରେ 'ଶ୍ରୀରାଧା'ର ଜନ୍ମ। ବୈଷ୍ଣବ ଯୁଗୀୟ ରାଧା ପୁରାଣର ରାଧା -- ତତ୍ତ୍ୱର ରାଧା ଓ ଦିବ୍ୟାଦିବ୍ୟ ପ୍ରୀତି ପରାୟଣା ରାଧା। ରୀତିଯୁଗୀୟ କାବ୍ୟଧାରାରେ ଶ୍ରୀରାଧା

ତ କାମଦଗ୍ଧା ନାୟିକାଟିଏ। କେତେବେଳେ ସେ ବିପ୍ରଲବ୍ଧା- ଅଭିସାରିକା ପୁଣି ଶୃଙ୍ଗାରର ମୂର୍ତ୍ତିଟିଏ। ତା'ର ବର୍ଣ୍ଣନାରେ କବି ଆଦୌ କୁଣ୍ଠିତ ନୁହନ୍ତି। ସ୍ତନାଗ୍ରଠାରୁ ଜାନୁ ପ୍ରଦେଶ ଯାଏ, କେଶପାଶ ଠାରୁ ପଦାଙ୍ଗୁଳି ଯାଏ ତାର ବିସ୍ତୃତ ବିଳସିତ ରୂପଚର୍ଯ୍ୟା।

ଓଡ଼ିଆ ସାହିତ୍ୟରେ ଜ୍ଞାନ ମିଶ୍ରା ଭକ୍ତିର ଉପାସକ ମହାପୁରୁଷ ବଳରାମ, ଜଗନ୍ନାଥ, ଯଶୋବନ୍ତ, ଅନନ୍ତ ଓ ଅଚ୍ୟୁତଙ୍କ ଦୃଷ୍ଟିରେ ଶ୍ରୀକୃଷ୍ଣ ପରମ ପୁରୁଷ ନିରାକାର ବ୍ରହ୍ମ ଏବଂ ଅନ୍ତରାଧାତ ପରମ ସହଚାରିଣୀ ମାୟା। ପରବର୍ତ୍ତୀ କାଳରେ ଦିବାକର, ଗୌରହରି, ଗୌରଚରଣ, ବକ୍ରବାକ୍ ଚକ୍ରପାଣି, ଭୂପତି ପଣ୍ଡିତ, ଦେବଦୁର୍ଲ୍ଲଭ ଦାସ, ଅଭିମନ୍ୟୁ, କବିସୂର୍ଯ୍ୟ ସଦାନନ୍ଦ ବ୍ରହ୍ମା, କବିସୂର୍ଯ୍ୟ ବଳଦେବ ରଥ, ବନମାଳୀ ଓ ଗୋପାଳ କୃଷ୍ଣଙ୍କ ଶ୍ରୀରାଧା ଠାରେ ଦୈବୀଗୁଣ ଆରୋପିତ। ସେ ହ୍ଲାଦିନୀ। ଶକ୍ତି ସ୍ୱରୂପା। ପ୍ରକୃତି ରୂପିଣୀ ଏବଂ ଲୀଳାମୟ ପୁରୁଷୋତ୍ତମଙ୍କର ଇଚ୍ଛାର ମୂର୍ତ୍ତିମନ୍ତ ବିଗ୍ରହ। ଏହି ଅଲୌକିକତାକୁ ତାଙ୍କଠାରେ ଆରୋପଣ କରାଯାଇଥିଲେ ମଧ୍ୟ ସେ କେବଳ ସେହି ଆରାଧ୍ୟା ଦେବୀ ମାତ୍ର ରୂପରେ କବି କଳ୍ପନାରେ ରହିଯାଇନାହାନ୍ତି; ସେ ଲାବଣ୍ୟବତୀ, ନବଯୌବନା, ପରକୀୟା, କାମକେଳି କୁଶଳା ରକ୍ତମାଂସର କ୍ଷୁଧାଧାରୀ ନାରୀଟିଏ। ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ବୈଷ୍ଣବ କାବ୍ୟ ପରଂପରାର ଇତି ଘଟିବା ପରେ ଆଧୁନିକ କାଳରେ କୁନ୍ତଳା କୁମାରୀ ସାବତ୍‌ଙ୍କର 'ପ୍ରେମ ଚିନ୍ତାମଣି' ରେ ରାଧା-କୃଷ୍ଣଙ୍କର ପ୍ରୀତିଲୀଳା ପ୍ରସଙ୍ଗ ରହିଥିଲେ ମଧ୍ୟ ଏତଦ୍ ବ୍ୟତୀତ ବିଶେଷ କୃତି ପରିଲକ୍ଷିତ ହୁଏ ନାହିଁ। ସାଂପ୍ରତିକ କବିତାରେ ଚିତ୍ରକଳ୍ପ, ପ୍ରତୀକ ଓ ମିଥ୍ ଜରିଆରେ ରାଧା-କୃଷ୍ଣ ପ୍ରସଙ୍ଗ ବ୍ୟଞ୍ଜନାତ୍ମକ ଭାବରେ ପରିବେଶିତ ହୋଇଥିବାର ଲକ୍ଷ୍ୟ କରାଯାଏ। ଅବଶ୍ୟ ଜ୍ଞାନୀନ୍ଦ୍ର ବର୍ମାଙ୍କ 'ଜୟଦେବର ନୂତନ କବିତା' ରାଧା-କୃଷ୍ଣ ତଥା ଜୟଦେବଙ୍କ ଜୀବନୀକୁ ଅବଲମ୍ବନ କରି ଏକ ଦୀର୍ଘ କବିତା ହୋଇଥିଲେ ମଧ୍ୟ ଏହା ଗୀତ ଗୋବିନ୍ଦର ଏକ ଆଧୁନିକ ଅନୂଦିତ ସଂସ୍କରଣ କହିଲେ ଅତ୍ୟୁକ୍ତି ହେବ ନାହିଁ। କିନ୍ତୁ ପୂର୍ଣ୍ଣତଃ ତାକୁ ମିଥ୍ ଭାବରେ ଅବଲମ୍ବନ କରି ଏକ ଦୀର୍ଘ କବିତା ରଚନା କରିବା ଯେପରି ଓଡ଼ିଆ କବିତା କ୍ଷେତ୍ରରେ ରମାକାନ୍ତଙ୍କ 'ଶ୍ରୀରାଧା ଅନନ୍ୟ ଅଭିନବ ଓ ଅପ୍ରତିଦ୍ୱନ୍ଦୀ ସେହିପରି ଭାରତୀୟ କାବ୍ୟ ସାହିତ୍ୟର ଧାରାରେ ହିନ୍ଦୀର 'କନୁପ୍ରିୟା'। 'କନୁପ୍ରିୟା' 'ଶ୍ରୀରାଧା' ର ଅଗ୍ରଜା, ରମାକାନ୍ତ ଡଃ ଭାରତୀଙ୍କ ଦ୍ୱାରା ପ୍ରତ୍ୟକ୍ଷ ଭାବରେ ବା ପରୋକ୍ଷ ଭାବରେ ପ୍ରଭାବିତ ହୁଅନ୍ତୁ ବା ନ ହୁଅନ୍ତୁ, ତାହା ବଡ଼ କଥା ନୁହେଁ। ଏ ତୁଳନାର ଉଦ୍ଦେଶ୍ୟ ହିଁ ସାଂପ୍ରତିକ କବିତାରେ 'ଶ୍ରୀରାଧା' ମିଥର ଯେଉଁ ନବ ବିବର୍ତ୍ତିତ ରୂପାନ୍ତର ତା'ର ପ୍ରାସଙ୍ଗିକ ଆକଳନ।

ହିନ୍ଦୀ ସାହିତ୍ୟରେ ଡଃ. ଧର୍ମବୀର ଭାରତୀ (୧୯୨୬) ଜଣେ ବହୁ ପ୍ରତିଭାଧାରୀ ପ୍ରତିଷ୍ଠିତ ଲେଖକ। ଏକାଧାରରେ ଗଳ୍ପ, କବିତା, ପ୍ରବନ୍ଧ, ଉପନ୍ୟାସ, ଆଲୋଚନା ଓ ଗବେଷଣା ଧର୍ମୀ ଲେଖା ଓ ସଂପାଦନାରେ ସେ ସିଦ୍ଧହସ୍ତତାର ପରିଚୟ ପ୍ରଦାନ କରିଅଛନ୍ତି। ବୃତ୍ତିରେ ଅଧ୍ୟାପନାକୁ ଗ୍ରହଣ କରିଥିଲେ ହେଁ ସାହିତ୍ୟ ସାଧନା ତାଙ୍କ ଜୀବନର ସ୍ପନ୍ଦନ। 'ଠଣ୍ଡା ଲୋହା', 'ଅନ୍ଧାଯୁଗ', 'ସାତ ଗୀତ ବର୍ଷ' ଓ 'କନୁପ୍ରିୟା', ଆଦି କାବ୍ୟ ତାଙ୍କ କବି ପ୍ରତିଭାର ଅମଳିନ ଇସ୍ତାହାର। ''କନୁପ୍ରିୟା'ର ରଚନା ଆରମ୍ଭ ହୋଇଥିଲା ପୁରୀ ସମୁଦ୍ର ବେଳାରେ। ଜଗନ୍ନାଥଙ୍କ ଦର୍ଶନ ପରେ ସମୁଦ୍ରର ପ୍ରଗାଢ଼ ଚଞ୍ଚଳ ନୀଳିମା ଉଦ୍‌ବେଳିତ ପ୍ରଶାନ୍ତି ଏବଂ ଆକାଶର ଶାନ୍ତ ତନ୍ମୟଭାବ ଡକ୍ଟର ଭାରତୀଙ୍କୁ ବାରମ୍ବାର ମନୋଜ୍ଞ ପ୍ରତୀକ ଭାବରେ ପୁଲକିତ କରିଥିଲା ଏବଂ ସେହି ପୁଲକ ରୋମାଞ୍ଚର ଫଳ ସ୍ୱରୂପ ସେ ସମୁଦ୍ରବେଳାରେ ବସି ବସି 'କନୁପ୍ରିୟା'ର ପ୍ରାରମ୍ଭିକ ରଚନା କରିଥିଲେ।''(୧) 'କନୁପ୍ରିୟା'ର ଭୃଣସଂଚାର

ଘଟିଛି ମହୋଦଧିର ବିସ୍ତୀର୍ଣ୍ଣତା ଭିତରେ ଏବଂ ଏକ ଭୂମା-ପ୍ରକୃତିର ଭୂୟୋରୂପ ସତ୍ତାର ନିକଟରେ କବି ଆତ୍ମାର ତନ୍ମୟତା ଓ ତଲ୍ଲୀନତାରେ। ଏହି କାବ୍ୟର ନାଭିକେନ୍ଦ୍ର ହିଁ ତନ୍ମୟତା। ''ଏଭଳି ବି ମୁହୂର୍ତ୍ତ ଆସେ, ଯେତେବେଳେ ମନେ ହୁଏ ଇତିହାସର ଦୁର୍ଦ୍ଦାନ୍ତ-ଶକ୍ତିମାନେ ନିର୍ମମ ଗତିରେ ଆଗେଇ ଆସୁଛନ୍ତି, ସେଥିରେ ଆମେ ନିଜକୁ ବିବଶ, ଅସହାୟ ମନେ କରୁଁ, କେତେବେଳେ ବିକ୍ଷୁବ୍ଧ, କେବେ ବିଦ୍ରୋହୀ ଓ ପ୍ରତିଶୋଧ ପରାୟଣ, ବେଳେବେଳେ ବାଗଡ଼ୋର ହାତରେ ଧରି ଥିବା ଘଟିନାୟକ ବା ବ୍ୟାଖ୍ୟାକାର ଏବେ କେବେ ନୀରବରେ ଅଭିଶାପ କିମ୍ବା କ୍ରୁଶକୁ ସ୍ୱୀକାର କରୁଥିବା ଆତ୍ମବଳିଦାନୀ ବା ତ୍ରାତା .... ହେଲେ ଏଭଳି ବି ମୁହୂର୍ତ୍ତ ଆସେ, ଯେତେବେଳେ ଏସବୁ ବାହ୍ୟ ଉଦ୍‌ବେଗ ବୋଲି ମନେ ହୁଏ ___ ଯା'ର କୌଣସି ମହତ୍ତ୍ୱ ନାହିଁ--ଏବଂ ଯାହା ଆମର ହୃଦୟ ଭିତରେ ସାକ୍ଷାତ୍‌କୃତ ହୁଏ, ମହତ୍ତ୍ୱ ତା'ର ଅଛି--ସେଇ ଚରମ ତନ୍ମୟତାର କ୍ଷଣ ଯାହା ଗୋଟିଏ ସ୍ତରରେ ପହଞ୍ଚି ଇତିହାସର ପ୍ରକ୍ରିୟା ଠାରୁ ଅଧିକ ମୂଲ୍ୟବାନ ହୋଇଛି, ଯେଉଁ ମୁହୂର୍ତ୍ତ ଆମକୁ ମୁକ୍ତ କରି ଦେଇଛି--ଏମିତି ମୁକ୍ତ କରିଛି ଯେମିତି ସମସ୍ତ ବାହ୍ୟ--ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ସଙ୍କୁଚିତ ହୋଇ ସେଇ ମୁହୂର୍ତ୍ତ ଭିତରେ ପୁଞ୍ଜୀଭୂତ ହୋଇ ଯାଇଛି ଏବଂ ଆମେ, ଆମେ ହୋଇ ରହିଯାଇଛୁ।''(୨)

ଏହି ଦୁଇ ପରସ୍ପର ବିରୋଧୀ ସ୍ଥିତିରେ ରହିବାଟା ଜଣେ ଲୋକ ପକ୍ଷେ ସହଜ ନୁହେଁ। ସ୍ଥିତିଟାକୁ ସମନ୍ୱୟ କରି ସ୍ଥାପନ କରିବା ଅସାଧାରଣତ୍ୱ ବା ମହାନତାକୁ ସୂଚିତ କରିଥାଏ। ''ହେଲେ ସେ କ'ଣ କରିବ ଯିଏ ଏକ ସହଜ ଜୀବନ ବଞ୍ଚିଛି, ତନ୍ମୟତାର ମୁହୂର୍ତ୍ତରେ ବୁଡ଼ି ସାର୍ଥକତା ପାଇଛି ଏବଂ ବର୍ତ୍ତମାନ ଉଦ୍‌ଘୋଷିତ ମହାନତା ଦ୍ୱାରା ଅଭିଭୂତ ବା ଆତଙ୍କିତ ହେଉ ନାହିଁ। ବରଂ ଆଗ୍ରହ ପ୍ରକାଶ କରୁଛି ସେହି ସହଜତାର କଷଟୀ ପଥରରେ ସମସ୍ତଙ୍କୁ ନେବାକୁ। ସେଭଳି ଏକ ଆଗ୍ରହ 'କନୁପ୍ରିୟା'ର।''(୩) କନୁପ୍ରିୟା ତନ୍ମୟତା ଭିତରେ ଜନ୍ମ ଏବଂ ସେହି ଭାବକୁ ସେ ପ୍ରଥମ କିଶୋରୀ ଅବସ୍ଥାରୁ ମନ ଭିତରେ ସଂଚରିତ କରି ଶେଷ ପର୍ଯ୍ୟନ୍ତ ତା' ଭିତରେ ବଞ୍ଚି ରହିଛି। ଶ୍ରୀରାଧାରତ ତନ୍ମୟତା ନିଶ୍ଚୟ ଅଛି, ସେ ତନ୍ମୟ ଭାବ କିନ୍ତୁ ସ୍ଥିତିବାଦଦର୍ଶନ ପର୍ଯ୍ୟବସିତ ଏବଂ ସାଧାରଣ ମାନବିକ ଭାବାବେଗ, ଆତ୍ମପ୍ରତ୍ୟୟ ତଥା ବ୍ୟକ୍ତିସ୍ୱାତନ୍ତ୍ର୍ୟ-ପ୍ରତିଷ୍ଠିତ। ଶ୍ରୀରାଧା ଓ କନୁପ୍ରିୟାର ହୃଦୟାବେଗରେ ସ୍ଥଳ ବିଶେଷରେ ସାମ୍ୟ ପରିଲକ୍ଷିତ ହୁଏ, ଯେହେତୁ ଉଭୟର ପଟ୍ଟଭୂମି ଏକ। କନୁପ୍ରିୟା ଶାସ୍ତ୍ରୋକ୍ତ ରାଧା; ଅତଏବ ତାଙ୍କଠାରେ ଡଃ. ଭାରତୀ ଆଧୁନିକ ଚେତନାକୁ ଆରୋପିତ କଲେ ମଧ୍ୟ ସେ ସେହି ଦେବୀ ସ୍ତରରେ ରହିଯାଆନ୍ତି; କିନ୍ତୁ ଶ୍ରୀରାଧାଙ୍କୁ ଶ୍ରୀରଥ ଦେବୀସ୍ତରରେ ପହଞ୍ଚିବାର ପୂର୍ବାବସ୍ଥା ଓ ଗତାନୁଗତିକତାରୁ ସଂପୂର୍ଣ୍ଣ ମୁକ୍ତ ନ ହୋଇଥିବା ଅବସ୍ଥାରେ ଦେଖିଛନ୍ତି। କନୁପ୍ରିୟା ଯଦି ବୈଷ୍ଣବୀୟ ଶ୍ରୀରାଧାଙ୍କର ଆଧୁନିକ ରୂପାନ୍ତରିତ ସତ୍ତା ହୁଅନ୍ତି ତେବେ ରମାକାନ୍ତଙ୍କ ଶ୍ରୀରାଧା ଅତ୍ୟାଧୁନିକ ସମୟର ଅର୍ଥାତ୍ ଚଳନ୍ତି ସମାଜର ରୁଗ୍‌ଣ ସ୍ଥିତାବସ୍ଥାରେ ଅହରହ ଛଟପଟ ହୋଇ ତିଷ୍ଠୁଥିବା ସାଧାରଣ ମାନବ ସତ୍ତାଟିଏ। ଉଭୟଙ୍କର ଦୁଃଖ ରହିଛି, ହତାଶା ରହିଛି। ନିଃସଙ୍ଗତା ଭିତରେ ଉଭୟ ଛଟପଟ, କିନ୍ତୁ କନୁପ୍ରିୟା ଅଭିସାରିକାଟିଏ। ବିରହରେ ସେ ସନ୍ତୁଳିତା। କେବଳ ମିଳନ ହିଁ ତା' ପ୍ରାଣରେ ଶାନ୍ତିସମୀର ବୋହିଦେଇ ପାରେ। ଶ୍ରୀକୃଷ୍ଣଙ୍କ ଅନୁପସ୍ଥିତି ତା' ହୃଦୟରେ ଶେଲବିଦ୍ଧ କରେ। ସେ ପ୍ରତୀକ୍ଷାରତ ସେହି ଶ୍ୟାମ ସୁନ୍ଦରଙ୍କ ପାଇଁ।

ଶାସ୍ତ୍ରୀୟ ଶ୍ରୀରାଧା ଠାରୁ ସେ ବିଚ୍ୟୁତା ନୁହେଁ। ରମାକାନ୍ତଙ୍କ ଶ୍ରୀରାଧା ବି କମ ବ୍ୟଥିତା ନୁହେଁ କୃଷ୍ଣଚନ୍ଦ୍ରଙ୍କର ଅବର୍ତ୍ତମାନତାରେ। ହେଲେ, ଶ୍ରୀରାଧା ଜାଣେ ଯେ ଶ୍ରୀକୃଷ୍ଣଙ୍କଠାରୁ ତା'ର ପାଇବାର କିଛି ନାହିଁ, ଯେହେତୁ ତା'ର ପାଇବାର କାମନା ବି ନଥିଲା। ସେ ଏକ ପ୍ରତୀକ ମାତ୍ର। ଏକ ଲୋଡ଼ିବାପଣ ହିଁ ତା'ର ସାରକଥା। ଏହି ଭାବ ଭିତରେ ଏକ ବିରାଟ ନାସ୍ତିତ୍ୱ ବା ଶୂନ୍ୟତାବୋଧ (Negation) ରେ ତାର ଯାତାୟତ ଯେଉଁ ପରିସ୍ଥିତି ସଂପର୍କରେ ସେ ଖୁବ୍ ସଚେତନଶୀଳା ଏବଂ ପରିଣତି ପ୍ରତି ମଧ ଜ୍ଞାନଶୀଳା।

କନୁପ୍ରିୟାର ଆରମ୍ଭ ବିଚ୍ଛେଦରୁ-ବିରହରୁ। ଇତିହାସର ସ୍ମୃତି ରୋମନ୍ଥନ ଓ ବିରହ ଦଗ୍‌ଧତା ଭିତରେ ସେ ଅପେକ୍ଷମାଣା। କିଶୋରୀ କାଳରୁ ସେ ପ୍ରୀତି ପଲ୍ଲବିତା ଏବଂ ପୂର୍ଣ୍ଣଯୌବନ କାଳରେ ବିରହସିକ୍ତା। ଶ୍ରୀରାଧା ଓ କୃଷ୍ଣଙ୍କର ସାକ୍ଷାତ ହେଲା ବେଳକୁ ସେମାନଙ୍କର ଇହକାଳର ଅଧିକାଂଶ ସମୟ ଅତିକ୍ରାନ୍ତ। ସେଥିପାଇଁ ସେମାନେ କମ ବ୍ୟଥିତ ନୁହନ୍ତି। "ଆମେ କିନ୍ତୁ ପରସ୍ପରେ ଭେଟିଲୁ ବହୁତ / ଡ଼େରିରେ, ଆମର ସବୁ ପ୍ରତ୍ୟାଶାର ସର୍ବଶେଷ ବେଳ ଉତରତ / ସମୟରେ ତେଣୁ ତମେ ଥରେ ନ ଆସିଲେ / ମୋ ଆଖିରୁ ଲୁହ ନୁହେଁ ଅବଶିଷ୍ଟ ଆୟୁଷର ଖଣ୍ଡବିଖଣ୍ଡିତ / ଅହଙ୍କାର ବୋହିଯାଏ....।"(୪) କନୁପ୍ରିୟା ତା'ର ମିଳନ ମୁହୂର୍ତ୍ତରେ ସ୍ପନ୍ଦନବିହୀନ ହୋଇଯାଏ। ସେ ଶ୍ରୀକୃଷ୍ଣଙ୍କର ଜନ୍ମଜନ୍ମାନ୍ତରର ରହସ୍ୟମୟ ଲୀଳାର ଏକାନ୍ତ ସଙ୍ଗିନୀ ବୋଲି ଜାଣେ। ସେ କମ ଲାଜ ଶଙ୍କୁଚିତା ନୁହନ୍ତି। ଖାଲି ଦେହରେ ନୁହେଁ ମନ ଭିତରେ ବି ସେ ସରମରେ ଜଡ଼ସଡ଼ ହୋଇଯାନ୍ତି।

"ଭୟ, ସଂଶୟ, ଗୋପନ ବିଷାଦ
ଏ ସକଳ ଚଞ୍ଚଳା ଓ
ପରିହାସ ପ୍ରିୟା ସଖୀ ପରି
ମୋତେ ଯା'ନ୍ତି ଘେରି,
ଆଉ,
ମୁଁ ଅନେକ ଇଚ୍ଛା କରି
ଠିକ୍ ସେତେବେଳେ ତମ ପାଶେ-
ଏ ଚୂତ ବକୁଳ ତଳେ ପାରେନି ପହଞ୍ଚି
ମୋ ନାମରେ ସିକ୍ତ ବଂଶୀଧ୍ୱନ ବାରମ୍ବାର ଡାକୁଥାଏ ମୋତେ।"(୫)

କନୁପ୍ରିୟା ଆସିପାରନ୍ତି ନାହିଁ। ଉପେକ୍ଷିତ କୃଷ୍ଣ। ଧୀରେ ଧୀରେ କୁଞ୍ଜବନ ଛାଡ଼ି ଚାଲିଯାଇଛନ୍ତି। ଚୂତ ମଞ୍ଜରୀକୁ ଅଙ୍ଗୁଳିରେ ଚୂର୍ଣ୍ଣ କରି ଆନମନା ଭାବରେ ଶ୍ୟାମଳ ବନ ଦୂର୍ବାଦଳ ଉପରେ ସୀମନ୍ତ ସିନ୍ଦୂର ପରି ବୁଣି ଦେଇଯାଇଛନ୍ତି। ପ୍ରିୟା ଆସିଲାବେଳକୁ ପ୍ରିୟ ସମାଗମର କ୍ଷେତ୍ର ବିବିକ୍ତ ପାଲଟିଛି। ଗଭୀର ରାତ୍ରିରେ ଅଭିସାରିକା ପ୍ରିୟତମା ଚୂତ ଶାଖାକୁ ବାହୁରେ ଭିଡ଼ିଧରି ଲୋତକ ଢ଼ାଳିଛି। ନୀରବତା ଭିତରେ ସମୟ ଚାଲିଛି। "ମୁଁ ଫେରୁଛି ହତାଶ, ନିଷ୍ଫଳ, ଏବଂ ଏଇ ଚୂତ ମଞ୍ଜରୀର ବିଚ୍ଛୁରିତ ରେଣୁ-- / ମୋ ପୟରେ ଲାଗି ପୀଡ଼ା ଦିଏ + + / ଯେହେତୁ ଏ ଦୀର୍ଘ ପଥ / ମୁଁ ଆସିଛି, କଣ୍ଟକ ଓ ଉପଳ କଣାରେ / ପାଦ ମୋର ଆଘାତ ପାଇଛି...।" (କନୁପ୍ରିୟା -- ପୃ.୧୯) କନୁପ୍ରିୟାର ଏ ନିଃସଙ୍ଗତା, ଯନ୍ତ୍ରଣା ଓ ସନ୍ତାପ ଅପ୍ରାପ୍ତିର ହା-ହାକାର ଯୋଗୁଁ। ସୁକୋମଳ ତନୁରେ ଚୂର୍ଣ୍ଣ ଚୂତ ମଞ୍ଜରୀ,

ମସୃଣ ଉପଳ ଖଣ୍ଡ ପାଦକୁ ପୀଡ଼ା ଦିଏ। ଶ୍ରୀରାଧା ତ ସାଧାରଣ ନାରୀଟିଏ। ଦୁନିଆ ଯାକର ଜଂଜାଳ ଭିତରେ ସେ ଛଟପଟ। ପ୍ରିୟ ସହିତ ମିଳନ ମୁହୂର୍ତ୍ତରେ ସେ ବାହ୍ୟ ସଂପର୍କକୁ ପୂର୍ଣତଃ ବିସ୍ମୃତ ହେଲେ ବି ପରବର୍ତ୍ତୀ କ୍ଷଣରେ ତାକୁ ଲାଗେ ଯେମିତି ତା' ପାଦରେ ଅନେକ ଯୁଗର ଅନେକ ଦଉଡ଼ି ଛନ୍ଦା ହୋଇଛି। "ପୁଣି ରାତି ହେଉଥିବ, ଘରକୁ ଫେରିବା -- ବାଟରେ ନିଷ୍ପ୍ରଭ ସ୍ୱପ୍ନଙ୍କର ମୃତ ଦେହ -- ଝୁଣ୍ଟୁଥିବି, କେତେବେଳ ଯାଏଁ ଶୁଣୁଥିବି / ନଈକୂଳୁଁ କିଏ କହେ ବିଦାୟ ବିଦାୟ।"(୬)

ଉଭୟେ କନୁପ୍ରିୟା ଓ ଶ୍ରୀରାଧା ମୃଣ୍ମୟୀ ଶରୀର ଉପରେ କାଳର କ୍ଷୟକାରିଣୀ ଶକ୍ତିର ପ୍ରଭାବ ସଂପର୍କରେ ସଚେତନ। ସେମାନଙ୍କର ବୟସ ବଢ଼ି ଚାଲିଛି। ଉଭୟେ ଶ୍ରୀକୃଷ୍ଣ କର୍ତ୍ତୃକ ବିଚ୍ଛେଦ ଦଗ୍‌ଧା। ପ୍ରତୀକ୍ଷିତା। ବିପ୍ରଲବ୍‌ଧା ନାୟିକା କନୁପ୍ରିୟା ଅନୁଭବ କରେ, "ଲିଭିଲା ପାଉଁଶ, ଅସଂପୂର୍ଣ୍ଣ ସଙ୍ଗୀତ ଓ ହଜିଲା ଚନ୍ଦ୍ରମା / ଶୂନ୍ୟ ହୋଇଥିବା ପାତ୍ର, ବିତିଗଲା ମୁହୂର୍ତ୍ତର ପରି / ଏଇ ମୋର ଦେହ।"(୭) ଗଭାରୁ ଖସି ପଡୁଥିବା ବାସୀଫୁଲ ପରି ସେ ଯେମିତି ବିବର୍ଣ୍ଣା -- ଅଲୋଡ଼ା। ଚତୁର୍ଦ୍ଦିଗରେ ଦ୍ୱିଗୁଣିତ ବିଜନତା। ଖାଁ, ଖାଁ ନିର୍ଜ୍ଜନତା। ସରିଲା ଉତ୍ସବ ଓ ଭାଙ୍ଗିଲା ମେଳାପରି ଦେହ। ଏକଦା ସେ ପ୍ରିୟତମଙ୍କ ବାହୁ ପାଶରେ ଆବଦ୍ଧ ଥାଇ ଅନନ୍ତକାଳକୁ ଆସ୍ପର୍ଦ୍ଧାର ସହିତ ଆହ୍ୱାନ କରିଥିଲା। ସାରା ଜଗତର ରାତି ପରାଜିତ ହୋଇଥିଲା। ସାକ୍ଷାତର ମୁହୂର୍ତ୍ତ ଇତିହାସଠୁଁ ଶକ୍ତିମାନ ଥିଲା। ମନ୍ତ୍ରପୂତ ଶରପରି କାହ୍ନୁ ଆଜି ଅଣ -- ଲେଉଟା ଭାବରେ ଚାଲିଯାଇଛନ୍ତି। କମ୍ପିତ ପ୍ରତ୍ୟାଶା ପରି କନୁପ୍ରିୟା ଦୁସ୍ତର ଯନ୍ତ୍ରଣା ଭିତରେ ପଡ଼ିରହିଛି। ସ୍ମୃତି, ସଂଶୟ ଓ ଦଂଶନର ବିଷରେ ସେ ଜର୍ଜ୍ଜରିତା। ତଥାପି ସେ କମ ପ୍ରତ୍ୟାଶୀ ନୁହେଁ। "ଲିଭି ଗଲା ପାଉଁଶରେ ଗୋପନ ସ୍ଫୁଲିଙ୍ଗ ପରି / ଶୂନ୍ୟ ହୋଇ ଯାଉଥିବା ପାତ୍ରର ଅନ୍ତିମ ବିନ୍ଦୁ ପରି / ପାଇ ହଜାଇ ଥିବାର ବ୍ୟଥାଭରା ଗୁଞ୍ଜରଣ ପରି.....ତାର ସ୍ଥିତି।"(୮) କନୁପିୟା ଯେମିତି ଗୋଟିଏ ସେତୁ। ଯାହା ଉପରେ ପାଦ ଦେଇ ପର୍ବତର ପାଦଦେଶରୁ ଉର୍ଦ୍ଧ୍ୱ ଶିଖରକୁ ଯାହାର ଯିବାର ଥିଲା ସେ ଚାଲିଗଲା। ଶ୍ରୀକୃଷ୍ଣଙ୍କର ଲୀଳାଭୂମି ଓ ଯୁଦ୍ଧ ଭୂମିର ଅଲଂଘ୍ୟ ଅନ୍ତରାଳ ମଧ୍ୟରେ ଯେମିତି ସେ ଏକ ସେତୁ ଯାହା ଉପରେ ସେ ଚଢ଼ି ଚାଲିଯାଇଛନ୍ତି। "ଏବେ ଏଇ ଶୂନ୍ୟ ଶିଖର ଓ ମୃତ୍ୟୁ ଘାଟରେ ନିର୍ମିତ / ସୂକ୍ଷ୍ମ ସୁବର୍ଣ୍ଣ ତାରରେ ଗୁନ୍ଥା ସେତୁ ପରି / ନିର୍ଜ୍ଜନ, / ନିରର୍ଥକ / କମ୍ପନଶୀଳ ...... ଏଇଠି ରହିଛି ପଡ଼ି / ଏଇ ମୋର ସେତୁ ଦେହ।"(୯) ରମାକାନ୍ତଙ୍କ ଶ୍ରୀରାଧା ଏବର ବିବର୍ଣ୍ଣ ରୂପ ପ୍ରତି ଖୁବ୍ ଆତ୍ମସଚେତନ ଏବଂ ଏପରି ଅବସ୍ଥାରେ ପ୍ରିୟତମଙ୍କୁ ଭେଟିବା ପାଇଁ ତାଙ୍କ ମନରେ ଅନେକ ସଂଶୟାତ୍ମକ ପ୍ରଶ୍ନବାଚୀ --

"ଚାହୁଁ ଚାହୁଁ କାହିଁ କେତେ ବୟସ ହେଲାଣି
ମୁଁ ତ ଆଉ ଆଗପରି ଦେଖାଯାଉ ନାହିଁ,
ସେ ଯଦି ସତକୁ ସତ ଆସନ୍ତି ମୁଁ କଣ
ତାଙ୍କୁ ଭେଟିବି ଏ ଜରାଜୀର୍ଣ୍ଣ ରୂପ ନେଇ ?"(୧୦)

ଶ୍ରୀରାଧା ଭାବନ୍ତି, ଆଉ ବା କେତେକାଳ ବାକୀ ରହିଲା ଯେ ସେ ନୂଆକରି ପ୍ରୀତି କରିବେ। ଉତ୍କଣ୍ଠାର ଆଶା ଓ ଉତ୍କଣ୍ଠାର ପ୍ରତିଦାନ କ୍ଷୀଣହୋଇ ଯାଉଛି। ସେ ଜାଣନ୍ତି

ଯେ ଏମିତି ଏକ ସମୟ ଆସିବ ଯେତେବେଳେ କେହି କିଛି ନ ଥିବେ। ସେ ନିଜେ ନଥିବେ କି ତାଙ୍କର ଜୀବନ ବୃତ୍ତାନ୍ତ ମଧ୍ୟ ନଥିବ। "ସେହି ଖାଲି ମହାଶୂନ୍ୟ ପରି ଥିବେ, ସେ ମହାଶୂନ୍ୟରେ / ସତ୍ୟ ଓ ଅସତ୍ୟ ଏକା କଥା ହୋଇଥିବ?"(୧୧) କ୍ରମଶଃ ଶ୍ରୀରାଧାଙ୍କର ଏହି ଯନ୍ତ୍ରଣା ଏତେ ଦେହସୋହା ହୋଇଯାଏ ଯେ ଏଣିକି ଆଉ କାହା ପ୍ରତି ଅସନ୍ତୋଷ, ଅସୂୟା ଭାବ ନଥାଏ। "କେତେ ଦିନୁଁ ମୁଁ ଯେପରି / ପାହାଡ ଯାହାର / ଉପରେ ପଥର / ଆଉ ଭିତରେ ପଥର।"(୧୨) କୃଷ୍ଣଙ୍କ ସହିତ ରାତ୍ରିଯାପନ କଲା ଉତ୍ତାରେ ଘରକୁ ଫେରିଆସି ସ୍ୱାମୀଙ୍କ ଠାରୁ ସାଂଘାତିକ ଯନ୍ତ୍ରଣା, ପରିବାରୀ ମାନଙ୍କ ଠାରୁ ଜଘନ୍ୟ ଭର୍ତ୍ସନା ଶୁଣନ୍ତି। ସ୍ୱାମୀ ବାଳଝିଙ୍କି କାନ୍ଥରେ ମୁଣ୍ଡକୁ ପିଟିଚାଲେ। ତା'ର ଅଙ୍ଗ ପ୍ରତ୍ୟଙ୍ଗକୁ ନିରେଖି ତା'ର ଅବିଶ୍ୱସ୍ତତାର ପ୍ରମାଣ ଖୋଜୁଥିଲା ବେଳେ ସେ ହସିଦିଏ। ନିର୍ବୁଦ୍ଧିଆ ସ୍ୱାମୀର କାର୍ଯ୍ୟକୁ ନିନ୍ଦିବସେ। କିନ୍ତୁ ଶ୍ରୀରାଧା ତ ଏଥିରେ ଦବି ଯାଆନ୍ତିନି, ବରଂ--

"କେହି ନ ବୁଝିବା ସାର୍ଥକତାରେ
ସାର୍ଥକ ହେଲି କେତେ ଦିନ ପରେ।
ଏତେ ଅପଯଶ କେତେ ଜନ୍ମର
କେତେ ସୁକୃତ ଫଳ!
ବାଟ ଛାଡ଼ି ଯେଉଁ ବାଟ ମୁଁ ଧରିଲି
ମୋର ଆଲୋକିତ ଦୁଃସାହସରେ
ଝଟକେ ବେଳକୁ ବେଳ।"(୧୩)

କନୁପ୍ରିୟା ହୁଏତ ଚାହିଁଥିଲେ ଏ କଦର୍ଥନା--ଏହି ଦାରୁଣ ଆଘାତର ଶିକାର ହୋଇପାରି ନଥାନ୍ତେ। ତୃତୀୟ ପ୍ରହରରେ ଘାଟରୁ ଫେରିଲା ବେଳେ କଦମ୍ବ ମୂଳରେ ସେ ନୀରବରେ ଧ୍ୟାନମଗ୍ନ ଶ୍ରୀକୃଷ୍ଣଙ୍କୁ ଦେଖନ୍ତି। ତାଙ୍କୁ ବନର ଅଜ୍ଞାତ ଦେବତା ଭାବି ସେ ମଥାନୋଇଁ ପ୍ରଣାମ କରନ୍ତି। ସେ କିନ୍ତୁ ସେମିତି ବୀତରାଗ, ନିର୍ବିକାର ଓ ଅବିଚଳ ଭାବରେ ସ୍ଥିର ରହନ୍ତି। ଶ୍ରୀକୃଷ୍ଣ କେବେ ସ୍ୱୀକାର ଜଣାଇ ନାହାନ୍ତି। କିନ୍ତୁ ସମୟ କ୍ରମେ କନୁପ୍ରିୟା ପ୍ରଣାମ କରିବାକୁ ଭୁଲିଯାଆନ୍ତି। ସେହି ନିଶ୍ଚଳ ଧ୍ୟାନଶୀଳ ପୁରୁଷ ଯେ ନୀରବରେ ସ୍ୱୀକାର କରିଛନ୍ତି ଏକଥା ତାଙ୍କୁ ବିଦିତ ନ ଥିଲା। "ମୁଁ କି ଜାଣିଥିଲି ସେଇ ଅସ୍ୱୀକୃତି ଦିନେ / ଅତୁଟ ବନ୍ଧନ ହେବ, / ଆଉ ମୋର ପ୍ରଣାମରେ ବନ୍ଧ ଅଞ୍ଜଳିରେ / ଏପରି ରଖିବ ବାନ୍ଧି, ଖୋଲିବନି ଆଉ!"(୧୪) ସେ ତାଙ୍କ ପ୍ରତି ଅଙ୍ଗ ପ୍ରତ୍ୟଙ୍ଗକୁ କ୍ରମେ ବାନ୍ଧିଦେଇଛନ୍ତି। ପ୍ରତିଟି ଗତିକୁ ନିଜର କରି ନେଇଛନ୍ତି। ସେତ ସଂପୂର୍ଣ୍ଣ ଲୋଭୀଟିଏ। ଖାଲି ପ୍ରଣାମଟିକୁ କିପରି ମାତ୍ର ସ୍ୱୀକାର କରିବେ! ସେ କିନ୍ତୁ ନିର୍ବୁଦ୍ଧିଆ ପଣରେ କୃଷ୍ଣଙ୍କୁ ବୀତରାଗ ବୋଲି ଧରି ନେଇଥିଲେ। ଶ୍ରୀରାଧା ବି ବାଛିଛନ୍ତି ତାଙ୍କୁ ଆପଣା ଇଚ୍ଛାରେ। କୌଣସି ବାଧ୍ୟବାଧକତା ନଥିଲା। ତାଙ୍କର ଏବେ ଗତ ଦିନର ସ୍ମୃତି ରୋମନ୍ଥିତ ହୁଏ। ସେ ତାଙ୍କ ବାଟରେ ଯାଉଥିଲେ ଏବଂ ଶ୍ରୀରାଧା ବି ତାଙ୍କ ପଥେ ଥିଲେ। ହୁଏତ ଅନ୍ୟମାନଙ୍କ ପରି ତାଙ୍କର ତାଙ୍କ ସହିତ କୌଣସି ସାମଞ୍ଜସ୍ୟ, କୌଣସି ସଂପର୍କ ନ ରହି ପାରିଥାନ୍ତା। ତାଙ୍କର ରହସ୍ୟ ତାଙ୍କଠାରେ ରହିଯାଇଥାନ୍ତା। ରାଧାଙ୍କର ତାଙ୍କ ସହିତ କୌଣସି ସଂପର୍କ ନଥାଇ ସେ ଅବଶିଷ୍ଟ ଆୟୁଷକୁ ଶେଷ କରି ଏକା ଏକା ପର୍ଯ୍ୟାୟକ୍ରମେ ମରିଯାଇଥାନ୍ତେ। ତାଙ୍କର

ଅଲଗାପଣ ଭିତରେ ସେ କିନ୍ତୁ ଭଲ ପାଇ ବସିଲେ। "କାହାରି ଇଚ୍ଛାରେ ନୁହେଁ ମୋ ଇଚ୍ଛାରେ ତମକୁ ବାଛିଲି, / ତମକୁ ରଖିବା ପାଇଁ ଜୀବନର ପ୍ରତି ମୁହୂର୍ତ୍ତରୁ / ଅନ୍ୟ ସବୁ ଭାଗ୍ୟ କାଢ଼ି ଦେଲି।"(୧୫) ତାଙ୍କୁ ବାଛିଲା ପରେ ସେ ତାଙ୍କ 'ଚାହିଦାର ଶ୍ୟାମଳ ସ୍ୱାଂଶ'ରେ ପରିଣତ ହୋଇଯାଚି। ଏବଂ,

"ମୁଁ ଏପରି ଭାବେ ଭଲପାଏ, ମୋର ସରି ଆସୁଥିବା
ଆୟୁଷର ଆତଙ୍କକୁ ଲୁହରେ ଲୁଚାଇ,
ଲୁହକୁ ଲୁଚାଇ ପୁଣି ହସରେ, ମୁଁ ହସି ହସି ତମ
ଦେହର ମୁହୂର୍ତ୍ତମାନ ଯାଏ ଛୁଇଁ ଦେଇ।"(୧୬)

କନୁପ୍ରିୟା ଓ ଶ୍ରୀରାଧା ଉଭୟେ ପ୍ରୀତି ପୂଜାରିଣୀ। ଦେହ ଦେଇ ଦେହୋତ୍ତର ଚେତନା ବା ପାର୍ଥିବ ପ୍ରଣୟ ଦେଇ ଦୈବତ ପ୍ରୀତି ବେଦୀରେ ଉପନୀତ ହେବାରେ ଉଭୟର ଲକ୍ଷ୍ୟ। ଦୁହେଁ କୃଷ୍ଣୈକପ୍ରାଣା। କନୁପ୍ରିୟାର ସ୍ଥିତି କିନ୍ତୁ କୃଷ୍ଣଙ୍କ ବିନା ଅସମ୍ଭବ, ଅଥଚ ଶ୍ରୀରାଧାର ବ୍ୟକ୍ତି ସ୍ୱାତନ୍ତ୍ର୍ୟ ସ୍ୱୀକାର୍ଯ୍ୟ। ଆପଣାର ଏକକ ସତ୍ତା ପ୍ରତି ସେ ସଚେତନ। କନୁପ୍ରିୟା ବିରହଦଗ୍ଧା ଓ ଶ୍ରୀରାଧାବି ବିରହତପ୍ତା କିନ୍ତୁ ଶ୍ରୀରାଧାର ଛୋଡ଼ିବାପଣ ଭିତରେ କୌଣସି କାମନା ନ ଥିଲା; ଖାଲି ଲୋଡ଼ିବାଟାହିଁ ମୁଖ୍ୟ। ତା'ରି ଭିତରେ ବଳକା ଆୟୁଷର ପରିପୂର୍ତ୍ତି ପାଇଁ ସେ ପ୍ରତୀକ୍ଷାରତା। କନୁପ୍ରିୟା ଅଶୋକ ଭଞ୍ଜିକା ନାୟିକା। ତା'ର ଚରଣ ସ୍ପର୍ଶର ଅପେକ୍ଷାରେ ପଥ ପ୍ରାନ୍ତରର ନିଷ୍ଫଳ ଅଶୋକ ସତେ ଯେପରି ଜନ୍ମଜନ୍ମାନ୍ତର ପୁଷ୍ପହୀନ ହୋଇ ରହିଥିଲା। କିନ୍ତୁ ସେହି ଅପୁଷ୍ପକ ଅଶୋକ ଭିତରେ ଯେମିତି କନୁପ୍ରିୟାର ପ୍ରାଣସତ୍ତା ମ୍ରିୟମାଣ ଅବସ୍ଥାରେ ପଡ଼ି ରହିଥିଲା। ଏବେ ବସନ୍ତ ଆସିଛି। ସମୟର ଅନୁକୂଳତା ଭିତରେ ତାର ଲାକ୍ଷାସିକ୍ତ ପାଦର ସ୍ପର୍ଶରେ ଅଶୋକ ତରୁ ମଂଜରିତ ହୋଇ ଉଠିବ। ତା'ର ଶାଖାରେ ସେବି ସିନ୍ଦୂରାଭ ଫୁଲଶାଖାରେ ହୋଇ ବିକଶିତ ହୋଇ ଉଠିବ। କୃଷ୍ଣଙ୍କ ସହିତ ସମାଗମର ବେଳ ଆସି ଯାଇଛି। ସେ ଯେମିତି ତା' ଭିତରେ ସଂଗୁପ୍ତ ହୋଇ' ରହିଥିବା ସ୍ୱର୍ଣ୍ଣିମ ସଂଗୀତ। ଲଜ୍ଜାବଶତଃ ସେ ଅନେକଥର ଚାହିଁବି ତାଙ୍କ ସହିତ ମିଶି ପାରିନି। ତମସାର ପରଦା ଉଢ଼ାଳେ ସେ ସିନା ଭେଟିଛି କିନ୍ତୁ ତାହା ଚିରସ୍ଥାୟୀ ନୁହେଁ। ଏମିତି ଏକ ସମୟ ଆସିଛି ଯେତେବେଳେ ନିଜ ଭିତରେ ନିଜକୁ ଆଉ ଲୁଚେଇ ହୋଇନି। ହେବା ବି ଅସମ୍ଭବ।

"ଯେତେବେଳେ ତମେ
ମୋ ତନୁର ପ୍ରତିଟି ତାରରେ
ହୋଇବ ଝଂକୃତ
ଶୁଣ ମୋର ସ୍ୱର୍ଣ୍ଣିମ ସଙ୍ଗୀତ,
ସତ କହ, ଏଇ ମୁହୂର୍ତ୍ତର ପ୍ରତୀକ୍ଷାରେ
କେତେକାଳୁଁ ଗୋପନରେ --
ମୋ' ଭିତରେ ରହିଥିଲ ତମେ !(୧୭)

ଶ୍ରୀରାଧା ବି ଶ୍ରୀକୃଷ୍ଣଙ୍କ ଆଗମନର ବାର୍ତ୍ତା ଶୁଣିଲାବେଳକୁ ତାଙ୍କୁ ଅନ୍ୟସବୁ ସକାଳଠୁ ଆଜିର ସକାଳ ଅଲଗା ଲାଗେ। ଅନନ୍ୟ ଅନ୍ୟମନସ୍କତା ପବନରେ ଖେଳିଯାଏ। ସେ

ଆଉ ସୁପ୍ତ ଅବସ୍ଥାରେ ବିବର୍ଣ୍ଣ ପାଣ୍ଡୁର ବଳୟ ଭିତରେ ପଡ଼ି ରହିପାରିବେନି। ନୂତନ ଜୀବନ ଖେଳି ଯାଇଛି। ସବୁ ନିଆରା ନିଆରା ଲାଗୁଛି।

"ସେଦିନ ସକାଳେ ସବୁ ନଈ ଆଉ ନଈକୂଳ ବାଲି,
ଗଛପତ୍ର, ପାହାଡ଼, ଆକାଶ --
ଅଲଗା ଦିଶିଲେ, ସତେକି ସେମାନେ
ଅବସ୍ଥିତ କେଉଁ ଏକ ଭବିଷ୍ୟତ କାଳେ
ଯେଉଁଠାରେ ଝୁଣ୍ଟିଝୁଣ୍ଟି ଚାଲିବାର କ୍ଲେଶ ସରିଯାଏ,
ଯେଉଁଠାରେ ବିଶ୍ରାମର, ପୁନର୍ମିଳନର
ଆଲୋକିତ ସୁଖ ରହିଥାଏ।"(୧୮)

କାହ୍ନୁ କନୁପ୍ରିୟାକୁ ଅଙ୍ଗୀକାର କରିନେଲାପରେ ତା'ର କୌଣସି ଯେମିତି ଅସ୍ତିତ୍ୱ ନାହିଁ। ଏକାକାର ହୋଇଯାଇଛି। ଯୁଗନଦ୍ଧ ରୂପକୁ ସେ ଯମୁନା ଜଳରେ ଦେଖିବାକୁ ପାଏ। ଦ୍ୱିପ୍ରହର ବିଜନ ମୁହୂର୍ତ୍ତରେ ନିର୍ଜନ ଯମୁନା ଘାଟରେ ସେ ବିବସ୍ତ୍ରା ହୋଇ ବେତସ ଲତା ପରି ବିଧୂନିତ ତନୁର ପ୍ରତିବିମ୍ବକୁ ଲକ୍ଷ୍ୟ କରେ। ଯମୁନାର ଜଳ ଯେମିତି ଖାଲି ନୀଳ ବାରିରାଶି ନୁହେଁ, ତାହା ଶ୍ୟାମ ଗଭୀରତାର ବ୍ୟାପ୍ତି। ସେ ବ୍ୟାପ୍ତି ହିଁ ନିଜେ କୃଷ୍ଣଚନ୍ଦ୍ର। ନିଜର ବିବସ୍ତ୍ର ତନୁକୁ ନିଜ ଦର୍ଶନ କରିବାରେ ସେ ଆଶାୟୀ ନୁହେଁ। ବରଂ ସେଠି "ମୋର ପ୍ରତି ଅଙ୍ଗ, / ଆପଣାର ଶ୍ୟାମ, ଗାଢ଼, ଅସୀମ ଆଶ୍ଳେଷେ / ପ୍ରସ୍ତ ପ୍ରସ୍ତ କରି ମୋତେ / ବାନ୍ଧି ରଖିଅଛି।"(୧୯) ନିଜ ଭିତରେ ଶ୍ୟାମ ଦର୍ଶନ କନୁପ୍ରିୟା ତ ଅଭିସାରିକା। କୃଷ୍ଣଚନ୍ଦ୍ରଙ୍କର ଆଗମନର କୌଣସି ସଙ୍କେତ ନାହିଁ। ଶୀତଳ ପବନରେ ସମଗ୍ର ତନୁ ଶିହରି ଉଠୁଛି। କେହି ନ ଥିବାର ସଙ୍କେତ ଥିଲେ ବି ଅନ୍ଧକାରକୁ ସେ ଗ୍ରାସ କରିନେବାରେ ଆଶାୟୀ। ଏବେ ତା'ର ଅଧୀନରେ ସେ ନାହିଁ। ତା' ନିଜ ଶରୀରର ଅଙ୍ଗ ପ୍ରତ୍ୟଙ୍ଗ ବି ତା'ର ନୁହେଁ। ସବୁ ଯେମିତି ବିଲୀନ ହୋଇ ଯାଉଛି। ଏକ ଦେହୋତ୍ତର ଚେତନା ସ୍ତରରେ ଉଭୟେ କନୁପ୍ରିୟା ଓ ଶ୍ରୀରାଧା ଉପନୀତ।

"ଏପରି ଆଭାସ କିପାଁ ମୁଁ ପାଉଛି
ପାଦ ମୋର, ମୋ' କପୋଳ, ପଲକ ଓ ଓଷ୍ଠ
ମୋର ପ୍ରତି ଅଙ୍ଗ, / ଯେପରି ନୁହନ୍ତି ମୋର
ନାହାନ୍ତି ମୋ ଆୟତ୍ତରେ ଆଉ
ଢ଼ୋକ-ଢ଼ୋକ ହୋଇ
ଧୀରେ ଧୀରେ ଯାଉଛନ୍ତି ଉତୁରି ଅନ୍ଧାରେ
ଯାଉଛନ୍ତି ହଜି / ଏବଂ / ଲୀନହୋଇ।"(୨୦)

ଶ୍ରୀରାଧାର ଅନୁଭବ ତୁଳନୀୟ --

"ସେଦିନ ସକାଳେ, ମୁଁ ନଈରେ ଗାଧୋଉଥିଲା ବେଳେ
ପାଣିରେ ଦେଖିଲି ମୋର ଗୋଡ଼କୁ, ଲାଗିଲା
ଏ ଗୋଡ଼ତ ମୋର ନୁହେଁ; କିଛି ମୋର ନୁହେଁ,

ଏ ଶରୀର ମୋର ନୁହେଁ, ମୋର ସବୁ ଆଶା ଓ ହତାଶାର
ଇତିହାସ ମୋର ନୁହେଁ + + + +
ଏ ବନ୍ଧୁବା ମୋର ନୁହେଁ, ଯେଉଁ ମୃତ୍ୟୁ ଦିନେ
ଅବଶ୍ୟ ଆସିବ ସେ ମୃତ୍ୟୁ ବି ନୁହେଁ
ମୁଁ ସର୍ବଦା କାଙ୍ଗାଳୁଣୀ ଅନ୍ତରୀକ୍ଷ ଯାଏଁ
ପ୍ରସାରିତ ମୋର ଦୁଇ ସୀମାହୀନ ବାହୁଙ୍କ ଭିତରେ
ମୁଁ ଉଦ୍‌ଗ୍ରୀବ ଶୂନ୍ୟ ସ୍ଥାନଟିଏ।
ଖାଲି ଶୂନ୍ୟସ୍ଥାନଟିଏ ହୋଇ ରହିଯିବା
କାହା କାହା କପାଳେ ତ ଥାଏ।"(୨୧)

କନୁପ୍ରିୟାଠାରୁ ଶ୍ରୀରାଧାର ଅନୁଭୂତି ଆହୁରି ସ୍ପଷ୍ଟ ଏବଂ ଚେତନା ଭିତ୍ତିକ। ଶୂନ୍ୟତା ଭିତରେ ନିଜର ସ୍ଥିତି ପାଇଁ ସେବି ନିଜକୁ ଭାଗ୍ୟବତୀ ମନେ କରେ। ସେ ଶୂନ୍ୟତା ସାଧାରଣ ଶୂନ୍ୟତା ନୁହେଁ। ଉଦ୍‌ଗ୍ରୀବ। ଅର୍ଥବହ ଶୂନ୍ୟତା। କନୁପ୍ରିୟାର ହୃଦୟରେ ଶିହରଣ। ଓଠରେ କଂପନ। ଚକ୍ଷୁ ଅର୍ଦ୍ଧନିମିଳିତ। କାମନା ଜର୍ଜରିତ। ପ୍ରାଣହୀନ ତନୁ। ଏହି ମୁହୂର୍ତ୍ତରେ ସେ ଅନୁଭବ କରେ ଯେମିତି ସେ କାହ୍ନୁଙ୍କୁ ଗାଢ଼ତର ଆଲିଙ୍ଗନରେ ବାନ୍ଧି ଦେଇଛନ୍ତି। ତାର ଇଚ୍ଛା: "ବ୍ୟାପ୍ତ ହୋଇ ମୋ' ଭିତରେ ତମରି ନିଃଶ୍ୱାସ, / ପ୍ରାଣ ତୁମ ମୋ ଭିତରେ ପ୍ରତିଷ୍ଠିତ ହୋଇ / ରକ୍ତ ତୁମ ମୋର ମୃତପ୍ରାୟ / ଶିରାରେ ଶିରାରେ / ପ୍ରବାହିତ ହୋଇ / କରୁ ମୋର ଜୀବନରେ ପୁନଃ ସଞ୍ଚାରିତ।"(୨୨) -- ଏବଂ କନୁପ୍ରିୟାର ଗଭୀର ଆଶ୍ଳେଷ ଓ ଦନ୍ତକ୍ଷତରେ ଯେମିତି ସେ କ୍ଷତାକ୍ତ। ନାଗବଧୂର ହଳାହଳରେ ସେ ଯେପରି ବ୍ୟାକୁଳିତ। କନୁପ୍ରିୟାର ଆକାଙ୍‌କ୍ଷା ଶ୍ରୀରାଧାର ଆକାଙ୍‌କ୍ଷା କିନ୍ତୁ କନୁପ୍ରିୟା ଠାରେ ଜାନ୍ତବତାର ପ୍ରାବଲ୍ୟ ପ୍ରକାଶିତ ହେଉଥିବା ସ୍ଥଳେ ଶ୍ରୀରାଧା ନିଷ୍କାମ ଭାବରେ ତାଙ୍କର ସାନ୍ନିଧ୍ୟାଶାୟୀ। ଶ୍ରୀରାଧା ଚାହେଁ ସେ ତାଙ୍କ ଅନୁଭୂତି ହୋଇ କାଳ କାଳ ପାଇଁ ରହିଯାଆନ୍ତୁ। ତାଙ୍କର ସବୁ ଲୁହକୁ ସେ ଚୁମ୍ବନର ପ୍ରଚଣ୍ଡ ଉତ୍ତାପରେ ଶୁଖେଇ ଦିଅନ୍ତେ। ତାଙ୍କର ଅନ୍ତଃକରଣରେ ସେ ନଈ ଓ ବାୟୁ ହୋଇ ରହିଯିବାରେ ଆଶାୟୀ। ପ୍ରିୟତମର ଆଖିରେ ନିଜେ ଲୁହଧାର ହୋଇ ବହିଯିବାରେ ସେ କାମନା ରଖନ୍ତି। ତାଙ୍କର ଦୀର୍ଘଶ୍ୱାସ ହୋଇ ଦୁଃସମୟରେ ସଞ୍ଚରିଯିବାକୁ ଏବଂ ସ୍ୱପ୍ନର ଅପ୍ରତ୍ୟାଶିତ ଉପାଦାନ ହୋଇ ତାଙ୍କ ହୃଦୟରେ ସେ ରହିଯାଆନ୍ତୁ।

"ତମେ ତ ମୋ ହତାଶାର ପରିପୂର୍ଣ୍ଣ ରୂପ।
ସବୁବେଳେ ସବୁଠାରେ ମୋର
ବାହୁରେ ତମର ବାହୁ ଛନ୍ଦି ନାଚୁଥିବି
ମୋ ନାଆଁ ପଛକେ ମନେ ନ ଥାଉ ତମର।"(୨୩)

କନୁପ୍ରିୟା ପ୍ରିୟ ମିଳନ ପାଇଁ ଉତ୍କଣ୍ଠିତା ପୁଣି ସେ ନିଜେ ପ୍ରକୃତି ରୂପିଣୀ। ଶକ୍ତି ସ୍ୱରୂପା। ଗ୍ରହ, ଉପଗ୍ରହ, ନକ୍ଷତ୍ର ଓ ଅସଂଖ୍ୟ ବ୍ରହ୍ମାଣ୍ଡ ହିଁ ସେ ନିଜେ। ଦିଗ ଦିଗନ୍ତ, ଅନନ୍ତ ସମୟର ବି ସେ ଅନ୍ୟରୂପା। କିନ୍ତୁ ଏ ରୂପକୁ ସେ ସଂପୂର୍ଣ୍ଣ ବିସ୍ମୃତା ହୋଇଛି। ମାଂସଳ ଚେତନା ତାକୁ ଗ୍ରାସ କରିଛି। ନିଜର କାମନାମୟୀ ଭୀଷଣ ସତ୍ତାକୁ ଦେଖି ସେ ନିଜେ ଭୀତା-ସଂକିତା। ତା' ଚକ୍ଷୁ ଚକ୍ଷୁ ନୁହେଁ, ତାହା ଯେପରି ପ୍ରତୀକ୍ଷାର

ସାକାର ରୂପ। ବାହୁ ସରଣୀରେ ରୂପାନ୍ତରିତ। ଦୁଧ-ଅଳତାର ଦେହ ରଜତ ଶୁଭ୍ର ଆଲୋକ। ଶାମୁକା ପରି ଅନ୍ଧାରି ଦେହ ଆବାହନରେ ପରିଣତ। ତାଙ୍କର ଦୃଢ଼ ଆଲିଙ୍ଗନ ପାଖରେ ସମୁଦ୍ରର ଉତ୍ତାଳ ଲହରୀ ହାର ମାନି ଯାଆନ୍ତୁ। ସବ୍ୟସାଚୀ ସମୟର ଧନୁର୍ଦ୍ଧର ତୂଣୀରରେ ଶର ରଖି ଧନୁ ଭାଙ୍ଗି ଦେଉ। ଏବଂ ସମୟ ଅପେକ୍ଷା କରୁ ତାଙ୍କ ଆଲିଙ୍ଗନର ଅନନ୍ତ ଅନ୍ତିମ ପରିସମାପ୍ତି ପର୍ଯ୍ୟନ୍ତ। ଜଗତ ଲୀନ ହୋଇ ଯାଉ। ସମୟ ତାର ଅଳକା ଫନ୍ଦିର ପାଶରେ ବାନ୍ଧି ହୋଇ ଯାଉ। "ଆଉ ଏଇ ନିଖିଳ ସୃଷ୍ଟିର ଗାଢ଼ ବିସ୍ତୃତିରେ / ମୁଁ ତୁମର ସାଥେ ଅଛି, କେବଳ ମୁଁ / ମୁଁ .....ତୁମର / ଅନ୍ତରଙ୍ଗ କେଳି ସଖୀ।" (୨୪) ଶ୍ରୀରାଧାର ଆତ୍ମା ବି କମ୍ ହିଂସ୍ର ନୁହେଁ। ଜଙ୍ଗଲ ଗୋଟାକ ବୁଲି ବୁଲି ସେ ଶିକାର ଖୋଜୁଛି। କିନ୍ତୁ କେଉଁଠି ଶିକାରର ଲେଶମାତ୍ର ଚିହ୍ନ ନାହିଁ। ତା'ର ବିକ୍ଷୁବ୍ଧ ପ୍ରାଣର ଚିତ୍କାର ଏମିତି --

"ନିଜର ସମସ୍ତ ଇଚ୍ଛା ବୋହିକରି ଫେରି ଆସୁଥିବା
ଲୋକ କି ଭୀଷଣ ଦିଶେ ତମେ ଜାଣ ନାହିଁ।
ସେ ଖୁବ୍ ଅଥର୍ବ ଦିଶେ, ଖୁବ୍ ହିଂସ୍ର ଦିଶେ,
ଚାହାଣିରେ ଖିନ୍‌ଭିନ୍ କରେ ପବନକୁ,
ସତେକି ପବନ କେଉଁ ଗୁମ୍ଫାରେ ଲୁଚାଇ
ରଖିଛି ତା' ପାର୍ଥନା ସବୁକୁ।"(୨୫)

ଶ୍ରୀରାଧାବି ସେହି ପ୍ରକୃତି ସ୍ୱରୂପା। ସେବି ତଥାକଥିତ ସମୟକୁ ଏଡ଼ିଦେଇ ଚାଲିଯାଏ। ତରାପରି ତା' ବୟସ ବଢ଼େ ନାହିଁ କି କମେ ନାହିଁ। ପକ୍ଷୀ ରାବିଲେ ବି ଚନ୍ଦ୍ରମା ମେଘ ଉହାଡ଼ରେ ଉଙ୍କି ମାରୁଥିବ। ସେ ରାତ୍ରି ସରିବନି। ନଈର ସେ ପଟରେ ପଛେ ଦିନ ହେଉ ଏପଟରେ କିନ୍ତୁ ଅସରା ରଜନୀ। "ତମେ ଆଜି ଆସ କିମ୍ବା ଆସ ଜନ୍ମଜନ୍ମାନ୍ତର ପରେ / ତମ ଲାଗି ମୋ ରୋମାଞ୍ଚ ଚିରକାଳସ୍ଥାୟୀ।"(୨୬)

କନୁପ୍ରିୟା ବେଳେବେଳେ ଦ୍ୱିଧାଗ୍ରସ୍ତ ହୋଇପଡ଼େ। ରାକା ରଜନୀରେ ରାସୋତ୍ସବରୁ ସେଯେ କାହିଁକି ଚାଲି ଆସିଲା, ସେଥିପାଇଁ ନିଜକୁ ଧିକ୍କାର କରେ। ନିନ୍ଦା କରେ। ନିଜର ସମସ୍ତ ଶରୀର ଓ ଚେତନାକୁ ସେ ଅଣୁ ଅଣୁ କରି କାହିଁକି ସଂପୂର୍ଣ୍ଣ ଭାବରେ ସମର୍ପଣ କରି ଶେଷ ହୋଇ ନଗଲା !! ସେହି ରାସ ରଜନୀ ସେ ଯାହାକୁ ଅଂଶତଃ ଆତ୍ମସାତ୍ କରିଥିଲେ ତାକୁ ପୂର୍ଣ୍ଣରୂପ ଦେଇ ଫେରାଇ ଦେଇଛନ୍ତି। "ହାୟ, ସେଇ ସଂପୂର୍ଣ୍ଣତା / ଏ ଦେହର ପ୍ରତି ଲୋମେ / ବାରମ୍ବାର ତମ ଲାଗି ଅଧୀର ବ୍ୟଥାରେ।"(୨୭) ଶ୍ରୀକୃଷ୍ଣଙ୍କ ପ୍ରତି ତାର ଅଭିଯୋଗ କମ ନୁହେଁ। ସେ ନ ଚାହୁଁଥିଲାବେଳେ ବେଣୁ ନାଦରେ ତାକୁ ଅଧୀରା କରି ପକାନ୍ତି। କୂଳ ଉଚ୍ଛୁଳି ସେ ମାଡ଼ି ଆସେ। ଅଥଚ ଫେରି ଯିବାକୁ ଚାହୁଁନଥିଲାବେଳେ ତାକୁ ବାହୁଡ଼େଇ ଦେବାକୁ ହୁଏ। ହଟନାଗରର ଭୋଜବାଜିରେ ସେ କମ ଭେଳିକି ହୋଇନି। ହୀନସ୍ତା ଭୋଗିନି। ଏବେତ ସେଇ ସବୁ ସ୍ମୃତିରେ ସେ ଭାରାକ୍ରାନ୍ତ। ଶ୍ରୀକୃଷ୍ଣଙ୍କ ପ୍ରୀତି ସମ୍ଭାର ପୂର୍ଣ୍ଣ ସ୍ନେହ-ସିକ୍ତ ଆଳାପସବୁ ତା'ର ମନେ ପଡ଼ିଯାଏ। ଚୂତ ମଞ୍ଜରୀକୁ ସୀମନ୍ତରେ ଭରି ଦେଇ ନାଗର କହିଥାନ୍ତି, "ପ୍ରିୟ ମୋର, ସେଥିଲାଗି ତମେ ମୋତେ କହ ବାରବାର -- / ନିଜ ପାଇଁ ନୁହେଁ, / ମୋ' ପାଇଁ ଦେଉଛ ମୋତେ ସ୍ନେହ।"(୨୮) ଏମିତି ବି ବେଳେବେଳେ ଏହି ଦେହ ବଳୟ ଭିତରେ ଥାଇ ଥାଇ ସେ ବିଦେହ ଚେତନାରେ

ରୂପାନ୍ତରିତ ହୋଇ ଯାଏ ଏବଂ କେବଳ ଗନ୍ଧମୟୀ ରଜନୀଗନ୍ଧାର ମଧୁର ଗନ୍ଧରେ ପରଣତ ହୋଇଯାଏ।

"ମୁଁ ଶରୀର ହୋ଼ଇ ରହିନାହିଁ
ମୁଁ ଖାଲି ସୁଗନ୍ଧ ଏକ
ମଧ୍ୟ ରାତ୍ରେ ଗନ୍ଧମୟୀ ରଜନୀଗନ୍ଧାର
ପ୍ରଶାନ୍ତ ମଧୁର ଗନ୍ଧ
ବର୍ଣ୍ଣହୀନ, ରୂପହୀନ, ଆକାର ବିହୀନ।"(୨୯)

ଅନୁରୂପ ଭାବେ ରମାକାନ୍ତଙ୍କ ଶ୍ରୀରାଧା ବି ନିଜର ସତ୍ତା ହରେଇ ବସେ। ସେ ଏକ ସୁଗନ୍ଧିରେ ପରିଣତ ହୋଇଯାଏ। ପାହାଡ଼ ଶୀର୍ଷରୁ ସଦ୍ୟ ମୁକୁଳି ଆସିଥିବା ଜ୍ୟୋସ୍ନା ପରି ସେ ବିଞ୍ଚି ହୋଇ ପଡ଼େ। ଉଭୟେ କନୁପ୍ରିୟା ଓ ଶ୍ରୀରାଧା ଶ୍ରୀକୃଷ୍ଣଙ୍କର ଦୈବୀଶକ୍ତି ପ୍ରତି ଅଭିଯୋଗ ବାଢ଼ନ୍ତି। ଯଦି ସବୁ କିଛି କଳ୍ପନାପ୍ରସୃତ, ତା'ର ଯଦି ବାସ୍ତବତା ନାହିଁ, ତେବେ ଏ ଲୀଳାବିଧାନ କାହିଁକି? "କାହିଁକି ଅଧୈର୍ଯ୍ୟ ଭାବେ ମୋ ଖୋସଣି ଭିଡ଼ାଭିଡ଼ି କର? ତମ ଓଠ କାହିଁକି ମୋ ଓଠରେ ଯୋଡୁଛ?"(୩୦) କନୁପ୍ରିୟାର ପ୍ରଶ୍ନ -- "ଯଦି ଏ ସୃଜନ ସବୁ, ବିନାଶ ପ୍ରବାହ / ଏବଂ ଅବିରାମ ଏଇ ଜୀବନ କ୍ରିୟାର / ଅର୍ଥ ଖାଲି ତମର କାମନା / ତମର ସଂକଳ୍ପ / ତା' ହେଲେ କହ ହେ ଇଚ୍ଛାମୟ..... / ତୁମରି ଇଚ୍ଛାର / ଏଇ ସଂକଳ୍ପର ଅର୍ଥ କିଏ?"(୩୧) କନୁପ୍ରିୟା ନିଜକୁ ପ୍ରକୃତି ରୂପିଣୀ ସତ୍ତାରେ ପହଞ୍ଚାଇ ଦିଅନ୍ତି। ଯୁଗଯୁଗାନ୍ତର କାଳ କାଳାନ୍ତର ଧରି ସେହି ପୁରୁଷୋତ୍ତମ କୃଷ୍ଣଚନ୍ଦ୍ର ହିଁ ପ୍ରକୃତିମୟୀ ଶ୍ରୀରାଧାଙ୍କୁ ଖୋଜି ଚାଲିଛନ୍ତି। ତାଙ୍କ ଆଲିଙ୍ଗନ ଭିତରେ ଥିଲାବେଳେ ଏ ସୃଷ୍ଟି ଲୀନ ହୋଇଯାଏ। ତେଣୁ ଏହି ଲୀଳାର ଅନ୍ତ ନାହିଁ। ଅତୃପ୍ତ କ୍ରୀଡ଼ାର ଅନନ୍ତ ପୁନରାବୃତ୍ତି ଭିତରେ ପ୍ରକୃତି-ପୁରୁଷର ଅନ୍ୱେଷଣ ଓ ସମ୍ମେଳନ କ୍ରିୟା ଅବ୍ୟାହତ ରହିଛି। କନୁପ୍ରିୟା ଯେପରି ସେହି ଭୁଜବଲ୍ଲରୀରେ ଆବଦ୍ଧ ଥିଲା -- ବେଳେ ସବୁକିଛି ବିସ୍ମୃତ ହୋଇଯାଏ ଅନୁରୂପ ଭାବେ ଶ୍ରୀରାଧା ମଧ୍ୟ। "ଦେହରେ ଲାଗିଲେ ଦେହ / ମୁଁ ନିଜକୁ ପାଶୋରି ପକାଏ, -- ସୁତରାଂ ଜାଣିଶୁଣି କିନ୍ତୁ କିଛି ନ ଜାଣିଲା ଭଳି / ବାରମ୍ବାର ତମ ଦେହେ ମୁଁ ଦେହ ବଢାଏ।"(୩୨) କନୁପ୍ରିୟା ହିଁ କୃଷ୍ଣଙ୍କର ସକଳ ଇଚ୍ଛା ଓ କାମନାର ପ୍ରତିଭୂ। ଶ୍ରୀରାଧାବି ଠିକ ସେମିତି। ପ୍ରୀତିପାଗଳିନୀ କନୁପ୍ରିୟା କୃଷ୍ଣଙ୍କ ଅନୁପସ୍ଥିତିରେ ଯମୁନା ତଟକୁ ଏକାନ୍ତରେ ଆସେ। ଆନମନା ହୋଇଉଠେ। ଧୂଳିରେ ନିଜ ଅଜ୍ଞାତସାରରେ ଅଙ୍ଗୁଳିରେ ଲେଖିଯାଏ କାହ୍ନୁର ନାମ। ସଚେତନତା ପରେ ଲିଭେଇଦିଏ ତାକୁ। ସେ ନାଁକୁ ଲିଭେଇ ଦେଲେ ବି ଦୁଃଖ ନାହିଁ। "ମୁଁ କି କେବଳ ଦୁଇଯନ୍ତ୍ରର ହିଁ ସମାବେଶ ଅଛି।"(୩୩) ସେ ଆଜି ସେହି କୁଞ୍ଜ ତଳରୁ କୁଟା, କାଠି, ଗୋଡ଼ି ଓ ପତରକୁ ଯତ୍ନରେ ଗୋଟି ଗୋଟି ଗୋଟାଏ। ଶବ୍ଦର ଜାଲରେ ସେ ଛନ୍ଦି ହେବାକୁ ଚାହେଁନା। ଶବ୍ଦର ମୂଲ୍ୟ ତା' ପାଇଁ କିଛି ନୁହେଁ। ଯେତେ ଶବ୍ଦ ଉଚ୍ଚାରିତ ହେଉଛି ସେ ଶୁଣେ ସବୁ ଶବ୍ଦ ଯେମିତି 'ରାଧେ'-'ରାଧେ'। ସବୁ ଶବ୍ଦ ଭିତରେ ସେହିଁ ରୂପାୟିତ -- ବିଳସିତ। "କେବଳ ମୁଁ / ତେବେ ଏ ଶବ୍ଦରେ / କିପରି ବା ମୋତେ / ବୁଝାଇବୁ ଇତିହାସ କାହ୍ନୁ!"(୩୪)

ଉଭୟେ କୃଷ୍ଣଙ୍କୁ ନିରୂପଣ କରିବାରେ ଅସମର୍ଥ। କନୁପ୍ରିୟା ମନରେ ପ୍ରଶ୍ନବାଚୀ

କାହ୍ନୁ ତା'ର କ'ଣ ହୁଏ ? ଏକଥା ବି ସଖୀ ମାନେ ଜିଜ୍ଞାସା କରିଛନ୍ତି। ଯେତେବେଳେ ମାଳା ଗୁନ୍ଥିବା ପାଇଁ କନୁପ୍ରିୟାକୁ କାହ୍ନୁ କଣ୍ଟକିତ ପାଦପ ଆରୋହଣ କରି ପୁଷ୍ପାଞ୍ଜଳି ଭରି ଦିଅନ୍ତି, ସେତେବେଳେ ସେ ପ୍ରୀତି-ପ୍ରମତ୍ତା ହୋଇ ତାଙ୍କୁ ଆପଣାର ସଖା ବୋଲି ବୁଝିନିଏ। ଦାବାଗ୍ନିରୁ ରକ୍ଷା କଲାବେଳେ ସେ ରକ୍ଷକ ଭାବରେ ପ୍ରତୀତ। ବଂଶୀର ସ୍ୱରରେ ଯେବେ ତାଙ୍କୁ ବିମୋହିତ କରିଛନ୍ତି ସେତେବେଳେ ସେ ଯେମିତି ତା'ର ଲକ୍ଷ୍ୟ, ଆରାଧ୍ୟ। ସଖୀମେଳରେ ଥଟ୍ଟା କଲାବେଳେ ଲଜ୍ଜାରେ ସେ କହେ, ଶ୍ୟାମ ତାର କିଛି ନୁହେଁ। ଗିରି ଗୋବର୍ଦ୍ଧନ ଟେକିଥିବା ବାଳକଙ୍କୁ କନୁପ୍ରିୟାବି ବର୍ଷାରୁ ରକ୍ଷା ପାଇବା ପାଇଁ ତା' ପଣତକାନିର ଆଡୁଆଳରେ ନେଇ ଆସେ। ଇନ୍ଦ୍ରଙ୍କୁ ଅାସ୍ଫାଳନ, କାଳୀୟ ଦଳନ ଇତ୍ୟାଦି ଅଲୌକିକ କ୍ରିୟା ପ୍ରସଙ୍ଗରେ ସେତ ମହାନ୍। କନୁପ୍ରିୟା ସେତେବେଳେ ତାଙ୍କ ସହିତ ଜ୍ୟୋତିର୍ମୟୀ ଯୋଗମାୟା ଭାବରେ ଉଦ୍‌ଭାସିତା। ପୁନଶ୍ଚ ଅଳସ ସଞ୍ଜରେ ବେତସ କୁଞ୍ଜରେ ବାହୁ ବଲ୍ଲରୀରେ ଛନ୍ଦି ହେଲାବେଳେ ଦେହରେ ଅଭିନବ ଶୀତ୍କାର। ସେ ପୁଣି ସୀମିତ ହୋଇଯାଏ। ପୁଣି ତାହା ଅସୀମ ହୋଇଉଠେ। "ମୁଁ ହିଁ ତ ସେହି--- / ଦିଗ ଅଙ୍ଗନା କାଳର ବଧୂ /++ ଅନନ୍ତ କାଳୁ / ଅନ୍ତ ବିହୀନ ଦିଶାତର ଦିଶାରେ / ତୋ ସାଥିରେ ସଧିରେ ନିରନ୍ତ..... / ମୁହିଁ ଚାଲିଛି / ଚାଲିବି ସେପରି ମୁହିଁ।"(୩୫) ଶ୍ରୀରାଧାବି ତାଙ୍କ ନାମୋଚ୍ଚାରଣରେ ଏ ବାହ୍ୟ ଚେ୍ତନାରୁ ଅସଂପର୍କିତା ହୋଇଯାନ୍ତି। ଅନ୍ୟମାନେ ତାଙ୍କର ଅଲୌକିକତାରେ ବିସ୍ମୟ ବିମୂଢ଼ ହେଲାବେଳେ ସେ କିନ୍ତୁ ଅପେକ୍ଷା କରନ୍ତି, "ତମେ ଆସି ଠିଆ ହେବ ମୋ ପଛରେ, / ମୋ କାନରେ ଖାଲି ମୋ କାନରେ / କହିଦେବ ସବୁର ଉତ୍ତର ++।"(୩୬) କନୁପ୍ରିୟା ପରି ଶ୍ରୀରାଧାଙ୍କୁ ବି ସଖୀ ପ୍ରଶ୍ନ କରେ ଯେ କୃଷ୍ଣଙ୍କୁ ସେ କାହିଁକି ଏତେ ଭଲ ପାଏ ବୋଲି। ସେତେବେଳେ ସେ କିଛି ଉତ୍ତର ଦେଇପାରେନି। ଖାଲି ତାରାଖୁନ୍ଦା ଆକାଶକୁ ଚାହିଁରହେ। ହାଡ଼ ଭିତରେ ଥଣ୍ଡା ଲାଗେ। ପାଟି ପଡ଼ିଯାଏ। ଏମିତି ଏକ ସମୟ ଆସିବ ଯେତେବେଳେ ଆକାଶରେ ଏ ତାରା ଥିବେ କିନ୍ତୁ ସେ ଆଉ ନଥିବ। ସାଧାରଣତଃ ଦୈହିକ ମୃତ୍ୟୁ ପ୍ରତି ସେ ଯେତେବେଳେ ସଚେ୍ତନ ହୋଇପଡ଼ିଛି ସେତେବେଳେ ପ୍ରୀତିର ଅନୁଭବଟା ଆଉରି ସାନ୍ଦ୍ରୀଭୂତ ହୋଇଛି। "କିପରି ବୁଝାଇଥାନ୍ତି ଏଥିପାଇଁ, ଖାଲି ଏଥିପାଇଁ / ତମେ ଏତେ ପ୍ରିୟତମ ମୋର, / କାହାକୁ ବୁଝାଇ ହେବ ପ୍ରକୃତ କାରଣ / ଆତଙ୍କର, ଭଲପାଇବାର ?"(୩୭)।

କନୁପ୍ରିୟା ଜାଣେ କୃଷ୍ଣ କେତେ ଆତୁର। ଶ୍ରୀରାଧା ବି ବେଳେବେଳେ ତାଙ୍କୁ ଈଶ୍ୱର ବୋଲି ସ୍ୱୀକାର କରନ୍ତି ନାହିଁ। "ତମେ ଲବଣୀ ପିତୁଳାଟିଏ, ଆଖିରେ ଆଖିଏ/ ଲୁହ ଧରି ଯାଆ ଆସ କର।"(୩୮) ଯେତେଯେତେ ରୂପରେ କନୁପ୍ରିୟା ଓ ଶ୍ରୀରାଧା ତାଙ୍କୁ ତୁଳନା କରି ନିଜ ଭିତରେ ସ୍ଥାପନ କରିବାକୁ ଚାହିଁଲେବି, 'ତଥାପି ରହନ୍ତୁ ତୁହିତ ଅକୂଳ ହୋଇ'(୩୯) କନୁପ୍ରିୟା ଯଦି ପ୍ରକୃତି ସ୍ୱରୂପିଣୀ ଏବଂ --

"ଯଦି ଏ ଚନ୍ଦ୍ରମା ମୋର ଆଙ୍ଗୁଳିର ଛାୟା
ଆଉ ମୋର ଇଙ୍ଗିତରେ ଘଟେ କ୍ଷୟ ବୃଦ୍ଧି
ଯଦି ଏ ଆକାଶ ଗଙ୍ଗା ଶୋଭା ମୋର କେଶ ବିନ୍ୟାସର
ଆଉ ମୋର ଇଙ୍ଗିତରେ ଏହାର ଅନନ୍ତ

ବ୍ରହ୍ମାଣ୍ଡ ଯଦି ବା ତା'ର ଦିଗ ବଦଳାଏ !
ତେବେ ମୁଁ କାହିଁକି ଡରେ, ବଂଧୁମୋର !(୪୦)

ଏ ତନୁ ବଲ୍ଲରୀ ଯଦି ତା'ଙ୍କ ପାଇଁ ସମର୍ପିତା ତେବେ ଏ ଛାୟା-ତନୁର ଭୟ କାହିଁକି? ଶ୍ରୀରାଧାର ଦମ୍ଭୋକ୍ତି କମ ନୁହେଁ। ତା'ର ଅନୁଭୂତି ଏମିତି :

"ସେତେବେଳେ ମତେ ଯାହା ଭଲ ଲାଗେ ସବୁକିଛି ଥିବ,
ତମେ ଦେଖାଯାଉଥିବ ମୋ ନିଜର ଇଚ୍ଛା ଅନୁଯାୟୀ,
ମୁଁ ଚାହିଁବା ମାତ୍ରେ ଜହ୍ନ ଉଇଁବ ଓ ବୁଡ଼ିଯିବ ଯେବେ
ଜହ୍ନ କିଛି ଦେଖୁବୋଲି ମୁଁ ଚାହିଁବି ନାହିଁ।"(୪୧)

"କନୁପ୍ରିୟା'ର ସମାପନରେ କନୁପ୍ରିୟା ସ୍ୱୀକାର କରେ ଯେ ସେ ତାଙ୍କ ଭିତରେ ବିନ୍ଦୁପରି ବିଲୀନ ହୋଇଯାଇନି। ସେ କୃଷ୍ଣଙ୍କ ଗୋଲୋକକୁ କାଳାବ୍ଧିହୀନ ରାସକୁ ଅସ୍ୱୀକାର କରିଛି। କାରଣ, ସେ ଜାଣେ ଯେ ଦିନେ ନା ଦିନେ ପୁଣି ତାକୁ ଆସିବାକୁ ହେବ। ଶ୍ରୀରାଧା ବି କୃଷ୍ଣଙ୍କ ସହିତ ରାତ୍ରିଯାପନ କଲେ ମଧ କେହି କାହାକୁ ଛୁଇଁନାହାନ୍ତି। କାଳେ ସେ ତାଙ୍କ ସହିତ ମିଶିଗଲେ ଲୋଡ଼ିବାଭାବଟା ଆଉ ରହିବନି। ପାଇ ନ ପାଇବାର ଦୁଃଖ ସୁଖ ଭିତରେ ହିଁ ଜୀବନର ସାର୍ଥକତା ଥାଏ। "ତମକୁ ଛୁଇଁଲେ ତମେ / ମିଶିଯିବ ମୋ ରକ୍ତ ଭିତରେ / ଆଉ କ'ଣ ଆଗପରି ବଇଁଶୀ ଖଣ୍ଡିଏ / ଧରି ଚାଲୁଥିବ ପ୍ରତିଦିନ ମୋ ପଛରେ?"(୪୨) ଆଜି ଜୀବନର କଠିନତମ ଛକରେ ସେ ତାଙ୍କ ପାଇଁ ପ୍ରତୀକ୍ଷିତା। ରାଧା ବିନା ଯେମିତି ସବୁ ଶବ୍ଦ, ସବୁ ଇତିହାସ ଅର୍ଥହୀନ।

"ମୁଁ ଏଇ ଯାତ୍ରା ପଥର ଅତିହିଁ କଠିନତମ ଛକେ
ତୋର ପ୍ରତୀକ୍ଷାରେ
ଅବିଚ୍ଛଳ ହୋଇ ଠିଆ ହୋଇଛିରେ କାହ୍ନୁ..... !(୪୩)

କନୁପ୍ରିୟା ପ୍ରତୀକ୍ଷାରତ ଅବସ୍ଥାରେ ରହିଯାଇଛି। ଶ୍ରୀରାଧାର ସଂସ୍ଥିତି ଜୀବନ ଓ ମରଣ ଭିତରେ। ଶ୍ରୀରାଧା କୃଷ୍ଣଙ୍କ ମୃତ୍ୟୁ ସଂବାଦ ଶୁଣିଲା ପରେ ଆଦୌ ବିଚ୍ଳିତା ନୁହନ୍ତି। ସେ ଆଉ ଦେହ ପାଇଁ ଆଶାୟୀ ନୁହନ୍ତି। "ତମେ ଯଦି ତାଙ୍କ ପାଇଁ ନ ମରିଥାନ୍ତ, ମୁଁ ଗୋଟାପଣେ ପାଇଥାନ୍ତି କିପରି ତମକୁ?"(୪୪) କିନ୍ତୁ ଚୈତନିକ ସ୍ତରରେ ସେ ଜୀବିତ। ଏଣିକି ମିଳନ ପଥରେ ତାଙ୍କର ଆଉ ବାଧା ନାହିଁ। ଏଣିକି ସେହି ଦେହୋତ୍ତର ସ୍ତରରେ ସେମାନେ ମିଶିଯାଉଥିବେ। ଶେଷକୁ ଶ୍ରୀରାଧାର ଅନୁଭବ--"ମରି ପାରୁନଥିବି ଅଥଚ ଜୀଇଁବା ବି ପୁରା ଅସମ୍ଭବ।"(୪୫)

ଏ ଆଲୋଚ୍ନାର ଶେଷ ପର୍ଯ୍ୟାୟରେ ଏତିକି ମାତ୍ର କୁହାଯାଇପାରେ ଯେ କନୁପ୍ରିୟାର ଅନୁଭବ ଆଧୁନିକ ମଣିଷଟିର ଅନୁଭବ ସତ କିନ୍ତୁ ଶ୍ରୀରାଧାର ଅନୁଭବ ଆଜିର ପ୍ରତ୍ୟେକ ମଣିଷର ଅନ୍ତରାତ୍ମାର ଅନୁଭବ। କନୁପ୍ରିୟାର ଅନୁଭୂତି ଅପେକ୍ଷା ଶ୍ରୀରାଧାର ଅନୁଭୂତି ଅଧିକ ସାନ୍ଦ୍ରୀଭୂତ ପ୍ରତୀତ ହୁଏ, ଅବଶ୍ୟ ଏହାର ପଛଭୂମିରେ କାଳାନୁଭିତ୍ତିକ ଚୈତନିକ ଅନୁଭୂତି ଓ ବିବର୍ତ୍ତନ ହିଁ ମୂଳହେତୁ।

## ପାଦଟୀକା

୧. ମୋ କଥା -- କନୁପ୍ରିୟା -- ଡଃ. ଧର୍ମବୀର ଭାରତୀ -- ଭାଷାନ୍ତର -- ଶ୍ରୀ ଶ୍ରୀନିବାସ ଉଦ୍‌ଗାତା-ପୃ.୧୨
(ପାଠକୀୟ ସୁବିଧା ଲାଗି ଏହି ଆଲୋଚନାରେ ଅନୂଦିତ ଗ୍ରନ୍ଥକୁ ଗ୍ରହଣ କରାଯାଇଛି ।)
୨. କନୁପ୍ରିୟା- ପୃ. ୫
୩. କନୁପ୍ରିୟା - ପୃ. ୬
୪. ଶ୍ରୀରାଧା - ପୃ. ୩୩
୫. କନୁପ୍ରିୟା - ପୃ. ୧୫-୧୬
୬. ଶ୍ରୀରାଧା - ପୃ. ୨୮
୭. କନୁପ୍ରିୟା - ପୃ. ୫୭
୮. କନୁପ୍ରିୟା - ପୃ. ୫୯
୯. କନୁପ୍ରିୟା - ପୃ. ୬୦
୧୦. ଶ୍ରୀରାଧା - ପୃ. ୭୭
୧୧. ଶ୍ରୀରାଧା - ପୃ. ୭୭
୧୨. ଶ୍ରୀରାଧା - ପୃ. ୧୦୩
୧୩. ଶ୍ରୀରାଧା - ପୃ. ୫୨
୧୪. କନୁପ୍ରିୟା - ପୃ. ୭
୧୫. ଶ୍ରୀରାଧା - ପୃ. ୪୧
୧୬. ଶ୍ରୀରାଧା- ପୃ. ୪୨
୧୭. କନୁପିୟା - ପୃ. ୬
୧୮. ଶ୍ରୀରାଧା - ପୃ. ୪
୧୯. କନୁପ୍ରିୟା - ପୃ. ୯
୨୦. କନୁପ୍ରିୟା - ପୃ. ୪୯
୨୧. ଶ୍ରୀରାଧା -ପୃ. ୪
୨୨. କନୁପ୍ରିୟା - ପୃ. ୫୦
୨୩. ଶ୍ରୀରାଧା - ପୃ. ୯୦
୨୪. କନୁପ୍ରିୟା - ପୃ. ୫୩-୫୫
୨୫. ଶ୍ରୀରାଧା - ପୃ. ୫
୨୬. ଶ୍ରୀରାଧା - ପୃ. ୨୨
୨୭. କନୁପ୍ରିୟା - ପୃ. ୧୦
୨୮. କନୁପ୍ରିୟା -ପୃ. ୨୭
୨୯. କନୁପ୍ରିୟା -ପୃ. ୨୩
୩୦. ଶ୍ରୀରାଧା -ପୃ. ୩୭
୩୧. କନୁପ୍ରିୟା -ପୃ. ୩୯-୪୦
୩୨. ଶ୍ରୀରାଧା -ପୃ. ୩୭

୩୩. କନୁପ୍ରିୟା -ପୃ. ୬୨
୩୪. କନୁପ୍ରିୟା -ପୃ. ୭୨
୩୫. କନୁପ୍ରିୟା -ପୃ. ୩୪
୩୬. ଶ୍ରୀରାଧା -ପୃ. ୮
୩୭. ଶ୍ରୀରାଧା -ପୃ. ୨୯
୩୮. ଶ୍ରୀରାଧା ପୃ. ୮୪
୩୯. କନୁପ୍ରିୟା ପୃ. ୩୬
୪୦. କନୁପ୍ରିୟା ପୃ. ୪୬-୪୭
୪୧. ଶ୍ରୀରାଧା -ପୃ. ୭୦
୪୨. ଶ୍ରୀରାଧା -ପୃ. ୧୪
୪୩. କନୁପ୍ରିୟା -ପୃ. ୮୨
୪୪. ଶ୍ରୀରାଧା -ପୃ. ୧୧୯
୪୫. ଶ୍ରୀରାଧା -ପୃ. ୧୧୯

# ସପ୍ତମ ପରିଚ୍ଛେଦ

## ରମାକାନ୍ତଙ୍କ କବିତାରେ ଆଙ୍ଗିକ ପ୍ରୟୋଗ

କବିତାର ଆଙ୍ଗିକ ସମ୍ପର୍କରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ରୀତିରେ ବିବିଧ ମତ ବୟାନ ହୋଇଥିଲେ ମଧ୍ୟ ତାର କୌଣସି ଶେଷ ସିଦ୍ଧାନ୍ତ ବା ରୂପ ମିଳି ନପାରେ ଯେହେତୁ ସାହିତ୍ୟ ଜୀବନ ସମ୍ପର୍କିତ। ଅତଏବ ଜୀବନରୁଚି କାଳାନୁଭିତ୍ତିକ ରୀତିରେ ରୂପାନ୍ତରିତ ହେଲାପରି ସାହିତ୍ୟ ମଧ୍ୟ ରୂପ ବଦଳାଇ ଥାଏ। 'କବିତା ସୁନ୍ଦରୀ'--ଏହି ପଦଟି ଉଚ୍ଚାରଣ କଲାମାତ୍ରେ କବିତାରେ ଆଙ୍ଗିକର ତାତ୍ପର୍ଯ୍ୟ ଓ ମହତ୍ତ୍ୱ ସ୍ୱତଃ ପ୍ରତିପାଦିତ ହୋଇଯାଏ। ଶାରଳା ଦାସଙ୍କ ଦାଣ୍ଡୀବୃତ୍ତ ଓ ଦେଶଜ ଶବ୍ଦର ପ୍ରତୁଳ ପ୍ରୟୋଗ ବିଧିର ଧାରା ମଧ୍ୟଯୁଗୀୟ ବା ରୀତି ଯୁଗୀୟ ବିବିଧ ଛନ୍ଦ-ବୃତ୍ତ ତଥା ତତ୍ସମଶବ୍ଦାବଳୀ ମଧ୍ୟକୁ ଚାଲିଆସିବା ଭିତରେ ଯେଉଁ ଯୁଗୀୟ ପ୍ରଭାବ ସ୍ୱୀକାର୍ଯ୍ୟ; ଅନୁରୂପ ଭାବେ ସାମ୍ପ୍ରତିକ କବିତାରେ ଗଦ୍ୟଛନ୍ଦ ବା ମୁକ୍ତଛନ୍ଦ ତଥା ଶବ୍ଦର ପ୍ରୟୋଗ ଧାରା ଲକ୍ଷଣୀୟ। ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତର ଗଭୀର ତତ୍ତ୍ୱ ହୁଏତ ଆଜିର କବିତାରେ ଆତ୍ମିକ ଦିଗରୁ ପ୍ରାଧାନ୍ୟ ପ୍ରତିଷ୍ଠା ଲାଭ କରିପାରେ (୧), ବା ଶାରଳା ଦାସଙ୍କ ମହାଭାରତର ଭାବବସ୍ତୁ ଆଜିର କବିତାର ନାଭିକେନ୍ଦ୍ର ଭାବରେ ପ୍ରତୀକିତ ହୋଇପାରେ (୨) କିନ୍ତୁ ସେହି ଚେତନାର ଆଧୁନିକ ରୂପାୟନ ଓ ପ୍ରକାଶ ନିମିତ୍ତ ଗୁଜ୍ଜରୀ ରାଗ ବା ଦାଣ୍ଡୀବୃତ୍ତ କଦାଚିତ ସାନୁକୂଳ ନହୋଇ ପାରେ; ଯେମିତି ଆଜିର ନବବଧୂଟି ପାଦରେ ପାହୁଡ଼, ନାକରେ ନୋଥ, ହାତରେ ବଟଫଳ ଓ ଖଡୁ ଇତ୍ୟାଦି ବ୍ୟବହାର କରିବାରେ ପରାଙ୍ମୁଖୀ। ସୀତା-ସାବିତ୍ରୀର ଆଦର୍ଶ ହୁଏତ ଆମ ନବୀନା ମାନଙ୍କର ଲକ୍ଷ୍ୟ ହୋଇପାରେ କିନ୍ତୁ ପରିଧାନ ଆଦୌ ନୁହେଁ।

ସାହିତ୍ୟରେ ନାନ୍ଦନିକ ମୂଲ୍ୟ ଅପରିହାର୍ଯ୍ୟ। ତେଣୁ କବିତାରୁ ଯେତେବେଳେ ଏହା ବାଦ ପଡ଼େ ସେତେବେଳେ ତାହା ଆଉ କବିତା ହୋଇ ରହେନି ବରଂ ଇତିହାସ, ଦର୍ଶନ, ସମାଜ ତତ୍ତ୍ୱ ବା ଅନ୍ୟ କିଛି ବୌଦ୍ଧିକ ଭାବ ନିହିତ ବସ୍ତୁରେ ପରିଚିତ ହୋଇପାରେ। କବିତାର ଭାବତତ୍ତ୍ୱକୁ ପ୍ରକାଶ କରିବା ପାଇଁ ସହାୟକ ହୁଏ ଭାଷା, ପ୍ରତୀକ, ଚିତ୍ରକଳ୍ପ, ଉପମା, ମିଥ୍ ବା ଆର୍କିଟାଇପ୍। ଏଗୁଡ଼ିକ ଦିବ୍ୟଦ୍ରଷ୍ଟା କବିର ଏକ ଏକ ଗଭୀରତମ ନିମଜ୍ଜିତ ମୁହୂର୍ତ୍ତର ପୁଷ୍କଳ ପରିପ୍ରକାଶ। ଏହି ସମୟ କବିପାଇଁ ଅଲୌକିକ ଓ ଅନନ୍ୟ ସାଧାରଣ। ସେହି ମୁହୂର୍ତ୍ତ ସମ୍ପର୍କରେ ଆର୍ନଷ୍ଟ କ୍ୟାସିରର୍ କହିଛନ୍ତି--"ସତେ ଯେମିତି ସାରା ପୃଥିବୀର ମୃତ୍ୟୁ ଘଟେ। ପୁରୁଷକାର ସେଇ ଗୋଟିଏ ବସ୍ତୁ ଉପରେ ହିଁ ନିଜର

ସବୁ ଶକ୍ତି ବିନିଯୋଗ କରେ, ସେଇଥିରେ ବଞ୍ଚେ, ସେଇଥିରେ ନିଜକୁ ହଜେଇ ଦିଏ। ଇନ୍‌ଟ୍ୟୁଇଟିଭ୍ ଅନୁଭବର ବ୍ୟାପ୍ତିକରଣ ପରିବର୍ତ୍ତେ ଆମେ ଦେଖୁ ସଂଯମନ। ବାହାରକୁ ତରଙ୍ଗାୟିତ ଭାବରେ ବହି ନଯାଇ, ପ୍ରସାରିତ ନହୋଇ ଅନୁଭୂତି ହୁଏ ପରିପୁଷ୍ଟ, ଏକୀଭୂତ।'' (ଭାଷା ଓ ମିଥ୍) (୩)

ରମାକାନ୍ତଙ୍କ କବିତାର ଆଙ୍ଗିକ ସମ୍ପର୍କରେ ବିଚାର ଆଲୋଚନା କରିବା ପୂର୍ବରୁ ପାଶ୍ଚାତ୍ୟ ସାହିତ୍ୟରେ ଯେଉଁ ଝଡ଼ ବହିଯାଇଛି ଏବଂ ତା'ର ପ୍ରଭାବରେ କି କି ପରିବର୍ତ୍ତନ ଆସିଛି ଏହି ସନ୍ଦର୍ଭରେ ପୂର୍ବରୁ ଆଲୋଚନା କରାଯାଇଛି। ମାଲାର୍ମେ, ର୍‍ୟାଂବୋ ଓ ପରବର୍ତ୍ତୀ ସମୟର ଅତିବାସ୍ତବବାଦୀମାନେ କବିତାରେ ଆଙ୍ଗିକ ପ୍ରତି ବେଶୀ ଧ୍ୟାନଶୀଳ ହୋଇ ବିବିଧ ପରୀକ୍ଷା ନିରୀକ୍ଷା ଚଳାଇଲେ। ଏଣିକି କବିତାର ଭାଷା ଆଉ ଭାବବସ୍ତୁର ବାହକ ବା ପ୍ରକାଶକ ନହୋଇ ମ୍ୟାଜିକାଲ୍ ବା ଯାଦୁକରୀ ଗୁଣର ଆଧାର ହୋଇ ଉଠିଲା। ସମାଲୋଚକ ବ୍ଲାକ୍‌ମୁର୍ ପ୍ରତୀକ ହିଁ କବିତାର ପ୍ରାଣ ଓ ଆତ୍ମା ବୋଲି ମୁକ୍ତ କଣ୍ଠରେ ସ୍ୱୀକାର କଲେ। ଚିତ୍ରକଳ୍ପ ଓ ପ୍ରତୀକ ପ୍ରୟୋଗରେ କବିତାର ଭାଷା ହୋଇ ଉଠିଲା ରହସ୍ୟ ବିଜଡ଼ିତ ଏବଂ ଛାୟାଚ୍ଛନ୍ନ। ସାଙ୍ଗୀତିକତାର ବିଲୋପ ଘଟି ଗଦ୍ୟମୟତା ଅଗ୍ରାଧିକାର ଲାଭ କଲା। ଆବେଗିକ ବର୍ଣ୍ଣନା ବିଳାସ ପରିବର୍ତ୍ତେ ପ୍ରତୀକ, ଚିତ୍ରକଳ୍ପ ଓ ମିଥ୍ ଜରିଆରେ ତାହା ସଂକ୍ଷିପ୍ତତା ଓ ସଂଯମତାକୁ ଆଦରି ନେଲା। ପ୍ରାଜ୍ଞିକ ପରିପ୍ରେକ୍ଷୀ ଓ ଚେତନା ଉଦ୍ରେକକାରୀ ସ୍ତରରେ କବିତା କ୍ରମଶଃ ସାଧାରଣ ପାଠକମାନଙ୍କର ଭ୍ରୂକୁଞ୍ଚନର ହେତୁ ହୋଇ ଉଠିଲା। ସର୍ବଦା ଭଲ କବିମାନେ ଆଙ୍ଗିକ ପ୍ରତି ସଜାଗ ଦୃଷ୍ଟି ଦେଲାବେଳେ ଆତ୍ମାପ୍ରତି ଆଦୌ ଅବହେଳା କରି ନଥାନ୍ତି ବରଂ ଉଭୟ ମଧ୍ୟରେ ଏକ ସୁସମନ୍ୱୟ ସ୍ଥାପନ ସେମାନଙ୍କର ଧ୍ୟେୟ ହୋଇଥାଏ।

ଏହି ପ୍ରସଙ୍ଗରେ କବି ସଚ୍ଚି ରାଉତରାୟଙ୍କ ମତକୁ ଉଲ୍ଲେଖ କରାଯାଇପାରେ -- ''ଆଙ୍ଗିକ ଯେଉଁଠି ରସାନୁସାରୀ, ସେଠି ତାହା ସାର୍ଥକ ଏବଂ ଶିଳ୍ପର ପରିପୂରକ। ମାତ୍ର ଆଜିକାଲି ବହୁ ପରୀକ୍ଷା ନିରୀକ୍ଷା ମଧ୍ୟରେ ଆଙ୍ଗିକର ଏହି ପ୍ରକୃତ କାର୍ଯ୍ୟଟା ଭୁଲିଯାଇ ତାର ଚାତୁରୀଟାକୁ ପ୍ରକୃଷ୍ଟ ଶିଳ୍ପ ବୋଲି ଚଳାଇବାର ଅପଚେଷ୍ଟା ବେଶୀ ଆଖିରେ ପଡ଼େ। ଅନେକ ଶିଳ୍ପୀ ଏହି ଆଙ୍ଗିକକୁ ଶିଳ୍ପ ବୋଲି ଜାହିର କରିବାକୁ ମଧ୍ୟ ଚେଷ୍ଟିତ। ସାଧାରଣ ଭାବେ ସୁପ୍ରତିଷ୍ଠ ଆଙ୍ଗିକର ଆଦର୍ଶ ହେଲା -- ରସ ଫୁଟାଇବାର ଚେଷ୍ଟା। ଆଙ୍ଗିକ ପ୍ରାତ୍ୟହିକ ଜୀବନର ଉପଲବ୍ଧିକୁ ଗଭୀର ସ୍ତରକୁ ନେଇଯିବାର ସୋପାନ ହୋଇ ପାରିଲେ ହିଁ ତା'ର ସାର୍ଥକତା। ନୂତନ ଆଙ୍ଗିକ ଆସେ ରସରେ ନୂତନତ୍ୱ ଆସିଲେ। ରସରେ ନୂତନତ୍ୱ ଫୁଟେ ବାସ୍ତବ ଜୀବନର ଗତିରେ, ସମଗ୍ର ସତ୍ତାର ଉପଲବ୍ଧିରେ ଯେତେବେଳେ ନୂତନତ୍ୱ ଦେଖାଦିଏ। ଅର୍ଥାତ୍ ମଣିଷର ଔତ୍ପାଦିକ ଜୀବନରେ ଗତିଫେର ହେଲେ ତା'ର ଅନ୍ତଃ ଜୀବନରେ ମଧ୍ୟ ଗତିଫେର ହୁଏ, ରସରେ ରୂପାନ୍ତର ଘଟେ ଏବଂ ଶିଳ୍ପ ବା ସାହିତ୍ୟରେ ଆଙ୍ଗିକର ସାର୍ଥକ ଅଭିନବତ୍ୱ ଅବଶ୍ୟମ୍ଭାବି ହୋଇଉଠେ।''(୪) ଫରାସୀ ମାର୍କସ୍‌ବାଦୀ କବି ଲୁଇ ଆରାଁଗ କବିତାରେ ଆଙ୍ଗିକର ପ୍ରାଧାନ୍ୟ ସ୍ୱୀକାର କରନ୍ତି। ତାଙ୍କ ମତରେ, ''କାବ୍ୟର ଇତିହାସ ମୁଖ୍ୟତଃ ତାର ଆଙ୍ଗିକର ଇତିହାସ। ଯେଉଁମାନେ କହନ୍ତି, କାବ୍ୟ ଏକ ନିର୍ଦ୍ଦିଷ୍ଟ ଧରାବନ୍ଧା ମତରେ (ବା ଫର୍ମରେ) ଚାଲିବ, ସେମାନଙ୍କ କଥା ଶୁଣି ମୁଁ ହସି ପକାଏ। କବିମାନେ ଗୋଟିଏ ପ୍ରକାର ରୀତିରେ ଛକ କାଟି, ଏକ ଦୁଇ ତିନି ଗଣି କାବ୍ୟ ରଚନା କରିବେ -- ଏହାଠାରୁ ବଳି ହାସ୍ୟାସ୍ପଦ ଯୁକ୍ତି ଆଉ କ'ଣ ଥାଇପାରେ।''(୫)

ପ୍ରତ୍ୟେକ କବି ଓ କଳାକାରର ଏକ ସ୍ୱତନ୍ତ୍ର ଶୈଳୀର ଜଗତ ଥାଏ। ସେ ସେଠି ଭାବାନୁଯାୟୀ ଆଙ୍ଗିକ ପ୍ରୟୋଗ କରିଥାଏ ଏବଂ ତଦନୁରୂପ ସିଦ୍ଧି ଲାଭ କରେ କାଳର କଷଟିରେ। ମାର୍କସ୍ ଏହି ଆଙ୍ଗିକ ଉପରେ ସୁଚିନ୍ତିତ ମତଟିଏ ମଧ୍ୟ ପ୍ରଦାନ କରିଛନ୍ତି -- "My property is my form. It is my spiritual individuality. The style is the man." ପ୍ରାଚ୍ୟ ସାହିତ୍ୟତତ୍ତ୍ୱରେ କାବ୍ୟର ଅଙ୍ଗ ଉପରେ ଐତିହାସିକ ପର୍ଯ୍ୟାୟକ୍ରମେ ବିବର୍ତ୍ତନ ଲକ୍ଷ୍ୟ କରାଯାଏ। ଦଣ୍ଡୀ, ବାମନାଚାର୍ଯ୍ୟ, ଭାମହ ପ୍ରଭୃତି ଆଳଙ୍କାରିକମାନେ ରୀତି ଉପରେ ପ୍ରାଧାନ୍ୟାରୋପ କରିଛନ୍ତି। ଦଣ୍ଡୀ କାବ୍ୟରେ ଅଳଙ୍କାର ଓ ଗୁଣ ଉପରେ ଗୁରୁତ୍ୱ ଦେଲାବେଳେ ବାମନାଚାର୍ଯ୍ୟ 'ରୀତିରାତ୍ମା କାବ୍ୟସ୍ୟ' ବୋଲି ଘୋଷଣା କରନ୍ତି। ବିଶ୍ୱନାଥ କବିରାଜଙ୍କ ମତରେ 'ବାକ୍ୟଂ ରସାତ୍ମକଂ କାବ୍ୟମ୍।' ଆଚାର୍ଯ୍ୟ କ୍ଷେମେନ୍ଦ୍ରଙ୍କ 'ଔଚିତ୍ୟବାଦ', କନ୍ତକଙ୍କ 'ବକ୍ରୋକ୍ତିବାଦ', ଆନନ୍ଦ ବର୍ଦ୍ଧନଙ୍କ 'ଧ୍ୱନି ସିଦ୍ଧାନ୍ତ', 'ରସ ନିଷ୍ପତି' କ୍ଷେତ୍ରରେ ଭଟ୍ଟଲୋଲ୍ଲଟଙ୍କ 'ଉତ୍ପତ୍ତିବାଦ', ଶଙ୍କୁକଙ୍କ 'ଅନୁମତି ବାଦ', ଭଟ୍ଟନାୟକଙ୍କ 'ଭୁକ୍ତିବାଦ' ଓ ଅଭିନବ ଗୁପ୍ତଙ୍କ 'ଅଭିବ୍ୟକ୍ତି ବାଦ' ଇତ୍ୟାଦି କାବ୍ୟର ଆତ୍ମା ଓ ଅଙ୍ଗ ସମ୍ପର୍କରେ ବିବିଧ ମତବ୍ୟକ୍ତ କରିଥାଏ। ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ କାବ୍ୟତତ୍ତ୍ୱରେ ଆଙ୍ଗିକ ଓ ଆତ୍ମିକ ମଧ୍ୟରେ ଗଭୀର ସମ୍ପର୍କକୁ ନିରୂପଣ କରାଯାଇଛି। "ରସ ହିଁ ଶିଳ୍ପ ଓ ସାହିତ୍ୟର ପ୍ରାଣବସ୍ତୁ ଏବଂ ଆଙ୍ଗିକ ଏହାର ବହିରଙ୍ଗ ଓ ମାଧ୍ୟମ। ବ୍ୟକ୍ତି ମାନସ ମଧ୍ୟଦେଇ ରସର ପ୍ରକାଶ ହେଲେ ମଧ୍ୟ ସମାଜ ମାନସ -- ଯାହାର ଆଶ୍ରୟସ୍ଥଳୀ ହେଲା ମୁଖ୍ୟତଃ ମଗ୍ନ ଚୈତନ୍ୟ -- ଏହାର ଉତ୍ପତ୍ତିସ୍ଥାନ। ଆଙ୍ଗିକର ଜୋରରେ ଐକ୍ୟ ଆସିପାରେ କିନ୍ତୁ ସଜୀବତା ଫୁଟେ ନାହିଁ, ମଣିଷର ଆଦିମ ପ୍ରାଣ ଶକ୍ତିର ପରିପ୍ରକାଶ ଘଟେ ନାହିଁ ଯାହା ମହତ୍ ସାହିତ୍ୟର ଗୁଣ। + + + ଅପରିବର୍ତ୍ତନୀୟ ମଗ୍ନଚୈତନ୍ୟରୁ ରସାନୁଭୂତିକୁ ଚୈତନ୍ୟର ସ୍ତରକୁ ଆଣି ଶିଳ୍ପ ରୂପ ଦେବାରେ ବ୍ୟକ୍ତି ମାନସ ପକ୍ଷରେ ଆଙ୍ଗିକର ସାହାଯ୍ୟ ଏକାନ୍ତ ଅପରିହାର୍ଯ୍ୟ।" (୬) ଏହି ପରିପ୍ରେକ୍ଷୀରେ ରମାକାନ୍ତ ରଥଙ୍କ କାବ୍ୟଶିଳ୍ପକୁ ପର୍ଯ୍ୟାୟକ୍ରମେ ବିଚାର ଆଲୋଚନା କରାଯାଇପାରେ।

ରମାକାନ୍ତଙ୍କ କାବ୍ୟଶ୍ରୀର ଶୈଳ୍ପିକ ବିଭବ ଏତେ ପର୍ଯ୍ୟାପ୍ତ ଯେ ତାହା ଏକ ସ୍ୱତନ୍ତ୍ର ଗ୍ରନ୍ଥର ଅପେକ୍ଷା ରଖେ। ଆଲୋଚ୍ୟ ପ୍ରସଙ୍ଗରେ କେବଳ ସାମାନ୍ୟ ଭାବେ ବିଶ୍ଳେଷଣ କରାଯାଉଛି। ଶ୍ରୀଯୁକ୍ତ ରଥଙ୍କ କାବ୍ୟଶିଳ୍ପ ପାଶ୍ଚାତ୍ୟ ଆଙ୍ଗିକ ଦ୍ୱାରା ଯେତିକି ଆକ୍ରାନ୍ତ ପ୍ରାଚ୍ୟ ପାରମ୍ପରିକ ତଥା ଆଧୁନିକ ଶୈଳୀଦ୍ୱାରା ମଧ୍ୟ ତଦ୍ରୂପ ପ୍ରଭାବିତ। ଇଲିଅଟ୍, ପାଉଣ୍ଡ, ରିଲ୍‌କେ, ଇଟିସ୍, ରାଁବୋ, ମାଲାର୍ମେ, ବୋଦ୍‌ଲେୟାର, ନେରୁଦା, ଲାର୍କିନ୍ ଓ ପ୍ଲାଥ୍‌ଙ୍କ ସହିତ ଜଗନ୍ନାଥ ଦାସ, ଭୀମଭୋଇ, ଅଭିମନ୍ୟୁ, ବଳଦେବ ରଥ, ଭକ୍ତ ଚରଣ, ମଧୁସୂଦନ, ରାଧାନାଥ, ସଚ୍ଚି ରାଉତରାୟ ଓ ଗୁରୁପ୍ରସାଦ ମହାନ୍ତି ସମତାଳରେ ତାଙ୍କ କାବ୍ୟ ଜଗତର ଅଗ୍ରଦୂତ ଓ ସହାୟକ ବ୍ୟକ୍ତିତ୍ୱ। କାବ୍ୟ ଚେତନାର ପ୍ରାରମ୍ଭିକ ପର୍ବରେ ପାଶ୍ଚାତ୍ୟ ଶୈଳୀ ପ୍ରାଧାନ୍ୟ ବିସ୍ତାର କରିଥିବା ସ୍ଥଳେ ପରବର୍ତ୍ତୀ ପର୍ଯ୍ୟାୟରେ ପ୍ରାଚ୍ୟ ଧାରା ସହିତ ସ୍ୱକୀୟତା ହିଁ ପ୍ରକାଶ ଲୋଡ଼ିଛି।

## ପ୍ରତୀକ

ରମାକାନ୍ତଙ୍କ କାବ୍ୟ ହର୍ମ୍ୟର ଶିଳ୍ପ ବୈଭବକୁ ଦୃଷ୍ଟି ନିବଦ୍ଧ କଲେ ତା'ର ଏକ ବିବର୍ତ୍ତିତ ରୂପାନ୍ତର ଲକ୍ଷଣୀୟ। ମୁଖ୍ୟତଃ ପ୍ରତୀକ ଓ ଚିତ୍ରକଳ୍ପର ପ୍ରୟୋଗବିଧିକୁ ଆମେ

ତିନୋଟି ପର୍ଯ୍ୟାୟରେ ସ୍ଥାନିତ କରିପାରିବା। କେତେଦିନର (୧୯୬୨) କବିତା ଗ୍ରନ୍ଥଟି ଦୁଇଭାଗରେ ବିଭକ୍ତ। 'ବହୁଦିନର' ଶ୍ରେଣୀଭୁକ୍ତ ଅଧିକାଂଶ କବିତାରୁ କବିଙ୍କର କାବ୍ୟ ଜୀବନର ଅୟମାରମ୍ଭ। ତେଣୁ ନିୟମତଃ ସେହି କବିତାଗୁଡ଼ିକରେ ପାରମ୍ପରିକ ଜୀବନଯାତ୍ରା ତଥା ସମାଜ ବିଧିର ଶୃଙ୍ଖଳା ଭିତରେ କାବ୍ୟପୁରୁଷ ନଯାନ୍ତ। ରୁଦ୍ଧ ଅସନ୍ତୋଷ ଓ ରୁଗ୍‌ଣ ମାନସିକତା ଗ୍ରାସ କରିଥିଲେ ମଧ୍ୟ ସେଗୁଡ଼ିକରେ ପ୍ରଥାସିଦ୍ଧ ଚିତ୍ରକଳ୍ପ ଓ ପ୍ରତୀକର ପ୍ରୟୋଗ ହୋଇଛି। 'ଅଳ୍ପଦିନର' କବିତା ଗୁଡ଼ିକଠାରୁ 'ସପ୍ତମଋତୁ' (୧୯୭୭) ପର୍ଯ୍ୟନ୍ତ ପ୍ରତୀକ, ଚିତ୍ରକଳ୍ପ, ଭାଷା, ଛନ୍ଦ ତଥା କାବ୍ୟରୀତିରେ ଅନେକ ପରୀକ୍ଷାତ୍ମକ ପ୍ରୟୋଗ ଘଟିଛି। ମୁଖ୍ୟତଃ କାବ୍ୟପୁରୁଷ ଆଧୁନିକ ଚେତନାକ୍ରାନ୍ତ ହୋଇ ସ୍ଥଳବିଶେଷରେ ଅତିରିକ୍ତ ବ୍ୟକ୍ତିଗତତାକୁ ଆଶ୍ରୟ କରି ପାଠକଙ୍କ ନିକଟରେ ଦୁର୍ବୋଧ ବା ଅବୋଧ ହୋଇ ଉଠିଛି। ତୃତୀୟ ପର୍ଯ୍ୟାୟରେ 'ସଚିତ୍ର ଅନ୍ଧାର' (୧୯୮୨) ବେଳକୁ କାବ୍ୟପୁରୁଷ ପରିଣତିର ଶୀର୍ଷ ସ୍ଥାନରେ ଉପନୀତ ହୋଇ ସାରିଛି। ତେଣୁ ସେଠି ଏକ ପରିପକ୍ୱ ଚେତନାର ପ୍ରକାଶ ଯେତେବେଳେ ଅବଶ୍ୟମ୍ଭାବୀ, ଆଉ ଆଙ୍ଗିକକୁ ନେଇ ଭୋଜବାଜି ଦେଖାଇବାର ପ୍ରଶ୍ନ ଉଠୁ ନାହିଁ। ଏଣିକି ଆତ୍ମପ୍ରକାଶ ହିଁ ସବୁ କିଛି। ଋଜୁତା ଓ ସାରଲ୍ୟ ଭିତରେ 'ଶ୍ରୀରାଧା'ର (୧୯୮୫) ଜନ୍ମ। ସରଳତା ମୋ ସବୁ ଭଲ କବିତାର ପ୍ରାଣଧର୍ମ ଏ ଉପଲବ୍ଧି କ୍ରମେ କବି ରମାକାନ୍ତଙ୍କ କବିତାକୁ ଏକ ନୂତନ ରୁଚି ପ୍ରଦାନ କରିଛି। 'ଶ୍ରୀରାଧା'ର ଜନ୍ମ ପୂର୍ବରୁ କବି ସ୍ୱୟଂ ଏକଥା ଅନୁଭବ କରିଛନ୍ତି ଯେ, ''ଉଦ୍ଦେଶ୍ୟମୂଳକ ବୁଦ୍ଧି ଚର୍ଯ୍ୟା, ତାହା ବ୍ୟବସାୟ ଭିତ୍ତିକ ହେଉ ବା ନହେଉ, କୌଣସି ଦୀର୍ଘକାଳ ସ୍ଥାୟୀ ଅତୃପ୍ତି ବା ଅଭାବବୋଧକୁ ପ୍ରଶ୍ରୟ ଦିଏ ନାହିଁ; ଅତୃପ୍ତିଟିଏ ଉପୁଜିବା ମାତ୍ରେ ହିଁ ତାକୁ ଚରିତାର୍ଥ କରିବା ପାଇଁ ଉଦ୍ୟମରତ ହୋଇ ପଡ଼େ। କିଛି ଅଭାବ ରହିଗଲା, କିଛି କଥା ଅକୁହା ରହିଗଲା, ଆଜୀବନ ଖୋଜିବା ପରେ ବି କିଛି ଅଲବ୍ଧ ରହିଗଲା, ଏ ପରିସ୍ଥିତିକୁ କେବଳ ସେହି ଚିତ୍ତବୃତ୍ତି ବରଦାସ୍ତ କରିପାରିବ ଯାହା ଇନ୍ଦ୍ରିୟାନୁଭୂତି ଅପେକ୍ଷା ସୂକ୍ଷ୍ମତର ଅନୁଭୂତିରେ ଅନୁଭୂତ ହେଉଥିବା କିଛି ଆକାଙ୍‌କ୍ଷା ଉପରେ ଗୁରୁତ୍ୱ ଦିଏ। ଏ ଚିତ୍ତବୃତ୍ତି ବେଶୀ ବାସ୍ତବବାଦୀ, କାରଣ ଏଥିରେ ଯାହା ଅନିବାର୍ଯ୍ୟ ତାକୁ ଅସ୍ୱୀକାର କରାଯାଏ ନାହିଁ, ସ୍ୱଚ୍ଛନ୍ଦରେ, ବିନା ଆତଙ୍କରେ ଗ୍ରହଣ କରି ନିଆଯାଏ। ଏହା ଫଳରେ କେତେକ ଅପରିବର୍ତ୍ତନୀୟ, ମଣିଷ ଜୀବନ ସହିତ ସବୁକାଳେ ଜଡ଼ିତ ସତ୍ୟପ୍ରତି ଆନୁଗତ୍ୟ ସମ୍ଭବପର ହୁଏ ଏବଂ ମଣିଷ ଜୀବନ ବ୍ୟକ୍ତିର ମୃତ୍ୟୁଦ୍ୱାରା କ୍ଷୁର୍ଣ୍ଣ ନ ହେଉଥିବା ତାତ୍ପର୍ଯ୍ୟରେ ତାତ୍ପର୍ଯ୍ୟ-ବନ୍ତ ହୁଏ।''(୭)

'ବାଘାବଲୋକନ'ରେ ସର୍କସର ବାଘ ବନ୍ଦୀର ପ୍ରତୀକ। ସେଠି ସେ ତା'ର ଉଦ୍ଦାମତା, ଶୌର୍ଯ୍ୟ ବୀର୍ଯ୍ୟକୁ ଭୁଲିଯାଇ ପେଟ ପୋଷିବା ପାଇଁ ଖେଳ ଦେଖାଏ, କସରତ କରେ। 'ଗୋଟିଏ ସ୍ୱପ୍ନ' କବିତାରେ କାବ୍ୟପୁରୁଷ ଜୀବନ ବିମୁଖ ହୋଇ ଆତ୍ମଘାତୀ ହେବାକୁ ଯାଉଛି। ତିନିତାଲା କୋଠାରୁ ସ୍ୱପ୍ନ ଦେଖିବାର ଅର୍ଥ ଏହା ଏକ ଯନ୍ତ୍ରଣାକ୍ତ ଆସନ୍ନ ଭବିଷ୍ୟତର ପ୍ରତୀକ। କାବ୍ୟପୁରୁଷ ତାକୁ ସମ୍ମୁଖୀନ ହେବାର ସାମର୍ଥ୍ୟ ରହିତ। ''କାଳେ ମୁଁ କରିବି ଭୟ ଏଥିଲାଗି ଦ୍ରଷ୍ଟା ତିନିଜଣ / କୋଠାପାଖେ ଛିଡ଼ା ରହି କରୁଥିଲେ ଦୁଷ୍ଟ ଉପହାସ।'' ଏ ଦ୍ରଷ୍ଟା ତିନିଜଣ ହିଁ ତ୍ରିକାଳ। ସମୟ ହିଁ ଉପହାସ କରୁଛି ଡ଼ରିଯାଉଥିବା ଅସମର୍ଥ ମଣିଷ ପ୍ରତି। 'ଗରୁଡ଼' ସଂଗ୍ରାମ ଓ ସତ୍ୟର ପ୍ରତୀକ। ଯେତେ ଶତ୍ରୁ ବିନାସ କଲେ ବି ଶେଷ ନାହିଁ। 'ଘଣ୍ଟା' ଭିତରେ ଗତାନୁଗତିକ ସମୟର ଗତିକୁ ପ୍ରତ୍ୟାଖ୍ୟାନ

କରିବା ତଥା 'ଚିଲ'କୁ ଏକ ଶୁଭଙ୍କର ସତ୍ତା ଓ ଆତ୍ମାର ପ୍ରତିଭୂ ଭାବରେ ଚିତ୍ରିତ କରାଯାଇଛି। ଚନ୍ଦ୍ରା ବେହେରାଣୀ ତଥାକଥିତ ସମାଜ ବ୍ୟବସ୍ଥାରେ ନିର୍ଯ୍ୟାତିତା ନାରୀ ଜାତିର ପ୍ରତୀକ। ସେହିପରି 'ଗବଗୁଞ୍ଜର'ର ମାଳତୀ, ସନ୍ଦିଗ୍ଧ ମୃଗୟାର 'ହେମଲତା', 'ମାଷ୍ଟ୍ରାଣୀ', 'ହୃଦୟେଶ୍ୱରୀ', 'ମାଧବୀ' ଓ 'ବୁଢ଼ାଲୋକ' ଆଦି ବ୍ୟକ୍ତି ବିଶେଷ ବିବିଧ ସ୍ତରର ମାନବ ଜୀବନଯାତ୍ରାକୁ ପ୍ରତୀକିତ କରନ୍ତି। 'ଲଣ୍ଠନ' ଆଜିର ଯନ୍ତ୍ରଣାଦଗ୍ଧ ମଧ୍ୟବିତ୍ତ ଗୃହସ୍ଥର ମର୍ମଲିପି। ତା' ଭିତରେ ଅନେକ ଉତ୍ତାପ ଓ ଦହନ।

"କିରାସିନୀ, କିଛି ଧୂଆଁ, ବତୀ ଶିଖା ଏବଂ କିଛି କୀଟ
ଏ ସମସ୍ତ ଏକାକାର ଏ ଧାତବ ପରିବେଷ୍ଟନୀରେ
ଏ କଳେଇ ଛଡ଼ା ଟିଣ ପେଟତଳେ ଅଗ୍ନିର ସମୁଦ୍ର
ଢେଉ ଭାଙ୍ଗି ଜଳୁଅଛି ଭୟଙ୍କର କୃଷ୍ଣ ରଜନୀରେ।"

'ଗୋଟିଏ ଘର ସମ୍ପର୍କରେ' କବିତାରେ ଘର ହେଉଛି ଶରୀର। ସମୁଦ୍ର ସମୟ ବା ମହାକାଳର ପ୍ରତୀକ। ଢେଉ ତାର କ୍ଷୟକାରିଣୀ ଶକ୍ତି। ସାମ୍ପ୍ରତିକ ଅସହାୟତା ଓ ଫାଙ୍କା ଫାଙ୍କା ନିର୍ଜନତାର ଦୃଶ୍ୟମାନ ପ୍ରତୀକଟିକୁ ଲକ୍ଷ୍ୟ କରାଯାଉ --

"ବଞ୍ଚିବାର ଜାଗା ଲୋଡ଼ାଥିଲେ
ଏଠାରେ କିପରି ନେବି ନିଃଶ୍ୱାସ ମୁଁ ଯେଉଁଠି ଶୁଖୁଚି
ଦକ୍ଷିଣା ହାୱାର ଶବ? ତଳେ ଏଇ ବିଲବାଡ଼ି ସବୁ
ନିଛାଟିଆ। କ୍ୱଚିତ୍ ବଳଦ ଗୋଟେ କଟାଧାନ
ମୂଳକୁ ଖୁମ୍ପୁଚି।"(୮)

ବାଘ ହିଂସ୍ର ଜନ୍ତୁଟିଏ ହେଲେ ମଧ୍ୟ କବି ପାଇଁ ତାହା ସେତିକି ନୁହେଁ। କେତେବେଳେ ତାହା ଏକ ଶବ୍ଦ ମାତ୍ର। ପୁଣି ଯେହେତୁ 'ଆମେ' ଓ 'ସ୍ତ୍ରୀଲୋକ' ଶବ୍ଦଦ୍ୱାରା ନିର୍ମିତ, ଅତଏବ ଆମେ ଓ ସ୍ତ୍ରୀଲୋକ ମଧ୍ୟ ବାଘ। ତାହା ପୁଣି ଅଦମ୍ୟ ଯୌନ ଲାଳସାର ପ୍ରତୀକ। "ତମେ ଜାଳିଥିବା ମହମବତୀରେ" ସେ ଗର୍ଜି ଗର୍ଜି ଆସେ। କେତେବେଳେ ମୃତ୍ୟୁର ପ୍ରତୀକ। ସେ କାନ୍ଦୁଲ କ୍ଷେତରୁ କୃଷକ ରମଣୀକୁ ଘୋଷାରି ନେଇଯାଏ। ପୁନଶ୍ଚ ବାଘ ମହାକାଳ ବା ପରମାତ୍ମାର ସଙ୍କେତ ବହନ କରିଛି। 'ଅନ୍ଧାରର ସମୁଦ୍ରକୁ ଦୁଲୁଖାଇ ଜହ୍ନ ବୁଡ଼ିଗଲା ପରେ ସେ ପୁଣି ଫେରି ଆସିବ।'(୯) ରମାକାନ୍ତଙ୍କ କାବ୍ୟ ଜଗତରେ ମୃତ୍ୟୁଚେତନା ହିଁ ପ୍ରମୁଖ ସ୍ଥାନ ଗ୍ରହଣ କରିଥାଏ। ଏହି ମୃତ୍ୟୁକୁ 'ବାଘ' ଭଳି ଅନ୍ୟାନ୍ୟ ପ୍ରତୀକ ମାଧ୍ୟମରେ କାବ୍ୟରୂପ ଦେଇଥାନ୍ତି। କେତୋଟି ଉଦାହରଣ ନିଆଯାଉ।

(କ) "ଶ୍ୱାସ ଶୁଭେ ଶଙ୍ଖ ଶବ୍ଦ ପରି
ଓ ମୋର ମୃତ୍ୟୁର ଫାଙ୍କା ଦର୍ପଣରେ ଦିଶେ ମୃତ୍ୟୁ କେବଳ ଯମରି।
ଯମର ଦକ୍ଷିଣ ଚକ୍ଷୁ ସ୍ଫୁରୁ ଅଛି, ଏବଂ ଡ଼ାକି ଚୈଳାକ୍ତ ସ୍ତନକୁ
ନାଲି ମନ୍ଦାରର ମାଳେ ଯମେ ଚାଲ ଦକ୍ଷିଣ ଦିଗକୁ
ମଇଁଷି ପିଠିରେ ଚଢ଼ି---" (୧୦)

ଏହା ଏକ ପାରମ୍ପରିକ ପ୍ରତୀକର ସୂଚନା। ଏତଦ୍ ବ୍ୟତୀତ କବି ନୂତନ ତଥା ବ୍ୟକ୍ତିଗତ ମୃତ୍ୟୁ ସମ୍ପର୍କିତ ପ୍ରତୀକ ଗର୍ଭିତ ଚିତ୍ରକଳ୍ପ ସୃଷ୍ଟିକରି କାବ୍ୟିକ ସଫଳତା ଲାଭ କରିଛନ୍ତି।

(ଖ) "ମୁଁ ଦେଖିଲି ବନ୍ଦ ହେଲା କିଲ୍‌ବିଲ୍ ବୋହିବା ପବନ,
ବନ୍ଦ ହେଲା ସମୁଦ୍ରରେ ଚାଲୁଥିବା ଜାହାଜ ହଠାତ୍,
ଲେଭେଲ୍ କ୍ରସିଂ ମେଲା ବନ୍ଦ ଏବଂ ଇଞ୍ଜିନ୍ ରେଳର
ମେଞ୍ଚା ମେଞ୍ଚା କଂାଧୂଆଁ ଛାଡ଼େ ମାତ୍ର ଆସେନି ଆଗକୁ,
ଦୁଇପାଖେ ବନ୍ଦ ହେଲେ ଶଗଡ଼ ଓ ଅସଂଖ୍ୟ ମଟର।" (୧୧)

(ଗ) "ମେଘ ମନା ମାନେ ନାହିଁ
ଓଦା ଓଦା ନିଃଶ୍ୱାସରେ ଡ଼ାକେ।
ବର୍ଷାର ଅତର ଲାଗି
ମୋର ମୃତ୍ୟୁ ହଠାତ୍ ମହକେ।"(୧୨)

(ଘ) "ସମୁଦ୍ର ଗର୍ଜ୍ଜିଲାବେଳେ ପ୍ରତି ହୃଦୟରେ
ଆତଙ୍କ ଉପୁଜେ, ଅନ୍ତତଃ ଏତିକି
ସମୁଦ୍ରର ଭଲଗୁଣ ବିନା ବାଛ ବିଚାରରେ ନିର୍ଦ୍ଦୟ ହେବା ଓ
ସଭିଙ୍କୁ ଡ଼ରାଇଦେବା ସମାନ ଭାବରେ।"(୧୩)

'ସପ୍ତମ ଋତୁ' ନିଜେ ତ ଏକ ପ୍ରତୀକ। ଏକ ଭିନ୍ନ ଜଗତ--ଉତ୍ତରିତ ଚେତନା ବା ସେହି ମହାକାଳର ଜଗତକୁ ସୂଚିତ କରେ। 'ଶ୍ରୀରାଧା' ବି ପ୍ରତୀକଟିଏ - ପ୍ରୀତିର, ପ୍ରଣୟର, ଆତ୍ମିକତାର, ହୃଦୟବତ୍ତାର, ଆତ୍ମସମର୍ପଣର ତଥା ଆତ୍ମାହୁତିର। 'ଶ୍ରୀରାଧା'ରେ ପ୍ରତୀକ ପ୍ରୟୋଗ ଏତେ ସରଳ ଓ କଥିତ ରୀତିରେ ଉଚ୍ଛଳ ଯେ ସ୍ୱତନ୍ତ୍ର ବୈଶିଷ୍ଟ୍ୟ ନେଇ ଚୟନ କରିବା ଅସହଜ। ଗୋଟିଏ ଉଦାହରଣ ନିଆଯାଉ --

"ମୁଁ ଜାଣିଛି ତମେ କେଉଁ ଦିଗରୁ ଆସିବ,
ଜହ୍ନ ଆଲୁଅରେ ତୋଫା ହୃଦୟର ପୂର୍ବ ଦିଗୁଁ ତମେ
ନିଶ୍ଚୟ ଆସିବ, ମୋର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ
ବ୍ୟାପିଥିବା ବାଲିଚର ସାରା ତମ ଛାଇ ପଡ଼ିଥିବ।"(୧୪)

ଏହି କ୍ରମର ଶେଷ ପର୍ଯ୍ୟାୟରେ ଶ୍ରୀ ରଥଙ୍କ କାବ୍ୟପୁରୁଷର ଜଟିଳ ପ୍ରତୀକ ପ୍ରୟୋଗରୁ କେତୋଟିକୁ ଉଦ୍ଧାର କରାଯାଇପାରେ।

(କ) "ବୁଝିଲି ବୁଝିଲି ତାର ସାଫଲ୍ୟର ଗୋପନ ରହସ୍ୟ।
ପ୍ରତିଦିନ ସକାଳୁ ସେ କଫିସାଙ୍ଗେ ଟପ୍‌ଟାପ୍ ଗିଳେ
ପୁଞ୍ଜେ ପାଞ୍ଚ ପ୍ରଜାପତି, ବାଇଗେଣୀ କଳା ବା ବାଦାମୀ,
ଚୋପିଚୋପି କିମ୍ବା ସାଦା, ପ୍ରଜାପତି ହୋଇଲେ ହିଁ ଚଳେ।"(୧୫)

(ଖ) "ସମୁଦ୍ର ପାଣିରେ ଓଦା ସାୟାମାନେ ଅଣ୍ଡା ଦେଲାପରି-----"(୧୬)

(ଗ) "ଦିଅଁ ନିଜେ ସିଂହାସନୁ ଓହ୍ଲାଇଲେ, ସାବଧାନ ହୋଇ
ମୋ ପାଖକୁ ଆସି ମତେ ମାଗିଲେ ମୋ ଜୋତା
କାଳେ କାଚ ସେ ମାଡ଼ିବେ
ଏବଂ ଗଲେ ବାଥ୍‌ରୁମ୍ ଆଡ଼େ, ଯାଉଁ ଯାଉଁ ହଠାତ୍ ଭେଟିଲେ
ଅସଂଖ୍ୟ ଚିଙ୍ଗୁଡ଼ିଙ୍କର ଶୋଭାଯାତ୍ରା (ସେମାନେ ବି ଯୋତା ପିନ୍ଧିଥିଲେ)"(୧୭)

(ଘ)        "ଅନ୍ଧାରରେ ଝାପ୍‌ସା ପର୍ବତ ଓ ବର୍ଷାପାଇଁ ପ୍ରସ୍ତୁତ ଆକାଶ
           ମୋହର ସମୁଦ୍ର ଏବଂ ଛୋଟ ଛାଇ ମାଛ ମୁଁ ପହଁରେ
           ଆଖି ବୁଜି ବସ୍‌ଷ୍ଟାଣ୍ଡ୍ ଠାରୁ କଟା ଅଶୋକ ଗଛର
           ଉଦାସ ଜଘର ଯାଏ ଲମ୍ବିଥିବା ଉଷୁମ ପାଣିରେ।"(୧୮)

## ଚିତ୍ରକଳ୍ପ

ରମାକାନ୍ତଙ୍କ କବିତାରେ ପାରମ୍ପରିକ ଉପମା, ରୂପକର ସମନ୍ୱୟ ସହିତ ପଲ୍ଲିଭିତ୍ତିକ, ନଗର କେନ୍ଦ୍ରିକ, ପୌରାଣିକ ବା ମିଥିକାଲ୍ ତଥା ନୂତନ ବ୍ୟକ୍ତିଗତ ଚିତ୍ରକଳ୍ପ ଲକ୍ଷ୍ୟ କରାଯାଇଥାଏ। କେତୋଟି ଉଦାହରଣ ନିଆଯାଉ।

(କ)        "ପତରର ଫାଙ୍କେ ଫାଙ୍କେ ଝରିପଡ଼େ ତାରାର ଆଲୁଅ
           ବଣପକ୍ଷୀ କୋରଡ଼ରେ ଘୁମୁରଇ ଗହମ ନିଦରେ,
           ନିକଟସ୍ଥ ଜନପଦେ ବଧୂ ତାର ପ୍ରିୟର ଶରୀରେ
           ପ୍ରାୟ ପୂରା ମିଶିଯାଏ, ଲୁଗା ହଜେ ରାତିର ଅଧରରେ।"(୧୯)

(ଖ)        "ସଦ୍ୟ ପ୍ରସୂତ ଜହ୍ନ ଉଠୁଚି
           ବିଦାରି ମାତାର କୁମାରୀ ଯୋନି
           ରକ୍ତର ଜଳେ ଗାଧୋଇ ପାଧୋଇ
           ନିଠୁର ହାସ୍ୟ ଓଠରେ ଘେନି।"(୨୦)

(ଗ)        "ଆଶ୍ଳେଷର ହରିକାଠେ ଚନ୍ଦ୍ରମାର ଅନୁଭୂତି ମଲା,
           ଝାଳର ଗନ୍ଧରେ ହେଲା ଲୁପ୍ତ ତାର ସକଳ ଚେତନା।"(୨୧)

ରାସ୍ତାରେ ଆଲୁଅ ପଡ଼ିବାକୁ 'ରୁଟୀ ଦେହେ ଲହୁଣୀ', ସମୁଦ୍ରର ନାଚକୁ 'ପଞ୍ଚମ ଶ୍ରେଣୀର ଝିଅଙ୍କ ନାଚ', ସମୁଦ୍ର କୂଳକୁ ବାଡ଼େଇ ହବାକୁ 'ଆଲୁଅରେ ବାଦୁଡ଼ି ଘଷି ହେବା' (୨୨); 'ପାଣିର କୋଳପ' (୨୩), 'ସମୁଦ୍ର ଓଳାଏ କୂଳ ବାରମ୍ବାର ଫୁଲ ଛାଞ୍ଚୁଣୀରେ/ଯେଉଁ କୂଳ ବାରମ୍ବାର ଅସ୍ପା ହୁଏ ଜିଦ୍ ଖୋର ଚନ୍ଦ୍ରର ଆଲୁଏ---' (୨୪), 'ଶବର ଜାହ୍ନବୀ'(୨୫) ଆଦି ଚିତ୍ରକଳ୍ପ ମୁଖ୍ୟତଃ ପାଠକ ପାଇଁ ଖୁବ୍ ଚିତ୍ତାକର୍ଷକ ବୋଧ ହୁଅନ୍ତି। "କ୍ରୋଧର ଦ୍ୱୟରୁ ଶବେ ନାଚୁଥିବା ମାଙ୍କଡ଼ ମୁଁ ଦିନେ/ସମୟର ମଶାଣିରେ ମୋ ଲାଞ୍ଜର ଦୈର୍ଘ୍ୟ ମାପୁଥିବି" (୨୬), "ତା' ଜଘର ଢେଣାରେ କୁଆଡ଼େ/ଉଡ଼ିବାର ଚେଷ୍ଟା ମୋର ମରିବାକୁ କୁତୁକୁତୁ କରେ---।"(୨୭)-ଏହି ସବୁ ଚିତ୍ରକଳ୍ପ ଭିତରେ ଜୀବନ ଯନ୍ତ୍ରଣା ଓ ଯୌନ ଚେତନା ପ୍ରକଟିତ ହୁଏ। ତାଙ୍କ କବିତାର ମୁଖ୍ୟ ବିଭାବ ମୃତ୍ୟୁ ଚେତନା ସମ୍ପର୍କିତ କେତୋଟି ଚିତ୍ରକଳ୍ପକୁ ଲକ୍ଷ୍ୟ କରାଯାଇ ପାରେ।

(କ)        "ମୃତ୍ୟୁକୁ ଦେଖିଲେ ଖାଲି ହସ ମାଡ଼େ, ମୃତ୍ୟୁ ଏକ ଚପଳ ବାଳକ---"
           (୨୮)

(ଖ)        "କ୍ରମେ କ୍ରମେ କଳାପଡ଼େ ସାବ୍‌ଜା ଧାନ କ୍ଷେତ,

କାହା ହାତ ପୋଛି ଦିଏ ଟେଲିଗ୍ରାଫ୍ ତାରଙ୍କ ଉପରେ
ଧାଡ଼ି ଧାଡ଼ି ଶୁଆଙ୍କୁ----''(୨୯)

(ଗ) ''ମୃତ୍ୟୁ କ'ଣ ? ହଠାତ୍ ଅଚଳ ଗଡ଼ିଯାଉଥିବା ଚକ + +
ମୃତ୍ୟୁ ଏକ ତୋଫାନ ସେ ତୋଫାନର ଆଦି ଅନ୍ତ ନାହିଁ।''(୩୦)

ଏତଦ୍ ବ୍ୟତୀତ କେତୋଟି ଦୃଶ୍ୟାନୁକାରୀ ଚିତ୍ରକଳ୍ପକୁ ନିରୀକ୍ଷଣ କଲେ କବିଙ୍କର ବର୍ଣ୍ଣନା କୌଶଳ ଓ ଅନୁଭୂତିର ତୀବ୍ରତାକୁ ଚିହ୍ନାଯାଇ ପାରେ।

(କ) ''ହଳଦିଆ ସକାଳର ମୂର୍ଚ୍ଛନାରେ ଯେବେ
ଛିଭରେ ଡ଼ାମଣ ପୋଡ଼ି ନାଚେ ରବିବାର।''(୩୧)

(ଖ) ''ଧାନକ୍ଷେତ ମନପରି ଯେଉଁଥିରେ ସୁଖ ଦୁଃଖ କିଛି ନାହିଁ, ଖାଲି
ରହିଛି କେବଳ କିଛି ନିରୁଦ୍‌ବିଗ୍ନ ସ୍ମୃତି କେବକାର।'' (୩୨)

ଦୃଶ୍ୟାନୁକାରୀ ଚିତ୍ରକଳ୍ପ ବ୍ୟତୀତ ମିଥ୍‌ଧର୍ମୀ ଚିତ୍ରକଳ୍ପ ଭିତରେ ନିଜର
ଅସହାୟତା ଓ ଆଧ୍ୟାତ୍ମିକ ଜିଜ୍ଞାସାକୁ ସେ ସୃଚେଇଥାନ୍ତି।
''ଯାଆରେ ଚଢ଼େଇ ଯାଆ / ତିନିଟି କୁଟାରେ
ତିଆରି ବସାରୁ ଉଡ଼ି ଗନ୍ଧପତ୍ର ଶୂନ୍ୟ ଆକାଶରେ।
ସୂର୍ଯ୍ୟ ଚନ୍ଦ୍ର ହୁଅନ୍ତୁ ତୋ / କାନର ଝୁମୁକା + +
ତୁ କେବଳ ନିର୍ମାୟା ଚଢ଼େଇଟିଏ।''(୩୩)

ପ୍ରେମର ସ୍ୱରୂପ :

''ମୋର ସବୁ ଲଜ୍ଜାରୁଣ ସ୍ୱପ୍ନ ମାନଙ୍କର
ଅଳତା ଲଗାଇ ଦେବି ତମର ପାଦରେ,
ମୁଁ ନ ଦେଇ ପାରିଥିବା ଚୁମାଙ୍କର ମାଳା
ତିଆରି ପିନ୍ଧାଇ ଦେବି ତମର ଗଳାରେ।''(୩୪)

କାବ୍ୟପୁରୁଷ ଉତ୍ତରିତ ପର୍ଯ୍ୟାୟରେ ସରଳ ଚିତ୍ରକଳ୍ପ ଓ ଭାଷାର ସାହାଯ୍ୟ ଲୋଡ଼ିଥିଲେ ମଧ୍ୟ ପ୍ରାରମ୍ଭିକ ପର୍ଯ୍ୟାୟରେ ତାହା ଦୁର୍ବୋଧତାକୁ ଆଶ୍ରୟ ନେଇଥିବାର ନିମ୍ନୋକ୍ତ କେତୋଟି ଉଦ୍ଧୃତିରୁ ଅନୁମାନ କରାଯାଇ ପାରେ।

(କ) ''ମଲା ସାଇକେଲ ଭାସେ ସୀମା ସମୁଦ୍ରରେ।
ଚଢ଼ାଳୀକୁ ଖିନ୍‌ଭିନ୍ କରେ ଏକ ରାକ୍ଷସୀ ଯାହାର
ପଟା କାଗଜର ତୀକ୍ଷ୍ଣ ସ୍ତନାଗ୍ରରେ ରକ୍ତର ଛିଟିକା ....''(୩୫)

(ଖ) ''ମୁଁ ଆସିଛି ପର୍ବତଙ୍କ ଛାଇତଳେ ଶୋଇକରି ଏବଂ
ମୁଁ ଦେଖିଛି ପରୀମାନେ ବ୍ରେସିଅର୍ ଖୋଲିଦେଇ ରାତିକ ନାଚନ୍ତି
ସୋରିଷ ଫୁଲଙ୍କ ଆର୍ଦ୍ର ଚଟାଣରେ, ମୁହଁରେ ମୁହଁକୁ
ଯୋଡ଼ିଦେଇ ରାସ୍ତାମାନେ କାନ୍ଦୁଥାନ୍ତି, ଘରମାନେ ବଂଶ ବିବରଣୀ
କହୁଥାନ୍ତି ଓପାସରେ ବସିଥିବା ଅନାଥ ଛୁଆଙ୍କୁ।''(୩୬)

# ମିଥ୍

ରମାକାନ୍ତଙ୍କ ପୂର୍ବସୂରି ସଚ୍ଚି ରାଉତରାୟ, ଗୁରୁପ୍ରସାଦ ମହାନ୍ତି ତଥା ସତୀର୍ଥ ସୀତାକାନ୍ତ ମହାପାତ୍ର ପ୍ରମୁଖ କବିଗଣ ମୁଖ୍ୟତଃ ମିଥ୍‌ଦ୍ୱାରା ଅତିମାତ୍ରାରେ ଆକ୍ରାନ୍ତ ହୋଇଥିଲେ ମଧ୍ୟ ରମାକାନ୍ତ 'ଶ୍ରୀରାଧା' ପୂର୍ବରୁ ସ୍ୱଳ୍ପବିଶେଷରେ ମିଥ୍‌କୁ ଆଧାର କରିଥିବାର ଲକ୍ଷ୍ୟ କରାଯାଏ। ଗୁରୁପ୍ରସାଦଙ୍କ 'ସମୁଦ୍ର ସ୍ନାନ' ଓ ସୀତାକାନ୍ତଙ୍କ 'ଅଷ୍ଟପଦୀ' ପ୍ରାୟତଃ ମୌଳିକ ଭାବେ ମିଥ୍ ଅବଲମ୍ବିତ। ରମାକାନ୍ତ ପୁରାଣ, କିମ୍ବଦନ୍ତୀ, ଇତିହାସ, ଓ ଲୋକକଥା ମୂଳକ ମିଥ୍ ବ୍ୟବହାର କରିଥାନ୍ତି।

'ଗରୁଡ଼', 'ନବଗୁଞ୍ଜର', 'ଅରୁନ୍ଧତୀ', 'ଚଣ୍ଡୀପ୍ରତି' କବିତାର ନାମକରଣରେ ମିଥ୍ ପ୍ରୟୋଗ ଘଟିଛି ଏବଂ ତାହା ଯଥାକ୍ରମେ ସଂଗ୍ରାମ, ଆର୍ଥିକ ଓ ଦୈହିକ ଯନ୍ତ୍ରଣା, ପବିତ୍ରତା ତଥା ଦୁଷ୍ଟ ପ୍ରବୃତିକୁ ସୂଚିତ କରାଏ। 'ବାଘ ଶିକାର' କବିତାର ଶିରୋଦ୍ଧୃତିରେ କବି ଭାଗବତର 'ଯେସନେ କୀଟ ଉର୍ଣ୍ଣନାଭି.....' ଉଲ୍ଲେଖ କରିଛନ୍ତି ଏବଂ ଏହି ଚେତନା ହିଁ ସମଗ୍ର ଦୀର୍ଘ କବିତାଟିକୁ ଆଚ୍ଛାଦିତ କରିଛି। ଆଜିର ଜୀବନର ଯୌନ ଉଶୃଙ୍ଖଳତାକୁ ମହାଭାରତର ପରାସର-ମତ୍ସ୍ୟଗଂଧା ଉପାଖ୍ୟାନ ମାଧ୍ୟମରେ ବର୍ଣ୍ଣନା କରିଛନ୍ତି। 'ସେ ଉଲ୍ଲୀ କୈବର୍ତ୍ତୀ ପୁଣି ଫେରିଯିବ ଋଷିଙ୍କ ସ୍ୱପ୍ନରୁ।'(୩୭) ଗୀତାର ସାଂଖ୍ୟଯୋଗ ବର୍ଣ୍ଣିତ 'ବାସାଂସି ଜୀର୍ଣ୍ଣାନି ଯଥା ବିହାୟ ନବାନି ଗୃହ୍ଣାତି ନରୋଽପରାଣି' ଶ୍ଳୋକ ନିହିତ ମଣିଷର ନଶ୍ୱରତାକୁ ସେ ଆପଣା ବାକ୍ୟରେ ରୂପାୟିତ କରନ୍ତି -- "ମାଂସ ମଧ୍ୟ ଲୁଗାପରି, କାଳକ୍ରମେ ହୁଏ ପୁରାତନ / ପରିତ୍ୟକ୍ତ ହୁଏ କେଉଁ ଶ୍ମଶାନର କଦମ୍ବ ଡ଼ାଳରେ.....।"(୩୮)

'ହନୁମାନ' କବିତାରେ ହନୁମାନର ଆଜିର ଦୁନିଆ ପ୍ରତି ଦୃଷ୍ଟିଭଂଗୀ ନିମ୍ନୋକ୍ତ ଭାବେ ପ୍ରକାଶିତ ହୋଇଛି। ମିଥ୍ ମାଧ୍ୟମରେ ବ୍ୟଙ୍ଗାତ୍ମକ ସ୍ୱର ସୃଷ୍ଟିକରିବାରେ ରମାକାନ୍ତ ବେଶ୍ ସିଦ୍ଧହସ୍ତତାର ପରିଚୟ ଦେଇଥାନ୍ତି।

"କାହାକୁ ମାରିବ ପ୍ରଭୁ କାହାକୁ ବା ଉଦ୍ଧାର କରିବ ?
ଉତ୍ତର ବରଫ ହୁଏ, ସେତୁ ବନ୍ଧ ହୁଏ ଅନ୍ତର୍ଦ୍ଧାନ।"(୩୯)

ଏହି ଭାବ ଆହୁରି ଶାଣିତ ହୋଇଛି 'ରାଜାଙ୍କ ରୋମାନ୍‌ସ' ଭିତରେ -- "ଶୁଭିଲାବି ଡମର ମୁର୍ଚ୍ଛାର। ହଠାତ୍ କହୁଚି ଆଗୋ ସଖିଗଣ ଶ୍ୟାମ ପଦ ଧୂଳି / ବୋଳ ମୋର ଶିର....."(୪୦) ଭାଗବତର ଦଶମସ୍କନ୍ଧର 'ଗୋପଲୀଳା' ପ୍ରସଙ୍ଗରେ ଶ୍ରୀକୃଷ୍ଣଙ୍କ କାଳୀୟ ଦଳନ ମିଥ୍‌କୁ ନିମ୍ନୋକ୍ତ ପଂକ୍ତିରେ କିପରି ପ୍ରଚ୍ଛନ୍ନ ଭାବରେ ଚିତ୍ରିତ କରାଯାଇ ମୃତ୍ୟୁର ପ୍ରତୀକକୁ ସୂଚାଉଛି ତାହା ଲକ୍ଷଣୀୟ --

"ତମେ ଏକ ହ୍ରଦମଧ୍ୟେ ଲୁକ୍‌କାୟିତ ବିଷ
କଳା ଚକ୍‌ଚକ୍ ଏବଂ କୁଣ୍ଡଳାକୃତିର
ହିଂସାର, ତମେ ସ୍ତବ୍ଧ କଲ
ସମୁଦ୍ରର ଗର୍ଜନ ଓ କୋଇଲିର ଗୀତ।"(୪୧)

ସଂପୂର୍ଣ୍ଣ ପୌରାଣିକ ମିଥ୍‌କୁ ଅବଲମ୍ବନ କରି 'ଶ୍ରୀରାଧା' ଓ 'ଶ୍ରୀପଳାତକ'ର ଜନ୍ମ। ଶ୍ରୀରାଧାଙ୍କୁ ପ୍ରଥମରୁ କବି ମାନବୀ ସ୍ତରରେ ତୁଳିବାକୁ ଯାଇ ଅନ୍ତିମ ପର୍ଯ୍ୟାୟରେ ପୁଣି

ତାକୁ ସେହି ଦେବୀ ସ୍ଥାନରେ ଛାଡି ଦେଇଛନ୍ତି। ଶ୍ରୀରାଧାଙ୍କ ଶାଶ୍ୱତ ପ୍ରୀତି ଓ ତଜ୍ଜନିତ ସଂପୂର୍ଣ୍ଣ ଆତ୍ମୋତ୍ସର୍ଗ ଓ ବଳିଦାନ, ନିଷ୍କାମ ଅହେତୁକ ତ୍ୟାଗ ଜଣେ ସାଧାରଣୀ ନାରୀ ପାଖରେ ସେତେଦୂର ସମ୍ଭବ ନୁହେଁ ବୋଲି କାବ୍ୟପୁରୁଷ ଅନୁଭବ କରିପାରେ। ଶ୍ରୀରାଧାର ଦୁଃଖ, ଯନ୍ତ୍ରଣା ଓ ହତାଶା ତଥା ଅନୁଭୂତି ସାଧାରଣ ଯଦିଓ ସେଥିରୁ ନିଷ୍କାମ ଭାବରେ ନିଂସୃତି ପାଇବାର ମନୋବୃତ୍ତି ସେହି ଦୈବୀସ୍ତରୀୟ।

"ମୁଁ କିନ୍ତୁ ପାରୁନି ଆଉ
ରୋକି ମୋର ସୁଖ ସନ୍ତୋଷକୁ।
ତମେ ଯଦି ତାଙ୍କ ପାଇଁ ନମରି ଥାନ୍ତ ମୁଁ
ଗୋଟାପଣେ ପାଇଥାନ୍ତି କିପରି ତମକୁ?"(୪୨)

'ଶ୍ରୀରାଧା'ରେ ସ୍ୱୟଂ ରାଧା ନିଜର ମାନସିକତାକୁ ପ୍ରକାଶ କରୁଥିବା ସ୍ଥଳେ 'ଶ୍ରୀପତାତକ'ରେ କୃଷ୍ଣଙ୍କର ଚୈତନିକ ପ୍ରବୃତ୍ତି ଓ ଦ୍ୱନ୍ଦ୍ୱ ରୂପାୟିତ ହୋଇଛି।

ପୌରାଣିକ ମିଥ୍ ବ୍ୟତୀତ ଲୋକମିଥ୍‌ର ସୂଚନା ମିଳେ। 'ଘଣ୍ଟା' କବିତାରେ ପାଶ୍ଚାତ୍ୟ ଲୋକଗଳ୍ପରେ ମାଠିଆ ଭିତରେ ଅସୁରର ଜାତ ସଂପର୍କରେ ଆଜିର ମଣିଷର ଅବିଶ୍ୱସ୍ତତା ଓ ଅସହାୟତା ପ୍ରକାଶ ପାଇଛି। "ଯାହା ଧରିଥିଲି ବାଷ୍ପ ଆକାରେ / ଉଡ଼ିଗଲା ହାୟ ଉଡ଼ିଗଲା / ଭାରୀ ମାଠିଆର ବିକଳ ବିଳାପୁଁ / ରାକ୍ଷସ ଏକ ଦେହ ନେଲା।" ଅବୋଲକରା, ପ୍ରାଚୀନ ଉତ୍କଳର ନୌବାଣିଜ୍ୟିକ ପରଂପରା, ବୁଢ଼ୀ ରାକ୍ଷାସୁଣୀ, ଚିତ୍ରିତ ବାଘ ହସ୍ତରେ ରାଜପୁତ୍ରର ପ୍ରାଣହାନୀ, ଇତ୍ୟାଦି ଲୋକଗଳ୍ପକୁ ସାଂପ୍ରତିକ ଜୀବନର ଦୁଃସ୍ଥିତିର ପ୍ରତୀକ ଭାବରେ ଗ୍ରହଣ କରାଯାଇଛି। ପୁନଶ୍ଚ ଇତିହାସ ଓ କିମ୍ବଦନ୍ତୀର ଆଖ୍ୟାୟିକାକୁ ନେଇ ମିଥ୍ ସୃଷ୍ଟି କରି ଶ୍ରୀ ରଥ କବିତାର ଭାବାତ୍ମକ ଦିଗକୁ ସନ୍ନଦ୍ଧ ଓ ଭାବୋଦ୍ଦୀପ୍ତ କରିଥାନ୍ତି। 'ଧର୍ମପଦ' ଏଣିକି ଖୁବ୍ ବାସ୍ତବବାଦୀ ହୋଇ ଉଠେ। ଭାବପ୍ରବଣତା, ସ୍ୱପ୍ନ ଓ ଆଶା ଚୟନରେ ସେ ଆଉ ବିଶ୍ୱାସୀ ନୁହେଁ।

"ପରିଶେଷେ ଦେଖିବାକୁ ସେ ଆଶାର ନିର୍ଦ୍ଦୟ ମରଣ।
ହୁଏତ ସେଇଥିପାଇଁ ମୁଁ କରୁନି ଆକାଶର କୁସୁମ ଚୟନ।
ହୁଏତ ସେଇଥିପାଇଁ ନିଜେ ଜଳି ନିଆଁ ମୁଁ ଲିଭାଏ।
ଯେଉଁ ନିଆଁ ଆମ ରକ୍ତେ ଜନନୀର ଭୁଲ ରଖିଥାଏ।"(୪୩)

## ଭାଷା ଓ ଶବ୍ଦ ପ୍ରକରଣ

ପ୍ରାଚ୍ୟ ଦର୍ଶନରେ ଶବ୍ଦକୁ ବ୍ରହ୍ମ ସହିତ ତୁଳନା କରାଯାଇଛି। ଶବ୍ଦ ବ୍ୟତିରେକେ କବିତା ଅବର୍ତ୍ତମାନ। ଭାବ ହିଁ ପ୍ରକାଶକ୍ଷମ ହୁଏ ଶବ୍ଦ ମାଧ୍ୟମରେ। ଅନନ୍ତ ନୀରବତା ଭିତରୁ କବିତାର ସୃଷ୍ଟି ଅର୍ଥାତ୍ ଶବ୍ଦର ସ୍ଫୁରଣ। କବିଗୁରୁ କାଳିଦାସ ସେଇଥି ଲାଗି ଶବ୍ଦ ଓ ଅର୍ଥକୁ ପାର୍ବତୀ ପରମେଶ୍ୱରଙ୍କ ଯୁଗଳବଦ୍ଧ ରୂପ ସହିତ ବର୍ଣ୍ଣନା କରିଛନ୍ତି। ପଣ୍ଡିତ ଜଗନ୍ନାଥ ମଧ୍ୟ 'ରମଣୀୟାର୍ଥ ପ୍ରତିପାଦକଃ ଶବ୍ଦଃ କାବ୍ୟମ୍' ବୋଲି ସ୍ୱୀକାର କରନ୍ତି। ଏଠି ଶବ୍ଦ ଆଉ ମାଧ୍ୟମ ନୁହେଁ, ସ୍ୱୟଂ କାବ୍ୟ। କବିର ଅବଚେତନର ଅଂଧକାର ଭିତରେ ଅନୁଭୂତି ସଂଗୁପ୍ତ ଅବସ୍ଥାରେ ରହିଥାଏ। ଚେତନ ସ୍ତରକୁ ଯେତେବେଳେ ଅବତରି ଆସେ

ସେତେବେଳେ ତାହା ଶବ୍ଦ ରୂପ ପରିଗ୍ରହ କରି କବିତାରେ ରୂପାନ୍ତରିତ ହୋଇଯାଏ। ଏକଥା ଲୁଇସ୍‌ଙ୍କ ଭାଷାରେ ମନୋରମ ରୂପ ନିଏ। "Every poem is created by a journey through darkness and a return to light, the journey from light back to light which can not be made except through darkness and the finished poem is the image of that jouney."(୪୪)

"କବି ନୀରବତାରେ କବିତାର ସାର୍ଥକତା ଦେଖନ୍ତି, କବିତାର ଶେଷ ଆବାହନ ନୀରବତା। ଶବ୍ଦକୁ କିନ୍ତୁ ଭଲ ନ ପାଇଲେ କବିତା ଲେଖିହୁଏ ନାହିଁ। କବି ଶବ୍ଦର ପ୍ରେମରେ ପଡ଼ନ୍ତି। ଶବ୍ଦ କିନ୍ତୁ ସୁନ୍ଦର ଓ ଉଜ୍ଜ୍ୱଳ ନୁହେଁ କି ଲାବଣ୍ୟମୟ ନୁହେଁ, ସରଳ କି ସତ୍ୟବାଦୀ ନୁହେଁ ମଧ୍ୟ। ନିରନ୍ତର ବ୍ୟବହାର ଫଳରୁ ତାହା ଅର୍ଥବତ୍ତା ହରାଇଥାଏ। ତଦ୍ୱାରା ଉଭୟ ମନୋଜ୍ଞ ଓ ଅମନୋଜ୍ଞକୁ ସମାନ ଭାବରେ ପ୍ରକାଶ କରାଯାଉଥିବାରୁ ତାହାର ସଙ୍କୋଚ ପଣିଆରେ ସନ୍ଦେହ କରାଯାଇଥାଏ।"(୪୫) ଏହି ଶବ୍ଦ ସଂପର୍କରେ କବି ଶ୍ରୀ ରଥ କହନ୍ତି --

"ପ୍ରଥମ ସାକ୍ଷାତେ ଶବ୍ଦ। ଶବ୍ଦମାନେ ଦ୍ରୁହସିତ ବହୁଦିନୁଁ
ଭୁଲିବା ପ୍ରେମର
ହଳଦିଆ ପୁନର୍ଜନ୍ମେ। ଶବ୍ଦମାନେ ଫୁଟୁଥିଲେ ଭୟର ଉତ୍ତାପେ,
ଆପେ ସୃଷ୍ଟି ହେଉଥିଲେ ଶବ୍ଦମାନେ, ଆପେ ମଧ୍ୟ ଧ୍ୱଂସ ହେଉଥିଲେ,
ଶବ୍ଦମାନେ ଭାସୁଥିଲେ କେଉଁ ଏକ କୁଳୁକୁଳୁ ସୁନ୍ଦର ନଈରେ
ହାଲୁକା ଜାହାଜ ପରି ସ୍ରୋତର ବିପକ୍ଷେ।++।(୪୬)

ଶବ୍ଦ ସହିତ କବିର ଚିର ଶୃଙ୍ଗାର ପୁଣି ଚିର ଶତ୍ରୁତା ଶବ୍ଦ କମ ହଟ ସାଧେନି। ଦାଉ ସାଧେନି। ଶବ୍ଦଟିଏ ପାଇଁ ଯୁଗ ଯୁଗ ବିତିଯାଏ। କବିତା ଅପୂର୍ଣ୍ଣ ରହିଯାଏ। ଏ ଅପୂର୍ଣ୍ଣତା ରହିବ ହିଁ ରହିବ। କବି-ଗୁରୁ ଇଲିଅଟ ବି ଶବ୍ଦ ନିକଟରେ ହାର ମାନନ୍ତି --

"........and every attempt
Is wholly a new art, and different kind of failure.....
words strain,
crack and sometimes break,
under the burden,
under the tension, slip, slide, perish,
Decay with imprecision....."(୪୭)

କବି ରମାକାନ୍ତଙ୍କ କାବ୍ୟ ଜଗତର ଶବ୍ଦ ବା ଭାଷା ଏକମୁଖୀ ନୁହେଁ। ପରିବେଶ ଓ ଭାବକୁ ନେଇ ସେ ବିବିଧ ଭାଷା ପ୍ରୟୋଗ କରନ୍ତି। କେଉଁଠି କଥିତ ଗ୍ରାମ୍ୟ ଭାଷା ତ କେଉଁଠି ତତ୍ସମ ବହୁଳ ଶବ୍ଦ ପୁଣି କେଉଁଠି ରୋମାଣ୍ଟିକ ଶବ୍ଦ ତ ଆଉ କେଉଁଠି ପ୍ରାଚୀନ ପାରଂପାରିକ କାବ୍ୟର ଭାଷା। ଏହି ଭାଷା ଓ ଶବ୍ଦ ପ୍ରୟୋଗ ସଂପର୍କରେ କବିଙ୍କର ନିଜସ୍ୱ ମତ ଏହିପରି: "ଦୈନନ୍ଦିନ ଜୀବନରେ ଯେଉଁ ଭାଷା ବ୍ୟବହୃତ ହେଉଛି କେବଳ ସେତିକି ବ୍ୟବହାର କଲେ କବିତାର ବକ୍ତବ୍ୟ ସଙ୍କୁଚିତ ହୋଇଯିବ, କାବ୍ୟମାନସରେ ଉପଲବ୍ଧ ଅନେକ ଭାବ ଅପ୍ରକଟ ରହିଯିବ। ଆବେଗ ବା ଗଭୀର ଭାବାନୁଭୂତି ଯେଉଁ ବକ୍ତବ୍ୟର ଉତ୍ସ ତା'ପାଇଁ ଉପଯୁକ୍ତ ଶବ୍ଦ ପାଇବା ସବୁବେଳେ କଷ୍ଟକର, ଯେହେତୁ ସେ

ଆବେଗ ବା ଭାବାନୁଭୂତି ମୂଳତଃ ଶବ୍ଦଗତ ନୁହେଁ, ତା' ଉପରେ ଯଦି ଶବ୍ଦ ବାଛିବାକୁ ଏପରି ଏକ ଅପ୍ରାସଙ୍ଗିକ ଯୁକ୍ତିଦ୍ୱାରା ନିୟନ୍ତ୍ରିତ କରାଯାଏ, କବି ପାଠକକୁ ତା'ର ଉଦ୍ଦେଶ୍ୟ ବୁଝାଇ ପାରିବ ନାହିଁ। ଏ ନିୟନ୍ତ୍ରଣ ବେଶି ଦିନ ଧରି ଚାଲିଲେ କେତେ ଗୁଡ଼ିଏ ଅନୁଭୂତି, କେତେ ଗୁଡ଼ିଏ କଳ୍ପନା କବିଙ୍କ ର ବାହାରେ ରହିଯିବେ ଏବଂ ସେଗୁଡ଼ିକୁ ପ୍ରକାଶ କରିବାର କୌଶଳ କବିତା କ୍ରମଶଃ ଭୁଲିଯିବା ଏକ ସୀମିତ ଓ ନିୟନ୍ତ୍ରିତ ଶବ୍ଦ ଭଣ୍ଡାର ଉପରେ ନିର୍ଭର କରିବା ଫଳରେ ଓଡ଼ିଆ କବିତା ଅନେକ କଥା କହିବାର କ୍ଷମତା ହରାଇ ବସିଲାଣି; ଯଦି କହିବାକୁ ଚେଷ୍ଟା କରୁଚି ତାହା ଆଉ କବିତା ହୋଇ ରହୁନାହିଁ। + + ଶବ୍ଦ ପ୍ରୟୋଗରେ କୃତ୍ରିମତା ଅବଶ୍ୟ ବର୍ଜ୍ଜନୀୟ କିନ୍ତୁ କି କି ଶବ୍ଦ ବ୍ୟବହୃତ ହେବ ନାହିଁ ଏବଂ କି କି ଶବ୍ଦ ବ୍ୟବହୃତ ହେବ ତାର ତାଲିକା ପ୍ରସ୍ତୁତ କରି ତଦନୁଯାୟୀ କବିତା ଲେଖିବା ଦ୍ୱାରା କବିତାର ଦାରିଦ୍ର୍ୟ ହିଁ ଅନିବାର୍ଯ୍ୟ ହୋଇପଡ଼େ।''(୪୮) କବିଙ୍କ ପ୍ରଯୁକ୍ତ ବିବିଧ ଶବ୍ଦାବଳୀ ଉପରେ ଅନ୍ୟତ୍ର ଏକ ସାରଣୀ ପ୍ରଦାନ କରାଯାଉଛି, ତେଣୁ ଏହି ପରିପ୍ରେକ୍ଷୀରେ ଭାଷା ପ୍ରୟୋଗ ବିଧି ସମ୍ପର୍କରେ କିଞ୍ଚିତ୍ ଆଲୋକପାତ କରାଯାଇପାରେ।

(କ) ସୂର୍ଯ୍ୟର ନିଃଶ୍ୱାସେ ଆଜି ଦଗ୍ଧହେଉ ସ୍ୱପ୍ନର ସେବତୀ।
ଏ ଚନ୍ଦ୍ରର ଲୋତକରେ ସିକ୍ତ ହେଉ ସବୁଜର ଭ୍ରୁଣ।'' (ଧର୍ମପଦର ଆମ୍ମହତ୍ୟା,)

(ଖ) ''ଏ ରାତିରେ, ମତେ ବି ଆସନ୍ତା ଗୋଳି ଲୁହସାଥେ
ପ୍ରେମର ଗଜଲ।'' (ଧର୍ମପଦର...)

(ଗ) ''ହାତ ଚାଳି ରଡୁଥିଲା ଦୁଧଖିଆ ଛୁଆପରି ଓଠ ଚାପିଚାପି + +
ମୋ ଛାତି ଛୁଇଁତୁ କହ, ମୁଁ ଯଦି ମରିବି ତେବେ ତୁ କାହାକୁ ଦୂତୀଅ ହବୁନି।''
(ଚନ୍ଦ୍ରମାର ଚୂଡ଼ି)

(ଘ) ''ଚାଉଳ ଡଉଲେ କେତେଦିନ ଆଉ ରଖିବୁ ଘଇତାଖାଇ?
କିରାସିନୀ ଟୋପେ ଦବୁକି ମାଳତୀ ଅପା?
ହଁ-କାଲି-ଓ! ନାହିଁ ଲୋ----।'' (ନବଗୁଞ୍ଜର)

(ଡ) ''କେ ବୋଇଲା ଚନ୍ଦ୍ରମା ଦର୍ପଣ
ପ୍ରାୟେ ମୁଖ ଦିଶେ ଗଢ ମଛିଥିବା ପଦ୍ମବନ ପ୍ରାୟେ,
ତା'ପରେ କହିଲ ତମେ ଆରେ ସଖି ବିଚିତ୍ର ନାଗର
ସ୍ନେହ ସାଗରରେ ମଜ୍ଜିଗଲି ଏବେ ପ୍ରାଣ ଚାଲିଯାଏ।''
(ବସନ୍ତରତ୍ନ)

ଏଥିରେ ବ୍ୟବହୃତ ଶବ୍ଦାବଳୀ କିପରି ପ୍ରାସଙ୍ଗିକ ଓ ଭାବଦ୍ୟୋତକ ତାହା ଉପଲବ୍ଧିର କଥା। ସିଦ୍ଧହସ୍ତତାର ପରିଚୟ।

କାଳ କାଳ ପାଇଁ କବି ଶବ୍ଦ ମୋହ ଓ ଶବ୍ଦ ରହସ୍ୟରେ ପଡ଼ିଥାଏ। ଅନେକ ଦିନ ଧରି ଶବ୍ଦକୁ ନେଇ ବିହାର କଲେ ମଧ ଏ ଶବ୍ଦ ତାଙ୍କର ପୋଷା ମାନି ପାରୁନି। ନିଜର ହୋଇ ପାରୁନି। ସେ ବେଳ ପଡ଼ିଲେ କୁଆଡ଼େ ଅନ୍ତର୍ହିତ ହୋଇ ଯାଉଛି। ହଂସ ଛୁଆ ପରି ଡ଼େଇଁ ଡ଼େଇଁ ଦୂରେଇ ଯାଉଛି।

''ଅନ୍ଧାରରେ କାହା ଛୁରୀ

ତଣ୍ଟିକାଟି ଦେବ,
ଶବ୍ଦ ସବୁ ଡ଼େଇଁ ଡ଼େଇଁ ହଂସ ଛୁଆପରି
ଚାଲିଯିବେ ଶାଳ ଜଙ୍ଗଲକୁ,
ମୁଁ ଚାହୁଁଛି ଚାରିଆଡ଼େ, କେହି ଦେଖୁନାହିଁ
କେତେ ଶବ୍ଦ ଗଲେ ଏବଂ ଗଲେ କେଉଁଠାକୁ।"(୪୯)

ଏବେ ରମାକାନ୍ତଙ୍କ ଶବ୍ଦ ପ୍ରକରଣ ପ୍ରତି ଦୃଷ୍ଟି ଦିଆଯାଉ। ମୁଖ୍ୟତଃ 'କେତେଦିନର' ଠାରୁ 'ଶ୍ରୀରାଧା' ଯାଏ ବ୍ୟବହୃତ ବିବିଧ ଶବ୍ଦାବଳୀର ଏହା ଏକ ନିର୍ବାଚିତ ଶବ୍ଦ ସାରଣୀ।

**ଇଂରାଜୀ ଶବ୍ଦ :**

ଗ୍ୟାଲେରୀ, ସିମେଣ୍ଟ, ସାଇରେନ୍, ମିନିଟ୍, ଇଞ୍ଚ, ପକେଟ୍, ପ୍ଲାଷ୍ଟିକ୍, ବେଲୁନ୍, ସେକେଣ୍ଡ, କେନାଲ୍, ସ୍ଲୋଗାନ୍, ଇଥର, ମିଡ଼ିଅମ୍, ମଟର, ହିବିସ୍କସ୍, ଟାଇପିଷ୍ଟ, ଫାଇଲ୍, ରେଷ୍ଟୋରା, ରୋମାନ୍ସ, ଟ୍ରାଉଜର, ସୁଟ୍, ହୋଟେଲ୍, ଷ୍ଟେସନ୍, ନମ୍ବର, ବୁଗେନ୍‌ଭିଲା, ପାଲିସ୍, ଇଞ୍ଜିନ୍, ଡ଼େକ୍, ଷ୍ଟିଅରିଂ, ବନେଟ୍, ବ୍ରୁଟ୍ରିଣ୍ଡ, କ୍ୟାଲେଣ୍ଡର, ଗ୍ରାଫ୍, ସିଲହଟ୍, ବ୍ରେକ୍, ନର୍ସ, ମାର୍ବଲ, ନୋଟ, ବାଥ୍‌ରୁମ୍, ବକ୍ଲିସ୍, ଲେମନ୍ ଚୁସ୍, ବ୍ଲାକବୋର୍ଡ୍, ଡ଼ଷ୍ଟର, ଚକୋଲେଟ, କ୍ଲବ୍, ଚେକ୍, ରେକର୍ଡ଼, ପ୍ଲାଟୁନ୍, ସ୍ପିରିଟ୍ ଲେଭେଲ୍, ଷ୍ଟୋଭ୍, କଲେଜ, ହ୍ୱିଷ୍ଟି, ରିପୋର୍ଟ, ଡ଼ିଟେଲ୍, ଫାଉଣ୍ଟେନ୍, ଫଟୋଗ୍ରାଫ୍, ଜ୍ୟାକ୍, ଲିଭର୍, ସ୍ୱେଟର, ସର୍କସ, ଗ୍ରୀନ୍‌ରୁମ୍, କ୍ୟାନ୍‌ଭାସ୍, ପ୍ରୋଗ୍ରାମ୍, ଥର୍ମୋସ୍, ହ୍ୱିସିଲ୍, ପ୍ୟାରେଡ୍, ଟ୍ୟାକ୍ସି, ଫ୍ରେମ୍, ଟ୍ରାଜେଡ଼ି, ବ୍ଲାଉଜ୍, ବ୍ୟାରୋମିଟର, ପାଇନ୍, ଇଞ୍ଜେକ୍‌ସନ୍, ଡ଼ିଟେକ୍‌ଟିଭ୍, ସ୍ଲୋଗାନ୍, ଟଫି, ଡ଼ାଏରୀ, ସିଗ୍‌ନାଲ୍, ରେଲ୍‌ଲାଇନ୍, ଟାଇ, ବ୍ରେସିଅର୍, ପେଟ୍ରୋଲ୍, କର୍ଫ୍ୟୁ, ଟ୍ୟାଙ୍କ୍ ଓ ସୁଟ୍‌କେଶ ଇତ୍ୟାଦି।

**ତତ୍‌ସମ ଶବ୍ଦ:**

ମଦ୍ୟପାୟୀ, ଯୂଥ, ସ୍ତନନ୍ଧୟ, ଉରସ, ତମସା, ଉତ୍ତରୀ, ଭୁଜଙ୍ଗ, ରତିଶଯ୍ୟା, ସୀମନ୍ତ, ଇରମ୍ମଦ, ଜିଘାଂସା, ଦଂଶନ, ପିପାସା, ଶୋଣିତ, ଅପାଙ୍ଗ, ମଧୁଲିଟ, ଚୟନ, ସ୍ୱପ୍ନାନ୍ତିକ, ପ୍ରାକ୍ତନ, ଭଗ୍ନ- ପୁତ୍ତଳିକା, ନିର୍ଯ୍ୟାସ, ନଭଶ୍ଚୁମ୍ବୀ, ଜଳାର୍ଣ୍ଣବ, ପ୍ରଭଞ୍ଜନ, ରତିରଙ୍ଗ, ମୃତବତ୍ସା, କୃତାଞ୍ଜଳିପୁଟେ, ବହିତ୍ର, ହ୍ରେଷାରବ, ତାମ୍ରପାତ୍ର, ଐଶାନ୍ୟ, ପ୍ରପିତାମହ, ଶୁକ୍ଳାମ୍ବର, ପ୍ରସରି, ଶାଳ୍ମଳ, ପୁତ୍ରକଳତ୍ର, ନୃପତି, ସମ୍ବତ୍ସର, ବର୍ଣ୍ଣାଢ଼୍ୟ, ସ୍ତବ୍ଧତା, ସନ୍ତ୍ରସ୍ତ, ନିରୁଦ୍‌ବିଗ୍ନ, ସମଭିବ୍ୟାହର, ଦୁଗ୍ଧଫେନନିଭ, ଭୂଲୋକ, ଦ୍ୟୁଲୋକ, ପ୍ରଦକ୍ଷିଣ, ଉଦ୍‌ଗ୍ରୀବ, ଅନ୍ତରୀକ୍ଷ, ଇନ୍ଦୀବର, ଯାମିନୀ, ଶୁଶ୍ରୁଷା ଓ କୁଜ୍‌ଝଟିକା।

**ଦେଶଜ ଶବ୍ଦ :**

ପାଛୁଡ଼ା, ବୁନ୍ଦା, ହାଇ, କୁହାଟ, ତଳିପେଟ, ଖୋଲ, ନିରୋଳା, ଟୋପାଏ, କିଆଁ, ନିହାତି, ଡ଼ାହାମିଛ, ସଡପରା, ଯୌତୁକ, ବାହା, ଜୁଆଳି, ନୁଆଣିଆ, ବଡାରୁଅ, ବୋଲି, ଦୁତୀଅ, ଭାଗୁଆଳ, ଦିହ, ଦିଅଁ, ମସିଣା, କୋକେଇ, ଦଧିନଉତି, ଅସୁମାରୀ, ଭୁଆଷୁଣୀ, ଅଣ୍ଡାସୁତା, ବୁଲାଗୋରୁ, ଏକକୁ ଆରେକ, ଗୁହାଳ, ମଝିଗଣ୍ଡ, ଆନ, ଫୁକିଆ, ବରଡ଼ା, ମାଣ, ଚାରିଅଣା, ଷୋଳଣା, ଚାଂଚଡ଼ା, ଏତେଟୋପା, ଧୂମାଳ, ଲେଉଟାଣି, ଗୁଳୁରାଣ, ଭରଣ, ଗୋହିରୀ, ଡ଼ିହ, ଅତଡ଼ା, ଅଲାଜୁକୀ, ପାଉଁଶମୁହଁ, ଛତାବାଡ଼ି, ଦୁଆରବନ୍ଧ,

ଅବିଗୁଣ, ଆରସାଇ, ଛାମୁକରଣ, ବାଇୟା, ପାଣିଆ, ଜାଗା, କୋଡ଼ି, ସୂତାଖିଅ, ଅଣଚାଶ ପବନ, ଅଗାଡ଼ି, ବଡ଼ି ସନ୍ତୁଳା, କଳିହୁଡ଼ୀ, ସାତତାଳ ପଙ୍କ, ତଉଲେ, ଘଇତା ଖାଇ, ପାଣିଚିଆ, ଉଇଖିଆ, ଫୁଲଙ୍ଗ ଡ଼ାହି, ବୋବାଳି, ମରହଟ୍ଟୀ, ଗୋଲିଆ, କାହୁଅ, ଘାଇ, କୁଟା, ଜଡ଼ସଡ଼, କାଟକେନ୍ଦୁ ପ୍ରାଣି, ଗୋଲାହାଟ, ପସରା, ପଦିକାଏ, ଫାଉଡ଼, ମାଇପେ, ବୁଢ଼ୁଳା, ଚିର୍ଗୁଣୀ, ମିରିଗ, ଡ଼ାହାଣୀ, କସରା, ହାତିକିଆ, ବଳିତା, ନାସଦାନୀ, ଛାଞ୍ଚୁଣୀ, କୁଲା, କାଉଁରିଆ, ଛୋପରୀ, ଖାବରା, ଭୂର୍ଷୁଙ୍ଗା, ପିଚା, ତିର୍ଲୋଲୋକ, ଦୁଲୁସାଇ, ଅପନ୍ତରା, ସୂନ୍ଥା, ଲାଉତୁମ୍ବା, ଜୁଆଳୀ, ଉହ୍ଲେଇ, ନିଛାଟିଆ, ତେର୍ଛା, ମଞ୍ଜୁଆତି, ଗପୁଡ଼ି, ଦ୍ରହସିତ, ଫୁଙ୍ଗୁଳା, କନ୍ତାନ, ମୋଡ଼ାଣି, କେମନ୍ତେ, ଉଲ୍ଲୀ, ଚିର୍ଚିରା, କାନ୍ତାନୀ, ଚିକ୍‌ଟା, କାନ୍ଦୁରା, ହାସ୍ୱାତାଳ, ପିଣ୍ଡା, ଖୁରା, ନିଖୁଣ, ହିଡ଼, ଆଇଁଷ, ଛେଉଣ୍ଡ, କୋତରା, ଇରୁଣ୍ଡିବନ୍ଧ, କାନି, ଡ଼ହଳ ବିକଳ, ଓଷଦ, ରାନ୍ଧୁଣିଆ, ଅଶିଣ ମାସ, ଦିପହର, ସୁଆଙ୍ଗ, ଧୋବ, ଟାଆଁସ, ଦୀପିଦଣ୍ଡି, ଅପନ୍ତରା, ମଡ଼ାଚଣ୍ଡିଆ, ଖପରା, ଖୋପ, ଓପରଓଳି, ଦୋଦୋପାଞ୍ଚ, ଫିକ, ଦରଶୁଖା, ଚେମେଡ଼ା, ଭାଡ଼ୁଆ, ଚେନାଏ, ଚେଙ୍କା, ଦୋଚାରୀ, କପାଳଯାକ, ମାଳି, ରୋଗା, ପାନପିକ, ରୂଢ଼, ଦ୍ରିପଣ୍ଡ, ଭଙ୍ଗାରୁଜା, ବଖରା, ଧୋବଉଆସ, ଗୁହାରି, ଚଢ଼େଇ, ଚଉତିଚାଇତି, ଅଖାଡ଼ୁଆ, ବୋଲହାକ, କ୍ରଣ୍ଡା, ଆଚମ୍ବିତ, ଉହାଡ଼, ଟାହିଟାପରା, ଦହଗଞ୍ଜ, ବୋବାଳି, କନ୍ଦିବିକନ୍ଦି, ବାଟୋଇ, ତୋଟା, ଗଜମୂର୍ଖ, ମନ୍ଦ କପାଳ, ଅଗନାଗ୍ନି, ବନସ୍ତ, ଭାଡ଼ି, କୁହାଟ, ବୁହେ, ଖଟୁଳି, ଘନଘୋର, କଷ୍ଟେମଷ୍ଟେ, ଜଘଣ୍ୟ, କୋତରା, ଦଦରା, ସୋରଶବ୍ଦ, ଦୂର୍ବୀଣ, କୁଦ, ଯୁଆଡ଼େ, ଚାନ୍ଦିନୀ, କଷି, ବାଲୁଚର, ପଦା, ମୋଟେ, ରୋଗବଇରାଗ, ଅମୁକ, ସୁନାପାଣିଦିଆ, ରଣଭଣ, ହୀନସ୍ତାଯୋଗ, କିଆରୀ, ନାହା, ବାଉଳା, ଉହୁର ଓ ଦିହଘଷା ।

**ଦେଶଜ କ୍ରିୟାପଦ :**

ନିରେଖିବା, ଛୁଟିବା, ବିଗିଡ଼ିବା, ଚିପୁଡ଼ିବା, ପଖାଳିବା, ଗୁମୁରିବା, କୁଢ଼େଇବା, ଛାଟିଦେବା, ଝୁଣ୍ଟିବା, ହୁଡ଼ିବା, ଓଟାରିବା, ଗୋଳିବା, ବେଢ଼ିବା, ମୁହାଁମୁହିଁ ହେବା, ସଙ୍ଖୋଳିବା, ଭୋଗିବା, ଲୋଡ଼ିବା, ଅଜାଡ଼ିଦେବା, ହାଲିଆ ହେବା, କୁହୁଳିବା, ମୁକୁଳିବା, ପୋଷାମାନିବା, ଖୁନ୍ଦିବା, ଲେସିବା, ଚୋବାଇବା, ସଢ଼ିବା, ମଣ କରିବା, ହୁରୁଡ଼େଇବା, ଭୁଷୁଡ଼ିବା, ଘାଣ୍ଟିବା, ଖୁମ୍ପିବା, ଖରାପୋଇଁବା, ଭଣ୍ଡିବା, ଦେବଇଁ, ଦୁଅଇ, ଘୁରୁଣ୍ଡିବା, ଝୋଲା ମାରିବା, ଚକଟିବା, ଓଦାକରିବା, ଜାକିନେବା, ଉଲୁସିବା, ଅଣ୍ଡାଳିବା, ବୋଇଲା, ଟହଳିବା, ଚଙ୍କିବା, ଆଉଜିବା, ଅତଡ଼ା ଖାଇବା, ଛିଗୁଲେଇବା, ଦୁଲୁକିବା, ପାଟି ପଡ଼ିଯିବା, ରକଟିବା, କୁଦିବା, ଦରାଣ୍ଡିବା, ଲହୁଲୁହାଣ ହେବା, ଡ଼ହଳବିକଳ ହେବା, ବଡ଼ାଇ କରିବା, ଝଲନାଳ ହେବା, ଲୋଡ଼ିବା, ଧସାଧସି ହେବା, ଲାନଡ଼େରିବା, ଆଞ୍ଜାଦେବା, ଟାଳଟୁଳ କରିବା, ଲିପିବା, ଆଗୁଳିବା, ଲଦିବା, ଡ଼ୋର ବାନ୍ଧିବା, ମେଲାଣି ଦେବା, ଝାଡ଼ିଝୁଡ଼ି ହେବା, ହୁଲୁସ୍ଥୁଲ ହେବା, ବାହୁନିବା, ଦୁଲୁସିବା, ମଣ୍ଡିବା, ଫୁସୁଲାଏ, କଳବଲ ହେବା, ବାରିବା, ମନାସିବା, ଥୋଇବା, ଆଡ଼େଇଯିବା, ନିଗିଡ଼ିବା, ଘଉଡ଼ାଇବା, ମାଡ଼ିମାଡ଼ି ପଡ଼ିବା, ଯୁଝିବା, ଦୋହଲିବା, ପଇଟିବା, ଜାକି ଧରିବା, ଡିଡିଯିବା, ସାଇତିବା, ମଣିବା, କାଟିକୁଟି ଦେବା, ବୋବାଳି ଛାଡ଼ିବା, ଭିଣିବା, ସାଙ୍କୁଳେଇବା ଓ ଝାଉଁଳିବା ।

**ଦୃଶ୍ୟାନୁକାରୀ ଶବ୍ଦ :**

ଝଲ୍‌ମଲ୍, ଛିଟଛିଟ, ଥଳ୍‌ଥଳ୍, ଦପ୍‌ଦପ୍, ଛନ୍‌ଛନ୍, ଢ଼ଳଢ଼ଳ, ଝକ୍‌ଝକ୍, ଛାପ୍‌ଛାପ୍, ଡକ୍‌ଡକ୍, ଦାଉଦାଉ, ହଲଚଲ, ସର୍‌ସର୍, ଝଳଝଳ, ଛଳଛଳ, ଚିକ୍‌ଚିକ୍, ଚକ୍‌ଚକ୍ ଓ ଛାଉଛାଉ।

**ଧ୍ୱନ୍ୟାନୁକାରୀ ଶବ୍ଦ :**

ଭୁଣ୍‌ଭୁଣ୍, ଖିଲ୍‌ଖିଲ୍, ଶୀର୍‌ଶୀର୍, ଦୁମ୍‌ଦାମ୍, କୁଲୁକୁଲୁ, ଫୁରୁଫୁରୁ, ଗର୍ଜି ଗର୍ଜି, ଗାଉଁଗାଉଁ, ଚପ୍‌ଚପ୍, ଟକ୍‌ଟକ୍, ଫର୍‌ଫର୍, ଇଷିଇଷି, ଧୂତୁ ଧୂତୁ, ଫଡ଼୍‌ଫଡ଼୍, ସାଇଁସାଇଁ, ଧଡ଼୍‌ଧାଡ଼୍, ଘୁ-ଘୁ, ଠଣ୍‌ଠଣ୍, ଠକ୍‌ଠକ୍, ଟିକ୍‌ଟିକ୍, ଘୋ-ଘୋ, ଠପ୍‌ଠପ୍, ଥପ୍‌ଥପ୍, ସର୍‌ସର୍, ରଣ୍‌ଝଣ୍, ଚିଁ-ଚିଁ, ସୁଲୁସୁଲୁ, ଫୁସ୍‌ଫୁସ୍, ଖିଲ୍‌ଖିଲ୍, ଢୁ-ଢୁ, ପିଁ-ପିଁ, ଝର୍‌ଝର୍, ଧୁକୁଧୁକୁ, କୁହୁକୁହୁ, ଫୁସ୍‌ଫାସ, ସୁ-ସୁ, ଘଡ଼୍‌ଘଡ଼୍, ଭୁଟ୍‌ଭାଟ୍, ଝମ୍‌ଝମ୍, ଓ ଟବ୍‌ଟବ୍।

**ଭାବାନୁକାରୀ ଶବ୍ଦ :**

ଖିନ୍‌ଭିନ୍, ମଳାମଳା, ଫୁଲ୍‌କାଫୁଲ୍‌କା, ମିଚିମିଚି, ଥୁରୁଥୁରୁ, ଲୋଚାକୋଚା, ଗମ୍‌ଗମ୍, ଛାଟିପିଟି, ଛାପ୍‌ଛାପ୍, କୁତୁକୁତୁ, ଆକ୍ତାମାକ୍ତା, ଶୀର୍‌ଶୀର୍, ଉଦୁଉଦୁ, ଗୁଲୁଗୁଲୁ, ଧୁଡୁଧୁଡୁ, ସୁଡୁବୁଡୁ, ଚୂନାଚୂନା, ମହମହ, ଥମଥମ, ଗରଗର, ଧୂଧୂ, ଟାଇଁଟାଇଁ, ଡ଼ବ୍‌ଡ଼ବ୍, କିଟିକିଟି, ହାଡ଼େହାଡ଼େ, ଗଦ୍‌ଗଦ୍ ଓ ଡିଲେଡିଲେ।

**ଦ୍ୱୈତଶବ୍ଦ :**

ଫାଙ୍କେ ଫାଙ୍କେ, ଗଦାଗଦା, ମହଣମହଣ, ଥରଥର, କେରାକେରା, ଚାପିଚାପି, ସଫାସଫା, ପ୍ରସ୍ତପ୍ରସ୍ତ, ଭରଣଭରଣ, ମାଡ଼ିମାଡ଼ି, ବୁନ୍ଦାବୁନ୍ଦା, କଳାକଳା, ଟୁକୁଡ଼ାଟୁକୁଡ଼ା, କଣ୍ଟାକଣ୍ଟା, ରଙ୍ଗବିରଙ୍ଗ, ସାମ୍ନାସାମ୍ନି, କୁଡ଼କୁଡ଼, ଜାଲୁଜାଲୁ, ଭାଙ୍ଗିଭୁଙ୍ଗି, ଦଳିଦାଳି, ଶୁଙ୍ଘିଶୁଙ୍ଘି, ଭଙ୍ଗାଭଙ୍ଗି, କୁଞ୍ଚୁକୁଞ୍ଚୁ, ଶଙ୍ଖମଲମଲ, ମୁର୍କିମୁର୍କି, ଚେକାଚେକା, ବକ୍‌ବକ୍, ଚିଡ଼ିଚିଡ଼ି, ଝୁରିଝୁରି, ଗଦାଗଦା, ଲାଗ୍‌ଲାଗ୍, ବୁନ୍ଦାବୁନ୍ଦା, ଚିପିଚିପି, ଗୋଛାଗୋଛା, କୁନିକୁନି, ପଲପଲ, ପେଛାପେଛା, କଲେବଲେ, ତୁହାତୁହା, ଠୋପାଠୋପା, ଘୁଷୁରିଘୁଷୁରି, ଖନିଖନି, ମାଲ୍‌ମାଲ୍, ସାପ୍‌ସାପ୍, ଡ଼ଗଡ଼ଗ, ଲାଇଁଲାଇଁ, ଥାକଥାକ, ମୁହୂର୍ମୁହୁ, ଛପିଛପି, ଅସରାଅସରା, ରତରତ, ରାଶିରାଶି ଓ ମୁରୁକିମୁରୁକି।

**ଯାବନିକ ଶବ୍ଦ :**

ସଇତାନୀ, ଫିସାଦି, ଜହର, ବାଗାନ୍, ଫାଶୀ, ହକ୍‌ଦାର, ଦଲାଲୀ, ଦସ୍ତାବିଜ୍, ମୀନାର, ନଜର, ଚିରିଣୀ, ମୁବାରକ୍, ବାହାବା, ନକ୍‌ସା, ହାଜିରା, କବର, ବାଦଶାହୀ, ଇନାମ, ସୁରୁ, ସିପାହୀ, କମିଜ୍, ମଜଦୁର, ନିମକ୍, ଖଲାସୀ, ଇସାରା, ଲାଏକ୍, ଜରି, ଇାସ୍‌ଖାନା, ତମସୁକ, କରଜ, ଅଦାଲତ, ତାଗିଦ୍, ଅର୍ଜି, ସାମିଲ, ଅଜବ, ସାଲିସ୍, ତାସ୍, ଇସ୍ତ୍ରୀ, ଗୁଜବ୍, ମାଲକୋସ୍, କାଏମ୍, ଜବାବ୍, ହାଣ୍ଡା, ଅଫିମ, ରୋଜ୍, ପିଆଲା, ମସ୍‌ଜିଦ୍, ମୌକା, କସରତ୍, ସଫେଦ, କୁର୍ଣ୍ଣିସ୍, ବେପରୱା, ମୁର୍ଦ୍ଦାର, ଘାବ୍‌ରା, ଦୋସରା, କୈଫିୟତ୍, ତୁକୁଡ଼ା, ମୈଦାନ୍, କିନାରା, ଦର୍ଜୀ, ମରାମତ୍, ଦୋସ୍ତି, ରୋଷଣୀ, ଗାଲିଚା, ଚପ୍ରାସୀ, ଗିରଫ୍, ସାମ୍ନା, ଖିଲାପ୍, ଫର୍ଦ୍ଦ, ଫେରାର୍, ସାହେବ, ମୌଜ୍, ଦିଆଲୀ, ଜାନୁଆର୍, ମୁଲାଏମ୍, ଆଲଣା, ମୁସ୍କିଲ୍, ବିଲ୍‌କୁଲ୍, ମିଆଦ୍, ବେଦମ୍, ରେଜେଇ,

ମାପ୍, ଜମାନ୍‌ବନ୍ଦୀ, ସୁଲ୍‌ତାନ୍, ହରଦମ୍, ରପ୍ତ, ଫାଇଦା, ଘାଏଲ୍, ଆବାଜ୍, ତଲୁଆର୍, ଗାଏବ୍ ଓ ଚାହିଦା ଇତ୍ୟାଦି।

## ଛନ୍ଦ ଓ ସାଙ୍ଗୀତିକତା

ରମାକାନ୍ତଙ୍କ କବିତାରେ ମୁକ୍ତବନ୍ଧ (free verse) ଛନ୍ଦ ପ୍ରାଧାନ୍ୟ ଲାଭ କରିଥିଲେ ମଧ ସ୍ଥଳ ବିଶେଷରେ ଗଦ୍ୟ ଓ ପଦ୍ୟର ସମାହାର ଲକ୍ଷ୍ୟ କରାଯାଇଥାଏ, ଏହା ମଧ ସ୍ୱାଭାବିକ। ଆଜିର କବିତା ଯେତେବେଳେ ଜଟିଳ ମାନସିକତା ଓ ଦ୍ୱନ୍ଦ୍ୱାତ୍ମକ ଚେତନାର ବାହକ ହେଲା ସେତେବେଳେ ତା'ର ପରିପ୍ରକାଶ ପାଇଁ କବି ଛନ୍ଦ ପରିହାର କରି ମୁକ୍ତ ଛନ୍ଦକୁ ଗ୍ରହଣ କଲା। କବିତାରେ ସବୁବେଳେ ଆବେଗ ସ୍ତରକୁ ରକ୍ଷା କରାଯାଇ ନ ପାରେ; ତେଣୁ ସମୟେ ସମୟେ ଗଦ୍ୟର ପ୍ରବେଶ କବିତାର କ୍ଷତିକାରକ ହୁଏ ନାହିଁ। ଏ ସମ୍ପର୍କରେ କଲେରିଜ୍ ସୁନ୍ଦର କଥାଟିଏ କହିଛନ୍ତି। ସମ୍ପୂର୍ଣ୍ଣ କବିତାଟି ଯେ କାବ୍ୟ ଗୁଣକୁ ଧରି ରଖିବ ତାହା ନୁହେଁ। ଏଥିରେ ଗଦ୍ୟ ଓ ପଦ୍ୟର ଚାରୁ ସମନ୍ୱୟ ଘଟିପାରେ। " a poem of any length· neither can be, nor ought to be, all poetry. Yet, if an harmonious whole is to be produced, the remaining parts must be preserved, in keeping with the poetry."

ରମାକାନ୍ତଙ୍କ ଛନ୍ଦ ପ୍ରୟୋଗର ମୁଖ୍ୟତଃ ତିନୋଟି ପର୍ଯ୍ୟାୟ ଲକ୍ଷ୍ୟ କରାଯାଇ ପାରେ। ପ୍ରାରମ୍ଭିକ ପର୍ଯ୍ୟାୟରେ କବି ବାକ୍‌ଛନ୍ଦ (Speech rhythm) କୁ ଗ୍ରହଣ କରି ନେଇଛନ୍ତି ଏବଂ ଗଦ୍ୟ ଓ ପଦ୍ୟର ଏକ ସମନ୍ୱୟ ଆଣିଛନ୍ତି। 'କେତେଦିନର' କବିତା ଗ୍ରନ୍ଥରେ 'ବହୁଦିନର' ପର୍ଯ୍ୟାୟଭୁକ୍ତ କବିତାରେ ପଦ୍ୟଛନ୍ଦର ପ୍ରାଧାନ୍ୟ ପରିଲକ୍ଷିତ। ଯେଉଁଠି ପଦ୍ୟଛନ୍ଦ କ୍ରିୟାରତ ସେଠି ସାଙ୍ଗୀତିକତା ଅନୁରଣିତ। ଯେଉଁଠି ଏହାର ଅବର୍ତ୍ତମାନତା ସେଠି ଶୁଷ୍କ ଗଦ୍ୟତ୍ୱ ହିଁ ଲକ୍ଷଣୀୟ।

"ସଦ୍ୟ ପ୍ରସୂତ ଜହ୍ନ ଉଠୁଚି
ବିଦାରି ମାତାର କୁମାରୀ ଯୋନି
ରକ୍ତର ଜଳେ ଗାଧୋଇ ପାଧୋଇ
ନିଠୁର ହାସ୍ୟ ଓଠରେ ଘେନି।"(ଘଣ୍ଟା)

ଅନ୍ୟତ୍ର ଶୁଷ୍କ ଗଦ୍ୟମୟ କବିତାର ମଧ ଉଦାହରଣ ଦୁର୍ଲ୍ଲଭ ନୁହେଁ। ମୁଖ୍ୟତଃ 'ଅନେକ କୋଠରୀ', 'ସନ୍ଦିଗ୍ଧ ମୃଗୟା' ଓ 'ସପ୍ତମଋତୁ'ରେ ଗଦ୍ୟଛନ୍ଦ ଅତିମାତ୍ରାରେ ପ୍ରାଧାନ୍ୟ ବିସ୍ତାର କରିଛି।

"ପ୍ରତ୍ୟେକ ଦେଖାରେ ତମେ ହସୁଥିଲ, କେତେବେଳେ ଖିଲ୍‌ଖିଲ୍ ହୋଇ
କେତେବେଳେ ମୁର୍କିମୁର୍କି, ଏପରିକି ତମେ ମତେ ନ ଦେଖିବାବେଳେ
ତମର ମୁହଁରେ ହସ ଲାଗିଥିଲା।" (ସ୍ୱର୍ଗାରୋହଣ)

କିନ୍ତୁ 'ସଚିତ୍ର ଅନ୍ଧାର'ରେ ଗଦ୍ୟଛନ୍ଦରେ ପଦ୍ୟର ଅନ୍ତର୍ଚ୍ଛନ୍ଦ ଓ 'ଶ୍ରୀରାଧା'ରେ ସାଙ୍ଗୀତିକତାର ଅପୂର୍ବ ଉଚ୍ଛ୍ୱାସ ପରିଲକ୍ଷିତ ହୁଏ। ଦୁଇଟି ଉଦାହରଣ ମାଧ୍ୟମରେ ଏହା ଅନୁଭୂତ ହୋଇପାରେ।

(କ) "ମୋ ଆତ୍ମାରେ ସବୁରଙ୍ଗ ରହିଛି, କିନ୍ତୁ ମୋ
ଆଖିକୁ ଦିଶୁନି, ହାତ ଥରୁଥରୁ ହୁଏ।
ଥରେ ହେଲେ ଲଇଁପଡ଼ ଆକାଶ ଯେପରି
ଲୁହର ସମୁଦ୍ର ବୋହି ଲଇଁ ପଡ଼େ, ଥରେ ଲଇଁପଡ଼
ଦୀନହୀନ ଭିକାରୀଙ୍କ ପରି।"

(ଖ) "ପ୍ରାଣ ଯାଉ, ପ୍ରାଣ ରହୁ
ପାଇ ନପାଇବା ନପାଇ ପାଇବା
ଦୁଃଖ ସୁଖ ଲାଗିଥାଉ।"(୫୨)

## ପ୍ୟାରେନ୍‌ଥିସିସ୍

ଆଧୁନିକ କବିତାରେ ପ୍ୟାରେନ୍‌ଥିସିସ୍ ବା ବନ୍ଧନୀ ମଧ୍ୟଗତ ବାକ୍ୟର ପ୍ରୟୋଗ ଅନ୍ୟତମ ଲକ୍ଷଣ, ଆଙ୍ଗିକ ଦୃଷ୍ଟିରୁ। ଏହା ମୂଳ ଭାବ ସହିତ ଆତ୍ମିକ ଯୋଗ ସମ୍ପର୍କ ଛିନ୍ନ କରି ନଥାଏ ବରଂ କବି-ପ୍ରାଣର ସଂଶୟ-ଦ୍ୱନ୍ଦ୍ୱ ବା ପ୍ରଶ୍ନବାଚୀକୁ ଅଧିକ ଶାଣିତ ଓ ପ୍ରକାଶଦୀପ୍ତ କରେ। ଇଲିଅଟଙ୍କ କବିତାରେ ଏହା ଏକ ପ୍ରଧାନ ଗୁଣ। ଏହାର ପ୍ରୟୋଗ 'କେତେଦିନର' କବିତା ଗ୍ରନ୍ଥରେ ପ୍ରାୟ ଷୋଳଟି କବିତାରେ ସ୍ଥଳ ବିଶେଷରେ ହୋଇଥିଲେ ମଧ୍ୟ କ୍ରମଶଃ ଅନ୍ୟାନ୍ୟ ଗ୍ରନ୍ଥରେ ଏହାର ବହୁଳ ପ୍ରୟୋଗରେ ଭଟ୍ଟା ଆସିଛି। ଏହାର କାରଣ ହୁଏତ ଏହା ହୋଇପାରେ ଯେ କବିର ବକ୍ତବ୍ୟ ଯେତେବେଳେ ଆପଣା ଛାଏଁ ଆପେ ବିମଳ ହୋଇଉଠେ ବା ସୁପ୍ରକାଶ କ୍ଷମ ହୁଏ ସେତେବେଳେ ଏହାର ଆବଶ୍ୟକତା କମି ଆସେ। 'ଅନେକ କୋଠରୀ' ରେ ଆଠଟି କବିତା, 'ସନ୍ଦିଗ୍ଧ ମୃଗୟା'ରେ ସାତଟି କବିତା, 'ସପ୍ତମ ଋତୁ'ରେ ତିନିଟି କବିତା, 'ସଚିତ୍ର ଅନ୍ଧାର'ରେ ଗୋଟିଏ ଓ 'ଶ୍ରୀରାଧା'ରେ ଆଦୌ ପ୍ରୟୋଗ ନହୋଇଥିବାର ସୂଚନା ମିଳେ। ଗୋଟିଏ ଉଦାହରଣ ନିଆଯାଉ।

"ବାଇଗେଣୀ ଆଲୁଅରେ ଯେଉଁମାନେ ରୋଜ୍ ଗାଧୁଥାନ୍ତି
(ସେମାନଙ୍କ ମନେମନେ ବାଇଗେଣୀ ଏକମାତ୍ର ରଙ୍ଗ)
ସେମାନେ କାହାନ୍ତି ଆଉ କାହିଁ ଏଉ ଦରିଦ୍ର ଭଣ୍ଡାରୀ!
(ପର୍ବତ ଘେନୁଚି ପ୍ରାଣ, ଗୁମ୍ଫା ଦେହେ ନୂତନ ଉନ୍ମାଦ)
କିନ୍ତୁ ମୋର ଲୋଭ ହୁଏ, ଆଃ ତାଙ୍କ ଅନ୍ଧତାର
ପ୍ରଥମ ସୌନ୍ଦର୍ଯ୍ୟ!
(ରାଜକନ୍ୟା ଗାଧୋଉଚି! ବାଃ, ବାଃ ଧନ୍ୟ ଏହି
ଗୁମ୍ଫାର ପ୍ରସଙ୍ଗ!)"(୫୩)

## ପୁନରାବୃତ୍ତି

କବିତାରେ ସାଙ୍ଗୀତିକତା ଓ ଭାବ ପ୍ରାଧାନ୍ୟ ନିମିତ୍ତ ପୁନରାବୃତ୍ତି ଘଟିଥାଏ। କବିଗୁରୁ ଇଲିଅଟ ଏଥିରେ ସିଦ୍ଧିଲାଭ କରିଛନ୍ତି। ଅନୁରୂପ ଭାବେ ରମାକାନ୍ତଙ୍କ କବିତାରେ ଏହାର ସଫଳତା ଲକ୍ଷଣୀୟ।

(କ) ''ଯଦି ଆମେ ପଡ଼ିଯାଉଁ କ'ଣ ଧରି ଉଠିବା ପୁନଶ୍ଚ ?
ଯଦି ଆମେ ହଜିଯାଉଁ କ'ଣ ଦେଖି ବାଟକୁ ଫେରିବା ?
ଯଦି ଆମେ ଡ଼ରିଯାଉଁ କ'ଣ ଦେଖି
ଭରସା ପାଇବା ? (୫୪)

(ଖ) ''ତମେ ଯେବେ କ୍ଳାନ୍ତ ହେବ ଶୁଣିଶୁଣି ରେସ୍ତୋରାଁର ଗୀତ
ତମେ ଯେବେ କ୍ଳାନ୍ତ ହେବ ପିନ୍ଧିପିନ୍ଧି
କୃତ୍ରିମ ରେଶମ....'' (୫୫)

## ଉଦ୍ଧରଣ

'ପରଂପରା ଭିତ୍ତିରେ ବ୍ୟକ୍ତିକ ପ୍ରତିଭାର ବିକାଶ' ଉପରେ ବିଶ୍ୱସ୍ତ କବି ଇଲିଅଟ ଯେପରି ନିଜର କବିତା ଭିତରେ ପୂର୍ବସୂରିମାନଙ୍କ ପ୍ରସିଦ୍ଧ ବାକ୍ୟ ବା ଭାବକୁ ସିଧାସଳଖ ବା ପ୍ରଚ୍ଛନ୍ନ ଭାବରେ ଉଦ୍ଧାର କରିଥାନ୍ତି, ସେହିପରି ରମାକାନ୍ତଙ୍କ କବିତାରେ ଏହାର ଭୂରିଭୂରି ପ୍ରମାଣ ମିଳେ। ବେଦ, ଉପନିଷଦ, ଲୋକକଥା, ଗୀତାଭାଗବତ, ଶକୁନଶାସ୍ତ୍ର, ସାମୁଦ୍ରିକ ଶାସ୍ତ୍ର, ବୈଷ୍ଣବ କାବ୍ୟ, ରୀତିକାବ୍ୟ, ବାଇବେଲ୍, ଟୀକାଗୋବିନ୍ଦ ଚନ୍ଦ୍ର, ଭୀମଭୋଇ ଠାରୁ ଆରମ୍ଭ କରି 'ମଧୁବର୍ଣ୍ଣବୋଧ'ରୁ ମଧ କତିପୟ ପଂକ୍ତି ଗୃହୀତ ହୋଇଛି। ଏହାଦ୍ୱାରା କବି ଯେ କେବଳ ପରମ୍ପରାକୁ ସମ୍ମାନ ପ୍ରଦାନ କରିଛନ୍ତି ତାହା ନୁହେଁ, ବରଂ ନିଜର ବକ୍ତବ୍ୟ ଓ ଚେତନା ଅଧିକ ପ୍ରକାଶକ୍ଷମ ତଥା ଦୀପ୍ତିମନ୍ତ ହୋଇଉଠିଛି। ରମାକାନ୍ତ ରଥ 'ଘରଟିଏ' ସମ୍ପର୍କରେ ଯେତେ ଯାହା କହିଲେ ଆମ ମନରେ ଯେଉଁ ପ୍ରଭାବ ବିସ୍ତାର କରିପାରିବ ନାହିଁ; ମଧୁସୂଦନଙ୍କ 'ବୈକୁଣ୍ଠ ସମାନ ଆହା ଅଟେ ସେହି ଘର' ଉଚ୍ଚାରଣ ହେବା ମାତ୍ରେ ଏକ ପବିତ୍ର ଭାରତୀୟ ବା ଓଡ଼ିଶୀ ଘରର ଛବିଟିଏ ଆଖି ଆଗରେ ନାଚି ଉଠେନିକି ?

'ଅନ୍ୟଲୋକର ପାଣି'ରେ ଭୀମଭୋଇଙ୍କ 'ହୁତାଶନରୁ ଜଳବୁନ୍ଦେ ହେଲା ପ୍ରକାଶ', 'ବାଘଶିକାର'ରେ ଭାଗବତର 'ଯେସନେ କୀଟ ଊର୍ଣ୍ଣନାଭି' 'ସନ୍ଧ୍ୟା'ରେ ରାଧାନାଥଙ୍କ ପାର୍ବତୀ କାବ୍ୟର ଗଦ୍ୟ ଉପସଂହାର, ଆଦି ଶିରୋଦ୍ଧୃତି ଭାବରେ ଗ୍ରହଣ କରାଯାଇଛି। ନିମ୍ନୋକ୍ତ ମତେ ସେଗୁଡ଼ିକୁ ଚିହ୍ନାଯାଇପାରେ।

**ବେଦ ଓ ଉପନିଷଦୀୟ ଶ୍ଳୋକ :**

(କ) ''ଧର୍ମାନ୍ ପୃଥକ୍ ପଶ୍ୟାନ୍ ତ ନେବାନୁ ବିଧାବତି...''(୫୬)

(ଖ) ''ମଧୁ ଝରୁ ଗାଈଙ୍କ ପହ୍ନାରୁ
ଅସ୍ତସୂର୍ଯ୍ୟ ମଧୁପୂର୍ଣ୍ଣ ହୁଅନ୍ତୁ ଓ ହାୱା ମଧ ମଧୁପୂର୍ଣ୍ଣ ହେଉ,
ମହୁପରି ମିଠା ଲାଗୁ ସବୁ ପିତା ଔଷଦ...''(୫୭)

**ଗୀତାର ଶ୍ଳୋକ:**

(ଗ) ''ମାଂସ ମଧ ଲୁଗାପରି, କାଳକ୍ରମେ ହୁଏ ପୁରାତନ
ପରିତ୍ୟକ୍ତ ହୁଏ କେଉଁ ଶ୍ମଶାନର କଦମ୍ବ ଡ଼ାଳରେ...''(୫୮)

ବୈଷ୍ଣବ କାବ୍ୟ :

(ଘ) "ପ୍ରବଳ ଗ୍ରୀଷମେ ହୋଇ ବିକଳ ସକଳ
ଚପଳ ଲୋଚନା ଗୋପନାରୀମାନେ କ୍ରୀଡ଼ାଛାଡ଼ି
ପଶିଲେ ଜଳରେ
ଏ ସମୟେ ବୃନ୍ଦାବନୁ ବାହାରିଲେ କମଳ ନୟନ
ବିଚାରିଲେ ଗୋପୀକାଙ୍କ ଅଙ୍ଗବାସ ଆଜି ଆମ୍ଭେ
ହରଣ କରିବା।"(୫୯)

(ଙ) "ଆଗୋ ସଖିଗଣ। ଶ୍ୟାମ ପଦଧୂଳି
ବୋଳ ମୋର ଶିର, ଶ୍ୟାମ ଚିତ୍ରମୂର୍ତ୍ତି ଦେଖାଅ ଓ ମୋର
ଜୀବନ ବାହାରିଗଲେ ଶ୍ୟାମ ନାମ ହୃଦରେ ଲିହିବ।"(୬୦)

ରୀତିଯୁଗୀୟ କାବ୍ୟ :

(ଚ) "ବହିତ୍ର ଲାଗିଲା ଯାଇ ସେମାନଙ୍କ ଆକ୍ଷିର ବନ୍ଦରେ।"(୬୧)

(ଛ) "କେ ବୋଇଲା ଚନ୍ଦ୍ରମା ଦର୍ପଣ
ପ୍ରାୟେ ମୁଖ ଦିଶେ ଗଜ ମଛିଥିବା ପଦ୍ମବନ ପ୍ରାୟେ।"(୬୨)

ଟୀକା ଗୋବିନ୍ଦ ଚନ୍ଦ୍ର :

(ଜ) "କାଲି ଯାଅ ଯୋଗୀ ହୋଇ କରି
କୁମର ମଣିରେ ମୋର ବାଣିଜ୍ୟ ବା ରାଜକର୍ମ କର।
କେଉଁଠାକୁ ଯିବି ମୁହିଁ ଜନନୀ ଲୋ
ତୁ ତ ହେଲୁ ପାଣି ମୁହିଁ ମାଛ।"(୬୩)

ସାମୁଦ୍ରିକ ବିଦ୍ୟା:

(ଝ) "ମୁଁ ପ୍ରାୟ ଯାଇଛି ଭୁଲି ଗୁରୁଅଛି ଚନ୍ଦ୍ରର ଆଠରେ
କେବଳ ସେତିକି ନୁହେଁ, ଚନ୍ଦ୍ରସାଙ୍ଗେ ଶନି ରହିଅଛି,
+ + +
ସୁତରାଂ ପୁନର୍ବାର ଅର୍ଥନାଶ, ବନ୍ଧୁନାଶ ତଥା
ପୁତ୍ରଙ୍କ ନିମିତ୍ତ ଦୁଃଖ, ପ୍ରାଣହାନି, ଅଯଥା ଶତ୍ରୁତା।"(୬୪)

ଆୟୁର୍ବେଦ :

(ଟ) "କ୍ଳାନ୍ତ ପୌରୁଷର, ଥୁରୁଥୁରୁ
ଆଣ୍ଠୁକର, ଭୋଜନ ଆଦ୍ୟରେ ଗୋଲ ମରିଚକୁ ଭାଜି
ଘିଅରେ, ବା ଦୁଧ ଏବଂ ମିଶ୍ରି ସଙ୍ଗେ କଇଁଥ ମଞ୍ଜିର
ଚୂର୍ଣ୍ଣ ଖାଇବାର....."(୬୫)

ଲୋକ ସାହିତ୍ୟ :

(ଠ) "ଆଜି ଯେ ରାଜେନ୍ଦ୍ରାସନେ କାଲି ସେ ଫକୀର"।(୬୬)

(ଡ଼) "କେଉଁ ମଫସଲି ଟୋକା ହେ ସମ୍ରାଟ କାନିଛାଡ଼ ମୋର
ବାରବର୍ଷେ ଯାଏଁ ମୋର ବ୍ରତ ଅଛି ବାରବର୍ଷ ପରେ
ମୁଁ ତମର ହେବି ସବୁଦିନ ଲାଗି କେବଳ ତମର।"(୬୭)

ମଧୁସୂଦନ ରାଓ :

(ଢ଼) "ସନ୍ଧ୍ୟାର ଆକାଶ ଦିଶେକି ସୁନ୍ଦର। ତାରାଙ୍କ ଆଞ୍ଚାରେ
ଆକାଶ ଚିତ୍ରିତ ହ୍‌ ୍ ନାନା ରଙ୍ଗେ.....।"(୬୮)

ନନ୍ଦ କିଶୋର ବଳ: (ଡ଼ାଆଁ।ଆ ଖରା କବିତା)

(ଣ) "ଆସ ଆସ ଡ଼ଙ୍ଗା ଚଢ଼ି ସମୟର ଉଜାଣି ସ୍ରୋତରେ,
ଆସ ହେ ମୋ ପିଲାବେଳ ସ୍କୁଲବେଳ
କଲେଜ ବେଳର ସଖା।"(୬୯)

ଗୁରୁପ୍ରସାଦ ମହାନ୍ତି : (ସମୁଦ୍ର ସ୍ନାନ)

(ତ) "ହେ ନିହତ ସୌଦାଗର, ହେ ସଖା ମୋ କଲେଜ ବେଳର!
ହେ ପିତା ଓ ପିତାମହ ଓ ପ୍ରପିତାମହ, ଶୁକ୍ଳାମ୍ବର
ଧରବିଷ୍ଣୁ, ଶଶିବର୍ଣ୍ଣ ଚତୁର୍ଭୁଜ ପ୍ରସନ୍ନ ବଦନ + +
ଅମୁକ ତିଥିରେ ତମେ ଓହ୍ଲାଇବ ଐଶାନ୍ୟ ଦିଗରେ।"(୭୦)

ଏତଦ୍‌ବ୍ୟତୀତ 'ସପ୍ତମ ଋତୁ'ର 'ଚିତ୍ରପ୍ରତିମା' ଭକ୍ତ ଚରଣ ଦାସଙ୍କ 'ମନବୋଧ ଚଉତିଶାର 'ଚିତ୍ରପ୍ରତିମା ପ୍ରାୟ ଦିଶୁ ସୁନ୍ଦର...' ଏବଂ 'ସନ୍ଦିଗ୍ଧ ମୃଗୟା'ର 'ଭୁଲାମନ', 'ଭୂତକେଳି' କବିତା ଦୁଇଟିର ଶିରୋନାମ ଗ୍ରହଣ କରାଯାଇଛି।

## ବିରୋଧାଭାସ

ସାଂପ୍ରତିକ କବିତାରେ କବି ଚିତ୍ତର ଦ୍ୱନ୍ଦ୍ୱ ଓ ମାନସିକ ଦ୍ୱିଧାଭାବ ଅତିମାତ୍ରାରେ ପ୍ରକାଶିତ। ତେଣୁ ଏହି ଭାବକୁ ପ୍ରକାଶ କରିବାରେ ବିରୋଧାଭାସର ପ୍ରୟୋଗ ହୋଇଥାଏ। ଏହା ଯେ ପୁରାପୁରି ନୂତନ ତାହା ନୁହେଁ। ଉପନିଷଦର 'ଦ୍ୱାସୁପର୍ଣ୍ଣା' ପ୍ରସଙ୍ଗ, ଜଗନ୍ନାଥ ଦାସଙ୍କ ଭାଗବତ, ଭୀମଭୋଇଙ୍କ କବିତା ଓ ପଞ୍ଚସଖାଯୁଗୀୟ ଶରୀରଭେଦ ସମ୍ପର୍କିତ ରଚନାବଳୀରେ ଏହାର ନମୁନା ରହିଛି। ଇଲିଅଟଙ୍କ 'ଫୋର୍‌କ୍ୱାର୍ଟେଟ୍‌ସ୍'ରେ ଏହା ପ୍ରଚୁର ପରିମାଣରେ ପରିଦୃଷ୍ଟ ହୁଏ। ରମାକାନ୍ତଙ୍କ କବିତାରୁ କେତୋଟି ଉଦାହରଣ ନିଆଯାଉ।

(କ) "ସୁତରାଂ ଏହାବି ସମ୍ଭବ, ଯେ ମୁଁ ଯାହା ତାହା ନୁହେଁ।
ଏହା ବି ସମ୍ଭବ
ଦିକ୍‌ଦାର ହେବା ସତ୍ତ୍ୱେ ମୁଁ ଆଦୌ ଦିକ୍‌ଦାର ନୁହେଁ,
ଲକ୍ଷଲକ୍ଷ ଦୁଃଖ ମୋର ପିଛା ଧରିଛନ୍ତି, କିନ୍ତୁ ମୋର
ପିଛା କେହି ଧରି ନାହିଁ ଯେହେତୁ ମୋ ଦୁଃଖ
ମୋର ନୁହେଁ,"(୭୧)

(ଖ) ଏକି ଆଚମ୍ବିତ ଦୃଶ୍ୟ ଦେଖ ଭାଇ ଦେଖ
ବାପା ମାଆ ଆଉ ପୁଅ ଜନ୍ମ ହେଲେ ଗୋଟିଏ ସମୟେ।
ଘୋ ଘୋ କମ୍ପୁଥିବା ବଜାର ଭିତରେ
ବିକୁଥିବା ଲୋକମାନେ ମୃତ। (୭୨)

## କଥ୍ୟଭାଷା :

ଇଲିଅଟଙ୍କ "Let us go then you and I' ପରି ଆଜିର କବିତାରେ କଥ୍ୟଭାଷାର ଶୈଳିବିଶେଷରେ ପ୍ରଚଳନ ଖୁବ୍ କଳାତ୍ମକ ସାର୍ଥକତା ଲାଭ କରିପାରିଛି। ରମାକାନ୍ତଙ୍କ ଗୋଟିଏ କବିତାଂଶ ନିଆଯାଉ।

"ମତେ ହିଁ ଦେଖାଇ କହେ, "ଏଇ ଅଟେ ରମାକାନ୍ତ ରଥ
ନିଜହାତେ ମାରିଅଛି ମୂଲ୍ୟବାନ ଜୀବନ ତାହାର।"
ମୁଁ କହିପାରୁନି କିଛି, ଯେ ଦେଖୁଛି ସେ ହସୁଛି ସ୍ମିତ,
"ଭଲଅଛ? ତମେ କିଆଁ ଆତ୍ମହତ୍ୟା କରିଲ କହତ?"(୭୩)

## ଲାଳିକା

ଓଡ଼ିଆ ସାହିତ୍ୟରେ ଫକୀରମୋହନ, ଲକ୍ଷ୍ମୀକାନ୍ତ ମହାପାତ୍ର, ଓ ଗୋଦାବରୀଶ ମହାପାତ୍ର ଲାଳିକା ରଚନା କରି ପ୍ରସିଦ୍ଧି ଲାଭ କରିଛନ୍ତି। ଏ ତିନିଜଣ ସାଧକ ବାସ୍ତବ ଜୀବନରେ ଖୁବ୍ କ୍ଷତାକ୍ତ ଥିଲେ ମଧ ଅନ୍ୟକୁ ହସାଇବାରେ କମ ସକ୍ଷମ ହୋଇ ନାହାନ୍ତି। ଆଧୁନିକ କବିତାରେ ଏହାର ଭଙ୍ଗା ପଡ଼ିଥିଲା ବେଳେ ଠାଏ ଠାଏ ରମାକାନ୍ତ ଲାଳିକାର ଅବତାରଣା କରିଥାନ୍ତି। ପ୍ରାଚୀନ ପଦାବଳୀ ବା ଭାବକୁ ବ୍ୟଙ୍ଗାତ୍ମକ ଶୈଳୀରେ ସ୍ୱାଂପ୍ରତିକ ଭାବଭୂମିରେ ଉପସ୍ଥାପିତ କରି କିପରି ସାଫଲ୍ୟ ଲାଭ କରିଛନ୍ତି ନିମ୍ନୋକ୍ତ ପଦରୁ ବୁଝାଯାଇପାରେ।

(କ) "ତୋ ଦେହ ଉଜ୍ଜ୍ୱଳ ମାଗୋ ସସ୍ର ସୂର୍ଯ୍ୟ ଦୀପ୍ତିରୁ ଅଧିକ,
ତୋର ମୁକ୍ତ କେଶ ମାଗୋ ଲମ୍ବିଅଛି ଆଣ୍ଠୁଯାଏଁ ତୋର,
ମୁକ୍ତାହାର ସୋହେ ମାଗୋ ତୋ ବର୍ତ୍ତୁଳ ସ୍ତନଙ୍କ ଉପରେ,
ଏବଂ ତୋ ଭ୍ରୂଲତା କ'ଣ ପୁଷ୍ପଧନୁ କାମଦେବଙ୍କର?
ହାତୀଦାନ୍ତ ପରି ଧୋବ ଓ କଦଳୀ ଗଛ ପରି ଜଙ୍ଘ
ସ୍ତମ୍ଭ କି ସହିବା ଲାଗି ଓଜନ ତୋ ସ୍ଫୀତ ନିତମ୍ବର?
ରୁଦ୍ରାକ୍ଷର ମାଳାଧରି ଏକହାତେ ଅନ୍ୟହାତେ ମାଗୋ
ଭକ୍ତଙ୍କୁ ଅଭୟ ଦେଉ। କି ସୁନ୍ଦର ଦରହାସ ତୋର!
ତତେ ନମସ୍କାର ମାଗୋ ଏବଂ ତୋର ନାଟ ମନ୍ଦିରରେ
ନାଚୁଥିବା ବେଶ୍ୟା ଏବଂ କୁମାରୀଙ୍କୁ ମୋର ନମସ୍କାର।"(୭୪)

(ଖ) "ଖରାବେଳେ ନିଛାଟିଆ
ବୃନ୍ଦାବନ ସହରର ବାଟ
ଉତ୍ତାପର ଟହଟହ
ହସ ମଧ୍ୟେ ପ୍ରେମିକ ସମ୍ରାଟ
ଆଖିରେ ପ୍ରଚକ୍ଷୁ ଏବଂ ହାତରେ ମୁରଲି
ଧରି ଡ଼ାକୁଛନ୍ତି ରାଧା ଆସ ଆସ ବୋଲି।"(୭୫)

ରମାକାନ୍ତଙ୍କ କବିତାର ଆଙ୍ଗିକ ସମ୍ପର୍କିତ ଆଲୋଚନାର ଶେଷ ପର୍ଯ୍ୟାୟରେ କବି ସମାଲୋଚିକା ଗିରିବାଳା ମହାନ୍ତିଙ୍କର ମନ୍ତବ୍ୟଟି ଖୁବ୍ ପ୍ରଣିଧାନ ଯୋଗ୍ୟ --"ରମାକାନ୍ତଙ୍କ କବିତା ସାଧାରଣ ଅର୍ଥରେ ସୁବୋଧ ନୁହେଁ, ଏହା ନାରୀକେଳ ପାକର ଅନ୍ତର୍ଗତ। ବାହାରର ଆପାତଃ କାଠିନ୍ୟକୁ ଥରେ ଅତିକ୍ରମ କରିଗଲେ ଅନ୍ତର - କାବ୍ୟପୁରୁଷର ସ୍ୱଭାବ ସୁନ୍ଦର, ପ୍ରୀତିଦଗ୍ଧ ରୂପଟିକୁ ଚିହ୍ନିବା ସହଜ ହୋଇ ଉଠେ। ସେଥିପାଇଁ ତାଙ୍କର କବିତା ପାଠକଠାରେ ଦୁରୂହ ହେଲେହେଁ ଦୁର୍ବୋଧ ହୋଇ ପଡ଼ିନାହିଁ"।(୭୬)

## ପାଦଟୀକା

୧. ବାଘ ଶିକାର- ଅନେକ କୋଠରୀ ପୃ ୫
୨. ରକ୍ତନଦୀ ସନ୍ତରଣ ପରେ -- ଅଷ୍ଟପଦୀ -- ସୀତାକାନ୍ତ ମହାପାତ୍ର-
୩. କବିତାର ଭାଷା ସମ୍ପର୍କରେ-(୧)-ଭିନ୍ନ ଆକାଶ ଭିନ୍ନ ଦୀପ୍ତି- ସୀତାକାନ୍ତ ମହାପାତ୍ର-ପୃ ୪ ରୁ ଗୃହୀତ।
୪,୫. ସାହିତ୍ୟର ଆଙ୍ଗିକ ବନାମ ଆତ୍ମା -- ଆଧୁନିକ ସାହିତ୍ୟର କେତେକ ଦିଗ -- ସଚ୍ଚିଦାନନ୍ଦ ରାଉତରାୟ-ପୃ ୯
୬. ତତ୍ରୈବ - ପୃ୬
୭. ପୃଷ୍ଠବନ୍ଧ-ସଚିତ୍ର ଅନ୍ଧାର-ପୃ ୧୭୧
୮. ଅନ୍ୟଲୋକର ପାଣି - ଅନେକ କୋଠରୀ - ପୃ୧
୯. ବାଘଶିକାର - ତତ୍ରୈବ- ପୃ.୧୬
୧୦. ଅନନ୍ତ ଶୟନ - ତତ୍ରୈବ- ପୃ. ୨୭
୧୧. ତତ୍ରୈବ - ପୃ ୩୦
୧୨. ମେଘ - ସପ୍ତମଋତୁ - ପୃ ୪୫
୧୩. ଧୀବର - ତତ୍ରୈବ - ପୃ ୯୨
୧୪. ଶ୍ରୀରାଧା-ପୃ ୭୯
୧୫. ଆତ୍ମଜ୍ଞାନ-କେତେଦିନର-ପୃ ୭୧
୧୬. ଦ୍ୱିତୀୟ ମଧ୍ୟାହ୍ନ-ତତ୍ରୈବ-ପୃ ୯୯
୧୭. ଅପରାହ୍ନ-ଅନେକକୋଠରୀ-ପୃ ୪୧
୧୮. ଲାଇମାଛ ଓ ସୂର୍ଯ୍ୟାସ୍ତରେ ଶବ ସଂସ୍କାର-ତତ୍ରୈବ-ପୃ ୪୫
୧୯. ବାଘାବଲୋକନ-କେତେଦିନର-ପୃ ୪
୨୦. ଘଣ୍ଟା-ତତ୍ରୈବ-ପୃ୧୩
୨୧. ଚନ୍ଦ୍ରମାର ଚୂଡ଼ି-ତତ୍ରୈବ-ପୃ ୨୩
୨୨. ବୋଇତ ବନ୍ଦାଣ-ତତ୍ରୈବ ପୃ ୬୪
୨୩. ବୃତ୍ତ-କେତେଦିନର-ପୃ ୭୪
୨୪. ପବନ ଓ ମୁଁ-ତତ୍ରୈବ-ପୃ ୭୬
୨୫. ଅନ୍ୟଦିନ-ତତ୍ରୈବ-ପୃ ୮୮
୨୬. ଅପେକ୍ଷା-ଅନେକ କୋଠରୀ-ପୃ ୧୭
୨୭. ପ୍ରତ୍ୟାବର୍ତ୍ତନ-ତତ୍ରୈବ-ପୃ ୨୪

୨୮. ଗ୍ରୀଷ୍ମ ଋତୁରେ ରେଳଯାତ୍ରା-ସନ୍ଦିଗ୍ଧ ମୃଗୟା-ପୃ ୯
୨୯. ପାରିଧି - ତତ୍ରୈବ - ପୃ ୫୭
୩୦. ଅନାୟାସେ ନାଁଦିଆ କବିତା - ସପ୍ତମଋତୁ - ପୃ ୬୮
୩୧. ଛୁଟିର ସ୍ମୃତି - ତତ୍ରୈବ - ପୃ ୩
୩୨. ଧାନକ୍ଷେତ - ତତ୍ରୈବ - ପୃ ୩୫
୩୩. ଆତ୍ମୀୟତାର ତିନିଟି ପର୍ଯ୍ୟାୟ - ତତ୍ରୈବ - ପୃ ୭୩
୩୪. ଶ୍ରୀରାଧା - ପୃ ୮୩
୩୫. ସନ୍ଧ୍ୟାବେଳର ଦୃଶ୍ୟ - ସନ୍ଦିଗ୍ଧ ମୃଗୟା - ପୃ ୬୫
୩୬. ଆତ୍ମୀୟ ଶତ୍ରୁତାର ଚାରିଟି କବିତା - ସପ୍ତମ ଋତୁ - ପୃ ୨୯ - ୩୦
୩୭. ବାଘ ଶିକାର - ଅନେକ କୋଠରୀ - ପୃ ୬
୩୮. ବର୍ଷାଋତୁ - ତତ୍ରୈବ - ପୃ ୩୮
୩୯. ହନୁମାନ - ତତ୍ରୈବ - ପୃ ୪୩
୪୦. ରଜାଙ୍କ ରୋମାନ୍ସ - ସନ୍ଦିଗ୍ଧ ମୃଗୟା - ପୃ ୧୬
୪୧. ଖରାପ ସମୟ ଭଲ ସମୟ - ସପ୍ତମଋତୁ - ପୃ ୬୫
୪୨. ଶ୍ରୀରାଧା - ପୃ ୧୧୯
୪୩. ଁଧର୍ମପଦର ଆତ୍ମହତ୍ୟା - କେତେଦିନର - ପୃ ୨୫
୪୪. The Poetic Image- C.De. Lewis- p.155
୪୫. ଚିହ୍ନାମାଟି ଅଚିହ୍ନା ଆକାଶ - ଡ଼ଃ ଦାଶରଥି ଦାଶ ପୃ ୨୯୬
୪୬. ବାଘ ଶିକାର - ଅନେକ କୋଠରୀ - ପୃ ୫
୪୭. Burnt Norton-V.-F.Q.-T.S. Eliot-P
୪୮. କୁଞ୍ଜବନରେ ଅପରିଚିତର ପାଦଶବ୍ଦ - ରମାକାନ୍ତ ରଥ--ପ୍ରତିବେଶୀ - ପୂଜାସଂଖ୍ୟା ୧୯୮୯ - ପୃ ୩୦୯-୧୦
୪୯. ଛୁଟିଲେ ଘଟ - ସପ୍ତମ ଋତୁ - ପୃ ୬୩
୫୦. Biographia Literaria-Ch. xiv-S.T.Coleridge.
୫୧. ଥରେ ହେଲେ - ସଚିତ୍ର ଅନ୍ଧାର - ପୃ ୫୭
୫୨. ଶ୍ରୀରାଧା - ପୃ ୬୪
୫୩. ଅବୋଲକରା - କେତେଦିନର - ପୃ ୫୭
୫୪. ଦିଲ୍ଲୀ (ରାତି) - ତତ୍ରୈବ - ପୃ ୬୩
୫୫. ବୋଇତ ବନ୍ଦାଣ - ତତ୍ରୈବ - ପୃ ୬୫
୫୬. ବାଘ ଶିକାର - ଅନେକ କୋଠରୀ - ପୃ ୧୫
୫୭. ବିମାନ ଦୁର୍ଘଟଣାରେ ମୃତ୍ୟୁ - ତତ୍ରୈବ - ପୃ ୫୬
୫୮. ବର୍ଷାଋତୁ - ତତ୍ରୈବ - ପୃ ୩୮
୫୯. ତତ୍ରୈବ
୬୦. ରଜାଙ୍କ ରୋମାନ୍ସ - ସନ୍ଦିଗ୍ଧ ମୃଗୟା - ପୃ ୧୬
୬୧. ଅନନ୍ତ ଶୟନ - ଅନେକ କୋଠରୀ - ପୃ ୩୨
୬୨. ବସନ୍ତ ଋତୁ - ସନ୍ଦିଗ୍ଧ ମୃଗୟା - ପୃ ୧୩

୬୩. ବିମାନ ଦୁର୍ଘଟଣାରେ ମୃତ୍ୟୁ - ଅନେକ କୋଠରୀ - ପୃ ୫୪
୬୪. ବସନ୍ତ ଋତୁ - ସନ୍ଦିଗ୍ଧ ମୃଗୟା - ପୃ ୧୨
୬୫. ରଜାଙ୍କ ରୋମାନ୍ସ- ତନ୍ଦ୍ରିବ- ପୃ ୧୬
୬୬. ବାଘାବଲୋକନ - କେତେଦିନର - ପୃ ୪
୬୭. ରଜାଙ୍କ ରୋମାନ୍ସ - ସନ୍ଦିଗ୍ଧ ମୃଗୟା - ପୃ ୧୮
୬୮. ବିମାନ ଦୁର୍ଘଟଣାରେ ମୃତ୍ୟୁ - ଅନେକ କୋଠରୀ-ପୃ ୫୪
୬୯. ହୃଦୟେଶ୍ୱରୀ - ସନ୍ଦିଗ୍ଧ ମୃଗୟା - ପୃ ୩୨
୭୦. ତନ୍ଦ୍ରିବ
୭୧. ଚଉପହରା - କେତେଦିନର - ପୃ ୮୫
୭୨. ମୁହୂର୍ତ୍ତହିଁ ପୂର୍ଣାଙ୍ଗ ଜୀବନ - ସପ୍ତମଋତୁ - ପୃ ୩୫
୭୩. ଗୋଟିଏ ସ୍ୱପ୍ନ - କେତେଦିନର - ପୃ ୬
୭୪. ହୃଦୟେଶ୍ୱରୀ - ସନ୍ଦିଗ୍ଧ ମୃଗୟା - ପୃ ୩୫
୭୫. ସୂର୍ଯ୍ୟାସ୍ତରେ ଖରା ଶେଷ ନୁହେଁ - ତନ୍ଦ୍ରିବ - ପୃ ୯୧
୭୬. ସପ୍ତମ ଋତୁରେ ଶିଳ୍ପ ପ୍ରକରଣ- ଶ୍ରୀମତୀ ଗିରିବାଳା ମହାନ୍ତି- ଝଙ୍କାର -ଜାନୁଆରୀ -୧୯୮୦

# ଅଷ୍ଟମ ପରିଚ୍ଛେଦ

## ଚଳନ୍ତି ସମୟର ଓଡ଼ିଆ କବିତା ଉପରେ ରମାକାନ୍ତଙ୍କ ଛାଇ

ଆଧୁନିକ କବିତା କ୍ଷେତ୍ରରେ ଚରମ ସିଦ୍ଧି ଲାଭ କରିଥିବା କବି ଇଲିଅଟ୍ ଯେପରି ନିଜର କବିତାରେ ପ୍ରାଚ୍ୟ-ପାଶ୍ଚାତ୍ୟ ଦର୍ଶନ, ଚେତନା ଓ ମିଥ୍‌କୁ ସମନ୍ୱିତ କରି ଏକ ନୂତନ କାବ୍ୟସରଣୀର ଉନ୍ମୋଚନ କରିଯାଇଛନ୍ତି ଅନୁରୂପ ଭାବେ ଆମ ସାହିତ୍ୟର ରାଧାନାଥ ରାୟଙ୍କ ଠାରେ ଏହା ଯଥେଷ୍ଟ ପୂର୍ବରୁ ଲକ୍ଷଣୀୟ। ରୀତି ସାହିତ୍ୟର ପାରଂପରିକ ନିଗଡ଼ ଭିତରୁ ଓଡ଼ିଆ କାବ୍ୟକୁ ନୂତନ ଚେତନାରେ ସେହିଁ ଅଭିମନ୍ତ୍ରିତ କରିଛନ୍ତି। ତାଙ୍କରି ଠାରୁ ଆମ ସାହିତ୍ୟରେ ଆଧୁନିକତାର ଯେଉଁ ବୀଜ ପ୍ରୋଥିତ ହୋଇଥିଲା ତାହା କ୍ରମଶଃ ସତ୍ୟବାଦୀ-ସବୁଜ ଓ ପ୍ରଗତି ଯୁଗ ଦେଇ ସଚ୍ଚି ରାଉତରାୟ, ଗୁରୁପ୍ରସାଦ, ଭାନୁଜୀ, ବେଣୁଧର, ରମାକାନ୍ତ, ସୀତାକାନ୍ତ, ରାଜେନ୍ଦ୍ର କିଶୋର, ସୌଭାଗ୍ୟ କୁମାର, ସୌରୀନ୍ଦ୍ର ବାରିକ, ଦୀପକ ମିଶ୍ର, ପ୍ରତିଭା ଶତପଥୀ, ନୃସିଂହ ତ୍ରିପାଠୀ, ହୃଷୀକେଶ ମଲ୍ଲିକ, ଶତ୍ରୁଘ୍ନ ପାଣ୍ଡବ ଓ ଆହୁରି ଅନେକ ନବାଗତ ମାନଙ୍କ ଦ୍ୱାରା ରୂପାନ୍ତରୀ-କରଣରେ ବିବିଧତାକୁ ବହନ କରି ଆସିଛି। ଆମ କବିତା ଭିତରେ ଆଜି ଖାଲି ନାହିଁ ଆଧ୍ୟାତ୍ମିକ ଅଭୀପ୍ସା, କି ବିପ୍ଳବର ରକ୍ତଧ୍ୱନି ଅଥବା କାଳ୍ପନିକତାର ରୋମାଣ୍ଟିକ ଭାବାଳୁତା; ଆଜିର କବିତାରେ ଆମେ ବ୍ୟାସଦେବ, ବାଲ୍ମିକୀ, ଜୟଦେବ, ଶାରଳା ଦାସ, ଜଗନ୍ନାଥ, ଅଚ୍ୟୁତ, ଅନନ୍ତଙ୍କ ଠାରୁ ଦୀନକୃଷ୍ଣ, ଅଭିମନ୍ୟୁ, ଉପେନ୍ଦ୍ର ଦେଇ, ଭୀମ ଭୋଇ ମାନଙ୍କୁ ମଧ୍ୟ ଦେଖୁ। ଏତଦ୍‌ବ୍ୟତୀତ ଡ଼ନ୍, ବ୍ଲେକ୍, ଇଲିଅଟ, ପାଉଣ୍ଡ, ଇଟ୍‌ସ୍, ପ୍ଲାଥ୍ ତଥା କିର୍କଗାର୍ଡ଼, ନିତ୍‌ସେ, ମାଲାର୍ମେ, କାମ୍ୟୁ, କାଫ୍‌କା ଓ ବୋଦ୍‌ଲେୟାର ପ୍ରଭୃତିଙ୍କ ପଦଚିହ୍ନ ମଧ୍ୟ ଲକ୍ଷ କରାଯାଇ ପାରେ। ଏହି ସନ୍ଦର୍ଭରେ ବିବିଧ ଛନ୍ଦରେ ରମାକାନ୍ତଙ୍କ ଉପରେ କେଉଁ କେଉଁ କବି ବା ଶାସ୍ତ୍ରମାନଙ୍କର ପ୍ରଭାବ ପଡ଼ିଛି ତାହା ସ୍ଥଳ ବିଶେଷରେ ପ୍ରୟୋଜନାନୁଯାୟୀ ତୁଳନାତ୍ମକ ଭିତ୍ତିରେ ଦର୍ଶାଇ ଦିଆଯାଇଛି।

କବି ଇଲିଅଟ ଏକଥା ସ୍ୱୀକାର କରିଛନ୍ତି ଯେ 'ପ୍ରତ୍ୟେକ ଯୁଗ ଓ ଯୁଗର ଶିଳ୍ପୀକୁଳ ଦ୍ୱାରା ପରବର୍ତ୍ତୀକାଳ ନିଶ୍ଚିତ ଭାବରେ ପ୍ରଭାବିତ ହୋଇଥାଏ। ଯେଉଁ ଶିଳ୍ପୀ ଠିକ୍ ଭାବରେ ଗ୍ରହଣ କରି ସମନ୍ୱୟ କରିପାରେ ତାହା ସଫଳତା ଲାଭ କରେ। ଏହାଦ୍ୱାରା ହିଁ କବିତାର ବା କଳାର ପ୍ରକୃତ ମୂଲ୍ୟାୟନ ହୋଇପାରେ'।(୧) ଏହି ପରିପ୍ରେକ୍ଷୀରେ

ରମାକାନ୍ତୋତ୍ତର ଓଡ଼ିଆ କବିତା ସମ୍ପର୍କରେ କିଞ୍ଚିତ୍ ଦୃଷ୍ଟିପାତ କରାଯାଇ ପାରେ; ଯେଉଁ କବିତା ଉପରେ ମୁଖ୍ୟତଃ ରମାକାନ୍ତୀୟ କାବ୍ୟାଦର୍ଶର ପ୍ରଚ୍ଛନ୍ନ ବା ପ୍ରତ୍ୟକ୍ଷ ଛାପ ପଡ଼ିଛି। ଏନା ଏକ ଦ୍ୱନ୍ଦ୍ୱାତ୍ମକ ପରିସ୍ଥିତି। ଆମ ସାହିତ୍ୟରେ ଏମିତି ପ୍ରଥାଟିଏ ଅଛି ଯେ ସମାଲୋଚକ ଜଣେ ଯଦି ତୁଳନାତ୍ମକ ଦୃଷ୍ଟିଭଙ୍ଗୀ ନେଇ ଆଲୋଚ୍ୟ ପରିସର ଅନ୍ୟ କାହାଦ୍ୱାରା ପ୍ରଭାବିତ ବୋଲି ମନ୍ତବ୍ୟ ଦେଇ ସୋଦାହରଣ ଦର୍ଶାଇଦିଏ, ତେବେ କତିପୟ କବି ତାହାପ୍ରତି ଅସୂୟାତ୍ମକ ସ୍ୱର ମଧ୍ୟ ଶୁଣାଇ ପାରନ୍ତି। ଏହି କ୍ଷେତ୍ରରେ ଏଠାରେ ଏକ ବ୍ୟକ୍ତିଗତ ଦୃଷ୍ଟିକୋଣରୁ ବିଚାର ଆଲୋଚନା କରାଯାଇଛି। ଚଳନ୍ତି ସମୟର କବିକୁଳ ବା ମୋ' ଆଲୋଚନାର ପରିସର ଭିତରେ ଯେଉଁମାନେ ଆସିଛନ୍ତି, ସେମାନେ ଅଗ୍ରଜ କବି ରମାକାନ୍ତଙ୍କ ଦ୍ୱାରା ପ୍ରତ୍ୟକ୍ଷ ଭାବରେ ପ୍ରଭାବିତ ହୁଅନ୍ତୁ କି ନାହିଁ; ପୂର୍ବୋକ୍ତ ଇଲିଅଟଙ୍କ ସମାଲୋଚନା ସମ୍ପର୍କୀୟ ମନ୍ତବ୍ୟଟିକୁ ସ୍ମରଣକୁ ଆଣିବା ବିଧେୟ।

କବି ରମାକାନ୍ତଙ୍କ କବିତାର ପ୍ରମୁଖ ସ୍ୱର ହିଁ ମୃତ୍ୟୁ ସଚେତନତା। ମୃତ୍ୟୁଚେତନା ସମ୍ପର୍କରେ ତାଙ୍କର ଯେଉଁ ଗଭୀର ଦୃଷ୍ଟଭଙ୍ଗୀ ଓ କାବ୍ୟିକ ପ୍ରକାଶ ତାହା ତାଙ୍କ ପରବର୍ତ୍ତୀ କବିମାନଙ୍କୁ ବା ସମସାମୟିକ ମାନଙ୍କୁ ଯଥେଷ୍ଟ ପରିମାଣରେ ପ୍ରଭାବିତ କରିଛି। ମୁଖ୍ୟତଃ ପ୍ରାକ୍ ରମାକାନ୍ତୀୟ କାବ୍ୟ କବିତାରେ ମୃତ୍ୟୁପ୍ରତି ଏକ ଭୟ ବିଜଡ଼ିତ ଦୃଷ୍ଟିଭଙ୍ଗୀ ବା ମେଟାଫିଜିକାଲ୍ ମନୋବୃତ୍ତିର ସୂଚନା ମିଳେ। କିନ୍ତୁ ରମାକାନ୍ତଙ୍କ କବିତାରେ ମୃତ୍ୟୁ କେବଳ ମେଟାଫିଜିକାଲ୍ ଦୃଷ୍ଟିରୁ ବିଚାର୍ଯ୍ୟ ନୁହେଁ। ତା' ପ୍ରତି କବିଙ୍କର କୌଣସି ଭୟ ନାହିଁ। ବିତୃଷ୍ଣା ନାହିଁ। ବରଂ ଦୈନନ୍ଦିନ ଜୀବନର ପ୍ରତିଟି କାର୍ଯ୍ୟ ପରି ତାହା ବି ଏକ କାର୍ଯ୍ୟ। ତାହା ଯେ କୌଣସି ମୁହୂର୍ତ୍ତରେ ଘଟିପାରେ। ମୃତ୍ୟୁକୁ ସାଧାରଣ ଦୃଷ୍ଟିରେ ବିଚାର କରିବା ଓ ତା'ପ୍ରତି ସୂକ୍ଷ୍ମ ବ୍ୟଙ୍ଗାତ୍ମକ ମନୋଭାବ ପୋଷଣ କରିବାର ଧାରା ଆମ କବିତା କ୍ଷେତ୍ରରେ ଅନନ୍ୟ। ଏ ଦିଗରେ ସୀତାକାନ୍ତ ସଫଳତା ଲାଭ କରିଥିଲେ ମଧ୍ୟ ରମାକାନ୍ତଙ୍କ କାବ୍ୟର ପୃଷ୍ଠପିଠିକା ହିଁ ଜୀବନ-ମୃତ୍ୟୁ ଚେତନା ଉପରେ ପ୍ରତିଷ୍ଠିତ। ମୃତ୍ୟୁକୁ ଯେଉଁ ନୂତନ ମୂଲ୍ୟବୋଧ ଓ ଦୃଷ୍ଟିକୋଣ ନେଇ ସେ ବିଚାର କଲେ ତାହା ପରବର୍ତ୍ତୀ କାବ୍ୟପୀଢ଼ିକୁ ବେଶ୍ ପ୍ରଭାବିତ କରିଛି। ଅବଶ୍ୟ ନୂତନ କବିଗୋଷ୍ଠୀ ସେହି ମୃତ୍ୟୁକୁ ଆହୁରି ବିବିଧ ଚିତ୍ରକଳ୍ପ, ରୂପକ ଓ ପ୍ରତୀକ ମାଧ୍ୟମରେ ରୂପାୟିତ କରିଛନ୍ତି। କିନ୍ତୁ ଏ ପ୍ରକାର ଦୃଷ୍ଟିଭଙ୍ଗୀ ପୋଷଣ କରିବାରେ ସେହିଁ ଅଗ୍ରଗଣ୍ୟ।

ଦୀପକ ମିଶ୍ରଙ୍କ କବିତାରେ ସମକାଳୀନ କାବ୍ୟଧାରାର ସମସ୍ତ ଆତ୍ମିକ ବିଭବର ବର୍ତ୍ତମାନତା ସତ୍ତ୍ୱେ ମୃତ୍ୟୁ ଚେତନା ହିଁ ତାଙ୍କ କବିତାରେ ପ୍ରମୁଖତା ଦାବୀ କରେ। ପ୍ରଥମତଃ ସେ ଜଣେ ଜୀବନବାଦୀ କବି। ବିପୁଳ ଆବେଗ ଓ ସମ୍ବେଦନତାରେ ସେ ଜୀବନକୁ ଭଲ ପାଆନ୍ତି। 'ନିଷିଦ୍ଧ ହ୍ରଦ' ସଂକଳନରେ ଜୀବନ ଓ ମନ ଏବଂ ତାର ଅଚେତନ-ଅବଚେତନ ସ୍ତରରେ ଯେଉଁ ରଙ୍ଗ ଯନ୍ତ୍ରଣାର ସ୍ରୋତ ଅହରହ ପ୍ରବାହିତ ତାହାକୁ ରୂପ ଦିଆଯାଇଛି। ଏହି ଯନ୍ତ୍ରଣାର ହେତୁ ହିଁ ଅପୂର୍ଣ୍ଣତା -- ନିଃସଙ୍ଗତା। ଏହା ହିଁ ଜୀବନର ସାଂପ୍ରତିକ ସ୍ଥିତି। ଜୀବନକୁ ଯେ ଆଦରି ନେଇଛି ତା' ପାଖରେ ଏଗୁଡ଼ିକ ଅବଶ୍ୟମ୍ଭାବୀ। ଏହାର ଅନ୍ୟ ଏକ ରଙ୍ଗତ ମୃତ୍ୟୁ। ଏହାବି ଜୀବନର ଏକ ଅଂଶ। ସମଗ୍ର ଜୀବନତ ଏକ ଚେତନା ପ୍ରବାହ। ମୃତ୍ୟୁ ମଧ୍ୟ ସେହି ପର୍ଯ୍ୟାୟଭୁକ୍ତ। ତେଣୁ ଏହା ଧ୍ରୁବ। ଅତଏବ ଯାହା ଧ୍ରୁବ ତା' ପାଇଁ ଅନୁଶୋଚନା ଓ ବିଳାପର ପ୍ରଶ୍ନ ନାହିଁ। ରମାକାନ୍ତଙ୍କ ପରି

ଦୀପକ ବାବୁଙ୍କ ଯନ୍ତ୍ରଣା 'ନେତି-ଭାବ'-ସଂଜାତ। ଜୀବନକୁ ଗ୍ରହଣ କରିନେବାରେ ହିଁ ନେତିଭାବର ସୃଷ୍ଟି। ସୃଷ୍ଟି ମୃତ୍ୟୁର ନାମାନ୍ତର --

"ବସନ୍ତର ନାଭି ପଦ୍ମ ଟଳମଳ
ଏ ଦେହର ସମସ୍ତ କୌଶଳ,
ପ୍ରେମ ଅଟେ ଶ୍ମଶାନ ଘାଟର
ଏକ ଗଣ୍ଡୁଷ ଗଙ୍ଗାଜଳ
ଜୀବନ୍ୟାସ ଏକ ଜୀବନ୍ତ ଗରଳ।"
(ମୃଚାଳିକା-ବସନ୍ତ ଓ ମେଘମାନଙ୍କ ନିମିତ୍ତ)

ଜୀବନ ତାଙ୍କ ପାଇଁ 'ଏକ ପରିତ୍ୟକ୍ତ ଶୂନ୍ୟ ଦୀର୍ଘ-ଶ୍ୱାସ', ନାହିଁ ନାହିଁର ଇଲାକାରେ ସେ ଯେମିତି ନିଃସ୍ୱ ସମ୍ରାଟ।

"ମୋ ବୃକ୍ଷରେ ଆମ୍ରାଙ୍କର ପତ୍ର ନାହିଁ
ମୋ ନାରୀର ଲୁହ ଆଉ ନଦୀ ହୁଏ ନାହିଁ
ଛାୟା ଆଉ ନାଚେ ନାହିଁ ଦୃଷ୍ଟିରେ ମୋହର
ଖୋସଣିର ଖୋପତଳେ ବ୍ରହ୍ମଚର୍ଯ୍ୟ ଘୂରୁଛି ଏଥର।"

ଏଠାରେ ଦୈହିକ ମୃତ୍ୟୁ ଅପେକ୍ଷା ମାନସିକ ମୃତ୍ୟୁ ଅଧିକ ଭୟାବହ। ତେଣୁ ମୃତ୍ୟୁ ସଜ୍ଞା ଆସେ -- "ଏହା ଏକ ମନର ଧୂସର ଅବସ୍ଥା / ଅନ୍ୟ ଏକ ମନ ପାଇଁ ନିର୍ଦ୍ଦିଷ୍ଟ ବ୍ୟବସ୍ଥା।" ଏଠି ମୃତ୍ୟୁ କେବଳ ମାନସିକ ସ୍ତରର ଏକ ପ୍ରତିକ୍ରିୟା। କିନ୍ତୁ 'ନିର୍ଜନ ନକ୍ଷତ୍ର'ରେ ଏହି ଭାବ ପୁଣି ଭିନ୍ନ ରୂପ ପରିଗ୍ରହ କରେ। ମୃତ୍ୟୁ ହୋଇ ଉଠେ ଏକ ଚେତନା, ଏକ ସତ୍ୟ ଏବଂ ତାହା ଯେପରି ଜୀବନର ଶେଷ ଉପହାର।

"ମୃତ୍ୟୁକୁ ମୁଁ ଅନୁଭବ କରେ
କଳାକଳା ଢେଉ ଭଳି ଜନ ଗହଳିରେ
ମୃତ୍ୟୁକୁ ମୁଁ ସ୍ପର୍ଶ କରେ
ମୋ' ନିଜ ସନ୍ତାନର ନରମ ଆଙ୍ଗୁଳିର ତୁଳା ଅଂଶ ପରି।"
(ଶୋକ ପ୍ରସ୍ତାବ)

ଏହି ମୃତ୍ୟୁ-ଚେତନାହିଁ ରହସ୍ୟମୟ କରିଦିଏ ଜୀବନାନ୍ୱେଷାକୁ। ଜୀବନ ଓ ମୃତ୍ୟୁ ଭିତରେ ଅଭେଦତ୍ୱ ଚିରନ୍ତନ।

"ମୃତ୍ୟୁ ଏକ ରମଣୀୟ
ନିରାପଦ ସ୍ଥାନ
ରମଣୀର କୋଳପରି
ତାର ନାହିଁ କୌଣସି ପ୍ରସ୍ଥାନ।
ମୃତ୍ୟୁ ଏକ ସୁସଜ୍ଜିତ
ପ୍ରଥମ ଶ୍ରେଣୀର ବିଶ୍ରାମାଗାର
ଯେଉଁଠି ଆମର ଏ ଯାତ୍ରୀଦେହ
ଯାତ୍ରୀ-ମନ ଖାଲି ଅହରହ

ଅପେକ୍ଷାରେ ବସିଥାଏ ଗାଇବାକୁ
ବସନ୍ତ-ବାହାର।'' (ପାଞ୍ଚୋଟି କାହାଣୀ)

'ବୃତ୍ତ' କବିତା ସଂକଳନରେ କାବ୍ୟପୁରୁଷ ଜୀବନବୃତ୍ତ ଭିତରେ ଘୂର୍ଣ୍ଣାୟମାନ। ଏହାରି ଭିତରେ ସେ ଜୀବନ ଓ ତାକୁ ଘେରି ରହିଥିବା ଯନ୍ତ୍ରଣା, ଅସହାୟତା, ନିଃସଙ୍ଗତା ଓ ମୃତ୍ୟୁକୁ ହିଁ ମୁଖାମୁଖି ହୁଏ। ପ୍ରେମ ଓ ମୃତ୍ୟୁ ଯେମିତି ଏକ ବୃନ୍ତରେ ଦୁଇଟି ଫୁଲ ବା 'ଏକବୀଜ ବେନିପାଳ' ଭାବରେ ବିଳସିତ। ''ଉଭୟ ପ୍ରେମ ଓ ମୃତ୍ୟୁ/ମଣିଷର ଶେଷ ଶତ୍ରୁ;/ଏବଂ ଆମେ ସମସ୍ତେ ଜୀବନର ପ୍ରତୀକ୍ଷା ଗୃହରେ/ଆଗେ ପ୍ରେମ ଓ/ପରେ ମୃତ୍ୟୁକୁ ହିଁ ଅପେକ୍ଷା କରିଛୁ କାଳକାଳ ଧରି।'' (ବିଚାର) କବି ରମାକାନ୍ତ ଯେପରି 'ଅନେକ କୋଠରୀ' ଓ 'ସନ୍ଦିଗ୍ଧ ମୃଗୟା'ରେ ପଥବଣା ହେଲାପରେ ଏକ ଉତ୍ତରିତ ନାମହୀନ 'ସପ୍ତମ ଋତୁ' ପ୍ରତି ହାତ ବଢ଼େଇଛନ୍ତି ଅନୁରୂପ ଭାବେ କବି ଶ୍ରୀ ମିଶ୍ର 'ନିର୍ଜନ ନକ୍ଷତ୍ର', ପାଲଟି ଯାଇ ଜୀବନ 'ବୃତ୍ତ'ରେ ଧୂଳି ହେଲା ପରେ 'ସପ୍ତମ ପୃଥିବୀ' ପାଇଁ ଆକାଂକ୍ଷିତ। ଏଠାରେ ପାର୍ଥିବ ଆସକ୍ତି କଟିକଟି ଯାଉଛି। ଯନ୍ତ୍ରଣାର ଅଗ୍ନିସ୍ନାନପରେ ମୃତ୍ୟୁ ହୋଇ ଉଠୁଛି ସ୍ୱାଦ୍ୟ ଓ ସ୍ୱପ୍ନମୟ।

''ଆଖି ବୁଜିଲେ ଦେଖେ
ତୋ ପ୍ରାଣମୟ ସଂଗୀତର ଶ୍ୱେତ ପଥର ମୂର୍ତ୍ତି,
ଆଖି ଖୋଲିଲେ ଦେଖେ
ତୋ' ପ୍ରେମମୟ ଭୂଲତାର ଚଟୁଳ ଦ୍ୱିରୁକ୍ତି।''
(ଡ଼ାକବଙ୍ଗଳା)

'ସପ୍ତମ ପୃଥିବୀ'ରେ ପ୍ରେମ ଓ ମୃତ୍ୟୁ ଏକାକାର। 'ଅରଣା ମଇଁଷି' ବେଳକୁ ମୃତ୍ୟୁର ଧ୍ରୁବ ପରିଣତି ଆହୁରି ସ୍ପଷ୍ଟ ଓ ଉଦ୍‌ଭାସିତ ହୋଇ ଉଠିଛି। 'ସେ ମଇଁଷି ଆଖିରେ ନିଦ କେବେ ଆସେ ନାହିଁ।' 'ଅତିଥି ଶକ୍ୱାର' କବିତାରେ ରମାକାନ୍ତ ଯେପରି ମୃତ୍ୟୁକୁ ଅତିଥି ଭାବରେ ପ୍ରତୀକିତ କରିଛନ୍ତି ଦୀପକ ବାବୁ ସେହିପରି 'ମୃତ୍ୟୁସହ ଗୋଟିଏ ରାତିରେ' କବିତାରେ ମୃତ୍ୟୁକୁ ସାଙ୍ଗପରି ବର୍ଣ୍ଣନା କରିଛନ୍ତି। କ୍ଳାନ୍ତ ସାଙ୍ଗଟିଏ ଆସିଛି। ତା' ମୁଣ୍ଡରେ ତକିଆ ଦେଇ ସେ ତାକୁ ଶୁଆଇ ଦିଅନ୍ତି। ମୃତ୍ୟୁ ହିଁ ଅତିଥି। ତେଣୁ ଅତିଥିପାଇଁ ଭୟର କାରଣ କାହିଁ? ତାର ସେବାରେ ତ୍ରୁଟି ରହିଗଲେ ହିଁ ଅନୁଶୋଚନା ଆସିପାରେ।

କବି ସୌଭାଗ୍ୟ କୁମାର ମିଶ୍ରଙ୍କ କବିତାରେ ମୃତ୍ୟୁର ମୁଲାୟମ୍ ସ୍ନିଗ୍‌ଧତା ଓ କୋମଳ ସ୍ପର୍ଶ ବି ଲକ୍ଷଣୀୟ। ତା'ର ହାତଧରି କିଏ ଟାଣିନେଇ ଯାଏ ପାଣି ଭିତରକୁ। ପାଣି ସ୍ୱଚ୍ଛ ଜନନୀ ଜଠର ପରି ଅନ୍ଧକାର। ପାଣି ତା'ର ଥଣ୍ଡା ନେଳି ତନ୍ତୁରେ ତାକୁ ବାନ୍ଧିଦିଏ। ''ତୋ ମୁଣ୍ଡ କୁଣ୍ଢେଇ ଦେବ ନଈର ସିଂଘ ପାନିଆ, / ଖରାପ ଲୋଭର କ୍ଳାନ୍ତି ତୋ ଆଖିରୁ ଧୋଇ ହୋଇଯିବ।'' (ନଈପହଁରା) ସୌଭାଗ୍ୟ ବାବୁଙ୍କ ମୃତ୍ୟୁଚେତନା ରମାକାନ୍ତ କି ଦୀପକ ମିଶ୍ରଙ୍କ ପରି ଏତେ ପରିବ୍ୟାପ୍ତ ନୁହେଁ, ତଥାପି ତାହା ତାଙ୍କ କାବ୍ୟସ୍ୱରର ଅନ୍ୟତମ ମୁଖ୍ୟ ବିଭାବ। 'ମଧପଦଲୋପୀ' ଓ 'ନଈପହଁରା'ରେ ନିହିତ ମୃତ୍ୟୁଚେତନା 'ଅନ୍ଧମହୁମାଛି', 'ବଜ୍ରଯାନ', 'ଦ୍ୱାସୁପର୍ଣ୍ଣା, ବେଳକୁ ଧିରେ ଧିରେ ପ୍ରଶସ୍ତତା ଲାଭ କରିଥିବାର ଲକ୍ଷ୍ୟ କରାଯାଏ। ଦେହ ଭିତରେ ମୃତ୍ୟୁର ଅନୁଭବ ଅଛି, ''ମୁଁ ତୁମ ନାଭିରେ ଗନ୍ଧ ପାଏ ମୋ' ମୃତ୍ୟୁର।'' (ଆତ୍ମହତ୍ୟା) ପ୍ରବୃତ୍ତିର ମୋହକୁ ଏଡ଼େଇ

ପାରେନି। ''ମୃତ୍ୟୁପଛେ ଆସୁ / ମୁଁ ପଣ୍ଡିତ ବ୍ରାହ୍ମଣ ପୂଜକ / ମଙ୍ଗିର ଚିପାସବେ ରୋମାଞ୍ଚିତ ହୋଇ ହର୍ଷରରେ / ମନ୍ଦିର ପଛଆଡ଼େ ଲୋଟି ପଡ଼େ ନାରୀର ଦେହରେ।'' ମୃତ୍ୟୁର ସାକାର ରୂପକୁ ସେ ମଧ ଦେଖି ପାରନ୍ତି -- ''ଶିଶପା ବୃକ୍ଷର ଡ଼ାଳେ / ହନୁ ମନେ ମନେ ଭାଳେ / ଯାହାକୁ ମୁଁ ଦେଖିଲଇଁ ବେନିଡ଼ୋଳେ / ସେ ନିଶ୍ଚେ ସୀତା ଅଥବା / ଅଥବା ମୃତ୍ୟୁର ଦାୟାଦ।'' (ଆଉକେତେକାଳ) 'ଦୃଶ୍ୟାନ୍ତର' କବିତାରେ କବି ମୃତ୍ୟୁକୁ ସ୍ୱୀକାର କରନ୍ତି। ତା' ପ୍ରତି ଅବିଶ୍ୱାସ, ସନ୍ଦେହ, ଅଭିଯୋଗ, ଈର୍ଷା ବା ଅସୂୟା କିଛି ନାହିଁ। ମୃତ୍ୟୁର ଦୃଶ୍ୟ ଦେଖୁଛନ୍ତି ଜୀବନ ସହିତ ସାମିଲ ହୋଇ 'ଅନ୍ଧମହୁମାଛି'ରେ --

''ମୃତ୍ୟୁ/(ମୃତ୍ୟୁ ଯାହା ଅଦୃଶ୍ୟର ସବୁ ପୋଲ ଭାଙ୍ଗିଦିଏ)
ମୁଣ୍ଡଟେକି ଉହୁଙ୍କି ଦେଖିଲି ମୃତ୍ୟୁ।
ଛିଣ୍ଡା ଖଜୁରୀ ପଟିରେ ଚିତ୍‌ହୋଇ ଉପରକୁ ଚାହିଁ
ଗୋଡ଼ହାତ ଛାଟି
ଖେଳୁଚି କୁନିପୁଅଟି ବର୍ଷକର/ସହସ୍ର ବର୍ଷର।
କେଡ଼େ ଭୁଲ କରିଥାନ୍ତି
ପଚାରି ଯେ ପୁଅଟି କାହାର।''

ଏହି ପରିପ୍ରେକ୍ଷୀରେ କବି ହରପ୍ରସାଦ ଦାସଙ୍କର ଜୀବନଜିଜ୍ଞାସା ଓ ମୃତ୍ୟୁ ଚେତନା ବିଚାର୍ଯ୍ୟ। ମୃତ୍ୟୁ ହିଁ ତାଙ୍କୁ ଜୀବନ ପ୍ରତି ସତ୍ୟାନୁରକ୍ତ କରାଏ। ମୃତ୍ୟୁ ଦେଇ ଜୀବନ ଓ ଜୀବନ ଦେଇ ମୃତ୍ୟୁକୁ ସେ ସ୍ତରେ ସ୍ତରେ ଅନୁଭବ କରନ୍ତି। ଏହି ମୃତ୍ୟୁ ସମ୍ପର୍କିତ ଭାବନା କବି ବିବେକ୍ ଜେନାଙ୍କୁ ହଂସଧ୍ୱନି କବିତାରେ ଆକ୍ରାନ୍ତ କରିଛି -- ''ତାପରେ ମୁଁ ହଜିଯିବି ତୁମ ଅନ୍ଧାରର କୋଣେ କୋଣେ / ଲିଭିଗଲା ପରେ ଥରେ, ମୋ ହଂସର ଆର୍ଦ୍ର ସ୍ୱର ବର୍ଣ୍ଣ।'' (ହଂସଧ୍ୱନି) କବି ଶରତ ଚନ୍ଦ୍ର ପ୍ରଧାନଙ୍କ କବିତାରେ ମିଥ୍ ପ୍ରୟୋଗ ଅତି ତାର୍ଯ୍ୟକ। କାବ୍ୟଶୈଳୀ ମୁଖ୍ୟତଃ ଲୋକଗୀତ ରୀତିର ନବୀକୃତ ଆଙ୍ଗିକତାକୁ ପ୍ରକାଶ କରିଥାଏ। ଡ଼ଃ ପ୍ରଧାନଙ୍କ କବିତାରେ ମୃତ୍ୟୁ ସଚେତନତା ଏମିତି :

''ମୁଁ ଲୁଚିଲି ବେଗେ ଯାଇ
ବାରୁଣା ବନ୍ତରେ
ଜରା ନାଇଁ ମୃତ୍ୟୁ ନାଇଁ
ଯେଉଁ ନଗରରେ।
ବ୍ୟାସ ଆଉ ଭୀମସେନ
କହିଲେ ବାଟରେ
ମଇଁଷି ଗୋଟାଏ ଚରେ
ଦକ୍ଷିଣ ପଟରେ।'' (ନଚିକେତାର ସ୍ତବ)

ମଇଁଷି ମୃତ୍ୟୁର ପ୍ରତୀକ। ମହାଭାରତ ଅନୁଯାୟୀ ବାରୁଣାବନ୍ତ ଜରାମୃତ୍ୟୁ ବିହୀନ ନଗର। ବ୍ୟାସ ଜ୍ଞାନ ଓ ତେଜର ପ୍ରତୀକ। ଭୀମ ଶୌର୍ଯ୍ୟ ବୀର୍ଯ୍ୟର ପ୍ରତୀକ। ଏମାନେ ସମସ୍ତେ କିନ୍ତୁ ମୃତ୍ୟୁ ଦ୍ୱାରା କବଳିତ। ମୃତ୍ୟୁ ପ୍ରତି ସଚେତନ। ମୃତ୍ୟୁର ଧ୍ରୁବ ବ୍ୟାପ୍ତି ସମ୍ପର୍କରେ ଏହା ଏକ ଚିରନ୍ତନ ଇସ୍ତାହାର ନୁହେଁକି ?

ଜୀବନର ଆକର୍ଷଣରେ ଛନ୍ଦି ହୋଇଥିବା ପ୍ରତିଭା ଶତପଥୀଙ୍କ କାବ୍ୟମାନସ ମୃତ୍ୟୁକୁ ଏକ ଅଭିନବ ରୂପରେ ସାକ୍ଷାତ କରିଛି। 'ଗ୍ରସ୍ତସମୟ' ର 'ଦର୍ପିତ ଆଗମ' ଓ 'ସାହାଡ଼ାସୁନ୍ଦରୀ' ର 'ରେଳଯାତ୍ରା' କବିତା ଦୁଇଟିରେ ମୃତ୍ୟୁର ଆତ୍ମୀୟ ରୂପ ପ୍ରକଟିତ। ମୃତ୍ୟୁପ୍ରତି ରହିଥିବା ପାରମ୍ପରିକ ଶୀତଳ ଆଶଙ୍କାକୁ ଅସ୍ୱୀକାର କରାଯାଇଛି। କବି ବୁଝନ୍ତି, ଜୀବନର ମହାର୍ଘତା ମୃତ୍ୟୁ ନିମିତ୍ତ ସମ୍ଭବ ହୋଇଛି। କବି ସାଂସାରିକତା ମଧ୍ୟରେ ବାନ୍ଧିହୋଇ ଜୀବନ ଅତିବାହିତ କରୁଥିବାବେଳେ ଏକ ଦୁର୍ଦ୍ଧାନ୍ତ ପ୍ରେମିକର ସ୍ପର୍ଶ ପାଆନ୍ତି। ପାଗଳପରି ସେ ତା'ର ଚିତ୍ର ଆଙ୍କି ବସନ୍ତି --

''ସିନେମା ହଲ୍, ପିକ୍‌ନିକ୍, କୋଳାହଳ ଜାକଜମକରେ
ମୁଁ ଯେତେ ଫାଙ୍କି ଚାଲିଛି
ତାରା ଭଳି ଗୋଡ଼ାଇଛ
ସାଙ୍ଗେସାଙ୍ଗେ ମୋର ଅଗୋଚରରେ
ମହମହ ବାସିଚ ବି
ଘୋରତମ ବିଭ୍ରାନ୍ତିର ମୃଦୁ ଅତରରେ।'' (ଦୁର୍ଦ୍ଧାନ୍ତ ପ୍ରେମିକ)

ରମାକାନ୍ତଙ୍କ ପରି ଶ୍ରୀମତୀ ଶତପଥୀ ମୃତ୍ୟୁକୁ ଖୁବ୍ ଆତ୍ମିକତାର ସହିତ ଦେଖନ୍ତି। କେତେବେଳେ 'ଦୁର୍ଦ୍ଧାନ୍ତ ପ୍ରେମିକ' ତ ପୁଣି କେତେବେଳେ 'ସବା ସାନପୁଅ' ପରି ତାଙ୍କ ହୃଦୟ ଓ କୋଳକୁ ବାତ୍ସଲ୍ୟମୟ କରିଦିଏ। ଏହି ସାନପୁଅର ଆଗମନ ପାଇଁ କମ ପ୍ରତୀକ୍ଷା ନାହିଁ।

''ତୁ ଆସିବୁ
ତୋ ସୁନ୍ଦର ମୁହଁ ଶୂନ୍ୟରେ ଉଠିବ ଝଲି
ପୁନେଇ ଚାନ୍ଦଟି ପରି
କୋଳାଗ୍ରତ କରିବାକୁ ଫୁଲି ଉଠୁଉଠୁ
ପାଦଦେବା ଆଗରୁ ତୁ ଜୀର୍ଣ୍ଣ ଏଇ ସେତୁ
ଭାଙ୍ଗି ପଡ଼ି ସାରିଥିବ ସାମ୍ନାରେ ତୋହର।'' (ସବାସାନ ପୁଅ)

ଉଭୟ ଭାବ ଓ ଶୈଳୀ ଦୃଷ୍ଟିରୁ କବି ବଂଶୀଧର ଷଡ଼ଙ୍ଗୀ ଶ୍ରୀ ରଥଙ୍କ ଦ୍ୱାରା ଅନେକାଂଶରେ ପ୍ରଭାବିତ ମନେ ହୁଅନ୍ତି। ନିମ୍ନୋକ୍ତ ଉଦ୍ଧୃତିରୁ ରମାକାନ୍ତୀୟ ମୃତ୍ୟୁ ଚେତନା ସହିତ ଗଦ୍ୟଧର୍ମୀ ଶବ୍ଦ ସଂଯୋଜନାର ଶୈଳ୍ପିକ ରୀତିକୁ ଲକ୍ଷ୍ୟ କରାଯାଇପାରେ। ''ପତ୍ରମାନେ ଧାଉଁଥିଲେ ସଡ଼କରେ। ସେମାନଙ୍କୁ ଆପଣା ଟୋକେଇ / ରେ ପୂରେଇ ନେଉଥିଲା ବୁଢ଼ୀଟିଏ ଯାହାର ପାଚିଲା / ବାଳକୁ ଖେଳାଉଥିଲା ବାରମ୍ବାର ଅଦୃଶ୍ୟ ପବନ / ସେଇ ବୁଢ଼ୀ ସଡ଼କରୁ ଆସ୍ତେ ନେଲା ପତ୍ରକୁ ସାଉଁଟି / ଓ କ୍ରମେ ସେ ଲୁଚିଗଲା ଆପଣାର ରାସ୍ତା ଢରିଆରେ।''(କଣ୍ଢେଇ)

ରମାକାନ୍ତୀୟ ସମୟ ଓ ମୃତ୍ୟୁ ସଚେତନତାର ଆତ୍ମୀକରଣରେ ନିଜର ସ୍ୱକୀୟତା ପ୍ରଦର୍ଶନ କରିଥିବା କବି ନିତ୍ୟାନନ୍ଦ ନାୟକଙ୍କ 'ଦ୍ରସ୍ତ ପଦ୍ମାସନ'ର କେତେକ କବିତାରେ ରମାକାନ୍ତଙ୍କ ସ୍ୱରସାମ୍ୟ ଲକ୍ଷ୍ୟ କରାଯାଇପାରେ। ଅପ୍ରେମ ଓ ଦୁଃଖର ମୃତ୍ୟୁକୁ ସେ ବାରମ୍ବାର ଜୀବନ ପଥରେ ଭେଟିଛନ୍ତି। 'ହଜିଥିବା ଲୋକ', 'ହାଟବାହୁଡ଼ା', 'ଲୁନାପାଇଁ ଏକ ଅସରନ୍ତି କବିତା' ଓ 'ବାଲିଘର' ଆଦି କବିତାରେ ମୃତ୍ୟୁର ଅନିବାର୍ଯ୍ୟତା ହିଁ ରୂପାୟିତ। ମୃତ୍ୟୁ ସହିତ ସଖ୍ୟ ସ୍ଥାପନ କରିବାରେ ସେ ଆଶାୟୀ। ମୃତ୍ୟୁ ହିଁ ଜୀବନକୁ ଅର୍ଥମୟ କରେ। ତାଙ୍କ ମୃତ୍ୟୁଚେତନା ଏକ ଉତ୍ତରିତ ପର୍ଯ୍ୟାୟରେ ଅଧିଷ୍ଠିତ। ତେଣୁ

କବିର ଅନୁଭବ, ''ମୁଁ ଆଉ ଖୋଜିବି ନାହିଁ ଜହ୍ନରାତି ଦୀର୍ଘ ନିଃଶ୍ୱାସରେ, ମୁଁ ଆଉ ଦେଖିବି ନାହିଁ ପତ୍ର ହଳଦିଆ ହେବା, ଶୁଖିବା...ଫୁଲଫୁଟି ଭୂଇଁରେ ଲୋଟିବା।'' ଅଷ୍ଟମ ଦଶକ ବେଳକୁ ସାଂପ୍ରତିକ କବିତାରେ ରମାକାନ୍ତୀୟ ମୃତ୍ୟୁଚେତନା ଓ ସମୟ ସଚେତନତାର ଙ୍କବକୁ ଅଙ୍ଗୀକାର କରି ସ୍ୱକୀୟତାର ସହିତ ଦୃଷ୍ଟି ଆକର୍ଷଣ କରୁଥିବା କବି ନୃସିଂହ ପ୍ରସାଦ ତ୍ରିପାଠୀଙ୍କ 'ପୂର୍ବଦିଗ' ଏକ ସମ୍ମାନଜନକ କାବ୍ୟକୃତି। କବି ରମାକାନ୍ତ ଯେପରି ମୃତ୍ୟୁକୁ ମାମୁଲି ସାଧାରଣ ରୂପରେ ଜୀବନରେ ଗ୍ରହଣ କରିଛନ୍ତି, ଶ୍ରୀ ତ୍ରିପାଠୀଙ୍କ କବିତାରେ ତା'ର ସାମ୍ୟଭାବ ଓ ରୂପ ପରିଲକ୍ଷିତ ହୋଇଥାଏ। ଅବଶ୍ୟ ଏଠି ପାବ୍ଲୋ ନେରୁଦାଙ୍କ ମୃତ୍ୟୁଚେତନାର ପ୍ରତ୍ୟକ୍ଷ ପ୍ରଭାବ ସୁସ୍ପଷ୍ଟ।

''ସହରକୁ ମୃତ୍ୟୁ ଆସେ ସକାଳର ଦୁଧବାଲା ପରି
ମୃତ୍ୟୁ ଚାଲେ ସମୟର ଅରମାରେ ନିୟମିତ ଝାଡୁ ମାରିମାରି,
ମୋ ବାପା କହନ୍ତି, ହେଇ, ମୃତ୍ୟୁମାନେ ଆଜି ଆସି
ତତେ ଦେଖୁଥିଲେ, ତୁ ଶୋଇଥିଲୁ ଖୁବ୍ ନିଘୋଡ଼ ନିଦରେ।
(କାରଣ ମୁଁ ସବୁଥର ବିଳମ୍ବରେ ଜୀବନକୁ ଚିହ୍ନେ।)
(ସହରର ମୃତ୍ୟୁସଂଖ୍ୟା)

ମୃତ୍ୟୁକୁ ଧରିବା ପାଇଁ କବିଙ୍କର କମ ଉତ୍କଣ୍ଠା ନାହିଁ! ସେ କିନ୍ତୁ ଘୁଞ୍ଚି ଘୁଞ୍ଚି ଯାଉଥାଏ ଠିକ ସହ୍ୟାଦ୍ରିଣୀଙ୍କ ଦେହରେ ଟିକେ ଲାଗିଗଲେ ସେ ଯେମିତି ଘୁଞ୍ଚିଯାନ୍ତି। ଏଠାରେ ରାତ୍ରିର ଛାଇକୁ ଦିନ କୁହାଯାଏ। ମୃତ୍ୟୁର ଛାଇକୁ ଜୀବନ କୁହାଯାଏ। ''ଏବଂ ସେଠାରେ, ମୁଁ, ମୋ ବାପା, ମୋ ବୋଉ / ପୁଣି ଥରେ ଏକ ହୋଇ ଏକକରେ ମିଶୁ।'' ଏହି ସମୟହୀନତାର ଚିତ୍ରକଳ୍ପଟିଏ ରମାକାନ୍ତ ଦେଇଥିଲେ -- ''ବାପା ମାଆ ଆଉ ପୁଅ ଜନ୍ମ ହେଲେ ଗୋଟିଏ ସମୟେ।''(୩) ଶ୍ରୀ ତ୍ରିପାଠୀ ନିଜକୁ ଲୋକାରଣ୍ୟ ବଜାର ଭିତରେ ଖୋଜି ବୁଲନ୍ତି। ସତେକି ଏଠିକାର ଜୀବନ ମୃତ୍ୟୁପାଇଁ ଏକ ପ୍ରଲମ୍ବିତ ପ୍ରତୀକ୍ଷା। ''ମୁଁ ଯେମିତି ବଞ୍ଚିରହେ / ମରଣର ପ୍ରକ୍ସି କରି କରି, ମୁଁ ପାଗଳ ହୋଇଯାଏ / ସବୁଦିନ ମୋ ନିଜ ଜୀବନ ସତାକୁ / ଛୁଆପରି ମୋ ଗୋଡ଼ରେ ଖେଳାଇ ଖେଳାଇ।'' ନାରୀ-ପ୍ରେମ ଓ ବାଘ ଯେମିତି 'ବାଘଶିକାର' କବିତାରେ ମୃତ୍ୟୁର ପ୍ରତୀକ ଭାବରେ ଠିଆ ହୋଇଛି ଶ୍ରୀ ତ୍ରିପାଠୀଙ୍କ 'ତ୍ରିଭୁଜ' କବିତାରେ ତାହାର ଅନୁରୂପ ଚିତ୍ରକଳ୍ପଟିକୁ ଲକ୍ଷ୍ୟ କରାଯାଇପାରେ --

''ସବୁ ପୁଣି ମନେପଡ଼େ, ତମ ପିଠି ପେଟ ଓ
ସ୍ତନରେ ମୋ ଆଙ୍ଗୁଳି ଖେଳେ ଲୁଚକାଳି
ମୁଁ ଅତିଷ୍ଠ ହୋଇଯାଏ
ମତେ ଲାଗେ ତମେ ନାହିଁ, ମୁଁ ମଧ୍ୟ ନାହିଁ,
ବିଶାଳ ଜନ୍ତୁଟିଏ ଦିନଭରି ଖାଇଥିବା ଖାଦ୍ୟ
ନିର୍ଜନରେ କରୁଚି ପାକୁଳି।''(୪)

କବି ରମାକାନ୍ତ ଯେପରି ମୃତ୍ୟୁକୁ ବିବିଧ ରୂପରେ ଦେଖିଛନ୍ତି ଶ୍ରୀ ତ୍ରିପାଠୀ ମଧ୍ୟ ସେହିପରି ଅନେକ ଭାବ ଓ ରଙ୍ଗରେ ତାକୁ ଆଙ୍କିଛନ୍ତି। ଏହା ଯେପରି ଦୁଇଟି ଜନ୍ମ ଭିତରେ ଏକ ବ୍ରିଜ୍। ନୀଳ ଓ ଲୋହିତ ରକ୍ତ ଭିତରେ ଛୋଟ ବାଟଟିଏ। ଅସମାପ୍ତ ଭଙ୍ଗା ସମୟର ଯେମିତି ମୃତ୍ୟୁ ଏକ ପ୍ରତିଧ୍ୱନି। ସୃଷ୍ଟି ଭିତରେ ନିଜକୁ ଓ ନିଜ ଭିତରେ

ସୃଷ୍ଟି ବା ଶାସ୍ତ୍ରୀୟ 'ପିଣ୍ଡ-ବ୍ରହ୍ମାଣ୍ଡ' ତତ୍ତ୍ୱରେ ସେ ବିଶ୍ୱାସୀ। ମୃତ୍ୟୁ ଭିତରେ ହିଁ ଅସଂଖ୍ୟ ଜୀବନ ଲୀଳାରତ। "ମୁଁ ମୋ ମୃତ୍ୟୁରେ ବୋଧେ ପ୍ରତିଦିନ ଚରାବୁଲା କରେ/ଏବଂ ମୃତ୍ୟୁ ମୋ' ଭିତରେ ରହି କେବେ କେବେ ଦେଖାଦିଏ,/ଅଚାନକ ଭାବେ, ଅଜ୍ଞାତରେ ମେ.ଏହେତର ପହଁରାର ଶବ୍ଦପରି।" ଏତଦ୍‌ବ୍ୟତୀତ ମୃତ୍ୟୁକୁ ଆହୁରି ସାଧାରଣ ରୂପରେ ମ ॥ ଦେଖାଯାଇଛି --

"ମୃତ୍ୟୁ ବୁଲେ ଡ଼ିଉଟିରେ ନର୍ସପରି ଧଳାଲୁଗା ଦେହଯାକ ବୋଳି,
ଏ ଶଯ୍ୟାରୁ ଆର ଶଯ୍ୟା, ଜନ୍ମ ଏବଂ କେତେ ଜନ୍ମାନ୍ତର
ମୃତ୍ୟୁ ବୁଲେ ସୂର୍ଯ୍ୟ ହୋଇ ଜୀବନର ଅସଂଖ୍ୟ ପୃଥିବୀ,
ମୃତ୍ୟୁ ଏକ ସ୍ଥିତପ୍ରଜ୍ଞ ବିସ୍ତୃତ ପବନ,
ଆକାଶରେ ସଦା ସ୍ଥିର, ଅଥଚ ନିମ୍ନରେ
ମଣିଷ ମନରେ ଭ୍ରମ ସୃଷ୍ଟିକରେ ଗତିଶୀଳତାରେ।"(ପୂର୍ବଦିଗ)

ଏହି ଜୀବନ ଯନ୍ତ୍ରଣା ଓ ମୃତ୍ୟୁ ଚେତନାର ସ୍ୱର କବି କମଳାକାନ୍ତ ଲେଙ୍କାଙ୍କ କବିତାରେ ଖୁବ୍ ତୀବ୍ର। ସେ ସେହି ରହସ୍ୟମୟ ଚେତନାପାଇଁ ଅନ୍ୱେଷିତ। ସେ ଲୁହର ସମୁଦ୍ରରେ କର୍ମର କାତ ମାରିମାରି ପ୍ରତିକୂଳ ପବନ ରୂପକ ନିଷ୍ଫଳ ପ୍ରଚେଷ୍ଟା ଭିତରେ ନୟାନ୍ତ। ନିଜେ ନିୟତି ପରି ଅନ୍ଧ ହୋଇ ଗୀତଗାଇ ଚାଲେ। ତେଣୁ ସେହି ମୃତ୍ୟୁପାଇଁ ତାଙ୍କ ପ୍ରାଣରେ କମ ଆକୁତି ନାହିଁ!

"ଆଉ ପୁଣି କେତେବାଟ ମୋ ମୃତ୍ୟୁରୁ ମାଆର ଗର୍ଭକୁ ?
ଆଉ ପୁଣି କେତେ ଲୁହ ଏ ମାଟିରୁ ଆକାଶ ଛାତିକୁ ?
ଓ କେତେ ବା ରହିଲା ଡ଼େରି ଆଙ୍ଗୁଠିର ରକ୍ତ ମୋର
କଂଚନ ଗଛକୁ ??"(୫)

ସେ ମୃତ୍ୟୁକୁ ଅତି ଆପଣାର ଓ ଆତ୍ମୀୟ ବୋଲି ଭାବନ୍ତି। ସେ ତ ତାଙ୍କ ଅଙ୍ଗ ବିଶେଷ।

"ନିଜ ନିଜ ସତ୍ତାର ଡ଼ାଳରେ
ମୃତ୍ୟୁ ଭଳି ଆତ୍ମୀୟ ବା କିଏ ଅଛି
ନାନାବାୟା ଗୀତର ତାଳରେ।"(୬)

ମୃତ୍ୟୁପ୍ରତି ଯେଉଁ ନିର୍ଭୟତା ଓ ଅଙ୍ଗୀକାର ବୋଧର ସ୍ୱର ରମାକାନ୍ତ ଶୁଣାଇଥିଲେ ତାର ସ୍ୱରଧ୍ୱନି କବି ଶ୍ରୀମତୀ ମମତା ଦାଶଙ୍କ ଠାରେ ଶୁଣାଯାଇ ପାରେ। ତେଣୁ ତ ସେ ନିର୍ଭିକତାର ସହିତ ଉଚ୍ଚାରଣ କରନ୍ତି --

"ତମେ ସୂର୍ଯ୍ୟ ଜାଣିଚ, / ମୁଁ ମୃତ୍ୟୁକୁ ଭୟ କରେ ନାହିଁ,
କାରଣ ଜୀବନ ମୋର ବାଧ-ଦାସାନୁଦାସ ?
ଆଜି ତେଣୁ ମୃତ୍ୟୁ ଆସୁ/ଯେ କୌଣସି ବାହାନାରେ, ଆଡ଼ମ୍ବରରେ
ରାଜା, ଦେବତା, ଭିକାରୀ, ହିଂସ୍ରଜନ୍ତୁ
ଦୁରାଚାରୀ ଘାତକ ବା/କୌଣସି ସୂକ୍ଷ୍ମ ରୂପରେ।"(୭)

କବି ପ୍ରସନ୍ନ କୁମାର ମିଶ୍ର ସେହି ରହସ୍ୟମୟ ଚେତନା ସହିତ ଏକାତ୍ମ ହୋଇଯିବାରେ

ଆଶାୟୀ। ଅଦୃଶ୍ୟ ସଙ୍ଗମରେ ମଜ୍ଜିଯାଇ ରତିଲଗ୍ନ ଜନିତ ଆନନ୍ଦବୋଧରେ ସେ ଶୀହରିତ ହୋଇ ଉଠନ୍ତି। ସେ ହୋଇପାରନ୍ତି ଜୀବନ, ଈଶ୍ୱର -- ପ୍ରେମିକ -- ମହାକାଳ -- ମୃତ୍ୟୁ ! ସବୁ କ'ଣ ଏକାକଥା ନୁହେଁକି ? ରମାକାନ୍ତଙ୍କ କବିତାରେ ଏଗୁଡ଼ିକତ ସବୁ ଏକ- 'ତମେ' ସତ୍ତା। ବିବିଧ ରୂପରେ ଗୋଟିଏ ମାତ୍ର ଅନୁଭବ।

'ତାର ଅଦୃଶ୍ୟ ଆଙ୍ଗୁଳିରେ ସେନେହ ସଞ୍ଚାର ଖୋଜେ
ପ୍ରତି ତାର ହୃଦୟ ବୀଣାରେ। ସହସ୍ର ସହସ୍ର ତାର
ଅଦୃଶ୍ୟ ଭୁଜରେ ସେଯେ ମୋତେ ଆଲିଙ୍ଗନ କରେ।
ମୋର ସର୍ବାଙ୍ଗରେ ତା'ର ଅମୃତ ଚୁମ୍ବନ
ଲାଗେ ଲାଗେ ଲାଗେ।
ତା'ର ପୀରତିରେ ଭୋଳା, ରତିରେ ଆରତ
ତା' ସହିତ ଅବିରତ ମୁଁ ସଂଗମ ରତ।''(୮)

କବି ସରୋଜ ରଞ୍ଜନ ମହାନ୍ତି ଛାଇକୁ ମୃତ୍ୟୁର ପ୍ରତୀକ ଭାବରେ ଗ୍ରହଣ କରିଛନ୍ତି। କାୟା ସହିତ ଛାୟା ଅବିଚ୍ଛେଦ୍ୟ। ଅଭିନ୍ନ। ସେମିତି ଜୀବନ ସହିତ ମୃତ୍ୟୁ ଅଙ୍ଗାଙ୍ଗୀ ଭାବେ ଜଡ଼ିତ। ମଧ୍ୟାନ୍ତର କାହିଁ ?

''ସେ ତୋର ଏପରି ଏକାତ୍ମ ଯେ
ମଶାଣିରୁ କୁକୁର ଫେରିବ, କିନ୍ତୁ
ଛାଇ ଫେରିବନି।''(୯)

ନିଜର ପାରିପାର୍ଶ୍ୱିକ ପରିସ୍ଥିତି ଓ ପରିବେଶର ଅପରିଚ୍ଛନ୍ନତା ସମ୍ପର୍କରେ କାବ୍ୟପୁରୁଷ ବେଶ୍ ସଚେତନ। ନିଜ ଭିତରେ ପାର୍ଥିବତାର କଳଙ୍କ ଲେପି ହୋଇଯାଇଛି। ସମୟ ରୂପକ ବାଘର କଳା କଲିଜା ଉପରେ କବି ପ୍ରସନ୍ନ କୁମାର ପାଟଶାଣୀ ଶେଯ ବିଚେଇଛନ୍ତି ସତ କିନ୍ତୁ ମୃତ୍ୟୁରୂପୀ ବାଘ ସେହି ଅପରିଚ୍ଛନ୍ନ ବ୍ୟକ୍ତିଟିକୁ ଖାଇଗଲେ ତା' ପେଟରେ ଘାଆ ହୋଇଯିବ। ଏଠି ବାଘ ବା ମୃତ୍ୟୁପ୍ରତି କାବ୍ୟପୁରୁଷ ଆସକ୍ତ ନିଶ୍ଚୟ କିନ୍ତୁ ସେ ତାର ପ୍ରିୟତମକୁ ନିଜର ଅପରିଚ୍ଛନ୍ନତାରେ ଦୁର୍ଗନ୍ଧ କରିବାରେ ଅପ୍ରୟାସୀ।

''ହେ ବାଘ ମୋତେ ଖାଇ ଲାଭ କ'ଣ ?
ମୁଁ ପାଲଟି ନାହିଁ ମୋର ବେଶ ପରିଚ୍ଛଦ
ନିହାତି ମଇଳା ମୋ ଦୁଃଖର ପୋଷାକ
ଦାରିଦ୍ର୍ୟର ଝାଳରେ ହକଲା
ଖାଇ ତୁମ ପେଟେ ହେବ ଘାଆ।''(୧୦)

ଏଥିରେ ସାମାଜିକ ବିପ୍ଳବ ବା ପ୍ରତିବାଦର ସ୍ୱର ହୁଏତ ନିର୍ଦ୍ଧାରଣ କରାଯାଇପାରେ କିନ୍ତୁ ପ୍ରକାରାନ୍ତରେ ତାହା ମହାକାଳ ରୂପୀ ବାଘକୁ ପ୍ରତୀକିତ କରୁ ନାହିଁ କି ?

ରମାକାନ୍ତଙ୍କ 'ଜହ୍ନରାତି' ଏକ ବହୁଚର୍ଚ୍ଚିତ କବିତା। ସେଠି ଜୀବନ ମୃତ୍ୟୁର କୋଳାକୋଳି ଭାବ। 'ଯେଉଁଠାରେ ଓହ୍ଲାଇଲେ ଧୂମ ଆଲିଙ୍ଗନ'ର ଭାବ। ଅନୁରୂପ ଭାବେ କବି ଶତ୍ରୁଘ୍ନ ପାଣ୍ଡବ ଧୋବ ପାଟଟିଏ ପିନ୍ଧିଥିବା ନାରୀଟିକୁ ହିଁ ଜହ୍ନରାତି ଭାବେ କଳ୍ପନା କରନ୍ତି। ତା' ଥନରେ ସେ ମୁହଁ ଗୁଞ୍ଜି ଅଭୟ ମୁଦ୍ରାରେ ନିଦ୍ରାଯାଇ ପାରେ। ରମାକାନ୍ତଙ୍କ ଜହ୍ନରାତି

ପରି ସେ ବି ଆକାଶ ପରି ବ୍ୟାପ୍ତ। ପୂର୍ବଜ କବିଙ୍କ ପରି ଶ୍ରୀ ପାଣ୍ଡବ ମୃତ୍ୟୁକୁ ଧଳାଶାଢ଼ୀ ପିନ୍ଧା ନର୍ସ, ମଇଁଷି, ଶାଗୁଣା ଓ ନୋଳିଆ ଭାବରେ ପ୍ରତୀକିତ କରିଛନ୍ତି। ଓଠର ଅରଣ୍ୟରେ ଜହ୍ନର ନିଃଶ୍ୱାସ ବୁଲିଯାଏ। ଚାରିଆଡ଼େ ଖାଲି ଜହ୍ନରାତି।

> "ଜହ୍ନ ଚୁମା ଦେଉଅଛି: ଶିଖାଉଛି ଗୁପ୍ତଜ୍ଞାନ
> ଜହ୍ନ ପୋଡୁଅଛି ଓଠ ଓ ଅରଣ୍ୟର ମନ। ଜରତା ହାତରେ
> ଋଷ୍ୟଶୃଙ୍ଗ ବାରୁଅଛି ରୁଣ୍‌ଝୁଣ୍ ବର୍ଷାର କଙ୍କଣ
> ଘରଟାଇ ଜହ୍ନ ରାତି: ଘରସାରା ମହମହ ଜହ୍ନର ମହମ
> ଫୁଲଶଯ୍ୟା ରୋଗ ଶଯ୍ୟା ଏକାକାର: ଏପ୍ରିଲର
> ଏକାନ୍ତ ରାଜୁତି।"(୧୧)

ଏନ୍ୟ ଏକ ପର୍ଯ୍ୟାୟରେ ରମାକାନ୍ତଙ୍କ 'ଶ୍ରୀରାଧା' ଦ୍ୱାରା ଅତିମାତ୍ରାରେ ଉଦ୍‌ବୁଦ୍ଧ ହୋଇ ତାକୁ ଅଙ୍ଗୀକୃତ କରି ଯେଉଁ କେତେଜଣ ତରୁଣ କବି ତଦନୁରୂପ କବିତା ରଚନା କରିଛନ୍ତି ତାହା ବିଚାର୍ଯ୍ୟ। ସୁରେଶ ପରିଡ଼ାଙ୍କ 'କାହ୍ନୁ' ଓ ରମାକାନ୍ତଙ୍କ 'ଶ୍ରୀରାଧା'ର କେତୋଟି ଅଂଶ ସମକାଳରେ ପତ୍ରପତ୍ରିକାରେ ପ୍ରକାଶିତ ହୋଇଥିବାର ଲକ୍ଷ୍ୟ କରାଯାଏ। ତେଣୁ ଏ ପ୍ରସଙ୍ଗରେ 'ଶ୍ରୀରାଧା' ଓ 'କାହ୍ନୁ'ର ଭାବସାମ୍ୟ ଓ ଶିଳ୍ପ ସମତାକୁ ନିରୂପଣ କରାଯାଇପାରେ। ରମାକାନ୍ତଙ୍କ 'ଶ୍ରୀରାଧା' ତ ବଂଶୀନାଦ ଶୁଣିଲାପରେ ଭାଗବତର ଗୋପୀମାନଙ୍କ ପରି ବିଭ୍ରମ ହୋଇଯାଆନ୍ତି। ଶ୍ରୀ ପରିଡ଼ାଙ୍କ ରାଧାବି ନିଜର ପଣତ କାନିକୁ ମାଡ଼ି ଝୁଣ୍ଟି ପଡ଼େ। କୌଣସି କାମରେ ତା'ର ଆଜି ମନ ଲାଗୁନଥିଲା। ଗାଈ ପାଖରେ ବାଛୁରୀକୁ ଫିଟେଇ ଦିଏ। କ୍ଷୀର ସବୁ ପିଇଯାଏ ବୋଲି ତା' ସ୍ୱାମୀ ଖୁବ୍ ପାଟି କରନ୍ତି। ତାଙ୍କ ସ୍ନାନ ପାଇଁ ପାଣି ଗରମ କରେ। ଜାଳ ଭ୍ରମରେ ନିଜର ବେଣୀକୁ ପୋଡ଼ି ସାରିଥାଏ। ତରକାରୀ ଲୁଣିଆ ହୋଇ ଥିବାରୁ ସମସ୍ତେ ବିରକ୍ତ, ଅଥଚ ତାକୁ ଅଲଣା ଲାଗେ। ଏମିତି କେତେ ହୀନସ୍ତା ତା' କପାଳରେ ଆସେ --

> "ନଣନ୍ଦଙ୍କ ପାଦେ ଆଜି ଘର
> ଓଳଉ ଓଳଉ ଛାଞ୍ଚୁଣୀ। ଶାଶୁ ମତେ
> ସେ ପାଇଁ ଯେ ଅଲକ୍ଷଣୀ ବୋଲି କହି
> ଦେଲେ କେତେ ଗାଳି, ମୁଁ ଆଉ
> କରନ୍ତି କଣ ନୀରବରେ ଖାଲି ଯାହା
> ହାତ ମୋର କପାଳେ ମାରିଲି।
> କାହ୍ନୁ, ସଂଜବେଳେ ଆଜି ଏକ
> ଅଲୌକିକ ଘଟଣା ଘଟିଲା ତୁମ-କଥା
> ଭାବୁଭାବୁ ଦୀପ ମୁଁ ସଜାଡୁଥିଲି
> ଆପେ ଆପେ ସେ ଦୀପ ଜଳିଲା।"(୧୨)

ତରୁଣ କବି ସୁନୀଲ କୁମାର ପୃଷ୍ଟିଙ୍କ ଦୀର୍ଘ କବିତା 'ଶ୍ୟାମ' ମଧ୍ୟ ଏହି ଧାରାର ଏକ ସୃଷ୍ଟି ଏବଂ ରମାକାନ୍ତଙ୍କ ପ୍ରଭାବ ଦିବାଲୋକ ପରି ସୁସ୍ପଷ୍ଟ। ଗୋଟିଏ ପଦରୁ ଏହା ଅନୁମେୟ --

"ତମେ ଗୋଟେ ଦୀର୍ଘ ବିଶ୍ୱାସ ପରି ବାନ୍ଧିହେଲ
ମୋ ଆଲିଙ୍ଗନର ଦରଜରେ।
କେଉଁ ଲଗ୍ନରେ ଜହ୍ନରେ କଳଙ୍କ ନ ଲାଗିବା ପରି
ତମ ରକ୍ତରେ ମିଶିଗଲି ଆପଣାର ଛାଏଁ।
ପର ମୁହୂର୍ତ୍ତରେ ତମଠି କେବଳ ଗୋଟେ ସବୁଜ ଶୋକ ଛଡ଼ା
କିଛି ଘଟୁନଥିଲା, ଏତେ ଶୀଘ୍ର ରକ୍ତରେ ଜହ୍ନ ଉଇଁଗଲା ?"(୧୩)

ଗୁରୁପ୍ରସାଦ, ସୀତାକାନ୍ତ ଓ ରମାକାନ୍ତ ଦୀର୍ଘ କବିତାର ଧାରା ସୃଷ୍ଟି କଲା ପରେ ପୁଣି ନୀରବି ଯାଇଥିଲେ। ସୀତାକାନ୍ତ 'ଅଷ୍ଟପଦୀ' ପରେ 'ସମୁଦ୍ର', ଓ 'ପରକୀୟା' ବ୍ୟତୀତ ଆଉ ପ୍ରାୟ ଏ ଯାବତ୍ କୌଣସି ଦୀର୍ଘ କବିତା ଲେଖି ନାହାନ୍ତି। ରମାକାନ୍ତ 'ଚଉପହରା', 'ବାଘଶିକାର', 'ହୃଦୟେଶ୍ୱରୀ' ରଚନା କରିବାର ଅନେକ ଦିନପରେ 'ଶ୍ରୀରାଧା' ଓ 'ଶ୍ରୀ ପଳାତକ'ର ସୃଷ୍ଟି। କମଳାକାନ୍ତ ଲେଙ୍କାଙ୍କ 'ଉତ୍ତରଣ', ପ୍ରହରାଜ ସତ୍ୟନାରାୟଣ ନନ୍ଦଙ୍କ 'ଶବସଂଗମ', ଲକ୍ଷ୍ମୀନାରାୟଣ ମହାପାତ୍ରଙ୍କ 'ଭୂମା', ଜୟକୃଷ୍ଣ ବାରିକଙ୍କ 'ବିଭକ୍ତ ବଳୟ', ପ୍ରସନ୍ନ ପାଟଶାଣୀଙ୍କ 'ବର୍ଷା', 'ନୀଳନୂପୁର', ଫନୀ ମହାନ୍ତିଙ୍କ 'ପ୍ରିୟତମା', ଦୀଲିପ ଦାସଙ୍କ 'ନୀଳମାଧବ' ଆଦି ଏହି ଧାରାର ଏକ ଏକ ପୃଥକ୍କୃତ ଉଦ୍ୟମ। ପ୍ରତିଭା ଶତପଥୀଙ୍କ 'ଶବରୀ' ଏକ ଉଚ୍ଚମାନର ଦୀର୍ଘ କବିତା। ଏ ସମସ୍ତର ତୁଳନାତ୍ମକ ବିଚାରରେ ଏହା ନିଃସନ୍ଦେହରେ କୁହାଯାଇପାରେ ଯେ 'ଶ୍ରୀରାଧା' ହିଁ ଅନନ୍ୟ। ଶ୍ରୀରାଧାର ଅନୁଭୂତିର ଆନ୍ତରିକତା ଓ ଉଚ୍ଚତାକୁ ଯିବା ଅନ୍ୟ ପାଖରେ ସେତେ ସହଜ ନୁହେଁ। ଏପରିକି ଏହା ମଧ କହିବାକୁ କୁଣ୍ଠା ନାହିଁ ଯେ ସ୍ୱୟଂ ରମାକାନ୍ତଙ୍କର 'ଶ୍ରୀପଳାତକ' ମଧ ଶ୍ରୀରାଧାର ଶୀର୍ଷକୁ ଆରୋହଣ କରିପାରୁ ନାହିଁ। ଏହା ଅବଶ୍ୟ ସ୍ୱାଭାବିକ। କାବ୍ୟପୁରୁଷ ସଫଳତାର ଶୀର୍ଷରେ ପହଞ୍ଚି ସେଇଠି ଯେ ଅହରହ ରହିପାରିବ ତାହା ସମ୍ଭବ ଓ ନିଶ୍ଚିତ ନୁହେଁ। କବିତାତ ଏକ ମନ୍ତ୍ରମୁଗ୍ଧ ତୂରୀୟାବସ୍ଥାର ବାଙ୍ମୟ ରୂପ। ସେ ଅବସ୍ଥାକୁ ଧାରଣ କରିବା ସର୍ବଦା ସାଧ ନୁହେଁ। ଶବ୍ଦର ମାୟାକୁ ପାରହେବା ଅତି ଦୁଃସାଧ। ଯୁଗଯୁଗ ପାଇଁତ କବିର ଏଇ ଦୁରବସ୍ଥା, 'ଯଥା ତୀକ୍ଷ୍ଣ ଅସି ଧାରେ ପଥ ଚାଲିବା'।

### ପାଦଟୀକା

୧. Tradition And Individual Talent- Selected Prose of T.S.Eliot- Ed. Frank Kermode- P. 38
୨. ସହରର ମୃତ୍ୟୁ ସଂଖ୍ୟା- ପୂର୍ବଦିଗ- ନୃସିଂହ ପ୍ରସାଦ ତ୍ରିପାଠୀ
୩. ମୁହୂର୍ତ୍ତ ହିଁ ପୂର୍ଣ୍ଣାଙ୍ଗ ଜୀବନ- ସପ୍ତମ ଋତୁ-
୪. ତ୍ରିଭୂଜ- ପୂର୍ବଦିଗ
୫. ମୋ ମୃତ୍ୟୁ ପୂର୍ବରୁ କେତୋଟି ମୁହୂର୍ତ୍ତ- କବିତାର ମୁହଁ- କମଳାକାନ୍ତ ଲେଙ୍କା
୬. ମ୍ଳେଚ୍ଛ- ସ୍ରୋତର ନାମ ଋତୁ- କମଳାକାନ୍ତ ଲେଙ୍କା
୭. ନୈମିଷାରଣ୍ୟ- ମମତା ଦାଶ
୮. ଅଦୃଶ୍ୟ ସଂଗମ- ପ୍ରସନ୍ନ କୁମାର ମିଶ୍ର
୯. ଛାଇ- ବାଇଗେଣୀ ଋତୁ- ସରୋଜ ରଞ୍ଜନ ମହାନ୍ତି
୧୦. ବାଘ ଆଁ ଭିତରେ ପିକ୍‌ନିକ୍- ପ୍ରସନ୍ନ କୁମାର ପାଟଶାଣୀ

୧୧. ଛନ୍ଦରାତି- ୩ (ବାଟୋଇ)- ନିଃଶ୍ୱାସର ତ୍ଵାଳପତ୍ର- ଶତ୍ରୁଘ୍ନ ପାଣ୍ଡବ
୧୨. କାହ୍ନୁ- ସୁରେଶ ପରିଡ଼ା- ଇସ୍ତାହାର- ପୂଜା ୧୯୮୪
୧୩. ଶ୍ୟାମ- ସୁନୀଲ କୁମ'ର ପୃଷ୍ଟି- ଇସ୍ତାହାର- ୨୭

# ଆସନ୍ତା କାଲିର ଓଡ଼ିଆ କବିତା : ଏକ ପୁରୋଦୃଷ୍ଟି

ଏପରି ଏକ ପ୍ରସଙ୍ଗରେ ଅନାଗତ କାଳପାଇଁ ନିୟତିର ବାଣୀ ଶୁଣାଇବା ସହଜ ନୁହେଁ, ସାହିତ୍ୟତ ସାମୁଦ୍ରିକ ବିଦ୍ୟା ନୁହେଁ ଯେ ଗଣକ ପରି ସାହିତ୍ୟିକ ଗ୍ରହ-ରାଶି-ନକ୍ଷତ୍ରର ଚଳନ ଦ୍ୱାରା ସାହିତ୍ୟର ଭବିଷ୍ୟ ଭାଗ୍ୟ ବୟାନ କରିବ। କିନ୍ତୁ ଏ ପ୍ରଚେଷ୍ଟା ଆଜିର ନୁହେଁ। ବିଗତ କେତେବର୍ଷ ଧରି ଏ ସମ୍ପର୍କରେ ଅନେକ ସାହିତ୍ୟିକ ବିବିଧ ଦୃଷ୍ଟିରୁ ବିଭିନ୍ନ ମତ ପୋଷଣ କରିଆସିଛନ୍ତି। ପ୍ରଶ୍ନ ଉଠେ, ଏହା କିପରି ? ଇତିହାସ ହିଁ ପ୍ରତ୍ୟେକର ମୂଲ୍ୟାୟନର ମୌଳିକ ହେତୁ। ଏହାର ବିନା ସହାୟତାରେ କାହାର ଗତିପଥ ନିର୍ଦ୍ଧାରଣ କରିବା ଅସମ୍ଭବ। ଢେଲି ମାଛକୁ ଆମେ ଯେତେ ଦୂରରେ ଛାଡ଼ି ଆସିଛୁ ସେ ଦୂରତ୍ୱ ଏକ ସରଳ ରୈଖିକ ଦୂରତ୍ୱ ନୁହେଁ। ସେ ପଥ ଗିରିପଥ ପରି କୁଟୀଳ ଓ ଚଢ଼ାଉଇରାର ଏକ ମିଶ୍ର ସମବାୟ। ଠିକ୍ ସେମିତି ଆମ ସାହିତ୍ୟର ପଥ। ଚସରଙ୍କ ଠାରୁ ଲାର୍କିନ୍, ପ୍ଲାଥ୍ ଓ ବାଲ୍ମିକୀଙ୍କଠାରୁ ସାରଳା ଦାସ ଓ ତାଙ୍କଠୁ ରମାକାନ୍ତ, ସୀତାକାନ୍ତ ପର୍ଯ୍ୟନ୍ତ ଏ ଯେଉଁ ପ୍ରଲମ୍ବିତ ପଥ ତାକୁ ସଚେତନ ଦୃଷ୍ଟିରେ ନିରୀକ୍ଷା କଲେ ଆଗକୁ ଲମ୍ବି ଯାଉଥିବା ବାଟ ସମ୍ପର୍କରେ ହୁଏତ କିଛି ଆନୁମାନିକ ସିଦ୍ଧାନ୍ତ ମିଳିପାରେ। ଇତିହାସର ଆବର୍ତ୍ତରେ ନୂଆ ପୁରୁଣାର ଯେଉଁ ଖେଳ ତାହା ଯେ ସେମିତି ଲାଗିଥିବ ଏହା କ'ଣ ଇତିହାସ ନିଜେ ପ୍ରମାଣ କରି ନାହିଁକି ? ରିକେଟ୍‌ଙ୍କ ମତରେ- The literature of tomorrow lies in the womb of today. What the precise character of that literature will be, it would be folly to try and forecast; but assuredly, every action, every attitude of ours today, is helping to mould the nature and destiny of these unborn children." (୧)

ଆସନ୍ତାକାଲିର ସାହିତ୍ୟର ରୂପରେଖ ସମ୍ପର୍କରେ ପାଶ୍ଚାତ୍ୟ ପ୍ରାଚ୍ୟ ଜଗତର ଦୁଇଜଣ ମନୀଷୀ ଦୁଇଟି ଭିନ୍ନ ଦୃଷ୍ଟି ପ୍ରଦାନ କରିଛନ୍ତି। ମାର୍କସବାଦର ପ୍ରବକ୍ତା ଓ ଲେଲିନ୍‌ବାଦର ସ୍ରଷ୍ଟା ସ୍ୱୟଂ ଲେନିନ୍ ଆଗାମୀ ସାହିତ୍ୟ ବା କଳା ସମ୍ପର୍କରେ କହିଛନ୍ତି- "Art belongs to the people. Its roots should be deeply implanted in the very thick of the labouring masses. It should be understood and loved by these masses. It must unite and elevate their feelings, thoughts and will. It must stir to activity and the art instincts within them." (୨) ଅର୍ଥାତ୍ ଭବିଷ୍ୟତର ସାହିତ୍ୟ ଜନସାଧାରଣ ଜୀବନକୁ ଭିତ୍ତି କରି ଓ ଜନସାଧାରଣଙ୍କ ଭାଷାରେ ରଚିତ ହେବା ଉଚିତ। ଜନସାଧାରଣ ମାନସକୁ ଯାହା ଆକୃଷ୍ଟ କରିବ ଏବଂ ଯାହା ତାକୁ ଗଠନ କରିବାରେ ସହାୟକ ହେବ, ତାହାହିଁ ହେବ ଭବିଷ୍ୟତର ସାହିତ୍ୟ।

ବିପ୍ଳବୀ କବି ରବି ସିଂ ଏହି ପରିପ୍ରେକ୍ଷୀରେ କହନ୍ତି- "ଜନ ବିଚ୍ଛିନ୍ନତା ଯୋଗୁଁ ଆତ୍ମ ନିର୍ବାସନ, ବୁର୍ଜୁଆ ଏବଂ ପେଟି ବୁର୍ଜୁଆ-ବୌଦ୍ଧିକତା ଧର୍ମୀ ପ୍ରତାରଣା ଓ ଛଳନାପୂର୍ଣ୍ଣ ଶିଳ୍ପ-ସାହିତ୍ୟ ଜନ୍ମନେବ। ଅପରପକ୍ଷରେ ସର୍ବହରା, ଦଳିତ ଶ୍ରେଣୀପାଇଁ ଶିଳ୍ପ-ସାହିତ୍ୟ ସୃଷ୍ଟିକରିବାକୁ ହେଲେ ସେହିମାନଙ୍କ ଅନୁଭୂତି, ଆବେଗ, ଅନୁଭବ ଏବଂ ରୁଢ଼ ଉପଲବ୍ଧିର ପାଖାପାଖି ଯାଇ ଠିଆ ହେବାକୁ ହେବ ଶିଳ୍ପୀ-ଲେଖକକୁ। ସେମାନଙ୍କ ମନୋଜଗତରେ, ଜୀବନଯାତ୍ରା ପଥରେ ଥିବା ଅସଂଗତି ଗୁଡ଼ିକୁ ସଂଗ୍ରହ କରି, ତାକୁ ସଜାଇ ପୁନର୍ବାର ଫେରିଯିବାକୁ ହେବ ସେହି ସର୍ବହରା ବୃହତ୍ତର ମେହନତୀ ଜନସାଧାରଣ ପାଖକୁ। ସେତେବେଳେ ଦେଖାଯିବ, ସେମାନେ (ଲୋକେ) ଅନୁଭବ କରୁଥିଲେ ମଧ ଯାହାକୁ ପ୍ରକାଶ କରିବାକୁ ଭାଷା ପାଉନଥିଲେ, ତାକୁ ଲେଖକ ଯେହେତୁ ଭାଷା ଦେଇଛି, ସେ ଭାଷା ଜନଅନ୍ତରର ଭାଷା, ମନର ଭାଷା, ଜୀବନର ଭାଷା; ସେହେତୁ ସେମାନେ ନିଜଠାରୁ ଆପଣାର ବୋଲି ମନେ କରିବେ ଲେଖକକୁ ଓ ତା'ର ସାହିତ୍ୟକୁ।" (୩)

ପ୍ରାଚ୍ୟ ଦାର୍ଶନିକ-କବି ଶ୍ରୀ ଅରବିନ୍ଦଙ୍କ ମତରେ -- "This poetry will be the voice and rhythmic utterance of our greater, our total, our infinite existence, and will give us the strong and infinite sense, the spiritual and vital joy the exatting power of a greater breath of life." (୪) ଅର୍ଥାତ୍ ଆଗାମୀ କାଲିର କବିତାରେ ବସ୍ତୁବାଦ ବା ଅର୍ଥନୈତିକଭାବ ପ୍ରାଧାନ୍ୟ ହରାଇ ଏକ ଉଭରିତ ଅତୀନ୍ଦ୍ରିୟ ଦୃଷ୍ଟିକୋଣ ପ୍ରକାଶ ପାଇବ। ଶ୍ରୀ ଅରବିନ୍ଦ ଜୀବନର ପ୍ରାରମ୍ଭିକ ପର୍ଯ୍ୟାୟରେ ମାର୍କସବାଦ ଦ୍ୱାରା ଆକୃଷ୍ଟ ହୋଇ ସଂଗ୍ରାମୀ ଜୀବନ ଧାରାକୁ ଗ୍ରହଣ କରିନେଇଥିଲେ ମଧ ପରବର୍ତ୍ତୀ ପର୍ଯ୍ୟାୟରେ ଏକ ଅଭିନବ ପରିବର୍ତ୍ତନର ସମ୍ମୁଖୀନ ହୋଇଛନ୍ତି। କ୍ରମଶଃ ସେ ମାର୍କସୀୟ ସମାଜବାଦରେ ନିଜର ଆସ୍ଥା ହରାଇ ଏକ ଅତିକ୍ରାନ୍ତ ସମାଜବାଦରେ ବିଶ୍ୱାସୀ ହୋଇ ପଡ଼ିଛନ୍ତି। ସେ ଏକ ଆଲୋକିତ ସମାଜର ସମ୍ଭାବନା ଦେଖିଛନ୍ତି। ସ୍ଥିତିବାଦୀ ଦାର୍ଶନିକ ଜାଁ ପାଲ ସାର୍ତ୍ରେ ତାଙ୍କ ସ୍ଥିତିବାଦରେ ମଣିଷର ନିଃସଙ୍ଗ ଏକାକୀତ୍ୱକୁ ବର୍ଣ୍ଣନା କରିଛନ୍ତି। ସ୍ଥିତିବାଦକୁ ସେ ତାଙ୍କ ଜୀବନର ଗୋଟିଏ ଆଦର୍ଶ ଭାବରେ ଗ୍ରହଣ କରିଛନ୍ତି ସତ କିନ୍ତୁ ବିଂଶ ଶତାବ୍ଦୀରେ ମାର୍କସବାଦକୁ ସେ ଏକମାତ୍ର ଶ୍ରେଷ୍ଠ ଦର୍ଶନ ଭାବରେ ଗ୍ରହଣ କରିଛନ୍ତି। ନିଃସଙ୍ଗ ମଣିଷର ଏକାକୀତ୍ୱରୁ ମୁକ୍ତିର ପ୍ରେରଣା ମାର୍କସବାଦୀ ଶ୍ରେଣୀହୀନ ସମାଜ ଦ୍ୱାରା ଯେ ସମ୍ଭବ ଶେଷକୁ ସେ ସ୍ୱୀକାର କରିଛନ୍ତି। ଏହି ପରିପ୍ରେକ୍ଷୀରେ ଲକ୍ଷ୍ୟକଲେ ଜଣାଯାଏ ଯେ ମୁଖ୍ୟତଃ ମାର୍କସବାଦ ଓ ଅଧ୍ୟାତ୍ମ ଆଦର୍ଶ ଭିତରେ ସମଗ୍ର ବିଶ୍ୱ ସାହିତ୍ୟ ଏକ ମିଶ୍ରିତ ରୂପରେଖ ନେଇ ଗତିକରି ଚାଲିଛି। ଏ ପ୍ରସଙ୍ଗରେ ଡ଼ଃ. ହରେକୃଷ୍ଣ ମହତାବଙ୍କ ଉକ୍ତିଟି ପ୍ରଣିଧାନ ଯୋଗ୍ୟ -- "ମାନବ ସମାଜରେ ଯେଉଁ ଉତ୍କଟ ଦ୍ୱନ୍ଦ୍ୱ ବର୍ତ୍ତମାନ ଚାଲିଛି, ସେଥିରେ ହୁଏତ ଅଧ୍ୟାତ୍ମବାଦ ଜିତୁ ବା ସମାଜବାଦ ଜିତୁ ବା ଉଭୟଙ୍କ ଭିତରେ ମିଳାମିଶା ହୋଇଯାଉ; ଯାହାର ସ୍ୱପ୍ନ ରୋମାରୋଲାଁ ଓ ମହାତ୍ମାଗାନ୍ଧୀ ଦେଖିଥିଲେ, କିନ୍ତୁ ଅର୍ଥବାଦର ସତ୍ତା କେବେହେଲେ ରହିବ ନାହିଁ।" (୫)

ମୁଖ୍ୟତଃ ସାହିତ୍ୟରେ ମାର୍କସବାଦର ପ୍ରସଙ୍ଗ ଉଠିଲାବେଳେ ତାହା ବାସ୍ତବତାର କଥାକୁ ବୁଝାଇଥାଏ। ବାସ୍ତବ ଜୀବନର ସାମାଜିକ ଓ ଅର୍ଥନୈତିକ ବୈଷମ୍ୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ଏକ ସୁସ୍ଥ ଶ୍ରେଣୀହୀନ ସମାଜ ଗଠନରେ ସାହିତ୍ୟର ଭୂମିକାକୁ

ସ୍ୱୀକାର କରାଯାଏ, ଏବଂ ଏହା ହିଁ ସାହିତ୍ୟର ବା କଳାର ଧେୟ ହେବା ଉଚିତ ବୋଲି ମାଓ-ସେ-ତୁଂ ସ୍ୱୀକାର କରିଛନ୍ତି -- "Revolutionary literature and art should create a variety of characters out of real life and help the masses to proper history forward. For example, there is suffering from hunger, cold and oppression on the one hand, and exploitation and oppression of man by man on the other." (୬) ଏଇଠୁ ମନରେ ପ୍ରଶ୍ନ ଉଠିପାରେ ଯେ ସାହିତ୍ୟ ଯେତେବେଳେ ଗୋଟିଏ ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ବା ଆଦର୍ଶକୁ ପ୍ରଚାର ଓ ପ୍ରସାର କରିବାକୁ ଅଭିପ୍ରେତ ସେତେବେଳେ ତାହା ପ୍ରୋପାଗଣ୍ଡାରେ ରୂପାନ୍ତରିତ ହେବ ନାହିଁ କି? ଏ ସମ୍ପର୍କରେ ଲୁ-ଶିନ୍ କହନ୍ତି- "Though all literature is propaganda not all propaganda is literature." (୭) ଏହି ପ୍ରଗତିଶୀଳ ସାହିତ୍ୟ ସମ୍ପର୍କରେ କମ୍ୟୁନିଷ୍ଟମାନେ ଏକ ସୁସ୍ଥ ସମାଜର ସମ୍ଭାବନା ଆଣିଥାନ୍ତି। "ଯାହା କିଛି ଆମକୁ ନିଷ୍କ୍ରିୟତା, ଅକର୍ମଣ୍ୟତା, ଯୁକ୍ତିହୀନତା ଆଡ଼କୁ ଟାଣିନିଏ, ଆମେ ପ୍ରଗତିବିରୋଧୀ ବୋଲି ପ୍ରତ୍ୟାଖାନ କରିବୁ। ଯାହା କିଛି ଆମ୍ଭମାନଙ୍କର ବିଚାର ବୁଦ୍ଧିକୁ ଉଦ୍‌ବୁଦ୍ଧ କରେ, ସମାଜ ବ୍ୟବସ୍ଥା ଓ ରାଜନୀତିକୁ ଯୁକ୍ତି ସମ୍ମତ ଭାବେ ପରୀକ୍ଷା କରେ -- ଆମ୍ଭମାନଙ୍କୁ କର୍ମଠ ଓ ଶୃଙ୍ଖଳିତ ସମାଜର ରୂପାନ୍ତର ସୃଷ୍ଟିରେ ସାହାଯ୍ୟ କରେ ତାହାକୁ ହିଁ ଆମ୍ଭେ ପଗତିଶୀଳ ବୋଲି ଗ୍ରହଣ କରିବୁ।" (୮) ଏବଂ ଏହି ପ୍ରଗତି ହିଁ ସାହିତ୍ୟର ବିକାଶ ପଥରେ ଏକମାତ୍ର ଉତ୍ସ ବୋଲି ସ୍ୱୀକାର କରାଯାଇଛି -- "ମୃତ୍ୟୁର ଆହ୍ୱାନ ଜୀବନ, ଧ୍ୱଂସର ଆହ୍ୱାନ ସୃଷ୍ଟି, ପ୍ରତିକ୍ରିୟାର ଆହ୍ୱାନ ପ୍ରଗତି ଓ ଶେଷରେ, ପ୍ରଗତି ହିଁ ବିଶ୍ୱର ପ୍ରକୃତି। ପ୍ରଗତି ଓ ପ୍ରକୃତି ଦୁହେଁ ଅଭିନ୍ନ। ପ୍ରଗତି ଯେପରି ପ୍ରକୃତି ଭିତରେ ପ୍ରତିଫଳିତ ଓ ପ୍ରସ୍ଫୁଟିତ -- ପ୍ରକୃତି ସେହିପରି ପ୍ରଗତି ଭିତରେ ହିଁ ଆପଣାକୁ ସାବ୍ୟସ୍ତ ଓ ଜୀବନ୍ତ କରେ। ସେଇ ପ୍ରକୃତି ବଳରେ ପ୍ରଗତି ବଳୀୟାନ। ତେଣୁ ତାହା ଅପରାଜେୟ। ସେଥିଲାଗି ପ୍ରଗତି ହିଁ ସାହିତ୍ୟର ବିକାଶ ପଥରେ ଅପ୍ରତିହତ ଶକ୍ତିର ଏକମାତ୍ର ଅଫୁରନ୍ତ ଉତ୍ସ ଓ ଆଧାର।" (୯)

ବିପ୍ଳବୀ କବି ଏ ଗତାନୁଗତିକ ଜୀବନ ଯାତ୍ରା ଓ ପୃଥିବୀର ଧ୍ୱଂସକାମୀ। ଧ୍ୱଂସର ସ୍ତୂପ ଉପରେ ନୂତନ ପୃଥିବୀର ସର୍ଜନା ହେବ। ଏକ ସମ୍ପୂର୍ଣ୍ଣ ଗଣବିପ୍ଳବ ଓ ସଂଘର୍ଷ ଭିତରେ ହିଁ ଶାନ୍ତି ଓ ନବଜୀବନର ସ୍ଥିତି ସମ୍ଭବ ବୋଲି ସେ ବିଶ୍ୱାସୀ। ଧ୍ୱଂସ ହିଁ ତା'ର ବ୍ରତ ଓ ପୂଜା। ବିପ୍ଳବୀ ରବି ସିଂ ଏହି ମର୍ମରେ ଲେଖିଥିଲେ --

"ଧ୍ୱଂସରୁ ବଳି ନାହିଁତ ପୁନିଅଁ
ଧ୍ୱଂସ ଖୋଲଇ ସୃଷ୍ଟିର ନିଅଁ
ଉଦୟ-ବେଦନା ହୃଦୟେ ଘେନି
ତେଣୁ ଏ ସୃଷ୍ଟି ନଦେଲେ ବୁଡ଼ାଇ
ଶେଷ ସତା ଯା ନଦେଲେ ଉଡ଼ାଇ
ଆଗାମୀ ଜୀବନ ହେବନି ଧନୀ।" (୧୦)

ଉପରୋକ୍ତ ଧାରା ଅନୁଯାୟୀ ଓଡ଼ିଆ କବିତାର ଗତିପଥକୁ ଲକ୍ଷ୍ୟ କଲେ ଆମେ ଏକ ମିଶ୍ର ରୂପ ଦେଖିଥାଉ। ୧୯୩୫ ପରବର୍ତ୍ତୀ ଓଡ଼ିଆ କବିତାରେ ପ୍ରଗତିବାଦୀ ଚେତନା ପ୍ରାଧାନ୍ୟ ଲାଭ କରିଥିଲେ ମଧ ସ୍ୱାଧୀନୋତ୍ତର କାଳରେ ଏହା କ୍ରମଶଃ ଶିଥିଳ ହୋଇଯାଇ

ପ୍ରୟୋଗବାଦୀ ଚିନ୍ତାଧାରା ଭିତରେ ନିଜକୁ ବହୁରୂପା କରିଛି । ୧୯୫୦ରୁ ୧୯୯୦ ମସିହା ପର୍ଯ୍ୟନ୍ତ ଦୃଷ୍ଟି ନିବଦ୍ଧ କଲେ ଓଡ଼ିଆ କବିତାର ଆତ୍ମିକରେ ସାଂପ୍ରତିକ ଯୁଗଯନ୍ତ୍ରଣା ଓ ଅସ୍ଥିର ମାନସିକତାର ମନସ୍ତାତ୍ତ୍ୱିକ ରୂପଚିତ୍ର ଆଧିକ୍ୟ ଲାଭ କରିଥିଲେ ମଧ୍ୟ ପ୍ରଗତିବାଦୀ ଚେତନା, ରୋମାଣ୍ଟିକ ଚେତନା ଓ ଆଧ୍ୟାତ୍ମିକ ଅଭୀପ୍ସାର ସ୍ୱର ମଧ୍ୟ ବାରିହୁଏ । ମୁଖ୍ୟତଃ ସଚ୍ଚି ରାଉତରାୟଙ୍କ କବିତାରେ ଯେଉଁ ସାମ୍ୟବାଦର ଗୁରୁଗମ୍ଭୀର ନାଦ ଶୁଭୁଥିଲା ତାହା ପରବର୍ତ୍ତୀ ପର୍ଯ୍ୟାୟରେ 'ପାଣ୍ଡୁଲିପି' (୧୯୪୭) ରୁ କବିତା-୧୯୬୨ରେ ରୂପାନ୍ତରିତ ହୋଇଗଲା । ତଥାପି ଏହି ଚେତନାର ମିଶ୍ରିତ ରୂପ 'ଶହୀଦ ପ୍ରଦୀପ୍ତ', 'ଏସିଆର ସ୍ୱପ୍ନ', 'କବିତା-୧୯୭୪', 'କବିତା-୧୯୭୭' ଆଦି କାବ୍ୟ ଗ୍ରନ୍ଥରେ ପୁନଃ ଅନୁରଣିତ ହୋଇଥିବାର ଲକ୍ଷ୍ୟ କରାଯାଏ । ପଶୁ ନିଶାଚର ସାଜିଥିବା କବିଟି ଉଗ୍ରକାନ୍ତ ହୋଇ ଉଠେ । ହାତରୁ ଗାଣ୍ଡୀବ ଖସିପଡ଼େ । ପୁଣି 'ଏସିଆର ସ୍ୱପ୍ନ' ଭିତରେ ନିଜଠାରେ ବିରାଟ ବିସ୍ତାରର ରୂପ ଓ ବିପ୍ଳବର ସଙ୍କେତ-

"ଯାହା ଚାହଁ ମୁଁ ସେସବୁ ।
ମୁଁ ବିପ୍ଳବ । ମୁଁ ମହାକାଳ ।
ମୁଇଁ ସେଇ ଅନାଗତ ସ୍ୱପ୍ନର ସକାଳ ।
ମୁଁ ସମଷ୍ଟି, ବିସ୍ମୃତି ସରାର ।
(ସରାର ବିନାଶ ନୁହେଁ, ତା'ର ରୂପାନ୍ତର)
ମୁଁ ବିସ୍ତାର । ରାଜ୍ୟର ।
ରାଷ୍ଟ୍ରହୀନ ନୈରାଜ୍ୟିକ
ମଣିଷ ଜାତିର/ମୁଁଇ ସେଇ ଅଦୃଷ୍ଟ ତାରିଖ
ଆଗାମୀ କାଳର ।" (୧୧)

ଏଇ ମିଶ୍ରସ୍ୱର ପ୍ରାୟ ଏ ଯାବତ୍ ପ୍ରତ୍ୟେକ କବିଙ୍କ କବିତାରେ ଦେଖାଯାଏ । ସୀତାକାନ୍ତଙ୍କର 'ଅଶ୍ରୁ ଓ ସ୍ୱାଦ', 'ସହରରେ ଗ୍ରୀଷ୍ମ', 'ପରକୀୟା', ରମାକାନ୍ତଙ୍କ 'ଚନ୍ଦ୍ରମାର ଚୂଡ଼ି', 'ନବଗୁଞ୍ଜର', 'ମାଷ୍ଟାଣୀ', 'ଧନୀପ୍ରତି ଭୃତ୍ୟର ଉକ୍ତି'; ଦୀପକ ମିଶ୍ରଙ୍କ 'ବଳରାମ ସୁଆର', 'ଶୁକ ବଢ଼େଇ', 'ରାବଣ ଓ ରଘୁ ସାହାଣୀ' ଆଦି କବିତା ଭିତରେ ପୁଣି ସାଂପ୍ରତିକ କବି ସମାଜ ସଚେତନଶୀଳ ହୋଇ ଉଠନ୍ତି । ମୁଖ୍ୟତଃ ଓଡ଼ିଆ କବିତା କ୍ଷେତ୍ରରେ ଏହି ଯେଉଁ ମିଶ୍ରିତ ରୂପ ଦେଖାଦେଇଛି ତାହା ଏ ପର୍ଯ୍ୟନ୍ତ ଚାଲିଛି ଏବଂ ଆଗାମୀ କାଲିର କବିତା ମଧ୍ୟ ସେହି ଧାରାରେ ଗତି କରିବ । ଏ ସମ୍ପର୍କରେ ଅଧିକ ଯୁକ୍ତିନିଷ୍ଠ ହେବାକୁ ଯାଇ ୧୯୮୨ ମସିହା ଶାରଦୀୟ ପତ୍ରପତ୍ରିକାରେ ସ୍ଥାନିତ କବିତା ଗୁଡ଼ିକର ଆତ୍ମିକ ଓ ଆଙ୍ଗିକ ଦିଗକୁ ତୁଳନାତ୍ମକ ଭାବରେ ବିଚାର କରି ଏକ ପରିସଂଖ୍ୟାନ ନିଆଯାଇପାରେ । ପ୍ରଧାନତଃ ନୈରାଶ୍ୟବୋଧ, ଜୀବନ ବାଦର ମନ୍ତ୍ରଧ୍ୱନି ସହିତ ବିଦ୍ରୋହର କ୍ଷୀଣ ସ୍ୱର, ରୋମାଣ୍ଟିକ୍ ପ୍ରଣୟ ଚେତନା, ଆଧ୍ୟାତ୍ମିକ ଚେତନା ସହ ଆତ୍ମ ଅନ୍ୱେଷାବୋଧ, ଏବଂ ସୌନ୍ଦର୍ଯ୍ୟଚେତନା ଆଦି ବିଭାବ ସାମୂହିକ ଭାବେ ବିବିଧ କାବ୍ୟପୁରୁଷକୁ ଆକ୍ରାନ୍ତ କରିଛି ।

ଏହି ସମୟର କବିତାରେ ରମାକାନ୍ତ, ସୌଭାଗ୍ୟ, ସୀତାକାନ୍ତ, ପ୍ରତିଭା ଓ ଦୀପକ ମିଶ୍ର ପ୍ରମୁଖ କବିଗଣ ଜୀବନ ସଂପ୍ରୀତି ପ୍ରକାଶ କରୁଥିବା ବେଳେ କବି ଦୁର୍ଗାମାଧବ ମିଶ୍ର ନିଜର ବିକଳ ଅସହାୟତାକୁ ପ୍ରକାଶ କରନ୍ତି- "ସମ୍ମୁଖେ ମୋ ନିଃସଙ୍ଗ ସରଣୀ !/ସମ୍ମୁଖେ

ଭୀଷଣ ଗର୍ଭ ଅହିରାଜ ଚେଢ଼ିଛି ନିର୍ମୋକ।"(୧୨) ସୀତାକାନ୍ତ ବି ଅନୁଭବ କରନ୍ତି- "କ୍ଷୁଧା, ତୃଷା, ଭୟ ଓ ଆଶଙ୍କା-- ସ୍ଥିତି ମୋର କୋକୁଆ ଭୟରେ ଥରେ/ଛାତି ତଳେ ଦକା।"(୧୩) କବି ସୌରୀନ୍ଦ୍ର ବାରିକ ଜୀବନକୁ ଅତିମାତ୍ରାରେ ଭଲ ପାଇ ତାର ସମସ୍ତ ଦୁଃଖ ସନ୍ତାପକୁ ପିଠେଇ ନେବାରେ ମନସ୍ଥ ଥିଲେ ମଧ୍ୟ ସମୁଦ୍ର ତଟରେ ସାତ୍ତ୍ୱିକ ମାନସିକ ପ୍ରଶାନ୍ତି ପାଇ ପାରନ୍ତି ନାହିଁ। ଶାମୁକାର ଚିତ୍ରିତ ରୂପ, ଝାଉଁ ବଣର ସଁ-ସଁ ସ୍ୱନରେ ବି ସେଇ ନୀରବତା, ନିଃସଙ୍ଗତାର ଯନ୍ତ୍ରଣା- "ମନରେ ଭରିଦେଲା ଘୁ-ଘୁ ଏ କେଉଁ ଲୁଣି ନୀରବତା? /କଟା ଘା'ରେ ସମୁଦ୍ର ମୁଠାଏ ଲୁଣ ଯେମିତି।" (୧୪) ବିଜୁଳୀ ତାରରେ ବାଦୁଡ଼ି ଛନ୍ଦିହେଲା ପରି ଏଠି ଜୀବନ। ଚାରିଆଡ଼େ ନାହିଁ ନାହିଁର ଭାବ। ନା ହୋଇ ପାରୁଛି ଅର୍ଜୁନ, ନା ହେଉଛି ଶିଶୁପାଳ। କୃଷ୍ଣ ନୁହେଁ କି ଚନ୍ଦ୍ରସେଣା ନୁହେଁ। "ନା ଭଲ ସ୍ୱାମୀ ହୋଇ ପାରିବାର କାଟ୍ତି ଅଛି/ବଜାରରେ କବିର/ନା ଭଲ ପ୍ରେମିକ ହେବାର ନଜିର ଅଛି।" (୧୫)

ଏ ସମସ୍ତ ବିକଳ ଅସହାୟତା ଭିତରେ ବି ସେ ଅମୃତର ସନ୍ତାନ। ପରମ୍ପରାକୁ ଲୋଡ଼ିବସେ। ଆପଣାର ମୂଳ ଖୋଜି ଚାଲେ। ଖୋଜୁ ଖୋଜୁ ଶୁଣେ-

"ମଧୁବାତା ଋତାୟତେ ମଧୁ କ୍ଷରନ୍ତି ସିନ୍ଧବଃ। + +
ମଧୁନକ୍ତ ମୁତୋଷସୋ ମଧୁମତ୍ ପାର୍ଥିବଂ ରଜଃ
ମଧୁ ଦୌରସ୍ତନଃ ପିତା
ମଧୁମାନ ନୋ ବନସ୍ପତିର୍ମଧୁମା ଅସ୍ତୁ ସୂର୍ଯ୍ୟଃ
ମାଧ୍ୱୀର୍ଗାବୋ ଭବନ୍ତୁ ନଃ।" (ଋକବେଦ)

ଏହି ପବିତ୍ର ଓଁକାର ଧ୍ୱନିରେ ସେ ସୃଷ୍ଟିପ୍ରିୟ ହୋଇ ଉଠେ। ଜଗତ ମଧୁମୟ ହୋଇ ଉଠେ। ଜୀବନକୁ ଓ ଜଗତକୁ ଭଲପାଇବାକୁ ପଡ଼ିବ। ଥରେ ଭଲ ପାଇଗଲେ ଆଉ ଭୁଲି ହୁଏନା। କୁଷ୍ଠ ହେଉ କି ବିକଳାଙ୍ଗ ହେଉ। ଘା'ରୁ ଝରି ଆସୁଥିବା ପୂଜରେ ସେ କ୍ଷୀରର ସନ୍ଧାନ ନିଏ। ମଦ୍ୟଗନ୍ଧ-ପଦ୍ମଗନ୍ଧ ସବୁ ସମାନ। ସବୁ ତିଥି ଅକ୍ଷିତୃତୀୟା। ସବୁ କାଳ ବୀଜ ବିକ୍ଷେପର କାଳ। "ପ୍ରତିବର୍ଗ ଇଞ୍ଚ ମାଟି ଆଜି ଦୋଆବ୍/ପ୍ରତି ବର୍ଗ ଇଞ୍ଚ ନାରୀ ଆଜି ଗମ୍ୟା/ଗର୍ଭଯୋଗ୍ୟା...।"(୧୬) ଏମିତି ଏକ ଶୁଭ ମୁହୂର୍ତ୍ତର ଆଗମନୀ ପ୍ରଭାତରେ ପଦ୍ମଫୁଟିବା ଦୃଶ୍ୟପାଇଁ ଆଜିର ତରୁଣ କବି କମ୍ ଆଶାୟୀ ଓ ପ୍ରତୀକ୍ଷାରତ ନୁହେଁ।

"ପଦ୍ମପରି ସେଇ ଯେଉଁ ରକ୍ତିମ ଦି' ଓଠ...ଦି' ଆଖି...
ଦିଓଟି ପାପୁଲି...ଦିଓଟି ପାଦ ସେଠି ଦୃଶ୍ୟ ହେବ...
ତା'ପରେ ଶ୍ୱେତ ରାଜହଂସଟିଏ ସିଆର କାଟି
ଚାଲିଯିବ...କୂଳ ଲଘିବ ଲହଡ଼ି...
ବିହ୍ୱଳ ସୂର୍ଯ୍ୟ ବିସ୍ମିତ ହେବେ କୋଟି ଲାବଣ୍ୟରେ...
ମୁଁ ତା' ଭିତରେ ଗୁଣୁଗୁଣୁ ମହୁମାଛି...
ଗୁଣୁଗୁଣୁ...
ହଁ...ସେଇ ଦୃଶ୍ୟ ଟିକକ ଲାଗିତ
ଘାଣ୍ଟି ଚକଟି ହୁଏ ପାଣିରେ ପଙ୍କରେ

ଛୁଟୁଛୁଟୁ ହୁଏ ଲୁହରେ ଲହୁରେ
ପଦ୍ମ ଫୁଟିବ ବୋଲି....ନିଃଶ୍ୱାସ ବାସିବ ବୋଲି
ପଦ୍ମପରି ନିଃଶ୍ୱାସ....(୧୭)

ସମସ୍ତ ଦୁଃଖ ଓ ଦୈନ୍ୟର ଭିତରେ ସେଇ ହସଟିକକ ପାଇଁ କବି ସରୋଜ ରଞ୍ଜନ ମହାନ୍ତି 'ବାଇଗେଣୀ ଋତୁ'ର ପରିକଳ୍ପନା କରନ୍ତି। ସେଠି ସପ୍ତମ ଋତୁ କାହିଁ? ସବୁଠାରେ ବାଇଗେଣୀ ରଙ୍ଗର ଝଲକ।

''ସେଦିନ ଆସୁଛି, ଆଉ ଡେ଼ରି ନାହିଁ,
ଆକାଶରେ ଚାରିମେଘ ଏକାଠି ହେବାର + +
ଦେବକୀଙ୍କ ଅଷ୍ଟମ ଗର୍ଭରୁ, ଦୁଃଖର ମୋଚନ ଲାଗି
ଓହ୍ଲାଇ ଆସିବ ଶାଶ୍ୱତ ଓ ଅନିର୍ବଚନୀୟ, ଫୁଲଟିଏ।'' (୧୮)
ପୁଣି ପ୍ରଣୟିନୀର ପ୍ରତୀକ୍ଷାରେ କବିର କି ପୁଲକ-- ''ଏ ଘନ ବରଷା
କାଳେ/ଆସିବକି ପ୍ରିୟତମା/ଅତିକ୍ରମି ପଟାପଟା
ମେଘର/ଫସଲ...।'' (୧୯)

ଏହି ଚେତନା ସହିତ ଆଜିର କବିତାରେ ଆଧାତ୍ମିକ ଅଭୀପ୍ସା ଦୁର୍ଲ୍ଲଭ ନୁହେଁ। ସେ ଏକ ଅଜ୍ଞାତ ଅଶୁଣା ସ୍ୱର ଶୁଣିପାରେ। ତାହା 'ମେଘଲଦା ଆକାଶର ସ୍ୱରପରି' ଶୁଭେ। ''ଟୁପୁଟୁପୁ କାକର ଝଡ଼ିଲା ପରି/ଡ଼ାଳରୁ ପତ୍ରରୁ/ସେ ସ୍ୱର ବି ଶୁଭେ ଅବିକଳ/ମୋ' ଆତ୍ମାର ନିସ୍ତବ୍ଧତା ପରି।''(୨୦) ଏହି ରହସ୍ୟମୟ ଭାବ କବିକୁ ଯୁଗେ ଯୁଗେ ଭେଳିକି ଦେଖାଇଛି। ପାଇ ନପାଇବାର ନପାଇ ପାଇବାର ଲୁଚକାଳି ଖେଳ ଭିତରେ ସେ ଭୁଆଁ ବୁଲିଛି --

''ଦୃଶ୍ୟମାନେ ବୋଧେ କିମିଆଁ ଜାଣନ୍ତି
ପାଦରେ ବେଡ଼ି ପିନ୍ଧିଲେ
ବେଡ଼ି ଦିଶେ ନାହିଁ
କେବଳ ଏକ ବିପନ୍ନ ଦରଜ ଦିକ୍‌ସିକ୍
କରୁଥାଏ ଯାହା
ହାତରେ କଢ଼ି ଧରିଲେ କଢ଼ି ଦିଶେ ନାହିଁ
କେବଳ ଏକ ମୁଗ୍ଧ ସୁବାସ
ମହମହ ହେଉଥାଏ ଯାହା।'' (୨୦)

ତୃତୀୟ ବିଶ୍ୱଯୁଦ୍ଧର ଦ୍ୱାର ଦେଶରେ ଆମେ ଆଜି ଛିଡ଼ା ହୋଇ କୌଣସି ଏକ ନିର୍ଦ୍ଦିଷ୍ଟ ଆଭିମୁଖ୍ୟକୁ ଆଶା କରିପାରିବା ନାହିଁ। ସେହି ପ୍ରଥମ ଓ ଦ୍ୱିତୀୟ ବିଶ୍ୱଯୁଦ୍ଧୋତ୍ତର ସାମାଜିକ ଓ ମାନସିକ ଅସ୍ଥିରତା ଶତଗୁଣରେ ପୁଣି ଆମର ମାନସ ରାଜ୍ୟରେ ଦ୍ୱନ୍ଦ୍ୱ ଓ ଦୋଳନ ସୃଷ୍ଟି କରାଇବ। ତେଣୁ ଅସ୍ଥିର ମାନସିକତା ଭିତରେ କବିତା ସେହି ଅସ୍ଥିର ବହୁବିଧତାକୁ ପୁଣି ବହନ କରିବ। ହୁଏତ ଶାନ୍ତି ପାଇଁ ସେ ସ୍ୱର ଉଠାଇବ, ସାମ୍ୟବାଦ ପାଇଁ ଶବ୍ଦ ବାଣ ଛାଡ଼ିବ ବା ଏକ ଆଧାତ୍ମିକ ପ୍ରଶାନ୍ତି ପାଇଁ ଛାୟାବାଦୀ ଦୃଷ୍ଟି ଦେଖାଇବ। ଏ ସବୁର ଏକ ସମ୍ମିଳିତ ଅର୍କେଷ୍ଟ୍ରା ହିଁ ଶୁଣାଯିବ ଯେମିତି ଆଜି ଶୁଣାଯାଉଛି କିନ୍ତୁ ଐକ୍ୟତାନ ନୁହେଁ।

ଆଗାମୀ କାଲିର କବିତାର ରୂପରେଖ ସମ୍ପର୍କରେ ଏକ ସମ୍ଭାବ୍ୟ ଦୃଷ୍ଟି ଆଣିଲା ବେଳକୁ ମନରେ ପ୍ରଶ୍ନ ଉଠେ, କବିତାରେ ପରମ୍ପରାର ପୁନରାବର୍ତ୍ତନ ସମ୍ଭବ ହେବକି? ଆଗାମୀ କବିତାର ଆଙ୍ଗିକ ସମ୍ପର୍କରେ ମଧ ଠିକ ଏଇକଥା କୁହାଯାଇ ପାରେ। ଯୁଗୀୟ ରୁଚି ଓ ଆବଶ୍ୟକତା ଅନୁଯାୟୀ ସାହିତ୍ୟ ତ ତା'ର ପରିପାଟୀ ଓ କଳେବର ବଦଳାଇବ। ଓଡ଼ିଆ ସାହିତ୍ୟର ବିବିଧ ପର୍ଯ୍ୟାୟକୁ ଦୃଷ୍ଟିନିବଦ୍ଧ କଲେ ଏହା କ'ଣ ପ୍ରମାଣିତ ହୁଏ ନାହିଁକି? ଖ୍ରୀଷ୍ଟୀୟ ନବମ ଶତାବ୍ଦୀର ଚର୍ଯ୍ୟାପଦାବଳୀର ସନ୍ଧ୍ୟା ଭାଷା ଥିଲା ଦ୍ୱୈର୍ଥବୋଧକ ଯେହେତୁ ଏହା ଏକ ଛାୟାଛନ୍ନ ମିଷ୍ଟିକ୍ ଚିନ୍ତାଧାରାକୁ ପ୍ରକାଶ କରିବାରେ ଅଭିପ୍ରେତ। ତେଣୁ ଏଥିରେ ବ୍ୟବହୃତ ଚିତ୍ରକଳ୍ପ ଓ ପ୍ରତୀକ ଥିଲା ଅନୁରୂପ।

ଏହାପରେ ପଞ୍ଚଦଶ ଶତାବ୍ଦୀ ବେଳକୁ ଏକ କ୍ରାନ୍ତିକାରୀ ପଦକ୍ଷେପ ନିଅନ୍ତି ସାରଳା ଦାସ। ଖାଣ୍ଟି ଓଡ଼ିଆଭାଷା ଓ ଲୋକୋକ୍ତିକୁ ସେ ସାହିତ୍ୟରେ ସ୍ଥାନ ଦିଅନ୍ତି। ସାହିତ୍ୟ ହୋଇଯାଏ ଏଇଠି ଗଣ ସାହିତ୍ୟ। ଷୋଡ଼ଶ ଶତାବ୍ଦୀର ଭାଗବତ, ରାମାୟଣ ଠିକ ଏହି ଢାଞ୍ଚାର ହୋଇଥିଲେ ମଧ ଅନନ୍ତ, ଅଚ୍ୟୁତ ଓ ଯଶୋବନ୍ତଙ୍କ ରଚନା ଶରୀରଭେଦ ଓ ଆଧ୍ୟାତ୍ମିକ ଦର୍ଶନକୁ ପଟ୍ଟଭୂମି କରି ସୃଷ୍ଟି ହୋଇଥିବାରୁ ସେଥିରେ ଉପମା, ରୂପକ ଓ ଭାଷା ମଧ ପ୍ରତୀକାତ୍ମକ ହୋଇ ଉଠିଲା। ଠିକ୍ ଯେତେବେଳେ ସଂସ୍କୃତ ସାହିତ୍ୟର ଆଞ୍ଚଳନରେ ଆମକୁ ଏକ ସମ୍ଭ୍ରାନ୍ତ ସାହିତ୍ୟିକ ପରମ୍ପରା ସୃଷ୍ଟି କରିବାକୁ ହେଲା ସେତେବେଳେ କବିତାରେ ଆଳଙ୍କାରିକତା ଓ ଶବ୍ଦବାହୁଲ୍ୟ ପ୍ରାଧାନ୍ୟ ଲାଭ କଲା। ସାଧାରଣ ଜନତା ଏହାର ସାଙ୍ଗୀତିକତା ଦ୍ୱାରା ଆକୃଷ୍ଟ ହୋଇଥିଲେ ମଧ ଭାବ-ଶୋଷଣରେ ଦୂରହତା ଲାଭକରିଥିଲେ। ମୋଗଲ ଶାସନର ପ୍ରଭାବରେ ସାହିତ୍ୟ ହେଲା ଦରବାରୀ। ତେଣୁ ଯୌନ ବିକ୍ଷୁବ୍ଧତା ବା ଶୃଙ୍ଗାରିକତା ମୁଖ୍ୟସ୍ଥାନ ନେଲା। ସଦାନନ୍ଦ ବ୍ରହ୍ମା, ବୃନ୍ଦାବତୀ ଦାସ, ଉପେନ୍ଦ୍ର ଭଞ୍ଜ ଶବ୍ଦର ମାୟାଜାଲ ସୃଷ୍ଟି କରୁଥିବା ବେଳେ ଦେବଦୁର୍ଲ୍ଲଭ, ଭୂପତି ପଣ୍ଡିତ, କି ପ୍ରତାପ ରାୟ ପ୍ରମୁଖ ମଧ ସରଳଭାଷା ପ୍ରୟୋଗରେ ସିଦ୍ଧହସ୍ତତା ପ୍ରଦର୍ଶନ କରିଛନ୍ତି। ବଳଦେବ ରଥ ଓ ଅଭିମନ୍ୟୁ ଭାଷାର ଚାତୁରୀ ପ୍ରକାଶ କଲାବେଳେ ଦୀନକୃଷ୍ଣ, ଭକ୍ତ ଚରଣ, ବନମାଳୀ ଓ ଗୋପାଳକୃଷ୍ଣ ସରଳ ସାବଲୀଳ ଭାଷାରେ ମଧ ସେହି ରାଧାକୃଷ୍ଣ ବୈଷ୍ଣବ ତତ୍ତ୍ୱ ବା ଶୃଙ୍ଗାରିକତାକୁ ପ୍ରକାଶ କରିବାରେ ସକ୍ଷମ ହୋଇଛନ୍ତି। ତା'ପରେ ଊନବିଂଶ ଶତାବ୍ଦୀରୁ ଏ ଯାବତ୍ ସେହି ପରୀକ୍ଷା ନିରୀକ୍ଷା ଚାଲିଛି। କୌଣସି ସମୟରେ ଏକ ନିର୍ଦ୍ଦିଷ୍ଟ ଦିଗ ବା ଶୈଳୀ ପ୍ରାଧାନ୍ୟ ଲାଭ କରିଥିଲେ ମଧ ମିଶ୍ରିତ ଭାବ ହିଁ ଲକ୍ଷଣୀୟ। ଯେମିତି ଊନବିଂଶ ଶତାବ୍ଦୀ ବେଳକୁ ସାହିତ୍ୟରେ ପରୀକ୍ଷା-ବିଶ୍ଳେଷଣ ଚାଲୁଥିବା ବେଳେ ପଶ୍ଚିମ ଓଡ଼ିଶାର କନ୍ଧମାଳର କବି ଭୀମଭୋଇ ମହିମା ଦର୍ଶନକୁ କେନ୍ଦ୍ର କରି ଛନ୍ଦୋବଦ୍ଧ ଭଜନ ଜଣାଣ ଲେଖି ଚାଲିଥିଲେ। କି ଏ ସମୟ ବେଳକୁ ଓଡ଼ିଆ କବିତାର ଛନ୍ଦ ଓ ସାଙ୍ଗୀତିକତାକୁ ପରିହାର କରିଥିଲାବେଳେ କବି ରାଧାମୋହନ ଗଡ଼ନାୟକ, କୁଞ୍ଜବିହାରୀ ଦାଶ, ଜୟକୃଷ୍ଣ ମିଶ୍ର, ପ୍ରାଣକୃଷ୍ଣ ସାମଲ, ରବି ସିଂ, ବ୍ରଜନାଥ ରଥ ପ୍ରମୁଖ କବି ଛନ୍ଦୋବଦ୍ଧ କବିତା ରଚନା କରୁଛନ୍ତି। ଏପରିକି, ଛନ୍ଦହୀନ ଗଦ୍ୟ କବିତା ରଚନା ହରି ରମାକାନ୍ତ ରଥ ପାଠକଙ୍କର ଶରବ୍ୟ ହୋଇଥିଲାବେଳେ ମଧ ତାଙ୍କ ପ୍ରତ୍ୟେକ କବିତା ଗ୍ରନ୍ଥରେ ଅନ୍ୟୂନ କେତୋଟି ଛନ୍ଦୋବଦ୍ଧ କବିତା ସ୍ଥାନିତ ହେଉଥିଲା।

ଏକଦା ଓଡ଼ିଆ କବିତାରେ ଗଦ୍ୟ କବିତାର ପ୍ରାଚୁର୍ଯ୍ୟ ଓ ଛନ୍ଦହୀନତାର ଅରସିକତା

ପାରମ୍ପରିକ ପାଠକ ମାନଙ୍କୁ ବିତୃଷ୍ଣ କରିଛି। ଆଜିର କବିତା ଅର୍ଥାତ୍ ୧୯୮୦ ପରବର୍ତ୍ତୀ କବିତାରେ ଆଙ୍ଗିକକୁ ଲକ୍ଷ୍ୟ କଲେ ଆମେ ପୁଣି ଛନ୍ଦ ଓ ସାଙ୍ଗୀତିକତା ପ୍ରତି କବିର ଆସକ୍ତି ସ୍ପଷ୍ଟ ବାରିପାରୁ। ଏ ସମ୍ପର୍କରେ କୁହାଯାଇଛି- "କବିତାର ସୁସ୍ଥ ଆବେଦନଶୀଳତା ନିମନ୍ତେ ନୂତନ ଓ ପ୍ରବୀଣ ସବୁ କବିଙ୍କ ମନରେ ବ୍ୟାକୁଳତା ସ୍ପଷ୍ଟ ହେଉଛି। କେହି କେହି କବି ଅତ୍ୟନ୍ତ କ୍ଳାନ୍ତିପ୍ରଦ ଗଦ୍ୟ କବିତା ପ୍ରଚଳନ କରି ପାଠକ ଶୁଭେଚ୍ଛା ନପାଇବାରୁ କ୍ରମେ ମୁକ୍ତଛନ୍ଦ ପ୍ରତି ଆସକ୍ତ ହେଉଥିବା ଲକ୍ଷ୍ୟ କରାଯାଉଛି। କାବ୍ୟରୂପ ବା ଫର୍ମରେ ଅଧିକ ସାବଲୀଳତା, କାବ୍ୟ ଭାଷାରେ ଅଧିକ ରୁଚିଶୀଳତା ଓ ଦକ୍ଷତା, ଅନ୍ତଃଛନ୍ଦରେ ସାଙ୍ଗଠନିକ ଶ୍ରୁତିମାଧୁର୍ଯ୍ୟ ଆଦି ସବୁ ଦିଗରୁ ଓଡ଼ିଆ କବିତାରେ ଯେଉଁ ସାଫଲ୍ୟ ଆସିଛି ତାହା ଓଡ଼ିଆ ସାହିତ୍ୟର ପ୍ରବୀଣତା, ଭାଷାର ପରିପକ୍ୱତାର ହିଁ ସୂଚନା ଦିଏ।" (୨୨)

ସ୍ୱାଧୀନୋତ୍ତର ଓଡ଼ିଆ କବିତା କ୍ଷେତ୍ରରେ ପ୍ରସିଦ୍ଧି ଲାଭ କରିଥିବା କବି ରମାକାନ୍ତ, ସୌଭାଗ୍ୟ, ଦୀପକ, ରାଜେନ୍ଦ୍ର ପ୍ରମୁଖ ଗଦ୍ୟ କବିତା ରଚନାରେ ମୁଖ୍ୟ ସ୍ଥାନ ଅଧିକାର କରିଥାନ୍ତି। ରମାକାନ୍ତଙ୍କ 'କେତେଦିନର'ର କେତୋଟି କବିତା ଓ ସୌଭାଗ୍ୟ ମିଶ୍ରଙ୍କ 'ଆତ୍ମନେପଦୀର' ପ୍ରାୟ ଅନେକ କବିତା ମୁଖ୍ୟତଃ ଛନ୍ଦଯୁକ୍ତ ହୋଇଥିଲେ ମଧ ଏ ଦୁଇଜଣ ପରେ ପରେ ରୂକ୍ଷ ଗଦ୍ୟ କବିତାର ଧାରାକୁ ଆଦରି ନେଇଥିଲେ। ଦୀପକ ଓ ରାଜେନ୍ଦ୍ର ବାବୁ ପ୍ରଥମରୁ ସେହି ଦିଗର ପଥିକ। କିନ୍ତୁ ସୀତାକାନ୍ତ ମହାପାତ୍ର, ପ୍ରତିଭା ଶତପଥୀ, ଜାନକୀ ବଲ୍ଲଭ ମହାନ୍ତି, ଶରତ ଚନ୍ଦ୍ର ପ୍ରଧାନ, ଚିନ୍ତାମଣି ବେହେରା, ଲକ୍ଷ୍ମୀନାରାୟଣ ମହାପାତ୍ର, ପ୍ରସନ୍ନ କୁମାର ମିଶ୍ର, ପ୍ରସନ୍ନ କୁମାର ପାଟ୍ଟଶାଣୀ, ଜଗନ୍ନାଥ ପ୍ରସାଦ ଦାସ, କମଳାକାନ୍ତ ଲେଙ୍କା, ହରିହର ମିଶ୍ର ପ୍ରମୁଖଙ୍କ କବିତା କିଞ୍ଚିତ ଛନ୍ଦମୟତା ଓ କାବ୍ୟିକତାର ଛଟାକୁ ବହନ କରେ। ପରବର୍ତ୍ତୀ ପର୍ଯ୍ୟାୟରେ ମୁଖ୍ୟତଃ ହୃଷୀକେଶ ମଲ୍ଲିକ, ଶତ୍ରୁଘ୍ନ ପାଣ୍ଡବ, ୰ବସନ୍ତ କୁମାର ମୁଦୁଲି, ୰ବିବେକ ଜେନା, ଫନୀ ମହାନ୍ତି, ଗୌତମ ଜେନା, ହରପ୍ରସାଦ ପରିଚ୍ଛା ପଟ୍ଟନାୟକ, ସୁରେଶ ପରିଡ଼ା ପ୍ରମୁଖ ତରୁଣ କବିମାନେ ସାଙ୍ଗୀତିକତା ଓ ଅନ୍ତଃଛନ୍ଦକୁ ଠିକ ଭାବରେ ଧାରଣ କରି ଚାଲିଥିବାର ଲକ୍ଷ୍ୟ କରାଯାଏ। ଅମରେଶ ପଟ୍ଟନାୟକ, ଅମରେନ୍ଦ୍ର ଖଟୁଆ ଓ ହରପ୍ରସାଦ ଦାସ ଇତ୍ୟାଦିଙ୍କ କବିତାରେ ଭାଷା ଓ ଭାବରେ ପ୍ରୟୋଗବାଦୀ ସ୍ରୋତ ଏବେ ବି ତୀବ୍ର ଓ ଶୈଳୀ ପ୍ରାୟତଃ ଗଦ୍ୟମୟ। ୧୯୮୦ ପରେ ଓଡ଼ିଆ କବିତାରେ ଛନ୍ଦମୟତା ଓ ଅଗଦ୍ୟ-ଭାଷା ପ୍ରୟୋଗ ଲକ୍ଷ୍ୟ କରାଯାଏ। ରମାକାନ୍ତଙ୍କ 'ଶ୍ରୀରାଧା' ଏ ଦିଗରେ ଏକ ସଫଳ ପଥିକୃତ ପ୍ରୟାସ। ଆସନ୍ତା କାଲିର କବିତାର ଆଙ୍ଗିକ ସମ୍ପର୍କରେ ଏହା କୁହାଯାଇ ପାରେ ଯେ କିଛିଦିନ ପାଇଁ ପୁଣି ସେହି ସରଳ ରୂପସଜ୍ଜା ଓ ଛାନ୍ଦିକ ଆବେଗକୁ ବହନ କରିବ ଏବଂ ପୁଣି ଏକ ସମୟ ଆସିବ ଯେତେବେଳେ ତାହା ଭିନ୍ନ କିଛି ପରୀକ୍ଷାକୁ ଅବଲମ୍ବନ କରିବ।

୧୯୮୨ ମସିହା ଶାରଦୀୟ କବିତାର ଆଙ୍ଗିକ ପ୍ରୟୋଗ ବିଧି ଆଲୋଚନା କ୍ରମେ ଆମେ ସେହି ମିଶ୍ରଧାରାକୁ ଲକ୍ଷ୍ୟ କରୁ। କବି ସୌରୀନ୍ଦ୍ର ବାରିକ ସେହି ମାୟାଚ୍ଛନ୍ନ ଚେତନା ପ୍ରତି ଆକୃଷ୍ଟ। ତାଙ୍କର ଚିତ୍ରକଳ୍ପଟିକୁ ଲକ୍ଷ୍ୟ କରାଯାଉ --

"ତୁମ ଅନୁପସ୍ଥିତି, ଅନ୍ଧାର ରାତି, ଲକ୍ଷ କୋଟିତାରା
ଚୁମ୍ବନର ସ୍ମୃତି, ମହୁମାଛି ପରି
ଆଲୁଅର ଡ଼େଣା ମେଲି, ସ୍ମୃତିର ତାରାସବୁ

ଛୁଟି ଆସନ୍ତି, ସେମାନେ ଦଂଶନ କରିବେ,
ଦେହରେ ମନରେ
ଭରିଦେବେ ନିଃସଙ୍ଗତାର ବିଷ।'' (୨୩)

ମୁଖ୍ୟତଃ ଚିତ୍ରକଳ୍ପ ଓ ପ୍ରତୀକ ପ୍ରୟୋଗରେ ଆଜିର କବି ସରଳତା ଓ ରୁଚିଶୀଳତାକୁ ଆଦରି ନେବାରେ ଆଗ୍ରହୀ। ରମାକାନ୍ତଙ୍କ 'ସପ୍ତମଋତୁ' ପରେ ପରେ 'ସଚିତ୍ର ଅନ୍ଧାର', 'ଶ୍ରୀରାଧା' ଓ 'ଶ୍ରୀପଳାତକ'; ସୌଭାଗ୍ୟ ମିଶ୍ରଙ୍କ 'ଅନ୍ଧ ମହୁମାଛି', 'ବଜ୍ରଯାନ', 'ଦ୍ୱାସୁପର୍ଣ୍ଣା', 'ମଣିକର୍ଣ୍ଣିକା', ଦୀପକ ମିଶ୍ରଙ୍କ 'ଅରଣା ମଈଁଷି', 'ବୃତ୍ତ', 'ସପ୍ତମ ପୃଥିବୀ', 'କପଟ ସୂର୍ଯ୍ୟାସ୍ତ' ଓ 'ଧୂଳିର ସିଂହାସନ'; ରାଜେନ୍ଦ୍ର ପଣ୍ଡାଙ୍କ 'ଶୈଳକଳ୍ପ', 'ଚୌକାଠରେ ଚିରକାଳ', ଓ 'ଧନ୍ୟା'; ପ୍ରତିଭା ଶତପଥୀଙ୍କ 'ନିଯତ ବସୁଧା', 'ନିମିଷେ ଅକ୍ଷର', 'ମହାମେଘ' ଓ 'ଶବରୀ', ସୌରୀନ୍ଦ୍ର ବାରିକଙ୍କ 'ଉପଭାରତ', ଆକାଶ ପରି 'ନିବିଡ଼', 'ଗୁଣ୍ଡୁଗୁଣ୍ଡୁ ଚିତ୍ରପଟ', ଶରତ ଚନ୍ଦ୍ର ପ୍ରଧାନଙ୍କ 'ଉଚ୍ଚୈଃଶ୍ରବା' ଆଦି କବିତା ଗ୍ରନ୍ଥ ଏହି ଧାରାର ଏକ ଏକ ସଫଳ ପଦକ୍ଷେପ କହିଲେ ଅତ୍ୟୁକ୍ତି ହେବ ନାହିଁ।

ଛନ୍ଦ ପ୍ରୟୋଗରେ କବି ରାଜେନ୍ଦ୍ର ପଣ୍ଡାଙ୍କୁ ଏବେ ଆମେ ପଦାବଳୀ ଯୁଗୀୟ ପଦ ସଂରଚନା ରୀତିରେ ଭେଟୁ।

''ଜଳି ଯାଉଚି ସେ
ନିଭାଅ ତାହାକୁ
ତ୍ରିପଥ ଗାମିନୀ ସୁରଧୁନୀ
ଶିଳାଦେହ ତାର
ପରଶ ନକର
ତରଳି ଯାଉଛି ଗଉତମୀ।
ବହିଯାଉଚି ସେ
ନଈପରି ତାକୁ
ଧାରଣ କର ହେ ମହୋଦଧି
ଉଡ଼ି ଯାଉଚି ସେ
ଶ୍ୱେତ ରାଜହଂସୀ
ନଭେ ଜାଲ ପାତ ନିରବଧି।'' (୨୪)

ଶବ୍ଦ ପ୍ରୟୋଗରେ ଆଜିର କବିତାରେ ଆମେ ଲକ୍ଷ୍ୟ କରୁ ଯେ କବି କଥିତ ଭାଷା ସହିତ ରୋମାଣ୍ଟିକ୍-- ତତ୍ସମ ଓ ତଦ୍ଭବ ଶବ୍ଦ ମଧ୍ୟ ବ୍ୟବହାର କରିବାରେ ଆଗ୍ରହୀ। ଇଂରାଜୀ ଭାଷାରେ ବିଶେଷ୍ୟ ପଦକୁ କ୍ରିୟା ରୂପରେ ପ୍ରଚଳନ କରିବାର ଆଧିକ୍ୟ-ପରମ୍ପରାକୁ ଓଡ଼ିଆରେ ମୁଖ୍ୟତଃ ରାଜେନ୍ଦ୍ର ପଣ୍ଡା ଓ ହରପ୍ରସାଦ ଦାସ ପ୍ରଚଳନ କରୁଛନ୍ତି। ତାହା କ୍ରମଶଃ ସଂଚରଣଶୀଳ ହେଉଥିବାର ଦୃଷ୍ଟିଗୋଚର ହୁଏ। ଲୋକଗୀତର ଶୈଳୀ ଓ କଥୋପକଥନ ରୀତି ମଧ୍ୟ ଓଡ଼ିଆ କବିତାରେ ପୁଣି ମୁଣ୍ଡ ଟେକୁଛି। କବି ଶରତ ଚନ୍ଦ୍ର ପ୍ରଧାନ ଓ କମଳାକାନ୍ତ ଲେଙ୍କାଙ୍କ ହାତରେ ଏହା ଉତ୍କର୍ଷତା ଲାଭ କରିପାରିଛି। ଦୁଇଟି ଉଦାହରଣ ନିଆଯାଉ।

(କ) ସମୟର ବୁଢ଼ାହାତୀ

ଝୁଲିଚିରେ ଝୁଲୁଚି,
କୁହୁଡ଼ିଆ ବାଆ ଖାଇ ଫୁଲୁଚି।
ଅନ୍ଧାରିଆ ହୋ ରାତ୍ ସଜ୍ଜାନା
ଗୁହାରିଆ ଡ଼ାକଦିଏ ଶୁଣୁଚ?
ବୁଢ଼ାହାତୀ ଶୂନ୍ୟଟାକୁ
ଥୋଡ଼ପାରେ ଭିଡୁଚି, କୁହୁଡ଼ିଆ
ବାଆ ଖାଇ ଫୁଲୁଚି।" (୨୫)
"ମା' କହୁଚି ଝିଅଲୋ: ନଈ ବଢ଼ିଲାଣି ଦେଖ୍।
ଝିଅ କହୁଚି ମା'ଲୋ: ଢ଼େଉ କୂଳଖାଇଲାଣି ରଖ୍।
ମା' କହୁଚି ଝିଅଲୋ: ବଉଳୁଚି ଗଛର ପତର।
ଝିଅ କହୁଚି ମା'ଲୋ: କିଆ ଫୁଲରୁ ହୁଏ ଅତର।
ମା' କହୁଚି ଝିଅଲୋ: ଆକାଶ ଫରଚା ଦିଶଇ।
ଝିଅ କହୁଚି ମା'ଲୋ: ବେହେଡ଼ା ଆଲୁଅ
ଉଁଆସ ପରଶ ମାଗଇ"। (୨୬)

ଆଜିର କବିତାରେ ଗୁରୁପ୍ରସାଦ ମହାନ୍ତିଙ୍କ ପରେ ପରେ ବେଣୁଧର, ସୀତାକାନ୍ତ, ଦୀପକ ଓ ପ୍ରତିଭା ମିଥ୍‌କୁ ମୁଖ୍ୟଭାବରେ ଗ୍ରହଣ କରିଥିବାର ଲକ୍ଷଣୀୟ। ପରେ ପରେ ରମାକାନ୍ତ, ସୌଭାଗ୍ୟ, ସୌରୀନ୍ଦ୍ର ଓ ରାଜେନ୍ଦ୍ର ଏହାପ୍ରତି ଉନ୍ମୁଖ ହୋଇଥିବାର ଜଣାପଡ଼େ। ରମାକାନ୍ତ 'ଶ୍ରୀରାଧା' ପରେ ମିଥ୍‌କୁ ଯେଉଁ ନବରୂପ ପ୍ରଦାନ କଲେ ତା'ପରେ ଦିଲ୍ଲୀପ ଦାସଙ୍କ 'ନୀଳମାଧବ', ସୁରେଶ ପରିଡ଼ାଙ୍କ 'କାହ୍ନୁ', ପ୍ରତିଭା ଶତପଥୀଙ୍କ 'ଶବରୀ', ହୃଷୀକେଶ ମଲ୍ଲିକଙ୍କ 'ଅହଲ୍ୟା', ରାଜେନ୍ଦ୍ର ପଣ୍ଡାଙ୍କ 'ଅନ୍ୟା', ଓ ଶତ୍ରୁଘ୍ନ ପାଣ୍ଡବଙ୍କ 'ପଦ୍ମ' ଆଦି କବିତା ତା'ର ଉତ୍ତର ଦାୟାଦ ଭାବରେ ବେଶ୍ ପରିବର୍ଦ୍ଧିତ ଅବସ୍ଥାରେ ପହଞ୍ଚିଛନ୍ତି। ମିଥ୍-ମାନସିକତା ଆଜିର କବିତାରେ ସଚଳତା ଲାଭ କରିଛି ଯାହା ଆଗାମୀ କାଲିର କବିତାରେ ପ୍ରମୁଖ ସ୍ଥାନ ଲାଭ କରିବାର ସମ୍ଭାବନା କରାଯାଏ। ଆସନ୍ତା କାଲିର କବିତା ସମ୍ପର୍କରେ ଆଜିର ରସିକ ପାଠକ-ସମାଲୋଚକ କମ ଆଶାବାନ୍ ନୁହେଁ। "ଓଡ଼ିଆ କବିତାର ଭବିଷ୍ୟତ ପ୍ରତି ଆମେ ଯଥେଷ୍ଟ ଆଶାନ୍ୱିତ ହେବା ସ୍ୱାଭାବିକ୍। କବିତାର କ୍ରମ ବିବର୍ତ୍ତନରୁ ସୂଚନା ମିଳେ ଯେ, ଭବିଷ୍ୟତର କବିମାନେ ନିର୍ମଳ କବିତ୍ୱ କରିବାକୁ ଆଗ୍ରହୀ ହେବେ। ପାଠକର ରସ ସ୍ୱାଦନକୁ ନିଜର କାବ୍ୟ ସୃଷ୍ଟିଠାରୁ ଗୁରୁତ୍ୱପୂର୍ଣ୍ଣ ମନେ କରିବେ। ଫଳରେ କବିତା ଏକ ନୂତନ ଦିଗନ୍ତ ସ୍ପର୍ଶ କରିବାକୁ ସମର୍ଥ ହେବ। କିନ୍ତୁ ବର୍ତ୍ତମାନ ଠାରୁ ଏ ଦିଗରେ ତତ୍ପରତା ପ୍ରକାଶ ପାଇବା ଉଚିତ। ଯଥାଶିଘ୍ର ନୂତନ ଆଲୋଡ଼ନ ସୃଷ୍ଟି ନହେଲେ ପାଠକର ସ୍ପୃହାହୀନତା ଜନିତ ଅବକ୍ଷୟକୁ ରୋକିହେବ ନାହିଁ।"(୨୭) ପ୍ରବୀଣ ସମାଲୋଚକ-କବି ଡ଼ଃ ହରିଚନ୍ଦନ ଏ ଯେଉଁ ଗଭୀର ଆଶା ଓ ପ୍ରତ୍ୟୟ ରଖିଛନ୍ତି ତାହା ବୋଧହୁଏ ଫଳବତୀ ହେବାକୁ ଯାଉଛି। କବି ଶ୍ରୀ ହରିଚନ୍ଦନଙ୍କ କବିତାରେ ଏହି ନୂତନ ଆଶା ବି ଝଲସିତ ହୋଇଥିବାର ଲକ୍ଷ୍ୟ କରାଯାଏ। 'ଶୁଭରାତ୍ରି' କବିତାରେ ସେ କେତେ ସତ, କେତେ ବାସ୍ତବ ଓ କେତେ ସରଳ ଦେଖନ୍ତୁ-

"ପିଲାଦିନ ପ୍ରାର୍ଥନାର ପ୍ରଥମ ଧାଡ଼ିଟି ମୋର ମନେ ପଡ଼େ

ଉଚ୍ଚସ୍ୱରେ ଗାଇବାକୁ ପ୍ରବଳ ସଙ୍କୋଚ
କାରଣ ମୁଁ ଅର୍ଥସବୁ ବୁଝିଲିଣି
ଆଉ କ'ଣ ପ୍ରତାରଣା କରିହେବ ଆକାଶକୁ ?
ତା' ଆଡ଼କୁ '.ତର୍କରେ ଚାହିଁ ଚାହିଁ
ସମୟ କଟୁଛି ମୋର ଅପେକ୍ଷାରେ,
ଖାଲି ଅପେକ୍ଷାରେ।'' (୨୮)

ଏ ଦଶକରେ ମୁଖ୍ୟତଃ ପ୍ରସିଦ୍ଧି ଲାଭ କରିଥିବା ତଥା ସଚେତନ ପାଠକମାନଙ୍କର ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରିଥିବା ଦୁଇଜଣ ତରୁଣ କବିଙ୍କର ଦୁଇଟି ପଦକୁ ଉଦ୍ଧାର କରି ଆମେ ଆଗାମୀ କାଲିର କବିତା ସମ୍ପର୍କରେ ଆଶାବାନ୍ ହୋଇପାରିବା। ରମାକାନ୍ତ ଓ ରମାକାନ୍ତ ସମକାଳୀନ କାବ୍ୟଧାରାକୁ ବାଦ ଦେଲେ ଏମାନେ ହିଁ ଏକ ନୂତନ ଦିଗ ଓ ସମୟକୁ ବହନ କରି ଚାଲିବେ। ତରୁଣ କବି ହୃଷୀକେଶ ମଲ୍ଲିକ ସୀତାକାନ୍ତ ମହାପାତ୍ରଙ୍କର ଜଣେ ସଫଳ ଉତ୍ତର ଦାୟାଦ ଭଳି ପ୍ରତୀତ ହେଉଥିବା ବେଳେ ନୃସିଂହ ପ୍ରସାଦ ତ୍ରିପାଠୀ, ମମତା ଦାଶ ଓ ଶତ୍ରୁଘ୍ନ ପାଣ୍ଡବ ରମାକାନ୍ତଙ୍କ ଇଲାକାର ଉଦୀୟମାନ କବି ଭାବରେ ଆଗେଇ ଆସୁଛନ୍ତି। ତଥାପି ସେମାନଙ୍କର ନୂତନ ଦିଗନ୍ତ ଓ ଧାରାରେ ସ୍ୱକୀୟତା ସ୍ପଷ୍ଟ ହୋଇ ଉଠିଲାଣି। କବି ହୃଷୀକେଶ ମଲ୍ଲିକ ଶବ୍ଦକୁ ସମ୍ବୋଧନ କରନ୍ତି- ''ଶବ୍ଦ, ମୋ ଅଲିଅଳି ! କୋଉଠି ତତେ ହାବୁଡ଼ିଥିଲି କହତ, ପହିଲିବାର ? କୋଉଠୁ ତତେ ଗୋଟେଇ ଆଣିଥିଲି ? ସଂଜସଂଜିଆ ଗୋହିରୀରୁ ? ଗାଧୁଆ ତୁଠରୁ ? ନା କଟା ସରିଥିବା ଧାନ ବିଲରୁ ?'' (୨୯) କବି ଧାନବିଲରୁ ଶବ୍ଦ ଗୋଟାନ୍ତି ଠିକ ଧାନ ସାଉଁଟା ଝିଅ ଧାନ ପାଖୁଡ଼ି ସାଉଁଟିଲା ପରି। ଧାନ ସାଉଁଟୁଥିବା ଝିଅଟି ପ୍ରତି କବିର ଗଭୀର ମାନବିକତା ଓ ହୃଦୟବତ୍ତା ପ୍ରକଟିତ। ଧାନକଟା ସରିଥିବା ବିଲ ହିଁ ତା ପାଇଁ ସ୍ୱର୍ଗ। ତା'ପାଇଁ ସବୁ କିଛି। ଜୀବନକୁ ଚିହ୍ନିଛି କବି। ସଂସାରକୁ ଚିହ୍ନିଛି। ମାଟିକୁ ଚିହ୍ନିଛି। ସେହି ମାଟିର ଆକର୍ଷଣ କେତେ ଯେ ଶକ୍ତ ! ତୁଚ୍ଛା ଧାନ କିଆରୀ ପାଇଁ ବି ଝିଅର କମ ମାୟା ମୋହ ନୁହେଁ !

''କ୍ରମେ ଛାଇ ବୁଲିଯାଏ,
ଡ଼ହକା ଦିନ ସଂଜେଇ ଯାଏ।
ଧାନ ସାଉଁଟା ଝିଅଟି, ପାଛିଆ ମୁଣ୍ଡରେ ଥୋଇ
ଧାନ କ୍ଷେତକୁ ପିଠିକରେ।
ଚଉଁରା ମୂଳରେ ଶଂଖ ବାଜେ, ବିଲୁଆ ଭୁକେ।
କେଡ଼େ ଚହଲରେ ଘୋଟି ଆସୁଥାଏ
ବଡ଼ କଟେ ନୀରବତା !
ଏକଲା ଝିଅ !
ପାଛିଆ ମୁଣ୍ଡେଇ, ଘରକୁ ଫେରୁ ଫେରୁ
ଶହେବାର ସେ ପଛକୁ ଚାହେଁ।
କିଏ ନେଇଯାଏ କେଜାଣି, ତା ଥଂଟା ନଡ଼ାର କ୍ଷେତକୁ
ରାତି ଗୋଟାକରେ: ଧାନ ସାଉଁଟା ଝିଅ ଜାଣେ

ଦି'ନି ଧପାଟୁଥିବା ବସୁଧାରୁ, କି'ମହୁ
ଝରେ କେଜାଣି: ଧାନ ସାଉଁଟା ଝିଅ ଜାଣେ।'' (୩୦)

କବି ଶତ୍ରୁଘ୍ନ ପାଣ୍ଡବଙ୍କ କାବ୍ୟଜଗତ ଏହି ଜୀବନ ଯନ୍ତ୍ରଣା ଓ ଦଗ୍ଧୀଭୂତ ପରିବେଶରେ ଖାଲି ଅଶ୍ରୁ ବିସର୍ଜନ କରେନା। ସେ ଦୁଃଖକୁ--ଅଶ୍ରୁକୁ ଅଙ୍ଗୀକାର କରିବାରେ ଆଶାୟୀ। ଏହାହିଁ ତ ଜୀବନ। ତାକପାଇଁ ଧୂସର ଅନ୍ଧାର ଓ ରୁକ୍ଷ ହା-ହାକାର ଭିତରେ ଧାନ ସାଉଁଟା ଋତୁ ଆସିଯାଏ। ଯନ୍ତ୍ରଣା ତ କେବେ ସରେନି। ସେ ଥିବା ତା' ଭିତରେ ବର୍ଷା ଆସିବ। ବୀଜ ଗଜେଇ ଉଠେ, ମଂଜରି ଉଠେ। ଫୁଲ ଫଳରେ ଗଛ ଗର୍ଭବତୀ ହୋଇଯାଏ। ଜୀବନ ଜୀବନ ବୋଲି ଚତୁର୍ଦ୍ଦିଗରେ ହୁରି ପଡ଼ିଯିବ।

''ଶବ୍ଦର ମାନେଇତ ବିନ୍ଦୁ ବିନ୍ଦୁ ରକ୍ତ: ଅଶ୍ରୁର ଆବେଶ
ଶବ୍ଦମାନେ ତୋ ଦୀର୍ଘାୟୁ ଯନ୍ତ୍ରଣାର ଶ୍ୟାମଳ ପାହାଚ।
ଯନ୍ତ୍ରଣାମାନେଇତ ବିହନ ଓ ସବୁଜ ସାର।
ଶବ୍ଦର ଗନ୍ଧରେ ବନ୍ଦୀ ବର୍ଷାର ସଂସାର।
ବର୍ଷା ବିନ୍ଦୁ ପଡ଼ିଲା ସବୁଠି, ବର୍ଷା କେତେ ଗାଢ଼
ଶସ୍ୟର ଋତୁ ଛୁଇଁଲା ଟାଙ୍ଗର ପାହାଡ଼
ଫଟା ଭୂଇଁର ଶୋଷ, ମୃତ ଚଢ଼େଇଙ୍କ ହାଡ଼
ବର୍ଷା ବିନ୍ଦୁ ପଡ଼ିଲା ସବୁଠି, ବର୍ଷା କେତେ ଗାଢ଼!

\+ +

ଯନ୍ତ୍ରଣା ସରୁ ନଥିଲା, ଶସ୍ୟ କେଣ୍ଡାମାନେ
ଗର୍ଭବତୀ ହେଲେ, ପବନରେ ଉଡ଼ିଲା କେଶର
କେଣ୍ଡାମାନେ ଦୁଗ୍ଧବତୀ ହେଲେ, ବସିଲା
ମହୁମାଛିଙ୍କ ଆସର।
ଯନ୍ତ୍ରଣା ସରୁନଥିଲା ଏବଂ ବିଚିତ୍ର ମହକଟିଏ
ଭାଷାହୀନ ସଙ୍ଗୀତ ହୋଇ ସେଠି ବୁଲିଗଲା।'' (୩୧)

ଏ ଆଲୋଚନାର ଶେଷ ପର୍ଯ୍ୟାୟରେ କବି ମମତା ଦାଶ ଓ ନୃସିଂହ ତ୍ରିପାଠୀଙ୍କର ଦୁଇଟି ପଦ ନେଇ ନିରୀକ୍ଷଣ କଲେ ଆଗାମୀ କବିତାର ରୂପରେଖ ସମ୍ପର୍କରେ ଯେ କେବଳ ସୂଚନା ମିଳିବ ତା' ନୁହେଁ ବରଂ ଏ ଦିଗରେ ଯେ ଏକ ସଚେଷ୍ଟ ଉଦ୍ୟମ ଜାରି ରହିଛି ତାହା ଜାଣିହେବ।

ମମତା ଦାଶ:

''ଅତିବେଶୀରେ ମୋର ଲୋଡ଼ା,
ଗୋଟିଏ ମାତ୍ର ସୂର୍ଯ୍ୟୋଦୟ,
ସମୁଦ୍ର କୂଳରେ,
ନହେଲେ, ନାହିଁବା
କେଇ ହାତ ଖୋଲା ଆର୍ଦ୍ରମାଟି,
ମୋତେ ବାହାରକୁ ନେଇ ଚାଲ।'' (୩୨)

ନୃସିଂହ ପ୍ରସାଦ ତ୍ରିପାଠୀ:

"ମୁଁ ଯିଏ, ତୁ ଯିଏ, ଯେତେ ପ୍ରାଣୀ ପଥର
ଉଦ୍ଭିଦ, ଭିନ୍ନ ଭିନ୍ନ ଜଣାଯାଏ
ଚମଡ଼ା ଆଖିରେ,
କିନ୍ତୁ ମୁଁ -- ଖାଲି ମୁଁ
ମୁଁ -- ମୁଁ.. ମୁଁ ସବୁଠାରେ ।" (୩୩)

ଆଗାମୀ କବିତା ସମ୍ପର୍କରେ ସ୍ୱୟଂ କବି ଏହିପରି ଆଶାବାନ୍ -- 'ଆମର କବିତାରେ ଖୋଜା ଲୋଡ଼ାର ପରିମାଣ କିଛି କମ ନୁହେଁ। ଅନେକ କ୍ଷେତ୍ରରେ ସେ ଖୋଜାଲୋଡ଼ାର ଅନ୍ତର୍ଦାହ ନାହିଁ, ଅଛି ତାକୁ ଏକ କାବ୍ୟଶୈଳୀରେ ପରିଣତ କରିବାର ଅଭିଳାଷ। କିନ୍ତୁ ମୋର ଧାରଣା ଯେ ଅନେକ କ୍ଷେତ୍ରରେ ଅନେକ ବ୍ୟାକୁଳତା ଅଛି ଏବଂ ଫଳତଃ ଏପରି କିଛି ଲେଖାଯାଇ ପାରୁଛି ଯାହାର କୌଣସି ଧାଡ଼ିରେ କିଛି ସମୟ ନରହି ଆଗକୁ ଯାଇ ହେଉନାହିଁ।" (୩୪) ସମୟ ହିଁ ଏହାର ନିୟାମକ ଏବଂ ଆସନ୍ତା କାଲିର କବିତାର ଧାରା ସମ୍ପର୍କରେ, ଆମେ ଯେଉଁମାନେ ସାହିତ୍ୟକୁ ଓ ଜୀବନକୁ ଭଲ ପାଉଛୁ ନିଶ୍ଚୟ ଆଶାବାନ ହେବୁ।

ପାଦଟୀକା

୧. A History of English Literature- A.C. Rickett- p68
୨. My Recollection of Lenin- Clare Zetkin- pp. 19-20
୩. ସଂସ୍କୃତିର ବୈପ୍ଳବିକ ମୂଲ୍ୟବୋଧ -- ରବି ସିଂହ -- ପୃ ୧୪୭
୪. Future Poetry -- Sri Aurobindo -- p. 330
୫. ଝଙ୍କାର- ସମ୍ପାଦକୀୟ- ଡ଼ଃ ହରେକୃଷ୍ଣ ମହତାବ- ୨୧ଶ ବର୍ଷ- ବିଷୁବ ସଂଖ୍ୟା।
୬. On Literature and Art --Mao- Tse- Tung -- Foreign Language Press- Peking 1967 -- p 19
୭. Selected Works of Lu- Hsin- Vol- III- 1959
୮. ଆସନ୍ତା କାଲିର ସାହିତ୍ୟ -- ପ୍ରାଣନାଥ ପଟ୍ଟନାୟକ- ପୃ ୧୩୦
୯. ସାମ୍ପ୍ରତିକ ପ୍ରଗତି ସାହିତ୍ୟ -- ସଙ୍କଟରେ ସାହିତ୍ୟ ସଭ୍ୟତା ସଂସ୍କୃତି- ଗୁରୁଚରଣ ପଟ୍ଟନାୟକ- ପୃ ୮୭
୧୦. ନବ ଅଭିଷେକ -- କୁଟି -- ରବି ସିଂ
୧୧. ବିପ୍ଳବ -- ଏସିଆର ସ୍ୱପ୍ନ -- ସଚ୍ଚି ରାଉତରାୟ
୧୨. କେତେ କ୍ଳାନ୍ତି -- ଦୁର୍ଗାମାଧବ ମିଶ୍ର -- ପାଞ୍ଚଜନ୍ୟ- ପୂଜା- ୧୯୮୨
୧୩. ମୁଁ - ସୀତାକାନ୍ତ ମହାପାତ୍ର -- ଝଙ୍କାର- ପୂଜା ୧୯୮୨
୧୪. ଆସ ଏଥର ଯିବା -- ସୌରୀନ୍ଦ୍ର ବାରିକ -- ପାଞ୍ଚଜନ୍ୟ- ପୂଜା- ୧୯୮୨
୧୫. ଯେଣେ ଚାହିଁଲେ କିଛି ନାହିଁ -- ଗୌତମ ଜେନା -- କାକଳି- ପୂଜା ୧୯୮୨
୧୬. ବୀଜ ବିକ୍ଷେପ -- ରାଜେନ୍ଦ୍ର ପଣ୍ଡା -- ଆସନ୍ତାକାଲି- ପୂଜା ୧୯୮୨
୧୭. ପଦ୍ମଫୁଟିବାର ଦୃଶ୍ୟ -- ଶତ୍ରୁଘ୍ନ ପାଣ୍ଡବ -- ଝଙ୍କାର- ସେପ୍ଟେମ୍ବର ୧୯୮୮
୧୮. ନୂତନ ସ୍ୱାକ୍ଷର -- ସରୋଜ ରଞ୍ଜନ ମହାନ୍ତି -- ଝଙ୍କାର ପୂଜା ୧୯୮୨
୧୯. ପ୍ରିୟତମା -- ଫନୀ ମହାନ୍ତି -- ଆସନ୍ତାକାଲି- ପୂଜା ୧୯୮୨
୨୦. ଗୋପନତମ କଥାଟି -- ପ୍ରତିଭା ଶତପଥୀ -- ପାଞ୍ଚଜନ୍ୟ- ପୂଜା ୧୯୮୨
୨୧. ଦୃଶ୍ୟ- ଶତ୍ରୁଘ୍ନ ପାଣ୍ଡବ -- ଇସ୍ତାହାର -- ପୂଜା ୧୯୮୨

୨୨. ଓଡ଼ିଆ କବିତା: ସାଂପ୍ରତିକ ସ୍ୱର ଓ ଏହାର ଭବିଷ୍ୟତ- ପ୍ରମୁଖ କବି କତିପୟ- ଡ଼ଃ. ନିତ୍ୟାନନ୍ଦ ଶତପଥୀ- ପୃ ୨୯୫

୨୩. ତୁମ ଅନୁପସ୍ଥିତି -- ସୌରୀନ୍ଦ୍ର ବାରିକ -- ସଂଯୋଗ- ପୂଜା ୧୯୮୨

୨୪. ଅନ୍ୟା -- ରାଜେନ୍ଦ୍ର କିଶୋର ପଣ୍ଡା- ପୃ ୯୭

୨୫. ନିତ୍ୟ ନିୟମିତ- କବିତା ନଂ- ୫୧- କମଳାକାନ୍ତ ଲେଙ୍କା

୨୬. ତଦ୍ରୈବ- କବିତା ନଂ ୩୭

୨୭. ଓଡ଼ିଆ କବିତାର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ: ଏକ ପରମ୍ପରା ସୂତ୍ର- ଡ଼ଃ ନୀଳାଦ୍ରି ଭୂଷଣ ହରିଚନ୍ଦନ- ଝଂକାର ବିଷୁବ- ୧୯୯୦- ପୃ ୩୪

୨୮. ଶୁଭରାତ୍ରି- ନୀଳ ଚନ୍ଦନର ଭୁଲ ଠିକଣା- ନୀଳାଦ୍ରି ଭୂଷଣ ହରିଚନ୍ଦନ

୨୯. କହୁଚି ଏତିକି- ଧାନ ସାଉଁଟା ଝିଅ- ହୃଷୀକେଶ ମଲ୍ଲିକ

୩୦. ତଦ୍ରୈବ- ପୃ ୮୭-୮୮

୩୧. ଧାନ ସାଉଁଟିବା ଋତୁ- ନିଃଶ୍ୱାସର ତାଳପତ୍ର- ଶତ୍ରୁଘ୍ନ ପାଣ୍ଡବ ପୃ ୮୧-୮୨

୩୨. ସମୁଦ୍ର କୂଳରେ- ନୈମିଷାରଣ୍ୟ- ମମତା ଦାଶ

୩୩. ପ୍ରଭାତର ପ୍ରଥମ ପର୍ବ- ପୂର୍ବଦିଗ- ନୃସିଂହ ପ୍ରସାଦ ତ୍ରିପାଠୀ

୩୪. କବି ରମାକାନ୍ତ ରଥଙ୍କ ସହ ସାକ୍ଷାତକାର- କୋଣାର୍କ- ୭୬ତମ ସଂଖ୍ୟା- ୧୯୯୦- ପୃ ୭୮

# ଶେଷ କଥା

## କବିତାର ଡ଼ାକ :

କବି ରମାକାନ୍ତ ରଥ ଦୀର୍ଘ ଚାରି ଦଶନ୍ଧି (୧୯୫୦-୯୦) ଧରି କବିତା ଲେଖା ଭିତରେ ନିଜକୁ ସାମିଲ କରି ଆସିଥିଲେ ମଧ୍ୟ ଏବେ ବି ସେ ପ୍ରତିଭା ସୃଷ୍ଟିଶୀଳ। ଯଦିଓ କବିତା ଲେଖାରୁ ନିଜକୁ ନିବୃତ୍ତ ରଖିବାକୁ ମାନସିକ ସ୍ତରରେ କେତେବାର ସେ ସ୍ଥିର କରିଛନ୍ତି ତଥାପି ସେ ପାରି ନାହାନ୍ତି। "ସପ୍ତମ ଋତୁ ଲେଖିବା ପରେ ଅନେକ ସମୟରେ କବିତା ଲେଖିବାରୁ ନିବୃତ୍ତ ହେବାକୁ ଇଚ୍ଛା ହୋଇଛି, ତା ସତ୍ତ୍ୱେ ମୂଳତଃ ଦୁଇଟି କାରଣ ଯୋଗୁଁ ମୁଁ ଅଦ୍ୟାପି କବିତା ଲେଖୁଛି। ପ୍ରଥମତଃ କବିତାଲେଖା ଆପଣା ଛାଏଁ ବନ୍ଦ ହେବ ନିଶ୍ଚୟ, ଏବଂ ଯାହା ଅନିବାର୍ଯ୍ୟ ତା'ପାଇଁ ଯୋଜନାବଦ୍ଧ ଉଦ୍ୟମର ଆବଶ୍ୟକତା କ'ଣ? ଦ୍ୱିତୀୟତଃ, ଜୀବନର ହିସାବ ନିକାଶ କଲାବେଳେ ମୋ'ଉପରେ କିଛି ବକେୟା ପାଉଣା ନରହୁ ବୋଲି ଚେଷ୍ଟା କରିବା ଫଳରେ କିଛି କବିତା ଲେଖିହୋଇଯାଏ, ଯଦିଓ କବିତା ଲେଖିବା ସହିତ ଏକ ଋଣମୁକ୍ତ ଅବସ୍ଥାର ସମ୍ପର୍କ କ'ଣ ମୁଁ ତାହା ଠିକ ବୁଝାଇ ପାରିବି ନାହିଁ। ନିଜର ପରମାୟୁ ଯେତେଯେତେ ଅତିକ୍ରାନ୍ତ ହୋଇ ଯାଉଥାଏ, ନିଜେ ଦେଣାଦାର ହୋଇ ଯିବାର ଭୟ ସେତେସେତେ ମାଡ଼ି ପଡୁଥାଏ। ନିଜର ବିଚାର ଶକ୍ତି ଠିକ କାମ କରୁଥିବା ଅବସ୍ଥାରେ ଅବଶ୍ୟ ବୁଝାଯାଏ ଯେ କବିତା ଲେଖି ଏ ଆତଙ୍କରୁ ନିଷ୍କୃତି ମିଳିବ ନାହିଁ। ନିଜର ବକ୍ତବ୍ୟ ସବୁବେଳେ ଅପ୍ରକଟ ରହିଯିବ ଏବଂ ନିଜର ଗୂଢ଼ତମ ଅନୁଭୂତି କଦାପି ଶବ୍ଦଗତ ହେବ ନାହିଁ ବୋଲି ମୁଁ ବହୁତ ଦିନରୁ ଜାଣି ସାରିଛି, + + + । କବିତା ଲେଖା ବନ୍ଦ କରିବା ପାଇଁ ଐକାନ୍ତିକ ଇଚ୍ଛା, ଏବଂ ଲେଖିବାର ଅବୋଧ ଅଥଚ ଦୁର୍ବାର ଆକର୍ଷଣ ଏଡ଼େଇ ଦେବାରେ ଅସମର୍ଥତା, ଏ ଉଭୟ ସ୍ଥିତିରେ ଏକକାଳୀନ ଅବସ୍ଥିତି କଷ୍ଟପ୍ରଦ ନିଶ୍ଚୟ; କିନ୍ତୁ ସାନ୍ତ୍ୱନା ଏତିକି ଯେ ଅନ୍ୟସବୁ ଘଟଣା ପରି ଏହାର ବି ଅବସାନ ହେବ ଏବଂ ତା'ପରେ ଏକ କଷ୍ଟପ୍ରଦ ଅଭିଜ୍ଞତାର କିଛି ବି ତାତ୍ପର୍ଯ୍ୟ ରହିବ ନାହିଁ।"(୧) ଠିକ ଏହି କଥା ପ୍ରସିଦ୍ଧ ବଙ୍ଗୀୟ କବି ବୁଦ୍ଧଦେବ ବସୁ ସାହିତ୍ୟିକ ନରେଶ ଗୁହଙ୍କୁ ଏକ ପତ୍ରରେ ଲେଖିଥିଲେ- "ସତକଥା କହିବାକୁ ଗଲେ କବିତା ଆମେ ଲେଖୁନାହିଁ, କୌଣସି କୌଣସି କବିତା ଆମଦ୍ୱାରା ନିଜକୁ ଲେଖେଇ ନିଅନ୍ତି। ତା'ର ରୂପ, ଛନ୍ଦ, ଗଢ଼ଣ, ସମସ୍ତ ନେଇ ସେ ଆସେ, ଯାହାକୁ କୁହାଯାଏ ଆମକୁ ଡ଼ାକିଦିଏ, ଆମେ ସେ ଆଦେଶ

ପାଳନ କରୁ ମାତ୍ର।'' (୨) ତେଣୁ ଏହି ଡ଼ାକରାକୁ ସହଜରେ ଏଡ଼େଇ ଦିଆଯାଇ ନପାରେ। ରକ୍ତନଦୀ ପାର ହୋଇ ବ୍ୟାସସରୋବରର ନିଭୃତ କକ୍ଷରେ ଆତ୍ମଗୋପନ କରିଥିଲେ ମଧ ଭୀମ ରଡ଼ିରେ ତାକୁ ସବୁ ଦ୍ୱାର ଉନ୍ମୁକ୍ତ କରି ହାଜର ହେବାକୁ ପଡ଼ିବ। କବିତାଟିଏ ପାଇଁ ସେ ସବୁକୁ ସବୁର୍ କରିନେବାରେ ପ୍ରୟାସୀ।

''ଗୋଟିଏ କବିତା ପାଖେ ନତଜାନୁ ହୋଇ ମୁହିଁ
ମାଗିନେବି ଶିରସ୍ତ୍ରାଣ, କବଚ କୁଣ୍ଡଳ।
ଅମରତ୍ୱ ଲୋଡ଼ା ନାହିଁ ମୋର
ଗୋଟିଏ କବିତା ପାଇଁ ଜହ୍ନ ପାଖେ ଠିଆ ହୁଏ ମେଘ।
+ + +
ଗୋଟିଏ କବିତା ପାଇଁ
ଗୋଲାପରେ ଏତେ ବାସ୍ନା, ପେଲବତା କିଶୋରୀ ସ୍ତନରେ
ତା'ଲାଗି ସହସା ଯାଏ ଜାନୁସନ୍ଧି ଗୋପନତା ଭରି
କବିତା ଗୋଟିଏ
ଶିଶୁର ଦରୋଟି ଖେଳେ
ମାଛପରି ତରଳ ଅନ୍ଧାରେ।'' (୩)

ଯୁଗଯୁଗ ପାଇଁ କବି ନିକଟରେ ଶବ୍ଦର ଦୁର୍ଭିକ୍ଷ। ଆକାଶ ଭର୍ତ୍ତି ଶବ୍ଦ ଥିଲେ ବି ବିଚରା କବି ନିକଟରେ ଦାଉ ସାଧେ। ଆପଣାର ଅନୁଭୂତିକୁ, ଆପଣାର ଭାବକୁ ଠିକ ସମୟରେ ଠିକ ଭାବରେ ଅଭିବ୍ୟକ୍ତ କରିବାର ପ୍ରତିବନ୍ଧକ ହିଁ ଶବ୍ଦ। ଅପନ୍ତରା ଭିତରେ, ବିଜନତାର ପାଚେରୀ ବେଢ଼ାରେ ସେ ନୀରବତାର ପିଠିରେ ଛିଡ଼ାହୋଇ ଶବ୍ଦପାଇଁ ଅଳିକରି ବସେ। ସେ କବିତାଟିଏ ପାଇଁ--ଶବ୍ଦଟିଏ ପାଇଁ ଯୋଜନ ଯୋଜନ ପଥ ଚାଲିଛି।

''ନିଛାଟିଆ ନଈପାଖେ ଠିଆହୋଇ କରିଛି ଗୁହାରି
ମୋ ହାତରେ ବଂଶୀଧ୍ୱନି ମନ୍ତ୍ରପରି କିଛି ଶବ୍ଦ ଦିଅ
ଯାହାକୁ ମୁଁ ସାଇତିବି ଅକ୍ଷୟ ତୂଣୀରେ।'' (୪)

ବେଳେବେଳେ ଏହି ଶବ୍ଦକୁ କବି ଆଉ ସ୍ୱୟମ୍ଭୂ, ସ୍ୱୟଂ ସମ୍ପୂର୍ଣ୍ଣ ବୋଲି ଗ୍ରହଣ କରିବାରେ ଆନମନା ହୋଇ ଉଠେ। ତା'ପାଇଁ ଶବ୍ଦ ଯେମିତି, ''ଖାଲି ଭିତରେ ଜଳୁଥିବା ଦିକି ଦିକି ନିଆଁର ଟିକିଏ ଧାପ/ଅନ୍ଧାରି ମୂଳକର ନିର୍ମାୟା ଉଦାସୀନତାରେ/ପ୍ରାଣଛୁଆଁ ଟିକିଏ ଉତ୍ତାପ।''(୫) ଶବ୍ଦ ପ୍ରତି କି ଆତ୍ମିକ ଆବେଗ କି ହାର୍ଦ୍ଦିକ ମୋହ କବିଟିର। ଶବ୍ଦଟିଏ ପାଇଁ ସବୁ କିଛି ଏପଟସେପଟ ହୋଇଯାଏ। ଇହଜନ୍ମରୁ ପରଜନ୍ମ ଯାଏ ଖାଲି ଖୋଜା ଚାଲିଥାଏ ଶବ୍ଦକୁ।

''ଶବ୍ଦଟିଏ ଗଢ଼ାହେବ,
ଏଇଥିପାଇଁ ଆକାଶ ହଜାରେ ରଙ୍ଗ ବଦଳାଏ
ପବନ କେତେ ବାଗରେ ଗୀତ ଗାଏ
ସମୁଦ୍ର କାନ୍ଦେ ହସେ ଘୁଙ୍ଗା ବାଲିରେ ପିଟିହୁଏ
ସର୍ବଂସହା ବସୁନ୍ଧରା ଚାତକ ପରି ଚାହିଁରହେ

ଶବ୍ଦଟିଏ ଗଢ଼ାହେବ
ଏଇଥିପାଇଁ ଶହେ ଜନ୍ମ, ଶହେ ମୃତ୍ୟୁ ଲୋଡ଼ା ହୁଏ।"(୬)

ଶବ୍ଦକୁ ପାଇବାକୁ ଯାଉଥିବା କବିଟି ପୁଣି ସେହି ପ୍ରସୂତି କଷ୍ଟ ଭୋଗ କରେ। ବାରମ୍ବାର ଅଦୃଶ୍ୟ ରତିରେ ମଜ୍ଜିଯାଏ। ଶବ୍ଦ ସହିତ ନିତ୍ୟ ଶୃଙ୍ଗାରରତ ଥାଇ ମଧ୍ୟ ତଥାପି ଅତୃପ୍ତ ଅତୃପ୍ତ ଲାଗେ। ଏଇ ଭାବରୁ ହିଁ 'ସପ୍ତମ ଋତୁ' ପରେ ପରେ ପୁଣି ନୂତନ ଅଧିବାସ। ପୁନଶ୍ଚ ଶୃଙ୍ଗାର। ପୁନଶ୍ଚ ପ୍ରସୂତୀ। 'ସପ୍ତମ ଋତୁ'ରେ କବି ମୃତ୍ୟୁର ବୃହତ୍ତମ ଉତ୍ତରିତ ଭାବକୁ ଆପଣେଇ ପାରିଥିଲେ ମଧ ତଥାପି ସେ ଏଇ ମାଟିର ଜୀବନକୁ ଛାଡ଼ି ପାରୁ ନାହାନ୍ତି। ତେଣୁ ୧୯୮୨ ବେଳକୁ 'ସଚିତ୍ର ଅନ୍ଧାର' ଭିତରେ ଉତ୍ତର-ମୃତ୍ୟୁ ଜଗତରେ ପହଞ୍ଚିଯାନ୍ତି। ତଥାପି ସେ ଅନ୍ୱେଷଣର ଅନ୍ତିମ ମୁହୂର୍ତ୍ତ କାହିଁ? ସେ ଭାବ ଅଲୋଡ଼ା ଲୋଡ଼ାର ଭାବ। ୧୯୮୫ ବେଳକୁ 'ଶ୍ରୀରାଧା'ର ଜନ୍ମ। ଜୀବନ-ମୃତ୍ୟୁ, ବିରହ-ମିଳନ, ପ୍ରେମ-ଘୃଣା ପୁଣି ଇହକାଳ-ପରକାଳ ଓ ମାଟି-ଆକାଶ ଭିତରେ ଚେତନାର ସଂଘର୍ଷ। ଉତ୍ତରିତ ଚେତନାର ଏକ ମହାର୍ଘ ମୁହୂର୍ତ୍ତର ଝଲକ। ଏତିକିରେ ବି ଅନୁଭବ ସରିଯାଏନି। କହିବା କଥା ଠିକ ଭାବରେ ଓ ସର୍ବଶେଷ ଭାବରେ କହିହୁଏନି। ତେଣୁ ୧୯୮୫ ପରେ ପରେ 'ଶ୍ରୀ ପଳାତକ'ର ପାଦ ଶବ୍ଦ। ଏଠି ବି ଖୋଜା ଚାଲିଛି। ଚିହ୍ନା-ଅଚିହ୍ନାର ଭାବ ଓ ପାଇ ନପାଇବାର ମନୋବୃତ୍ତି ତଥାପି କ୍ରିୟାଶୀଳ।

ଏକ ଚିରସ୍ରୋତା ସ୍ରୋତସ୍ୱିନୀର ବେଗକୁ ମାପିବା ଦୁଃସାଧ ମନେହେଲେ ହେଁ ତଥାପି ତାର ଆବଶ୍ୟକତା ଥାଏ। ସେହିପରି ଏକ ଗତିଶୀଳ ଓ କ୍ରିୟାରତ କବିପ୍ରତିଭା ସମ୍ପର୍କରେ କୌଣସି ଚୂଡ଼ାନ୍ତ ମନ୍ତବ୍ୟ ଦେବା ଅସହଜ ଓ ଅସମୀଚୀନ ବୋଧ ହେଲେ ହେଁ ଏଥିରେ କାବ୍ୟପୁରୁଷର କ୍ରମ ବିବର୍ତ୍ତିତ ଧାରାକୁ ହିଁ ଯତ୍‌ସାମାନ୍ୟ ମପାଯାଇଛି। 'ଶ୍ରୀ ପଳାତକ' ପରେ କାବ୍ୟପୁରୁଷ କି ଆକାର କି ରଙ୍ଗ ଧାରଣ କରିବ ତାହା କେବଳ କାଳ କଷଟୀରେ ପରୀକ୍ଷିତ ହେବ।

ଭଲ କବିତା ତ କାଳକାଳ ପାଇଁ କିଛି ଅବୁଝା ରହିଯାଏ। ସେ ଅଛୁଆଁ ଅବୁଝା ଭାବ ଭିତରେ ହିଁ କିଛିଟା ବୁଝିଗଲା ପରି ଲାଗୁଥାଏ। କିଛିଟା ଛୁଇଁଗଲା ପରି ଜଣା ପଡୁଥାଏ। ସୃଷ୍ଟିର ରହସ୍ୟ ବିଂଶଶତାବ୍ଦୀର ଶେଷ ପାଦରେ ବୈଜ୍ଞାନିକ ଚେତନାର ଶୀର୍ଷ ବିନ୍ଦୁରେ (?) ବି ତଥାପି ଅନୁଦ୍‌ଘାଟିତ ନାହିଁକି? ଦ୍ୱିତୀୟ ଶତାବ୍ଦୀରେ ବୈଜ୍ଞାନିକ ଟଲେମି (Ptolemy) ପୃଥିବୀ ସ୍ଥିର ଓ ସୂର୍ଯ୍ୟ ଘୂର୍ଣ୍ଣାୟମାନ ବୋଲି ସିଦ୍ଧାନ୍ତଟିଏ ଉପସ୍ଥାପିତ କରିଗଲେ। ଅନେକ କାଳ ପର୍ଯ୍ୟନ୍ତ ଏହି ବିଶ୍ୱାସଟିକୁ ଜନସାଧାରଣ ଗ୍ରହଣ କରି ଆସିଥିଲେ ମଧ ତଥାପି ମନ ବୁଝିନଥିଲା। ଅନ୍ୱେଷଣ ଓ ଗବେଷଣା ଜାରି ରହିଲା। ଏଡ଼େ ବଡ଼ ବିଶ୍ୱାସଟାକୁ ଷୋଡ଼ଶ ଶତାବ୍ଦୀରେ ଜ୍ୟୋତିର୍ବିଦ କୋପରନିକସ୍ ଟାଳି ଦେଲେ। ସେ ଘୋଷଣା କଲେ ଯେ ସୂର୍ଯ୍ୟ ସ୍ଥିର। ପୃଥିବୀ ଘୂର୍ଣ୍ଣନଶୀଳ। ଏହି ନ୍ୟାୟ ହିଁ କବିତା ଓ ପାଠକ ପାଇଁ ପ୍ରଯୁଜ୍ୟ। କବିତା ଦୃଶ୍ୟ ଜଗତରେ ଥାଇ ଅଦୃଶ୍ୟର କଥା କହେ। ଜଣାଶୁଣା ରାଜ୍ୟରେ ଥାଇ ଅଜଣା ଇଲାକାର ସ୍ୱର ଶୁଣାଏ। ତେଣୁ ସେହି ଅମୂର୍ତ୍ତ ଚିନ୍ତାକୁ ମୂର୍ତ୍ତିମନ୍ତ କରିବାରେ ନିଜେ ତ କବି ଅର୍ଥାତ୍ ଦ୍ୱିତୀୟ ବ୍ରହ୍ମା ସକ୍ଷମ ନୁହେଁ, ଆଲୋଚକଟିଏ ବା କ'ଣ କରିପାରେ !!

## ପାଦଟୀକା

୧. ପୃଷ୍ଠବନ୍ଧ- ସଚିତ୍ର ଅନ୍ଧାର- ପୃ ୧୫୮

୨. 'ଚିଠି'-- ବୁଦ୍ଧଦେବ ବସୁ-- ନବରବି- ୪ର୍ଥ ବର୍ଷ, ୧ମ ସଂଖ୍ୟା, ଏପ୍ରିଲ ୧୯୭୪

୩. ଗୋଟିଏ କବିତା ପାଇଁ-- ଭାନୁଜୀ ରାଓ --ସମାବେଶ-୨୬ଶ ବର୍ଷ-୫ମ ସଂଖ୍ୟା

୪. ତତ୍ରୈବ

୫. ନୀରବତା, କବି-- ଆରଦୃଶ୍ୟ-- ସୀତାକାନ୍ତ ମହାପାତ୍ର- ପୃ ୮୯

୬. ତତ୍ରୈବ- ପୃ ୮୭

# ସହାୟକ ଗ୍ରନ୍ଥସୂଚୀ

## ମୌଳିକ ଉପାଦାନ


ଦାସ ଚୈତନ୍ୟ- ବିଷ୍ଣୁଗର୍ଭ ପୁରାଣ (୧)
ଦାସ ଅଚ୍ୟୁତାନନ୍ଦ- ଶୂନ୍ୟ ସଂହିତା (୨)
ଦାସ ଜଗନ୍ନାଥ- ଶ୍ରୀମଦ୍ ଭାଗବତ (୩)
ଦାସ ଦୀନକୃଷ୍ଣ- ରସକଲ୍ଲୋଳ (୪)
ଦାସ ଭକ୍ତ ଚରଣ- ମଥୁରା ମଙ୍ଗଳ (୫)
- ମନବୋଧ ଚଉତିଶା (୬)
ସାମନ୍ତସିଂହାର ଅଭିମନ୍ୟୁ- ବିଦଗ୍ଧ ଚିନ୍ତାମଣି (୭)
ରଥ ବଳଦେବ- କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ (୮)
ସ୍ୱାମୀ ଅପୂର୍ବାନନ୍ଦ- ଶ୍ରୀମଦ୍‌ଭାଗବତ ଗୀତା (ସମ୍ପାଦନା) (୯)
ଭଞ୍ଜ ଉପେନ୍ଦ୍ର- ଲାବଣ୍ୟବତୀ (୧୦)
ପାଣିଗ୍ରାହୀ କାଳିନ୍ଦୀ ଚରଣ- କ୍ଷଣିକ ସତ୍ୟ (୧୧)
ପଟ୍ଟନାୟକ ଅନନ୍ତ- କିଞ୍ଚିତ୍ (୧୨)
ଗଡ଼ନାୟକ ରାଧାମୋହନ- ଗଡ଼ନାୟକ ଗ୍ରନ୍ଥାବଳୀ (୧୩)
ମାନସିଂହ ମାୟାଧର- ମାନସିଂହ ଗ୍ରନ୍ଥାବଳୀ (୧୪)
ପଟ୍ଟନାୟକ ବୈକୁଣ୍ଠନାଥ- ବୈକୁଣ୍ଠନାଥ ଗ୍ରନ୍ଥାବଳୀ (୧ମ ଭାଗ) (୧୫)
ମହାପାତ୍ର ଖଗେଶ୍ୱର- ଚର୍ଯ୍ୟାଗୀତିକା (ସମ୍ପାଦନା) (୧୬)
ରାଓ ମଧୁସୂଦନ- ମଧୁସୂଦନ ଗ୍ରନ୍ଥାବଳୀ (୧୭)
ରାୟ ରାଧାନାଥ- ରାଧାନାଥ ଗ୍ରନ୍ଥାବଳୀ (୧୮)
ଭୋଇ ଭୀମ- ଭୀମଭୋଇ ଗ୍ରନ୍ଥାବଳୀ (୧୯)
ରାଉତରାୟ ସଚ୍ଚିଦାନନ୍ଦ -ସଚ୍ଚିଦାନନ୍ଦ ଗ୍ରନ୍ଥାବଳୀ (୧ ମଭାଗ) (୨୦)
- କବିତା- ୧୯୬୨ (୨୧)
- କବିତା ୧୯୬୭ (୨୨)
- କବିତା ୧୯୭୭ (୨୩)
- ଏସିଆର ସ୍ୱପ୍ନ (୨୪)

ମହାନ୍ତି ଗୁରୁପ୍ରସାଦ- ସମୁଦ୍ରସ୍ନାନ (୨୫)
- ନୂତନ କବିତା (ଭାନୁଜୀ ରାଓଙ୍କ ସହ) (୨୬)
ମହାପାତ୍ର ଲକ୍ଷ୍ମୀକାନ୍ତ- ଜୀବନ ସଙ୍ଗୀତ (୨୭)
- କାନ୍ତ ସାହିତ୍ୟମାଳା (୨୮)
ରଥ ରମାକାନ୍ତ- କେତେ ଦିନର (୨୯)
- ଅନେକ କୋଠରୀ (୩୦)
- ସନ୍ଦିଗ୍ଧ ମୃଗୟା (୩୧)
- ସପ୍ତମ ଋତୁ (୩୨)
- ସଚିତ୍ର ଅନ୍ଧାର (୩୩)
- ଶ୍ରୀରାଧା (୩୪)
ମହାପାତ୍ର ସୀତାକାନ୍ତ- ଦୀପ୍ତି ଓ ଦ୍ୟୁତି (୩୫)
- ଅଷ୍ଟପଦୀ (୩୬)
- ଶବ୍ଦର ଆକାଶ (୩୭)
- ସମୁଦ୍ର (୩୮)
- ଚିତ୍ରନଦୀ (୩୯)
- ଆରଦୃଶ୍ୟ (୪୦)
- ସମୟର ଶେଷ ନାମ (୪୧)
- କାହାକୁ ପୁଚ୍ଛିବା କହ (୪୨)
ରାଓ ଭାନୁଜୀ- ବିଷାଦ ଏକ ଋତୁ (୪୩)
ବାରିକ ସୌରୀନ୍ଦ୍ର- ସାମାନ୍ୟକଥନ (୪୪)
- ଉପଭାରତ (୪୫)
- ଆକାଶ ପରି ନିବିଡ଼ (୪୬)
- ଗୁଣୁଗୁଣୁ ଚିତ୍ରପଟ (୪୭)
ମିଶ୍ର ଦୀପକ କୁମାର- ବୃତ୍ତ (୪୮)
- ନିର୍ଜନ ନକ୍ଷତ୍ର (୪୯)
- ଅରଣା ମର୍ଛିଷି (୫୦)
- ସପ୍ତମ ପୃଥିବୀ (୫୧)
- କପଟ ସୂର୍ଯ୍ୟାସ୍ତ (୫୨)
- ଧୂଳିର ସିଂହାସନ (୫୩)
ମିଶ୍ର ସୌଭାଗ୍ୟ କୁମାର- ଆତ୍ମନେପଦୀ (୫୪)
- ମଧ୍ୟପଦଲୋପୀ (୫୫)
- ନଷ୍ଟ ପହଁରା (୫୬)
- ଅନ୍ଧ ମହୁମାଛି (୫୭)
- ବଜ୍ରଯାନ (୫୮)
- ଦ୍ୱାସୁପର୍ଣ୍ଣା (୫୯)
- ମଣିକର୍ଣ୍ଣିକା (୬୦)

ଶତପଥୀ ପ୍ରତିଭା- ଅସ୍ତ ଜହ୍ନର ଏକିକି (୬୧)
- ଗ୍ରସ୍ତ ସମୟ (୬୨)
- ସାହାଡ଼ା ସୁନ୍ଦରୀ (୬୩)
- ନିୟତ ବସୁଧା (୬୪)
- ନିମିଷେ ଅକ୍ଷର (୬୫)
- ମହାମେଘ (୬୬)
ଦାସ ଜଗନ୍ନାଥ ପ୍ରସାଦ- ଅନ୍ୟସବୁ ମୃତ୍ୟୁ ଓ ଅନ୍ୟାନ୍ୟ କବିତା (୬୭)
- ଯେ ଯାହାର ନିର୍ଜନତା (୬୮)
ପଣ୍ଡା ରାଜେନ୍ଦ୍ର କିଶୋର- ଘୁଣାକ୍ଷର (୬୯)
- ଗୌଣଦେବତା (୭୦)
- ଅନବତାର ଓ ଅନ୍ୟାନ୍ୟ କବିତା (୭୧)
- ଚଉକାଠରେ ଚିରକାଳ (୭୨)
- ଅନ୍ୟା (୭୩)
ନାୟକ ବିନୋଦ ଚନ୍ଦ୍ର- ପୋହଳା ଦୀପର ଉପକଥା (୭୪)
- ସାତତାରାର ଦୀପ (୭୫)
- ନନ୍ଦାଦେବୀ (୭୬)
- ସରୀସୃପ (୭୭)
ବେହେରା ଚିନ୍ତାମଣି- ତୃତୀୟ ଚକ୍ଷୁ (୭୮)
ପ୍ରଧାନ ଶରତ ଚନ୍ଦ୍ର- ନଈ, ମାଛ, ହଂସ ଓ ସାରସ (୭୯)
- ଉଚ୍ଚୈଃଶ୍ରବା (୮୦)
ନାୟକ ନିତ୍ୟାନନ୍ଦ- ତ୍ରସ୍ତ ପଦ୍ମାସନ (୮୧)
ପାଢଶାଣୀ ପ୍ରସନ୍ନ କୁମାର- ସାପ ଗାତରେ ସକାଳ (୮୨)
- ବାଘ ଆଁ ଭିତରେ ପିକ୍‌ନିକ୍ (୮୩)
- ବର୍ଷା (୮୪)
- ନୀଳ ନୂପୁର (୮୫)
ଲେଙ୍କା କମଳାକାନ୍ତ- ସ୍ରୋତର ନାମ ଗତ (୮୬)
- ନିତ୍ୟ ନିୟମିତ (୮୭)
- ଗୀତ ଗା'ନାରେ ପକ୍ଷୀ (୮୮)
ମହାନ୍ତି ଜାନକୀ ବଲ୍ଲଭ (ଭରଦ୍ୱାଜ)- ତୀର୍ଯ୍ୟକ (୮୯)
- ବିଚିତ୍ର ବର୍ଣ୍ଣା (୯୦)
ରାଉତ ବେଣୁଧର- ପିଙ୍ଗଳାର ସୂର୍ଯ୍ୟ (୯୧)
ବର୍ମା ଜ୍ଞାନୀନ୍ଦ୍ର- ଜଏଦେବର ନୂତନ କବିତା (୯୨)
-ରେନାଁସା ଓ ଡ଼ିକାଡ଼େନ୍ସର ଏପିକ୍ (୯୩)
ନନ୍ଦ ପ୍ରହରାଜ ସତ୍ୟନାରାୟଣ- ଶବ ସଙ୍ଗମ ଓ ଅନ୍ୟାନ୍ୟ କବିତା (୯୪)
ହରିଚନ୍ଦନ ନୀଳାଦ୍ରି ଭୂଷଣ- ନୀଳ ଚନ୍ଦନର ଭୁଲ ଠିକଣା (୯୫)
ମହାନ୍ତି ସରୋଜ ରଞ୍ଜନ- ବାଇଗେଣୀ ଋତୁ (୯୬)

ଛୋଟରାୟ ଦେବଦାସ- ନୀଳ ସରସ୍ୱତୀ (୯୭)
ମିଶ୍ର ପ୍ରସନ୍ନ କୁମାର- ଅଦୃଶ୍ୟ ସଙ୍ଗମ (୯୮)
ମିଶ୍ର ହରିହର- ଲାଲ କଙ୍କର ତପସ୍ୟା (୯୯)
ସିଂ ରବି- ଭ୍ରୂକୁଟି (୧୦୦)
- ଲାଲ ପାଗୋଡ଼ାର ପ୍ରେତ (୧୦୧)
- ବିଷବାଣୀ (୧୦୨)
ତ୍ରିପାଠୀ ନୃସିଂହ- ପୂର୍ବଦିଗ (୧୦୩)
ଦାଶ ମମତା- ନୈମିଷାରଣ୍ୟ (୧୦୪)
ପାଣ୍ଡବ ଶତ୍ରୁଘ୍ନ- ନିଃଶ୍ୱାସର ତାଳପତ୍ର (୧୦୫)
ମଲ୍ଲିକ ହୃଷୀକେଶ- ଧାନ ସାଉଁଟା ଝିଅ (୧୦୬)
ପଟ୍ଟନାୟକ ଅମରେଶ- ମଣିଷ ଆଙ୍ଗୁଳେ (୧୦୭)
ଭାରତୀ ଧରମବୀର- କନୁପ୍ରିୟା (୧୦୮)
ମହାପାତ୍ର ଲକ୍ଷ୍ମୀନାରାୟଣ- ଭୂମା (୧୦୯)
ମହାନ୍ତି ଫନୀ- ପ୍ରିୟତମା (୧୧୦)

## ସହାୟକ ଉପାଦାନ (ଓଡ଼ିଆ)

ଦାସ ଚିତ୍ତରଞ୍ଜନ- ଓଡ଼ିଆ ସାହିତ୍ୟର ସାଂସ୍କୃତିକ ବିକାଶଧାରା (୧)
ଦାସ ଦାଶରଥି- ଆଧୁନିକ କାବ୍ୟଜିଜ୍ଞାସା: ଚିତ୍ରକଳ୍ପ (୨)
- ମୃତ୍ୟୁଲୋକରେ ଋତୁ ସପ୍ତମ (୩)
- ଚିହ୍ନାମାଟି ଅଚିହ୍ନା ଆକାଶ (୪)
ବାରିକ ସୌରୀନ୍ଦ୍ର- ଅନ୍ୱେଷାର ସ୍ୱର (୫)
ପଟ୍ଟନାୟକ ପଠାଣି- ସାହିତ୍ୟରେ ରହସ୍ୟବାଦ- (ସମ୍ପାଦନା- ଭୋଳାନାଥ ରାଉତଙ୍କ ସହିତ) (୬)
ମହାନ୍ତି ଯତୀନ୍ଦ୍ର ମୋହନ- କାବ୍ୟତତ୍ତ୍ୱ (୭)
ମହାପାତ୍ର ସୀତାକାନ୍ତ- ଭିନ୍ନ ଆକାଶ ଭିନ୍ନ ଦୀପ୍ତି (୮)
- ନିଃସଙ୍ଗ ମଣିଷ (୯)
ମହାନ୍ତି ଶରତ କୁମାର- ଅସ୍ତିତ୍ୱବାଦର ମର୍ମକଥା (୧୦)
ମିଶ୍ର ଦୀପକ କୁମାର- କବି, କବିତା ଓ ତା'ର ପୃଷ୍ଠଭୂମି (୧୧)
ମିଶ୍ର ପ୍ରସନ୍ନ କୁମାର- ପୂର୍ବ ଭାରତର ହିନ୍ଦୁ ଲୋକମିଥ୍: ଓଡ଼ିଶା (୧୨)
ମିଶ୍ର ହରିହର- ସ୍ୱର ଓ ସାଧକ (୧୩)
ମିଶ୍ର ଗିରୀଶ ଚନ୍ଦ୍ର- ଆଧୁନିକ କବିତା: ମିଥ୍ ପ୍ରସଙ୍ଗ (୧୪)
ରଥ ପ୍ରଫୁଲ୍ଲ କୁମାର- ବାସ୍ତବବାଦ (୧୫)

- ପ୍ରତୀକ ଓ ପ୍ରତୀକବାଦ (୧୬)
ରାଉତରାୟ ସଚ୍ଚିଦାନନ୍ଦ- ସାହିତ୍ୟ ବିଚାର ଓ ମୂଲ୍ୟବୋଧ (୧୭)
ଶତପଥୀ ନିତ୍ୟାନନ୍ଦ- ସବୁଜରୁ ସାମ୍ପ୍ରତିକ (୧୮)
- ପ୍ରମୁଖ କବି କତିପୟ (୧୯)
ମହାର୍ଣ, ଜାନକୀ ବଲ୍ଲଭ (ଭରଦ୍ୱାଜ)- ଆଧୁନିକ ଓଡ଼ିଆ ସାହିତ୍ୟ (୨୦)
ପଟ୍ଟନାୟକ ବିଭୂତି- ସାହିତ୍ୟର ସୂଚୀପତ୍ର (୨୧)
ଶତପଥୀ ପ୍ରତିଭା- କଳ୍ପନାର ଅଭିଷେକ (୨୨)
ଚଟ୍ଟୋପାଧ୍ୟାୟ ବଙ୍କିମ ଚନ୍ଦ୍ର- କୃଷ୍ଣ ଚରିତ୍ର (୨୩)
ପଟ୍ଟନାୟକ ପ୍ରାଣନାଥ- ଆସନ୍ତା କାଲିର ସାହିତ୍ୟ (୨୪)
ପଟ୍ଟନାୟକ ଗୁରୁଚରଣ- ସଙ୍କଟରେ ସାହିତ୍ୟ ସଭ୍ୟତା ସଂସ୍କୃତି (୨୫)
ସିଂହ ରବି- ସଂସ୍କୃତିର ବୈପ୍ଳବିକ ମୂଲ୍ୟବୋଧ (୨୬)
ବେହେରା ଚିନ୍ତାମଣି- କାବ୍ୟ ଓ କଳାକାର (୨୭)
ଜେନା ଡ଼ଃ ବୈରାଗୀ ଚରଣ- (ସଂ) ଗାଥା ସପ୍ତଶତୀ (୨୮)

## ସହାୟକ ପତ୍ରପତ୍ରିକା (ଓଡ଼ିଆ)

୧. ଅନିଶା
୨. ଆବର୍ତ୍ତ
୩. ଆସନ୍ତାକାଲି
୪. ଇସ୍ତାହାର
୫. ଏଷଣା
୬. ଗୋକର୍ଣ୍ଣିକା
୭. କୋଣାର୍କ
୮. ଝଙ୍କାର
୯. ଦିଗନ୍ତ
୧୦ ନବରବି
୧୧. ପାଞ୍ଚଜନ୍ୟ
୧୨. ମୂଲ୍ୟାୟନ
୧୩. ସପ୍ତବର୍ଣ୍ଣା
୧୪. ସପ୍ତର୍ଷି
୧୫ .ସମାବେଶ
୧୬. ସମାସ
୧୭. ପ୍ରତିବେଶୀ
୧୮ ଶତାବ୍ଦୀ
୧୯. ନବଲିପି
୨୦. ଅମୃତାୟନ
୨୧. ଅଧୁନା
୨୨. ଧରିତ୍ରୀ

## ସହାୟକ ଇଂରାଜୀ ଗ୍ରନ୍ଥ

Cox C.B & A.E. Dyson- The Twentieth Century Mind- (Ed.) Part- II (1918-1945) (1)
Eliot T.S. - Selected Poems (2)
- The Family Reunion (6)
- Four Quartets (4)
- Notes Towards the Definition of Culture. (5)

Ford Boris- The Modern Age- Ed. Part- I (6)
Gardner Helen- The Art of T.S. Eliot (7)
- The Metaphysical Poets- (Ed) (8)
Ghose Nirmal- Studies in Modern Bengali Poetry (9)
Kafka Franz- Metamorphosis and Other Stories (10)
Kermode Frank- Selected Prose of T.S. Eliot (Ed.) (11)
Leavis F.R.- New Bearings in English Poetry (12)
Mohapatra Jayant- The False Start (13)
Narayan R.K.- Reluctant Guru (14)
Plath Sylvia- The Colossus (15)
Richards I.A.- Principles of Literary Criticism (16)
Sartre J.P.- The Psychology of Imagination (17)
- What is Literature (18)
Spender Stephen- The Struggle of the Modern (19)
Spilka Mark- D.H. Lawrence- A Collection of Critical Essays. (Ed.) (20)
Feder Lillia- Ancient Myth in Modern Poetry (21)
Max Muller- The Philosophy of Mythology (22)
Eliade Mircea- Myth and Reality (23)
Handy W.J. &- Brooke M.W. Twentieth Century Criticism: The Major Statements. (24)
Read H.- Collected Essays of Literary Criticism (25)
Righter William- Myth and Literature (26)
Bowra C.M.- Romantic Imagination (27)
Albert Edward- A History of Eng. Literature (28)
Baker George - Documents of Modern Realism (29)
Hudson T. - A Reader's Guide to Literary Terms (30)
Lawrence D.H. - Lady Chatterley's Lover (31)
Camus Albert - Myth of Sisyphus (32)
Chadwick Charles - Symbolism (33)
Bowra C.M. - The Heritage of Symbolism (34)
Lewis C.D. - Poetic Image (35)
Hulme T.E - Speculations (36)
Notes on Language of Style (37)
Hudson T. - Ezra Pound and His World (38)
Collins Concise Encyclopaedia (39)
Encyclopaedia Britanica (40)
Encyclopaedia Americana (41)
Evergman's Encyclopaedia (42)
Reader's Encyclopaedia of world-Drama (43)
Encyclopaedia of Religion & Ethics (44)
Encyclopaedia of the Social Science (45)
The Universal Encyclopaedia (46)
Cassell's Encyclopaedia of Literature (47)
Worcester Joseph - Dictionary of English Language (48)

Neruda Pablo - Selected Poems (49)
Iynger K.R.S. - Indian Writings in English (50)

## ସହାୟକ ଇଂରାଜୀ ପତ୍ରପତ୍ରିକା

1. Illustrated Weekly of India
2. Indian Literature
3. Poetry Time
4. The Sampratik - Vol. I
5. Sunday
6. Cuttack Review

## ସହାୟକ ବଙ୍ଗଳା ଗ୍ରଂଥ ଓ ପତ୍ରିକା

ଠାକୁର ରବୀନ୍ଦ୍ର ନାଥ - (୧) ଗୀତାଞ୍ଜଳି
ଦାସଗୁପ୍ତା ଶଶି ଭୂଷଣ - (୨) ଶ୍ରୀରାଧାର କ୍ରମ ବିକାଶ
କବିରାଜ କୃଷ୍ଣଦାସ - (୩) ଚୈତନ୍ୟ ଚରିତାମୃତ

ପତ୍ରିକା

(୧) ଦେଶ
(୨) ନବ କଲ୍ଲୋଳ
(୩) ଶୁକଶାରୀ

## ସହାୟକ ହିନ୍ଦୀ ପୁସ୍ତକ

ଉପାଧ୍ୟାୟ ପଣ୍ଡିତ ବଳଦେବ - (୧) ଭାରତୀୟ ବାଙ୍ମୟ ଶ୍ରୀରାଧା

## ସହାୟକ ସଂସ୍କୃତପୁସ୍ତକ

(୧) ଶ୍ରୀମଦ୍‌ଭଗବତ ଗୀତା
(୨) ବ୍ରହ୍ମବୈବର୍ତ୍ତ ପୁରାଣ
(୩) ଯୋଗବାଶିଷ୍ଠ ରାମାୟଣ
(୪) ଭଜଗୋବିନ୍ଦମ୍
(୫) ବେଦ, ଉପନିଷଦ